# ରଚନା ସମଗ୍ର-୩

ଉପନ୍ୟାସ ଓ ଡିଟେକ୍ଟିଭ୍ ଗଳ୍ପ

## ବାମାଚରଣ ମିତ୍ର

ସଂପାଦନା :

ଯତୀନ୍ଦ୍ରମୋହନ ମହାନ୍ତି

ଜ୍ୟୋତିରିନ୍ଦ୍ରମୋହନ ଜୋଆର୍ଦ୍ଦାର

ସୁବର୍ଣ୍ଣରେଖା

ଭୁବନେଶ୍ୱର

ରଚନା ସମଗ୍ର -୩
ଉପନ୍ୟାସ ଓ ଡିଟେକ୍ଟିଭ ଗଳ୍ପ

*ଲେଖକ* :
ବାମାଚରଣ ମିତ୍ର

*ସଂପାଦନା* :
ଯତୀନ୍ଦ୍ରମୋହନ ମହାନ୍ତି
ଜ୍ୟୋତିରିନ୍ଦ୍ରମୋହନ ଜୋଆର୍ଦ୍ଦାର

*ପ୍ରଚ୍ଛଦ* :
ଶାନ୍ତନୁ ମିଶ୍ର

*ପ୍ରକାଶକ* :
ସୁବର୍ଣ୍ଣରେଖା
କଟକ ରୋଡ୍, ଲକ୍ଷ୍ମୀସାଗର ଛକ
ଭୁବନେଶ୍ୱର - ୭୫୧୦୦୬

*ଅକ୍ଷର ସଜ୍ଜା* :
ନିଳାଦ୍ରି ଗ୍ରାଫିକ୍ସ

*ମୁଦ୍ରଣ* :
ପ୍ରିଣ୍ଟଟେକ୍ ଅଫ୍‌ସେଟ୍, ଭୁବନେଶ୍ୱର

*ପ୍ରଥମ ପ୍ରକାଶ* : ୨୦୦୨

*ମୂଲ୍ୟ* : ଟ୧୫୦.୦୦

ISBN 81-87467-!7-7

**Rachana Samagra - 3**
*Novel & Detective Stories*
*Author* :
**Bamacharan Mitra**

*Editors* :
**Jatindramohan Mohanty**
**Jyotirindramohan Joardar**

*Cover* :
**Shantanu Mishra**

*Publisher* :
**SUBARNAREKHA**
Cuttack Road
Laxmisagar Chhack
Bhubaneswar - 751006

*D.T.P.* :
**Niladri Graphics**

*Printing* :
**Print-Tech Offset**
Bhubaneswar

*First Edition* : **2002**

*Price -Rs.150.00*

# ସୂଚୀପତ୍ର

# ମୁଖବନ୍ଧ

ଗ୍ରନ୍ଥକାର ସ୍ୱୟଂ ଦେଇଥିବା 'ସୂଚନା' ପୂର୍ବରୁ ଏ ମୁଖବନ୍ଧ କେବଳ ଏତିକି ସୂଚାଇବାକୁ ଯେ ଗ୍ରନ୍ଥକାରଙ୍କ 'ସୂଚନା' ଏକ ପ୍ରକାର ଅବଶ୍ୟପାଠ୍ୟ । 'ଏକ ପ୍ରକାର' କହିଲି, କାରଣ ସେ ସୂଚନା ବାଦ ଦେଇ ପଢ଼ିଲେ ଯେ ଉପନ୍ୟାସଟି ଉପଭୋଗ କରି ହେବ ନାହିଁ ତାହା ନୁହେଁ, ତେବେ ଯେଉଁ ପାଠକପାଠିକା ଆହୁରି ଭଲ ଭାବରେ ଏହାର ରସାସ୍ୱାଦନ କରିବାକୁ ଚାହାନ୍ତି ସେମାନେ ସ୍ୱତଃ ଜାଣିବାକୁ ଚାହିଁବେ ଉପନ୍ୟାସରେ ବର୍ଣ୍ଣିତ କାଳ ଓ ପରିପାର୍ଶ୍ୱ କିପରି ଥିଲା, ଯେପରି କି ଏହାର ଆଖ୍ୟାୟିକାଟି ସେମାନଙ୍କ କଳ୍ପନା ଚକ୍ଷୁରେ ଆହୁରି ସ୍ପଷ୍ଟ ହୋଇ ଉଠିବ । ସେ କାଳଟି ଥିଲା ବୌଦ୍ଧ ଯୁଗର ଶେଷାଂଶ, ଇତିହାସରେ ଯାହା ବିଷୟରେ ଧାରାବାହିକ ଭାବରେ କିଛି ଜଣାଯାଏ ନାହିଁ ବୋଲି ଗ୍ରନ୍ଥକାର ମୋତେ ସ୍ୱୟଂ ଥରେ କହିଥିଲେ - ଯେଉଁଥି ପାଇଁ 'ସୂଚନା'ଟି ଲେଖିବାକୁ ଯାଇ ତାଙ୍କୁ ବହୁତ ଖୋଳତାଡ଼ କରିବାକୁ ପଡ଼ିଥିଲା ।

ଏଠି ଆଉ ବକ୍ତବ୍ୟ କେବଳ ଏତିକି ଯେ ପ୍ରୟାତ ଗ୍ରନ୍ଥକାରଙ୍କ ଜ୍ୟେଷ୍ଠା କନ୍ୟା ଶ୍ରୀମତୀ ସଂଘମିତ୍ରା ଘୋଷ ମୋତେ ଦେଇଥିବା ତଥ୍ୟ ଅନୁସାରେ ଗ୍ରନ୍ଥକାର ନୟାଗଡର ମହକୁମା - ଶାସନରେ ରହୁଥିବା ସମୟରେ, ୧୯୫୮ ମସିହାରେ ସେଠାର 'ବିକାଶ ପ୍ରତିଷ୍ଠାନ' ଦ୍ୱାରା ଏ ଉପନ୍ୟାସଟି ପ୍ରଥମେ ପ୍ରକାଶିତ ହୋଇଥିଲା । ଦଶବର୍ଷ ପରେ ୧୯୬୮ରେ 'କଟକ ଷ୍ଟୁଡ଼େଣ୍ଟସ୍ ଷ୍ଟୋର' ଏହାର ପୁନଃପ୍ରକାଶ କରି ତାକୁ 'ସଂଶୋଧିତ ଓ ପରିବର୍ଦ୍ଧିତ ଦ୍ୱିତୀୟ ମୁଦ୍ରଣ' ବୋଲି କହିଲେ । ଆହୁରି ଦଶବର୍ଷ ପରେ ୧୯୭୮ରେ ସେମାନେ ଏହାକୁ ଆଉ ଥରେ ପ୍ରକାଶ କରି ତାକୁ 'ଦ୍ୱିତୀୟ ସଂସ୍କରଣ' ବୋଲି କହିଲେ । ମାତ୍ର ତା'ର ତିନିବର୍ଷ ପୂର୍ବେ ୧୯୭୫ମସିହାରେ ଗ୍ରନ୍ଥକାର ଇହଧାମ ତ୍ୟାଗ କରିଥିଲେ । 'ଷ୍ଟୋର'ର ୧୯୭୮ର 'ଦ୍ୱିତୀୟ ସଂସ୍କରଣ'କୁ ୧୯୬୮ର 'ଦ୍ୱିତୀୟ ମୁଦ୍ରଣ' ସହିତ ମିଳାଇ ଦେଖିଲେ ମଧ୍ୟ କୌଣସି ପ୍ରଭେଦ ପରିଲକ୍ଷିତ ହୁଏ ନାହିଁ । ଏହା ସୁସ୍ପଷ୍ଟ ଯେ ପ୍ରକୃତରେ ଆଗଟି ହିଁ ଦ୍ୱିତୀୟ ସଂସ୍କରଣ, ପଛଟି ତା'ର ପୁର୍ନମୁଦ୍ରଣ ମାତ୍ର । ତେଣୁ ବର୍ତ୍ତମାନ ପ୍ରକାଶନାରେ ୧୯୬୮ ମସିହାର ସେଇ ପ୍ରକୃତ ଦ୍ୱିତୀୟ ସଂସ୍କରଣର ଅନୁସରଣ କରାଯାଇଛି ।

ଜ୍ୟୋତିରିନ୍ଦ୍ରମୋହନ ଜୋଆର୍ଦ୍ଦାର

# ସୂଚନା

କଥା କୁହ, ହେ ଅନାଦି ଅତୀତ । ନବବଧୂ ପରି ତୁମେ ଚିରଦିନ ନୀରବ । ଐତିହାସିକ, ପ୍ରତ୍ନତତ୍ତ୍ୱବିଦ୍, ଭୂତତ୍ତ୍ୱବିଦ୍ ଆଦି ଜ୍ଞାନୀମାନେ ସେମାନଙ୍କର ଜ୍ଞାନ ସାହାଯ୍ୟରେ ତୁମକୁ କଥା କୁହାଇବାକୁ ଚେଷ୍ଟା କରିଅଛନ୍ତି, ତୁମେ କେବଳ ଗମ୍ଭୀର ଭାବରେ ଅନାଇ ରହିଛ ସେମାନଙ୍କୁ । ସାହିତ୍ୟିକମାନେ ସେମାନଙ୍କର କଳ୍ପନା ସାହାଯ୍ୟରେ ତୁମକୁ କଥା କୁହାଇବାକୁ ଚେଷ୍ଟା କରିଅଛନ୍ତି, ତୁମେ କେବଳ ସ୍ମିତ ହାସ୍ୟ କରିଛ । ମୁଁ ଜଣେ ଅପଟୁ ସାହିତ୍ୟିକ, ମୋର କଳ୍ପନାଶକ୍ତି କ୍ଷୀଣ । ତଥାପି ମୁଁ ମଧ ତୁମକୁ କଥା କୁହାଇବାକୁ ଚେଷ୍ଟା କରୁଛି, ଜାଣେନା ଏ ଚେଷ୍ଟା ତୁମ ଅଧରରେ କି ଭାବ ଫୁଟାଇବ !

* * *

ଏ ଆଖ୍ୟାୟିକାଟି କାଳ୍ପନିକ ହେଲେହେଁ ଏହାର ଭିତ୍ତି ଇତିହାସ ଉପରେ । ସେ ଇତିହାସ ପୁଣି ଅନ୍ଧକାରର ଗହ୍ୱରରେ । ଯେଉଁ ଦୁଇ ତିନୋଟି ଆଲୋକରେଖା ଅନ୍ଧକାର ଭେଦ କରି ସେ ଇତିହାସ ଉପରେ ପଡ଼ିଛି ତାହାହିଁ ଏ ଆଖ୍ୟାୟିକାର ଅବଲମ୍ବନ ।

ଏ ଇତିହାସ ଖ୍ରୀ:ପୂ: ପ୍ରଥମ ଶତାବ୍ଦୀ ଠାରୁ ଖ୍ରୀଷ୍ଟୀୟ ପ୍ରଥମ ଶତାବ୍ଦୀର । ମୌର୍ଯ୍ୟ ବଂଶର ପୃଥିବୀ ବିଖ୍ୟାତ ସମ୍ରାଟ ଦେବାନାଂ ପ୍ରିୟ ପ୍ରିୟଦର୍ଶୀ ଶ୍ରୀମନ୍ମହାରାଜ ଦେବପାଦ ଅଶୋକ ମୌର୍ଯ୍ୟଙ୍କର ଶେଷ ବଂଶଧର ମଗଧରାଜ ବୃହଦ୍ରଥଙ୍କୁ ତାଙ୍କର ବ୍ରାହ୍ମଣ ସେନାପତି ପୁଷ୍ୟମିତ୍ର ହତ୍ୟା କରି ସୁଙ୍ଗବଂଶ ପ୍ରତିଷ୍ଠା କଲେ । ଅନେକ ଐତିହାସିକ ବିଶ୍ୱାସ କରନ୍ତି ଯେ ବୌଦ୍ଧଧର୍ମର ବିନାଶ ସାଧନ କରି ପୁନଃ ବ୍ରାହ୍ମଣ୍ୟ ଧର୍ମର ପ୍ରତିଷ୍ଠା କରାଇବା ଉଦ୍ଦେଶ୍ୟରେ ବ୍ରାହ୍ମଣମାନଙ୍କର ଚକ୍ରାନ୍ତରେ ବୃହଦ୍ରଥ ନିହତ ହୋଇ ପୁଷ୍ୟମିତ୍ର ରାଜା ହୋଇଥିଲେ ।

ଜଣେ ଐତିହାସିକ କହନ୍ତି ଯେ ବୌଦ୍ଧଧର୍ମ ପ୍ରତି ବ୍ରାହ୍ମଣମାନଙ୍କର କ୍ରୋଧ ଜନ୍ମିବାର ଅନେକ କାରଣ ଅଛି । ବୌଦ୍ଧଧର୍ମର ପ୍ରସାର ଯୋଗୁଁ ବ୍ରାହ୍ମଣମାନଙ୍କର ପ୍ରତିପତ୍ତିର ବିପର୍ଯ୍ୟୟ ଘଟିଥିଲା । ସମ୍ରାଟ ଅଶୋକ ଯଜ୍ଞରେ ପଶୁବଳି ପ୍ରଥା ନିଷେଧ କରିବାରୁ ବ୍ରାହ୍ମଣମାନଙ୍କର ଅପ୍ରୀତିଭାଜନ ହୋଇଥିଲେ । ଯେଉଁ ବ୍ରାହ୍ମଣମାନେ ଏଥି ପୂର୍ବରୁ 'ଭୂଦେବ' ବୋଲି ପୂଜାର୍ହ ଥିଲେ ସେମାନେ ଅଶୋକଙ୍କ ଅନୁଶାସନ ଫଳରେ ମିଥ୍ୟା ଦେବତା ବୋଲି ବିବେଚିତ ହେଲେ । ଅଶୋକ ଧର୍ମମହାମାତ୍ର ନିଯୁକ୍ତ କରିବା ଦ୍ୱାରା ବ୍ରାହ୍ମଣମାନଙ୍କର ବିଶେଷ ସମ୍ମାନହାନି ଘଟିଲା । ଧର୍ମ ମହାମାତ୍ରମାନେ ଗ୍ରାମ ଗ୍ରାମ ବୁଲି ଧର୍ମ ବିଷୟରେ

ସରଳ ଶିକ୍ଷା ଦେବାରୁ ଲୋକେ ବ୍ରାହ୍ମଣମାନଙ୍କ ପ୍ରତି ଭୟ ଓ ଭକ୍ତି ରଖିଲେ ନାହିଁ । ପୁଣି ଅଶୋକଙ୍କ 'ଦଣ୍ଡକସମତା' ନୀତିର ପ୍ରବର୍ତ୍ତନ ବ୍ରାହ୍ମଣମାନଙ୍କ ବିପକ୍ଷରେ ପ୍ରତ୍ୟକ୍ଷ ଯୁଦ୍ଧ ଘୋଷଣା କଲା, ଏ ନୀତି ଅନୁସାରେ ବ୍ରାହ୍ମଣ ଓ ସାଧାରଣ ଲୋକ ଧର୍ମଚ୍ୟୁତି ପାଇଁ ସମାନ ଭାବରେ ଦଣ୍ଡନୀୟ ହେଲେ । ଏହି ପରି ନାନା କାରଣରୁ ବ୍ରାହ୍ମଣମାନେ ସମ୍ମାନ, ପ୍ରତିପତ୍ତି ଓ ଜୀବିକା ହରାଇ ମୌର୍ଯ୍ୟବଂଶ ଓ ବୌଦ୍ଧଧର୍ମ ବିରୁଦ୍ଧରେ ନିତାନ୍ତ ଶତ୍ରୁଭାବାପନ୍ନ ହେଲେ ।

ଉତ୍କଳ ବା କଳିଙ୍ଗର ଏହି ସମୟର ଇତିହାସ ଅଧିକ ତମସାଚ୍ଛନ୍ନ । କଳିଙ୍ଗରେ ସେତେବେଳେ ଚେଦି ବଂଶର ରାଜା ବୀର ମହାରାଜ ମହାମେଘବାହନ ଶ୍ରୀ ଖାରବେଳ ଐର । ମୌର୍ଯ୍ୟବଂଶର ପ୍ରତିଷ୍ଠାତା ଚନ୍ଦ୍ରଗୁପ୍ତ ପ୍ରଥମେ କଳିଙ୍ଗ ଜୟ କରିଥିଲେ । କିନ୍ତୁ ଅଶୋକଙ୍କର ରାଜତ୍ୱର ଚତୁର୍ଥ ବର୍ଷରେ କଳିଙ୍ଗ ସ୍ୱାଧୀନତା ଘୋଷଣା କରିଥିଲା ।

ଅଶୋକ ଖ୍ରୀ:ପୂ: ୨୬୧ରେ କଳିଙ୍ଗ ଆକ୍ରମଣ କରି ଯେଉଁ ନୃଶଂସ ହତ୍ୟାକାଣ୍ଡ ଘଟାଇଥିଲେ ତାହା ଇତିହାସ ପାଠକ ମାତ୍ରେ ଜାଣନ୍ତି । ଲିଖିତ ଅଛି ଅଶୋକ ବହୁ ଲକ୍ଷ କଳିଙ୍ଗ ସେନା ହତ୍ୟା ଓ ବହୁ ଲକ୍ଷ ସେନା ବନ୍ଦୀ କରିଥିଲେ । କିନ୍ତୁ ଏହାହିଁ ଅଶୋକଙ୍କର ଶେଷ ଯୁଦ୍ଧ । ଏହି ଉତ୍କଳରେ ହିଁ ଚଣ୍ଡାଶୋକ ଧର୍ମାଶୋକରେ ପରିଣତ ହୋଇଥିଲେ । ଏହା ପରେ କଳିଙ୍ଗ ପୁଣି ସ୍ୱାଧୀନତା ଘୋଷଣା କରିଥିଲା ।

ପୁଷ୍ୟମିତ୍ର ବୃହଦ୍ରଥଙ୍କୁ ହତ୍ୟାକରି ଯେତେବେଳେ ସୁଙ୍ଗ ବଂଶ ପ୍ରତିଷ୍ଠା କଲେ ଖାରବେଳ ସେତେବେଳେ ପୂର୍ଣ୍ଣ ପ୍ରତାପରେ ଉତ୍କଳର ଭୂଖଣ୍ଡ ଶାସନ କରୁଥାଆନ୍ତି । ଏହି ମହାବୀର ପୁଷ୍ୟମିତ୍ରଙ୍କୁ ପରାଜିତ କରି କଳିଙ୍ଗର ସୀମା ଉତ୍ତରରେ ଗଙ୍ଗା ଠାରୁ ଦକ୍ଷିଣରେ କାବେରୀ ପର୍ଯ୍ୟନ୍ତ ଏବଂ ପଶ୍ଚିମରେ ପଞ୍ଜାବଠାରୁ ପୂର୍ବରେ ବଙ୍ଗ ପର୍ଯ୍ୟନ୍ତ ବିସ୍ତାର କରିଥିଲେ । କିନ୍ତୁ ଖାରବେଳ ବିଷୟରେ ଯାହା ଜଣାଯାଏ ତାହା ଅତି ସାମାନ୍ୟ । ତାହା ମଧ୍ୟ ଗୋଟିଏ ମାତ୍ର ଉପାଦାନରୁ — ହାତୀ ଗୁମ୍ଫାର ଶିଳାଲିପିରୁ । ଏହି ଶିଳାଲିପି ମଧ୍ୟ ଅନେକ ସ୍ଥାନରେ କ୍ଷୁଣ୍ଣ ହୋଇଥିବାରୁ ତହିଁରୁ ସମ୍ପୂର୍ଣ୍ଣ ପାଠୋଦ୍ଧାର କରିବା ବର୍ତ୍ତମାନ ଅସମ୍ଭବ । ଏହି ଲିପିରୁହିଁ ଜଣାଯାଏ, "ନମୋ ଅର୍ହତାନାଂ, ନମ ସବସିଧାନଂ ବେରେଣ ମହାରାଜେନ ମହାମେଘବାହନେନ ଚେତରାଜ ବସବଧନେନ ପସଥ ସୁଭଲଖନେନ ଚତୁରଂ ତାଳଂ ନଗୁନୋପଗତେନ କଳିଙ୍ଗାଧିପତିନା ସିରି ଖାର ବେଳେନ..." ଇତ୍ୟାଦି ।

ଉତ୍କଳର ତଥା ଭାରତର ପ୍ରାଚୀନ ଇତିହାସ ତମସାଚ୍ଛନ୍ନ ଥିବାର କାରଣ, ପ୍ରଥମତଃ ସମଗ୍ର ଭାରତରେ କେବେହେଁ ଏକତା ନଥିଲା । ଏହି ସୁବିସ୍ତୀର୍ଣ୍ଣ ଭୂଖଣ୍ଡରେ କେଉଁଠି କେତେବେଳେ କେଉଁ ରାଜ୍ୟର ଉତ୍‌ଥାନ ବା କେଉଁ ରାଜ୍ୟର ପତନ ହେଉଥିଲା ତାହା ସମୁଦ୍ରର ଲହରୀ ଗଣିବା ଭଳି ଦୁଃସାଧ୍ୟ ଥିଲା । ତହିଁରେ ପୁଣି ସମୀପବର୍ତ୍ତୀ ରାଜ୍ୟମାନଙ୍କ ମଧ୍ୟରେ ବିବାଦ ଅଧିକ ଜଟିଳତା ସୃଷ୍ଟି କରିଥଲା ।

ଇଉରୋପୀୟ ଜୀବନଯାତ୍ରା ସେମାନଙ୍କର ରାଜନୀତି ଠାରୁ କଦାପି ବିଚ୍ଛିନ୍ନ

ହୋଇନାହିଁ । କିନ୍ତୁ ଭାରତୀୟ ଜୀବନଯାତ୍ରା ତାହାର ରାଜନୀତି ମଧ୍ୟରେ ପ୍ରକାଶ ନପାଇ ପାଇଛି ତା'ର ଧର୍ମ ଓ ଦର୍ଶନରେ । ଭାରତରେ ତେଣୁ ଆଜି ପର୍ଯ୍ୟନ୍ତ ଧର୍ମ ଓ ଦର୍ଶନକୁ ସମ୍ପୂର୍ଣ୍ଣ ପୃଥକ୍ ରଖି ରାଜନୀତି ନିୟନ୍ତ୍ରଣ କରିବା ସମ୍ଭବ ହୋଇ ପାରିନାହିଁ ।

ଭାରତରେ ଧର୍ମ ଓ ଦର୍ଶନ ବିଷୟରେ ଗ୍ରନ୍ଥ ଅଜସ୍ର । କିନ୍ତୁ କୌଣସି ଗ୍ରନ୍ଥରେ ସଠିକ୍ ସମୟ ବା ଘଟଣାର ସନ୍ଧାନ ମିଳେ ନାହିଁ । ସେତେବେଳେ ଭାରତୀୟ ଚିନ୍ତାଧାରାରେ ଇତିହାସ ଲେଖା ପ୍ରତି ଶ୍ରଦ୍ଧା ନ ଥିଲା । ପୁଣି ଯାହାଙ୍କୁ ବା ଇତିହାସ ଲେଖକ ବୋଲି ଆଖ୍ୟା ଦିଆଯିବ ସେମାନେ ମୂଳତଃ ଥିଲେ କବି । କବିର କଳ୍ପନା ସହିତ ବାସ୍ତବ ଘଟଣାଗୁଡ଼ିକ ଏପରି ସୁନ୍ଦର ଭାବରେ ମିଶାଇ ସେମାନେ ଲିପିବଦ୍ଧ କରି ଯାଇଅଛନ୍ତି ଯେ କୌଣସି ଐତିହାସିକ ପକ୍ଷରେ ପ୍ରକୃତ ଇତିହାସ ଛାଣି ବାହାର କରିବା ଅସମ୍ଭବ । ସତ୍ୟକୁ ସେମାନେ ବାସ୍ତବ ଘଟଣାରେ ନ ଖୋଜି ଖୋଜୁଥିଲେ କଳ୍ପନାରେ । କଳ୍ପନା ଥିଲା ସେମାନଙ୍କର ବେଶି ବାସ୍ତବ ।

ବେଦ ଆର୍ଯ୍ୟମାନଙ୍କର ପ୍ରଥମ ସୃଷ୍ଟି । ପ୍ରତ୍ୟେକ ବେଦ ଚାରି ଭାଗରେ ବିଭକ୍ତ, ଯଥା - ସଂହିତା, ବ୍ରାହ୍ମଣ, ଆରଣ୍ୟକ ଓ ଉପନିଷଦ୍ ବା ବେଦାନ୍ତ ।

ବେଦର ସୃଷ୍ଟିର ସମୟ ବିଷୟରେ ନାନା ମତ ଥିଲେହେଁ ଅଧିକାଂଶ ଐତିହାସିକ ଏହାର ସମୟ ଖ୍ରୀ:ପୂ: ୨୦୦୦ ବୋଲି ମତ ଦେଇଅଛନ୍ତି । ବେଦ କୌଣସି ଜଣକ ଦ୍ୱାରା ସୃଷ୍ଟ ନୁହେଁ କିମ୍ବା ଏକ ସମୟରେ ମଧ୍ୟ ସୃଷ୍ଟ ନୁହେଁ । ସଂହିତା ଠାରୁ ଆରମ୍ଭ କରି ବେଦାନ୍ତ ପର୍ଯ୍ୟନ୍ତ ବେଦର ଚାରି ଅଙ୍ଗ ଯାକ ଖ୍ରୀ:ପୂ: ୨୦୦୦ରୁ ଖ୍ରୀଷ୍ଟୀୟ ୩୦୦ ମଧ୍ୟରେ ବହୁ ଋଷି ମନୀଷୀଙ୍କ ଦ୍ୱାରା ସୃଷ୍ଟ ।

ସଂହିତା ଚାରିଗୋଟି ଯଥା :- ଋଗ୍‌ବେଦ (ଋକ୍‌ବେଦ), ସାମବେଦ, ଯଜୁର୍ବେଦ ଓ ଅଥର୍ବବେଦ । ଅନେକେ ଆୟୁର୍ବେଦକୁ ପଞ୍ଚମ ବେଦ କୁହନ୍ତି । ଅନେକେ ପୁଣି କୁହନ୍ତି ଏହା ଅଥର୍ବବେଦର ଉପାଙ୍ଗ । କିନ୍ତୁ ଆୟୁର୍ବେଦରେ ବେଦର ଉପରୋକ୍ତ ଚାରିଗୋଟି ଅଙ୍ଗ ଯଥା - ସଂହିତା, ବ୍ରାହ୍ମଣ, ଆରଣ୍ୟକ ଓ ଉପନିଷଦ୍ ନଥିବାରୁ ଅନେକେ ଏହାକୁ ବେଦ ବୋଲି ସ୍ୱୀକାର କରନ୍ତି ନାହିଁ ।

ଋଗ୍‌ବେଦ ସଂହିତା ଆର୍ଯ୍ୟମାନଙ୍କର ଗୋଟିଏ ଅପୂର୍ବ ସୃଷ୍ଟି । ଆର୍ଯ୍ୟମାନେ ଦୁଇ ଦଳ ହୋଇ ଭାରତକୁ ଆସିଥିଲେ । ଆର୍ଯ୍ୟମାନେ ଭାରତକୁ ଆସିବା ପୂର୍ବରୁ ଭାରତରେ ଯେଉଁ ସଭ୍ୟତା ଥିଲା ତାହା ଦ୍ରାବିଡ଼ୀୟ ସଭ୍ୟତା । ଏ ସଭ୍ୟତା ମଧ୍ୟ ଖୁବ୍ ଉନ୍ନତ ଥିଲା । ମହେଞ୍ଜୋଦାରୋ ଓ ହରପ୍ପାରୁ ଏହାର ଆଭାସ ମିଳେ ।

ପ୍ରଥମ ଦଳଟି କାବୁଲ ଉପତ୍ୟକା ବାଟେ ଭାରତର ଉତ୍ତର-ପଶ୍ଚିମ ସୀମାନ୍ତ ବାଟ ଦେଇ ଭାରତକୁ ପ୍ରବେଶ କରିଥିଲେ । ସେମାନେ ସେମାନଙ୍କ ସହିତ ଗୃହ ପାଳିତ ପଶୁ ଓ ସ୍ତ୍ରୀ ପରିବାର ଆଣିଥିଲେ ଏବଂ ପଞ୍ଜାବର ସରସ୍ୱତୀ ଓ ଦୃଷଦ୍ୱତୀ ନଦୀ ଦ୍ୱୟର ମଧ୍ୟବର୍ତ୍ତୀ

ଭୂଖଣ୍ଡରେ ବାସ କରିବାକୁ ଲାଗିଲେ । ଏହା ହିଁ ପରେ ଆର୍ଯ୍ୟାବର୍ତ୍ତ ନାମରେ ଅଭିହିତ ହେଲା । ଏମାନେ ଏହି ଉର୍ବର ଭୂଖଣ୍ଡ କର୍ଷଣ କରି ପ୍ରଚୁର ଶସ୍ୟ ଉତ୍ପାଦନ କରିବାକୁ ଲାଗିଲେ ଏବଂ ମନର ଆନନ୍ଦ ଓ ଆବେଗରେ ପ୍ରକୃତିର ନାନାରୂପ ବର୍ଣ୍ଣନା କରିବାକୁ ଲାଗିଲେ । ଏହି ବର୍ଣ୍ଣନାରୁ ହିଁ ଋଗ୍‌ବେଦ ସଂହିତାର ଋକ୍‌ଗୁଡ଼ିକର ସୃଷ୍ଟି ।

ଦ୍ରାବିଡ଼ମାନଙ୍କ ସହିତ ଯୁଦ୍ଧରେ ବ୍ୟାପୃତ ଥିଲେହେଁ ଏମାନଙ୍କ ମନରେ ଆନନ୍ଦ ହ୍ରାସ ପାଇନଥିଲା । ସେମାନେ ପ୍ରକୃତିର ନାନା ବିଚିତ୍ର ରୂପ ଦେଖି ତାହାର ଜୟଗାନ କରିବାକୁ ଲାଗିଲେ; କେତେବେଳେ ଅଗ୍ନିରୂପେ, କେତେବେଳେ ବା ମେଘ ରୂପେ, କେତେବେଳେ ବରୁଣ ରୂପେ, କେତେବେଳେ ବା ରୁଦ୍ର ରୂପେ । ଯେତେବେଳେ ପ୍ରକୃତିର ଯେଉଁ ରୂପ ବର୍ଣ୍ଣନା କରିଅଛନ୍ତି ସେତେବେଳେ ସେହି ରୂପହିଁ ସବୁଠାରୁ ସୁନ୍ଦର ବୋଲି ବର୍ଣ୍ଣନା କରିଅଛନ୍ତି ।

ବେଦରେ ତେଣୁ ଦେଖିବାକୁ ମିଳେ ଶିଶୁସୁଲଭ ଆନନ୍ଦ ଓ ଜିଜ୍ଞାସା । ଏଥିରେ ହୃଦୟର ଆବେଗ ଓ ଆନନ୍ଦ ଯେପରି ଉନ୍ମୁକ୍ତ ଭାବରେ ପ୍ରକାଶ ପାଇଛି, ହୃଦୟର କାମନାଗୁଡ଼ିକ ମଧ୍ୟ ସେହିପରି ନଗ୍ନ ରୂପେ ପ୍ରକାଶ ପାଇଛି । ''ଉରୁଂ ହି ବରୁଣଶ୍ଚକାର ସୂର୍ଯ୍ୟାୟ ପନ୍ଥା ମନ୍ୱେତବା ଉ । ଅପଦେ ପାଦା ପ୍ରତିଧାତବେ଼ କରୁତାପ ବକ୍ତା ହୃଦୟାବିଧଶ୍ଚିତ୍ ।। ଦଧିଶ୍ଚିତ୍ର'' - ରାଜା ବରୁଣ ସୂର୍ଯ୍ୟର କ୍ରମାନ୍ୱୟ ଗମନାର୍ଥେ ପଥ ବିସ୍ତୀର୍ଣ୍ଣ କରିଅଛନ୍ତି । ପଦରହିତ ଅନ୍ତରୀକ୍ଷରେ ସୂର୍ଯ୍ୟଙ୍କର ପଦବିକ୍ଷେପ ପାଇଁ ପଥ ପ୍ରସ୍ତୁତ କରିଅଛନ୍ତି । ସେ ମୋର ହୃଦୟବିଦ୍ଧକାରୀ ଶତ୍ରୁକୁ ତିରସ୍କାର କରନ୍ତୁ । ''ଶଗ୍‌ଧି ପୂର୍ଦ୍ଧି ପ୍ରଯଂସି ଚ ଶିଶୀହି ପ୍ରାସ୍ୟୁଦରଂ । ପୁଷନ୍ନିହ କ୍ରତୁଂ ବିଦଃ'' - (ହେ ପୂଷାଦେବତା) ଆମ୍ଭମାନଙ୍କୁ ଅନୁଗ୍ରହ କରିବାକୁ ସକ୍ଷମ ହୁଅ, ଆମ୍ଭମାନଙ୍କର ଗୃହ ପରିପୂର୍ଣ୍ଣ କର, ଅଭୀଷ୍ଟ ବସ୍ତୁ ଦାନକର । ଆମ୍ଭମାନଙ୍କୁ ତୀକ୍ଷ୍ଣତେଜା କର, ଆମ୍ଭମାନଙ୍କର ଉଦର ପୂରଣ କର । ''ମା ରାୟୋ ରାଜନ୍‌ତ୍‌ସୁୟମାଦବ ସ୍ୱାଂ ବୃହଦ୍ୱଦେମ ବିଦଥେ ସୁବୀରାଃ ।'' - ହେ ବରୁଣ ! ମୋତେ ଯେପରି କୌଣସି ଧନୀ ଓ ପ୍ରଭୂତ ଦାନଶୀଳ ବ୍ୟକ୍ତି ନିକଟରେ ଜ୍ଞାତିର ଦାରିଦ୍ର୍ୟ କଥା କହିବାକୁ ନପଡ଼େ, ହେ ରାଜା ! ମୋହର ଯେପରି ନିୟମିତ ଧନର ଅଭାବ ନରହେ । ମୁଁ ପୁତ୍ର ଓ ପୌତ୍ର ବିଶିଷ୍ଟ ହୋଇ ଏଇ ଯଜ୍ଞରେ ତୁମକୁ ବହୁତ ସ୍ତୁତି କରିବି ।

ଦର୍ଶନ କହିଲେ ଆଜିକାଲି ଆମେ ଯାହା ବୁଝୁ ସେପରି ଦର୍ଶନ ସଂହିତାରେ ନାହିଁ । ଆର୍ଯ୍ୟମାନେ ଦ୍ରାବିଡ଼ମାନଙ୍କ ଠାରୁ ବିଚ୍ଛିନ୍ନ ଜୀବନ ଯାପନ କରୁଥିଲେ । ସେମାନଙ୍କ ସହିତ କୌଣସି ସଂସ୍ରବକୁ ଆର୍ଯ୍ୟମାନେ ଘୃଣା କରୁଥିଲେ । ସେତେବେଳେ ଆର୍ଯ୍ୟମାନଙ୍କ ମଧ୍ୟରେ ଜାତିଭେଦ ନଥିଲା ଏବଂ ସ୍ତ୍ରୀମାନେ ସମ୍ପୂର୍ଣ୍ଣ ସ୍ୱାଧୀନ ଥିଲେ ।

ପ୍ରଥମ ଦଳ ଆସିବାର କେତେକ ବର୍ଷ ପରେ ଆଉ ଦଳେ ଆର୍ଯ୍ୟ ହିନ୍ଦୁକୁଶ ପର୍ବତ ଲଙ୍ଘନ କରି କାଶ୍ମୀରରେ ଗିଲ୍‌ଗିଟ୍ ଓ ଚିତ୍ରଲ୍ ବାଟେ ଭାରତକୁ ପ୍ରବେଶ କରିଥିଲେ ।

ଏମାନେ ଗଙ୍ଗା ଓ ଯମୁନାର ମଧ୍ୟବର୍ତ୍ତୀ ସମତଳ ଭୂମିରେ ବାସ କରିବାକୁ ଲାଗିଲେ । ଏମାନଙ୍କ ମଧ୍ୟରୁ ଅଳ୍ପ କେତେକ ସ୍ତ୍ରୀ ପରିବାର ସହ ଆସିଥିଲେ । ତେଣୁ ଦ୍ରାବିଡ଼ମାନଙ୍କ ସହିତ ସମ୍ବନ୍ଧ ସ୍ଥାପନ କରିବାକୁ ଏମାନେ ବାଧ୍ୟ ହୋଇଥିଲେ ।

କ୍ରମେ କ୍ରମେ ଆର୍ଯ୍ୟରକ୍ତ ଓ ସଭ୍ୟତା ସହିତ ଦ୍ରାବିଡ଼ ରକ୍ତ ଓ ସଭ୍ୟତା ମିଶ୍ରିତ ହେବାରୁ ପୁରାତନ ଆର୍ଯ୍ୟ ସଭ୍ୟତାର କ୍ରମପରିବର୍ତ୍ତନ ହେବାକୁ ଲାଗିଲା । ଦ୍ରାବିଡ଼ ସଭ୍ୟତାରେ ସେତେବେଳେ ନାନା କ୍ରିୟାକର୍ମ, ସର୍ପ ପୂଜା, ଦେବୀ ପୂଜା, ଲିଙ୍ଗ ପୂଜା, ବଳିଦାନ ଇତ୍ୟାଦି ଥିଲା । ବିଶେଷତଃ ସେମାନଙ୍କର ସମସ୍ତ କର୍ମ ଇନ୍ଦ୍ରଜାଲ ବା କୁହୁକ ବିଦ୍ୟା ଦ୍ୱାରା ପ୍ରଭାବିତ ଥିଲା । ଆର୍ଯ୍ୟମାନେ ଏମାନଙ୍କ ସହିତ ଘନିଷ୍ଠ ସମ୍ପର୍କରେ ଆସିବାରୁ ବୈଦିକ ଧର୍ମ ଓ ଚିନ୍ତାଧାରାରେ ମୌଳିକ ପରିବର୍ତ୍ତନ ଘଟିଲା ।

ଏହି ସମୟରେ ବେଦର ଦ୍ୱିତୀୟ ଅଙ୍ଗ ବ୍ରାହ୍ମଣର ସୃଷ୍ଟି । ବ୍ରାହ୍ମଣ ଶବ୍ଦର ଆଦି ଅର୍ଥ ମନ୍ତ୍ର, ଯାହା ଯଥାଯଥ ପାଠ କରି ତନ୍ନିର୍ଦ୍ଦିଷ୍ଟ କ୍ରିୟାନୁଷ୍ଠାନ ଅକ୍ଷରେ ଅକ୍ଷରେ ପାଳନ କଲେ ଅଭୀଷ୍ଟ ସିଦ୍ଧ ହୁଏ । ଶବ୍ଦ ଉଚ୍ଚାରଣ ବା କ୍ରିୟାନୁଷ୍ଠାନରେ ସାମାନ୍ୟ ଦୋଷ ଘଟିଲେ ଅଭୀଷ୍ଟ ତ ସିଦ୍ଧ ହେବ ନାହିଁ, ପରନ୍ତୁ କୁଫଳ ଫଳିବ । ଉଦାହରଣ ସ୍ୱରୂପ ଋଗ୍‌ବେଦ ସଂହିତାର "ଓଁ ଅଗ୍ନିମୀଳେ ପୁରୋହିତଂ ଯଜ୍ଞସ୍ୟ ଦେବ ମୃତ୍ୱିଜଂ ହୋତାରଂ ରତ୍ନଧ ତମଂ"ଏହି ସୂକ୍ତଟି ସ୍ୱରିତ, ଉଦାତ୍ତ ଓ ଅନୁଦାତ୍ତ ଆଦି ନାନା ସ୍ୱରରେ ଘନପାଠ କ୍ରମପାଠ ଆଦି ପଦ୍ଧତିରେ ପାଠ କରିବାକୁ ହେବ ଯଥା - ଅଗ୍ନି ଗ୍ନିମୀ ମିଳେ ଇତ୍ୟାଦି ଅଥବା ଅଗ୍ନିମୀ ଗ୍ନିମୀଳେ ମୀଳେପୁ ଳେପୁରୋ ଇତ୍ୟାଦି ।

ସଂହିତା ଯୁଗ ଯଦି ଖ୍ରୀ:ପୂ: ୨୦୦୦ ରୁ ଖ୍ରୀ:ପୂ: ୧୫୦୦ ଧରାଯାଏ ତେବେ ବ୍ରାହ୍ମଣ ଯୁଗ ଖ୍ରୀ:ପୂ: ୧୦୦୦ ହେବ । ଏହି ଯୁଗରେ ସଂହିତାର କେତେକ ଦେବତାର ତିରୋଭାବ ଘଟି କେତେକ ନୂତନ ଦେବତାର ଆବିର୍ଭାବ ଦେଖାଯାଏ । ବିଶେଷତଃ ଦେବୀମାନଙ୍କର ଆବିର୍ଭାବ ଏହି ସମୟରେ । ବ୍ରାହ୍ମଣ ଗଦ୍ୟ ଆକାରରେ ଲିଖିତ ଏବଂ କେବଳ କ୍ରିୟା, ପଦ୍ଧତି ଓ ଅନୁଷ୍ଠାନରେ ପୂର୍ଣ୍ଣ । ଏ କ୍ରିୟା ପୁଣି ଯଥାଯଥ ପାଳନ କରିବା ପାଇଁ ଜ୍ୟାମିତି, ଜ୍ୟୋତିଷ, ଛନ୍ଦ ଆଦି ନାନା ଶାସ୍ତ୍ର ପଢ଼ିବାକୁ ହେବ ।

ଯଜ୍ଞ ପାଇଁ ପଶୁବଳି ଏହି ସମୟରେ ଚଳଣି ହେଲା । ସାଧାରଣ ମନୁଷ୍ୟର ଦୈନନ୍ଦିନ ଜୀବନକୁ ନାନା କ୍ରିୟାକର୍ମ, ଅନୁଷ୍ଠାନ, ଯାଗ ଯଜ୍ଞରେ ଏପରି ଭାବରେ ବାନ୍ଧି ଦିଆଗଲା ଯେ ଲୋକେ ବ୍ରାହ୍ମଣ ପୁରୋହିତ ବିନା ପାଦେ ଅଗ୍ରସର ହେବା ଉପାୟ ରହିଲା ନାହିଁ । ଲୋକେ ଅଭୀଷ୍ଟ ସିଦ୍ଧିର ଆଶାରେ ଏବଂ କୁଫଳର ଭୟରେ ବ୍ରାହ୍ମଣ ପୁରୋହିତ ମାନଙ୍କର ସମ୍ପୂର୍ଣ୍ଣ କରାୟତ୍ତ ହୋଇ ନିଜର ସ୍ୱାଧୀନତା ହରାଇଲେ । ଜାତିଭେଦ ମଧ୍ୟ ଏହି ସମୟର ସୃଷ୍ଟି । କିନ୍ତୁ ବ୍ରାତ୍ୟଷ୍ଟୋମ ନାମରେ ଅନୁଷ୍ଠାନ ଦ୍ୱାରା (କ୍ଷତ୍ରିୟ ଓ ବୈଶ୍ୟ) ଗୋଟିଏ ନିମ୍ନ ଶ୍ରେଣୀରୁ ଉଚ୍ଚ ଶ୍ରେଣୀକୁ ଯାଇ ପାରୁଥିଲେ । ଶୂଦ୍ରମାନଙ୍କର ଅବସ୍ଥା ଏହି ସମୟରେ

ଅତୀବ ଶୋଚନୀୟ ଥିଲା ଏବଂ ସ୍ତ୍ରୀ -ସ୍ୱାଧୀନତା ଅନେକାଂଶରେ ହ୍ରାସ ପାଇଥିଲା ।

ବ୍ରାହ୍ମଣ ପରେ ଆରଣ୍ୟକର ସୃଷ୍ଟି । ଯାହା ଅନୁମାନ କରାଯାଏ, ଆରଣ୍ୟକ ବୃଦ୍ଧ ଓ ଅକର୍ମଣ୍ୟମାନଙ୍କ ପାଇଁ ସୃଷ୍ଟି ହୋଇଥିଲା । ଯେଉଁମାନେ ନାନା କ୍ରିୟାକର୍ମ ପାଳନ କରିବାକୁ ଅସମର୍ଥ ସେମାନେ କୌଣସି ଯଜ୍ଞର ପ୍ରତୀକ ସ୍ୱରୂପ ଅନ୍ୟ କିଛି ଧ୍ୟାନ କଲେ ଯଜ୍ଞାନୁଷ୍ଠାନ ଫଳର ଅଧିକାରୀ ହୋଇ ପାରୁଥିଲେ । ଉଦାହରଣ ସ୍ୱରୂପ, ଅଶ୍ୱମେଧ ପରି ବିରାଟ ଯଜ୍ଞ ନକରି ଉଷାକୁ ଅଶ୍ୱର ମଥା, ସୂର୍ଯ୍ୟଙ୍କୁ ଅଶ୍ୱର ଆଖି, ବାୟୁକୁ ଅଶ୍ୱର ଜୀବନ ଇତ୍ୟାଦି ରୂପେ କଳ୍ପନା କରି ଧ୍ୟାନ କଲେ ଅଶ୍ୱମେଧ ଯଜ୍ଞର ଫଳ ପ୍ରାପ୍ତି ହେବ । ଆରଣ୍ୟକ ସୃଷ୍ଟି ଦ୍ୱାରା ସ୍ୱାଧୀନ ଚିନ୍ତା ପାଇଁ ଅବକାଶ ମିଳିଲା । କ୍ରିୟାନୁଷ୍ଠାନାଦିରୁ ମୁକ୍ତହୋଇ ଲୋକେ କଳ୍ପନା ଓ ଚିନ୍ତା କରିବାକୁ ସକ୍ଷମ ହେଲେ । ଏହି ସମୟରେ ଉପନିଷଦ୍‌ର ଭିତ୍ତି ସ୍ଥାପନ ହେଲା ।

ଉପନିଷଦ୍‌ଗୁଡ଼ିକ ଭାରତୀୟ ଚିନ୍ତାଧାରାର ତଥା ଦର୍ଶନରେ ବିପ୍ଳବ ସୃଷ୍ଟି କଲେ । ଉପନିଷଦ୍‌ଗୁଡ଼ିକ ଯୁକ୍ତିଯୁକ୍ତ ଧାରାବାହିକ ଚିନ୍ତା ନୁହଁ, କିନ୍ତୁ ବିରାଟ କଳ୍ପନା । ଚିନ୍ତା ଦ୍ୱାରା ହିଁ ସୃଷ୍ଟି ତତ୍ତ୍ୱ ବୁଝିବାକୁ ଚେଷ୍ଟା ଉପନିଷଦ୍‌ରେ ମିଳେ ।

ଉପନିଷଦ୍‌ର ଦାର୍ଶନିକ କଳ୍ପନା ପରେ ଭାରତୀୟ ଦର୍ଶନରେ ଯୁକ୍ତିଯୁକ୍ତ ଧାରାବାହିକ ଚିନ୍ତା ଆମେ ଦେଖିବାକୁ ପାଉ । ଏ ଚିନ୍ତାଧାରା ପ୍ରକାଶ ପାଇଛି ଭାରତର ଛ'ଟି ଦର୍ଶନରେ - ନ୍ୟାୟ, ବୈଶେଷିକ, ଉତ୍ତରମୀମାଂସା, ପୂର୍ବମୀମାଂସା, ସାଂଖ୍ୟ ଓ ଯୋଗରେ । ଏହାପରେ ପୁଣି ଭାରତୀୟ ଚିନ୍ତାରେ ଗୋଟାଏ ପତନ ଘଟିଲା ଯେତେବେଳେ ଲୋକେ ମୌଳିକ ଚିନ୍ତା ଛାଡ଼ି ବେଦ ଓ ଉପନିଷଦ୍‌ର ନାନା ସୂକ୍ଷ୍ମ ଅର୍ଥ ବାହାର କରିବାରେ ବ୍ୟାପୃତ ହେଲେ । ଏହା ଟୀକା ଯୁଗ ।

ବୁଦ୍ଧଙ୍କର ଜନ୍ମ (ଖ୍ରୀ:ପୂ: ୫୬୦) ସମୟରେ ବ୍ରାହ୍ମଣ୍ୟ ଧର୍ମ ତା'ର ଚରମ ସୀମାକୁ ଉଠିଥିଲା । ଜାତିଭେଦ ପ୍ରଥା ସେତେବେଳକୁ ଦୃଢ଼ଭାବେ ପ୍ରତିଷ୍ଠିତ ହୋଇ ସାରିଲାଣି । କ୍ରିୟା ଯାଗ ଯଜ୍ଞ ପୂଜା ପଦ୍ଧତି ଆଦି ଦ୍ୱାରା ସାଧାରଣ ଲୋକେ ଏପରି ଭାବରେ ଜଡ଼ିତ ହୋଇ ସାରିଲେଣି ଯେ ସେମାନଙ୍କର ସ୍ୱାଧୀନତା ନାହିଁ କହିଲେ ଚଳେ । ଲୋକେ ଯେତେବେଳେ ଜାତିଭେଦ କର୍ମକାଣ୍ଡ ପ୍ରଭୃତିରେ ନିମଜ୍ଜିତ, ଦେବତାମାନଙ୍କର ଓ ଭଗବାନଙ୍କର ରୋଷ ଭୟରେ ଭୀତ, ସେତେବେଳେ ଏହି ଅଦ୍ୱିତୀୟ ମହାପୁରୁଷ ମହା ବିପ୍ଳବ ସୃଷ୍ଟି କଲେ ।

ଭାରତର ରାଜନୈତିକ ଅବସ୍ଥା ମଧ୍ୟ ସେତେବେଳେ ଘୋର ନୈରାଶ୍ୟ ଜନକ । ନାନା କ୍ଷୁଦ୍ର କ୍ଷୁଦ୍ର ବିବଦମାନ ରାଜ୍ୟରେ ଭାରତ ସେତେବେଳେ ପରିପୂର୍ଣ୍ଣ । ଚିନ୍ତାରାଜ୍ୟରେ ଉପନିଷଦ୍ ଓ ସାଂଖ୍ୟ ଦର୍ଶନର ସେତେବେଳେ ଭିତ୍ତି ପଡ଼ିଛି ମାତ୍ର । ଏହି ନୈରାଶ୍ୟର ଅନ୍ଧକାରରେ ବୁଦ୍ଧ ଆଲୋକ ଦେଲେ ତାଙ୍କର ଅତି ସରଳ ଧର୍ମ ସରଳ ଭାଷାରେ ବୁଝାଇ । ତାଙ୍କର ଥିଲା ମାତ୍ର ଚାରୋଟି ଅତି ସରଳ ସତ୍ୟ: ଦୁଃଖ, ସମୁଦାୟ, ବିରୋଧ, ମାର୍ଗ -

—ଏ ଜୀବନ ଦୁଃଖମୟ, ଦୁଃଖର କାରଣ କାମନା, କାମନାର ବିନାଶରେ ଦୁଃଖର ବିନାଶ, ଏବଂ କାମନାର ବିନାଶ ପାଇଁ ଅଷ୍ଟମାର୍ଗ ଯଥା ସତ୍‌ଚିନ୍ତା, ସତ୍‌ସଙ୍ଗ ଇତ୍ୟାଦି । ଏଥିପାଇଁ ନାନା ଯାଗଯଜ୍ଞ, କ୍ରିୟାକର୍ମ, ପୂଜାପଦ୍ଧତି ଆଦିର ଆବଶ୍ୟକତା ନାହିଁ, ବ୍ରାହ୍ମଣ ପୁରୋହିତର ପ୍ରୟୋଜନ ନାହିଁ ବା ନାନା ଦେବଦେବୀର ପ୍ରୟୋଜନ ନାହିଁ । ସାଧାରଣ ଲୋକେ ମୁକ୍ତିର ଆସ୍ୱାଦନ ପାଇଲେ । ଦଳ ଦଳ ହୋଇ ଲୋକେ ବୌଦ୍ଧଧର୍ମ ଗ୍ରହଣ କରିବାକୁ ଲାଗିଲେ ।

ବୌଦ୍ଧଧର୍ମର ଗଣତାନ୍ତ୍ରିକ ଆଦର୍ଶ, ସହଜ ସରଳ ପନ୍ଥା, ବ୍ରାହ୍ମଣର ପ୍ରଭୁତ୍ୱରୁ ମୁକ୍ତିଦାନ ଏବଂ ସାମ୍ୟ ଲୋକମାନଙ୍କୁ ଆକୃଷ୍ଟ କଲା । ବୁଦ୍ଧ ଓ ମହାବୀର ଥିଲେ କ୍ଷତ୍ରିୟ । ବ୍ରାହ୍ମଣ ଓ କ୍ଷତ୍ରିୟ ମଧ୍ୟରେ ପ୍ରାଧାନ୍ୟ ନେଇ ସେତେବେଳେ ଏକ ପ୍ରକାର ଯୁଦ୍ଧ ଚାଲିଥିଲା । ସାଧାରଣ ମନୁଷ୍ୟ ଚିରଦିନ ସ୍ୱାଧୀନତା ଚାହେଁ; ସ୍ୱାଧୀନତା ପାଇଁ ଯୁଦ୍ଧ କରେ । କିନ୍ତୁ ସ୍ୱାଧୀନତା ପରେ ତାହାର କଅଣ ଲକ୍ଷ୍ୟ ହେବା ଉଚିତ ତାହା ସେ ଭାବି ନଥାଏ । ତେଣୁ ଅନେକ ସମୟରେ ଦେଖାଯାଏ ଗୋଟିଏ ଶକ୍ତିର କବଳରୁ ଉଦ୍ଧାର ପାଇ ଅନ୍ୟ ଶକ୍ତିର କବଳରେ ଲୋକେ ପଡ଼ନ୍ତି । ଲୋକେ ବ୍ରାହ୍ମଣ୍ୟ ଧର୍ମରୁ ମୁକ୍ତି ପାଇ ଆଉ ଗୋଟିଏ ଧର୍ମର କବଳରେ ପଡ଼ିଲେ । ବୌଦ୍ଧଧର୍ମ ନାମରେ ମଧ୍ୟ ପରେ କମ୍ ବ୍ୟଭିଚାର ହୋଇନଥିଲା । ସେ କଥା ପରେ କୁହାଯିବ ।

ତଥାଗତ ବୁଦ୍ଧ ତାଙ୍କର ୮୦ ବର୍ଷରେ ନିର୍ବାଣ ପ୍ରାପ୍ତ ହେଲେ । ଏହାର ଦୁଇଶହ ବର୍ଷ ପରେ ଅଶୋକ ଯେତେବେଳେ ଚନ୍ଦ୍ରଗୁପ୍ତଙ୍କର ବିଶାଳ ସାମ୍ରାଜ୍ୟର ସମ୍ରାଟ ହେଲେ ସେତେବେଳେ ସେ ବୌଦ୍ଧ ଧର୍ମର ବିଶେଷ ପ୍ରସାର ପାଇଁ ଚେଷ୍ଟା କରିଥିଲେ । ତାଙ୍କରି ସମୟରେ ବୌଦ୍ଧଧର୍ମ ଚୀନ , ସିଂହଳ ଆଦି ଦେଶରେ ଆଦୃତ ହୋଇଥିଲା । ଅଶୋକଙ୍କ ପ୍ରଚାରିତ ବୌଦ୍ଧ ଧର୍ମ କିନ୍ତୁ ଆଦି ବୌଦ୍ଧ ଧର୍ମ ଠାରୁ ଅନେକାଂଶରେ ଭିନ୍ନ । ବୁଦ୍ଧଙ୍କର ବୌଦ୍ଧଧର୍ମ କେବଳ ସଂସାରତ୍ୟାଗୀ ଭିକ୍ଷୁକ ବା ବୌଦ୍ଧ ଭିକ୍ଷୁମାନଙ୍କ ପାଇଁ; କିନ୍ତୁ ଅଶୋକଙ୍କ ବୌଦ୍ଧଧର୍ମ ମୁଖ୍ୟତଃ ଗୃହୀମାନଙ୍କ ପାଇଁ । ତେଣୁ ଗୃହୀମାନଙ୍କୁ ଆକୃଷ୍ଟ କରିବା ପାଇଁ ବୌଦ୍ଧଧର୍ମରେ ସ୍ୱର୍ଗ, ନରକ, ଦେବପୂଜା ଆଦିର କଳ୍ପନା ସେ ପ୍ରଚାର କରାଇଥିଲେ ।

ବୁଦ୍ଧଙ୍କର ନିର୍ବାଣର ଶହେ ବର୍ଷ ପରେ ବୈଶାଳୀରେ ବୌଦ୍ଧ ଭିକ୍ଷୁମାନଙ୍କର ଗୋଟିଏ ବିରାଟ ସଭା ହୋଇଥିଲା । ଏହା ଭିକ୍ଷୁମାନଙ୍କର ଦ୍ୱିତୀୟ ସଭା । ଏହି ସଭାରେ ପ୍ରଥମେ ମତଭେଦ ସୃଷ୍ଟି ହୋଇଥିଲା । ବଜ୍ଜୀ ବଂଶୀୟ ଯୁବକ ଭିକ୍ଷୁମାନେ ଏହି ସଭାରେ କେତେଗୁଡ଼ିଏ ନିୟମରେ ପରିବର୍ତ୍ତନ ଆଣିବାକୁ ଚେଷ୍ଟା କଲେ । ଏଗୁଡ଼ିକର ନାମ ଦଶବସ୍ତୁ । ଏହି ଯୁବକ ଭିକ୍ଷୁମାନଙ୍କର ଉଦ୍ଦେଶ୍ୟ ଥିଲା ଭିକ୍ଷୁର ଦୈନନ୍ଦିନ ଜୀବନ ଯାପନର କଠୋର ନିୟମଗୁଡ଼ିକ କୋହଳ କରିବା, ଯଥା - କପ୍‌ପତି ଜଲୋଗୀ କପପୋ --- ଅର୍ଥାତ ଭିକ୍ଷୁମାନଙ୍କର ମଦ ପିଇବା ନିଷିଦ୍ଧ । ଯୁବକମାନେ କହିଲେ ଯେଉଁ ରସ ତାଡ଼ି ହୋଇ ନାହିଁ ତାକୁ ଖାଇବାକୁ ମନା କରିବା ଉଚିତ ନୁହେଁ । କପ୍‌ପତି

ଜାତ ରୂପ ରଜତନ୍ତି - ଭିକ୍ଷୁମାନଙ୍କର ସୁନା-ରୂପା ସ୍ପର୍ଶ କରିବା ନିଷିଦ୍ଧ; କିନ୍ତୁ ଯୁବକ ଭିକ୍ଷୁମାନେ କହିଲେ ସ୍ପର୍ଶ କରିବା ସିନା ନିଷିଦ୍ଧ, କେହି ଯଦି ପାତ୍ରରେ ସୁନା ରୂପା ଦିଏ ସେଥିରେ ଆପତ୍ତି କରିବାର କାରଣ ନାହିଁ । ସ୍ଥବିରମାନେ ଏହାର ତୀବ୍ର ପ୍ରତିବାଦ କଲେ । ଏହିଠାରୁ ଆରମ୍ଭ ହେଲା ହୀନଯାନ ଓ ମହାଯାନ ବା ମହାସାଙ୍ଘିକ । ଯୁବକମାନେ ସଂଖ୍ୟାରେ ଅଧିକ ଥିବାରୁ ସେମାନେ ନିଜକୁ ମହାସାଙ୍ଘିକ ବୋଲାଇଲେ । ସ୍ଥବିରମାନେ, ଯେଉଁମାନେ କି ନିୟମ ସବୁ ଅକ୍ଷରେ ଅକ୍ଷରେ ପାଳନ କରିବାକୁ କହିଲେ, ସେମାନେ ହେଲେ ହୀନଯାନ । ମହାଯାନ ବୌଦ୍ଧଧର୍ମ କ୍ରମଶଃ ଉତ୍ତର ଆଡ଼କୁ ଓ ହୀନଯାନ କ୍ରମଶଃ ଦକ୍ଷିଣ ଆଡ଼କୁ ପ୍ରସାର ଲାଭ କଲା ।

ଏହା ପରେ ବୁଦ୍ଧଙ୍କର ଜନ୍ମର ପ୍ରାୟ ପାଞ୍ଚଶତ ବର୍ଷ ମଧ୍ୟରେ ବୌଦ୍ଧଧର୍ମରେ ନାନା ବ୍ୟଭିଚାର ପ୍ରବେଶ କରିବାକୁ ଲାଗିଲା । ଶେଷରେ ତନ୍ତ୍ରଯାନ, ସହଜଯାନ, ବଜ୍ରଯାନ ଇତ୍ୟାଦି ନାମରେ ଯେଉଁ ଯୌନ ବ୍ୟଭିଚାର ଓ ନାରକୀୟ ଲୀଳା ଓ ଅଶ୍ଳୀଳତା ଚାଲିଲା ତାହା ଅକଥନୀୟ । ମନ୍ଦିରମାନଙ୍କରେ ଯେଉଁ ଅଶ୍ଳୀଳ ମୂର୍ତ୍ତିମାନ ଦେଖାଯାଏ ତାହା ସବୁ ଏ ସମୟର ସୃଷ୍ଟି ।

ବୃହଦ୍ରଥଙ୍କୁ ତାଙ୍କର ବ୍ରାହ୍ମଣ ସେନାପତି ପୁଷ୍ୟମିତ୍ର ହତ୍ୟା କରିବା ପରେ ବ୍ରାହ୍ମଣ୍ୟ ଧର୍ମର ପୁନଃ ପ୍ରତିଷ୍ଠା ପାଇଁ ପ୍ରବଳ ପ୍ରଚେଷ୍ଟା ହୋଇଥିଲା । କିନ୍ତୁ ବୌଦ୍ଧଧର୍ମ ଗଣଧର୍ମ ଥିବାରୁ ବ୍ରାହ୍ମଣମାନେ ବୌଦ୍ଧଧର୍ମ ବିରୁଦ୍ଧରେ ପ୍ରତ୍ୟକ୍ଷ ଯୁଦ୍ଧ ତ୍ୟାଗ କରି ପରୋକ୍ଷ ଭାବରେ ତା'ର ବିଲୋପ ସାଧନ କରିବାର ଚେଷ୍ଟା କଲେ । ବୁଦ୍ଧଙ୍କୁ ଈଶ୍ୱରଙ୍କର ଅବତାର ରୂପେ ଗ୍ରହଣ କରି ସେମାନେ ତାଙ୍କୁ ଓ ତାଙ୍କର ଦର୍ଶନକୁ ନିଜ ଧର୍ମରେ ଚଳାଇ ନେଲେ । ସାଧାରଣ ଲୋକେ ଚିରଦିନ ସୁବିଧାବାଦୀ । ଅନ୍ୟର ଶ୍ରମରେ ଓ ସାମାନ୍ୟ କ୍ରିୟାନୁଷ୍ଠାନ ଦ୍ୱାରା ଯଦି ବୈଷୟିକ ସୁଖ ସହଜରେ ମିଳେ, ତେବେ ସେଥିପ୍ରତି କାହାର ଆଗ୍ରହ ନ ବଢ଼େ !

ବ୍ରାହ୍ମଣମାନେ ପ୍ରଥମରୁ ଯେପରି ଜ୍ଞାନୀ ସେହିପରି ବୁଦ୍ଧିମାନ୍ ଓ ଦୂରଦର୍ଶୀ । ସେମାନେ ଜନସାଧାରଣର ସାମାନ୍ୟ ଆକାଙ୍କ୍ଷାର ସୁବିଧା ନେଇ ବୌଦ୍ଧଧର୍ମର ଅଧିକାଂଶ ମତବାଦ, ଦର୍ଶନ ଓ କ୍ରିୟାନୁଷ୍ଠାନ ସାମାନ୍ୟ ବଦଳାଇ ନିଜ ଧର୍ମରେ ଚଳାଇ ଦେଇ ଗୋଟିଏ ନୂତନ ଧର୍ମ ସୃଷ୍ଟି କଲେ । ଜୈନଧର୍ମକୁ ମଧ୍ୟ ସେମାନେ ସେହି ଉପାୟରେ ନିଜ ଧର୍ମ ମଧ୍ୟରେ ପୂରାଇ ଦେଲେ ।

ଏହି ଧର୍ମହିଁ ହିନ୍ଦୁଧର୍ମ ନାମରେ ଖ୍ୟାତ । ଏ ଧର୍ମରେ ସବୁ ଧର୍ମର ଦର୍ଶନ ଓ କ୍ରିୟାନୁଷ୍ଠାନ ରହିଲା ଏବଂ ବ୍ରାହ୍ମଣର ପ୍ରଭୁତ୍ୱ ମଧ୍ୟ ବଜାଏ ରହିଲା । ତେଣୁ ପୃଥିବୀର ଅନ୍ୟାନ୍ୟ ଧର୍ମକୁ ମନୁଷ୍ୟସୃଷ୍ଟ ସୁନ୍ଦର ଉଦ୍ୟାନ ସହିତ ତୁଳନା କଲେ ହିନ୍ଦୁ ଧର୍ମକୁ ପ୍ରକୃତିସୃଷ୍ଟ ଗୋଟିଏ ବିରାଟ ଜଙ୍ଗଲ ସହିତ ତୁଳନା କରାଯାଇପାରେ । ଏ ଧର୍ମରେ ଚୋର ସାଧୁ,

ଆସ୍ତିକ ନାସ୍ତିକ, ମୂର୍ତ୍ତିପୂଜକ, ନିରାକାରବାଦୀ ଆଦି ସମସ୍ତଙ୍କର ସ୍ଥାନ ସମାନ ଅଛି । ପରେ ହିନ୍ଦୁ ଧର୍ମ ଏତେ ବ୍ୟାପକ ହୋଇଥିଲା ଯେ ହିନ୍ଦୁ ବୋଇଲେ ପୃଥିବୀର ସବୁ ଧର୍ମର ଲୋକଙ୍କୁ ବୁଝାଉଥିଲା, ଅର୍ଥାତ୍ ଯେ ଯେଉଁ ବାଟରେ ଯାଉନା କାହିଁକି ସେ ଯଦି ସତ୍ୟର ଅନୁସନ୍ଧାନ କରୁଥାଏ ସେ ହିନ୍ଦୁ । ହିନ୍ଦୁ ଧର୍ମରେ କୌଣସି ନିର୍ଦ୍ଦିଷ୍ଟ ମାର୍ଗ ବା ଦର୍ଶନ ନାହିଁ । ଏହା ବ୍ରାହ୍ମଣମାନଙ୍କର ଭାରତକୁ ଶ୍ରେଷ୍ଠ ଦାନ ।

ଭାରତରେ ନାନା ମତବାଦ, ନାନା ଧର୍ମ, ନାନା ବୈଶିଷ୍ଟ୍ୟ, ନାନା ଜାତି ଥିଲେ ମଧ୍ୟ ଏହି ହିନ୍ଦୁଧର୍ମ ଦ୍ୱାରା ସମସ୍ତେ ଏକତାସୂତ୍ରରେ ଆବଦ୍ଧ । ଏପରି ଉଦାର ଧର୍ମ ଆଉ ବୋଧହୁଏ ପୃଥିବୀରେ ନାହିଁ; ପୃଥିବୀର ଅନ୍ୟାନ୍ୟ ଧର୍ମର ପ୍ରସାର ପାଇଁ ଯେତେ ରକ୍ତପାତ ହୋଇଛି ହିନ୍ଦୁଧର୍ମରେ ସେପରି ରକ୍ତପାତ ଆଦୌ ନାହିଁ । କାରଣ ହିନ୍ଦୁଧର୍ମର ପ୍ରଚାର ନିଷିଦ୍ଧ ଯେ ହେତୁ ପୃଥିବୀର ସମସ୍ତେ ହିନ୍ଦୁ ।

ଯେଉଁ ସମୟରେ ଏକ ଦିଗରେ ନାନା ମତବାଦ ସୃଷ୍ଟି ହୋଇ ସବୁ ଧର୍ମରେ ଜଡ଼ତା ଆସିଛି ଏବଂ ଅନ୍ୟ ଦିଗରେ ନୂତନ ଭାବଧାରା, ନୂତନ ଆଶା ଓ ଶାନ୍ତି-ସାମ୍ୟର ଆଲୋକ ଉଦୟ ହେଉଛି ଏହି ଆଖ୍ୟାୟିକାଟି ସେହି ସମୟର ।

# ୧

ବୌଦ୍ଧରାଜ୍ୟର ସୁଖପଲ୍ଲୀରେ ଆଜି ମହୋତ୍ସବ । କିନ୍ତୁ ଏହାର କାରଣ, ଯାହାକି ଏ ଆଖ୍ୟାୟିକାର ବିଷୟ ବସ୍ତୁ, କହିବା ପୂର୍ବରୁ ବୌଦ୍ଧରାଜ୍ୟର ଅତୀତ ଇତିହାସର କେତେକ ପୃଷ୍ଠା ଓଲଟାଇବାକୁ ପଡ଼ିବ ।

ପୁଣ୍ୟତୋୟା ମହାନଦୀ ଯେଉଁଠାରେ ଦକ୍ଷିଣ ଗାମିନୀ ହେବା ପାଇଁ ଅର୍ଦ୍ଧବୃତ୍ତାକାର ଧାରଣ କରିଅଛି, ତାହାର ଦକ୍ଷିଣକୁ ବୌଦ୍ଧରାଜ୍ୟ ଅବସ୍ଥିତ ।

ମୌର୍ଯ୍ୟମାର୍ତ୍ତଣ୍ଡ ଚନ୍ଦ୍ରଗୁପ୍ତ ସମଗ୍ର ଭାରତ ଜୟ କରି ବିଶାଳ ରାଜ୍ୟ ଚବିଶବର୍ଷ କାଳ ସୁଶାସନ କଲେ । କିନ୍ତୁ ମନରେ ସେ ଶାନ୍ତି ପାଇଲେ ନାହିଁ । ଧନ, ମାନ, ସାମ୍ରାଜ୍ୟ, ଶକ୍ତି ସବୁ ପାଇ ମଧ ତାଙ୍କର ମନରେ ହେଲା ସେ ଯେପରି କିଛି ପାଇ ନାହାନ୍ତି । ସବୁଠାରୁ ସୁନ୍ଦର ଅବିନଶ୍ୱର ଏପରି କିଛି ଗୋଟାଏ ପାଇବାକୁ ତାଙ୍କର ମନରେ ଆବେଗ ଜାତ ହେଲା । ଭାରତର ଇତିହାସରେ ସେ ପ୍ରଥମ ଏକରାଟ୍ । ଏଥିଲାଗି ସବୁ ଚକ୍ରାନ୍ତ, ସବୁ ଯୁଦ୍ଧ, ପୁଣି ସୁଶାସନର ମୂଳରେ ଥିଲେ ସେଇ କୁଦର୍ଶନ, ଦରିଦ୍ର ଅଥଚ ଶାଣିତ ଛୁରିକା ଭଳି ତୀକ୍ଷ୍ଣ ବୁଦ୍ଧିସମ୍ପନ୍ନ ବ୍ରାହ୍ମଣ - ଚାଣକ୍ୟ କୌଟିଲ୍ୟ । ଗୁରୁଦେବ ଚାଣକ୍ୟ ଆଜି ବାନପ୍ରସ୍ଥ ଅବଲମ୍ବନ କରିଅଛନ୍ତି । ଏ କୋଳାହଳ, ଏ ସାମ୍ରାଜ୍ୟ, ଏ ଶକ୍ତି ଚନ୍ଦ୍ରଗୁପ୍ତଙ୍କୁ ଆଜି ବିରାଟ ପ୍ରହସନ ଭଳି ଲାଗୁଛି । ଯେଉଁଆଡ଼େ ଆଜି ଚନ୍ଦ୍ରଗୁପ୍ତ ଚାହୁଁଛନ୍ତି ତାଙ୍କ ଆଖି ଆଗରେ ଗୋଟିଏ ପ୍ରଶ୍ନବାଚକ ଚିହ୍ନ ଭାସି ଉଠୁଛି । ଏ ସବୁର ପରିଣାମ କେଉଁଠି ?

ଚିନ୍ତା କରୁ କରୁ ଚନ୍ଦ୍ରଗୁପ୍ତ ତାଙ୍କର ସୁରମ୍ୟ ଉଦ୍ୟାନରେ ପଥହରା ପଥିକ ଭଳି ଏପାଖ ସେପାଖ ପଦଚାରଣା କରୁଅଛନ୍ତି । ଏକ ସମୟରେ ଚନ୍ଦ୍ରଗୁପ୍ତ ତଡ଼ାଗ କୂଳସ୍ଥ ଗୋଟିଏ ଗ୍ରୀସୀୟ ପ୍ରସ୍ତର ମୂର୍ତ୍ତି ଉପରେ ହସ୍ତ ରଖି ନିରୁଦ୍ଦିଷ୍ଟ ଭାବରେ ଚାହିଁ ରହିଲେ ଅସୀମ ଆକାଶ ଆଡ଼େ ।

ଏଇ ଅସୀମକୁ ଜୟ କରିବାର ଅଭିଯାନ କରିବି.. ।

ଏହି ସମୟରେ ଧୀର ପଦକ୍ଷେପରେ ପ୍ରବେଶ କଲେ ସେଲିଉକସ୍ - ନନ୍ଦିନୀ ରାଜ୍ଞୀ ହେଲେନା । ତାଙ୍କର ଗୌର ସୁଗୋଲ ହସ୍ତ ଚନ୍ଦ୍ରଗୁପ୍ତଙ୍କ ସ୍କନ୍ଧ ଉପରେ ରଖନ୍ତେ ଚନ୍ଦ୍ରଗୁପ୍ତ ଚମକି ପଡ଼ି ପଛକୁ ଚାହିଁ କିଛି ସମୟ ମୁଗ୍ଧ ଦୃଷ୍ଟିରେ ହେଲେନାକୁ ଚାହିଁ ରହିଲେ । ଏତେ ବର୍ଷ ପରେ ମଧ ଏ ଗ୍ରୀସୀୟ ପୁଷ୍ପ ତିଳେ ମାତ୍ର ମ୍ଳାନ ହୋଇ ନାହିଁ, ଉପରନ୍ତୁ ଭାରତୀୟ ପରିବେଷ୍ଟନୀରେ ତାହା ଅଧିକତର ମନୋଜ୍ଞ ହୋଇଛି ।

ସମ୍ରାଟ ଅଳ୍ପ ହସି ପଚାରିଲେ, - ଦେବୀ, ଯୁବରାଜ ବିନ୍ଦୁସାର ବର୍ତ୍ତମାନ କେଉଁଠି ?

- ବିନ୍ଦୁସାର ବର୍ତ୍ତମାନ ଅସ୍ତ୍ରାଗାରରେ ଶିକ୍ଷାରତ । ସେ ସବୁ ବିଷୟରେ ମହାରାଜଙ୍କ ପଦାଙ୍କ ଅନୁସରଣ କରିବ ଏଥିରେ ସନ୍ଦେହ ନାହିଁ । ଏ ବିଶାଳ ସାମ୍ରାଜ୍ୟ ରକ୍ଷା ଓ ଶାସନ ନିମିତ୍ତ ସେ ଯୋଗ୍ୟ ଅଧିକାରୀ । କିନ୍ତୁ...କିନ୍ତୁ... ।

ହେଲେନା ହଠାତ୍ ବିମର୍ଷ ଭାବରେ ଅଧୋବଦନରେ ଛିଡ଼ା ହୋଇ ରହିଲେ । ସମ୍ରାଟ ଉତ୍କଣ୍ଠିତ ଭାବରେ ପଚାରିଲେ ଦେବୀ, ହଠାତ୍ ତୂଷ୍ଣୀ ହେଲ କାହିଁକି ? ଯୁବରାଜ ତୁମ୍ଭଙ୍କୁ କଅଣ ମାତାର ଉପଯୁକ୍ତ ସମ୍ମାନ ଦେଇ ନାହିଁ ? ମୁଁ ଜାଣେ ବିଦେଶିନୀ ବୋଲି ଏ ଦେଶରେ ଅନେକେ ମୋର ଏ ବିବାହକୁ ଅନୁମୋଦନ କରିନାହାନ୍ତି । ସେମାନେ ବୁଝନ୍ତି ନାହିଁ ଯେ ଭାରତ ସହିତ ଗ୍ରୀସର ଯେଉଁ ସମ୍ବନ୍ଧ ସ୍ଥାପିତ ହୋଇଛି ତାହା ଦ୍ୱାରା ଚିନ୍ତାର ପରିସର କେତେ ବଢ଼ି ଯାଇଛି । ଦେଶପ୍ରେମ ମାନେ ନିଜକୁ କ୍ଷୁଦ୍ର ଗଣ୍ଡି ଭିତରେ ଆବଦ୍ଧ କରିବା ନୁହେଁ । କିନ୍ତୁ ସେ କଥା ଥାଉ । ଯୁବରାଜ କ'ଣ ବାକ୍ୟ ବା କାର୍ଯ୍ୟରେ ତୁମ ପ୍ରତି ସେଥିପାଇଁ କୌଣସି ଅସମ୍ମାନ ଦେଖାଇଛି ? କୁହ ଦେବୀ, ନିରୁତ୍ତର କାହିଁକି ?

ହେଲେନା କହିଲେ, ନା ମହାରାଜ, ସେ କଥା ମୁଁ କହୁ ନଥିଲି । ଯୁବରାଜ ବିନ୍ଦୁସାର ଆପଣଙ୍କର ଯୋଗ୍ୟ ପୁତ୍ର । ମୁଁ ବିନ୍ଦୁସାରର ପୁତ୍ର ଅଶୋକଙ୍କ କଥା କହୁଥିଲି । ବର୍ତ୍ତମାନ ସେ ବାଳକ, ଏକଥା ସତ । କିନ୍ତୁ ତଥାପି ତା'ର କ୍ରୂର କର୍ମ ଓ ଚଣ୍ଡ ପ୍ରକୃତି ଦେଖି ମୁଁ ଭାବୁଛି ବିନ୍ଦୁସାର ପରେ ହୁଏତ ଏ ସାମ୍ରାଜ୍ୟ ଖଣ୍ଡ ଖଣ୍ଡ ହୋଇଯିବ । ମୌର୍ଯ୍ୟ ସୂର୍ଯ୍ୟ ଚିରଦିନ ପାଇଁ ଅସ୍ତଗାମୀ ହେବେ । ହୋମର୍‌ଙ୍କ ଇଲିୟଡ୍ ପଢ଼ି ଯେଉଁ ଆଖ୍ୟାୟିକା ମୁଁ ଆପଣଙ୍କୁ ଶୁଣାଉଥିଲି ଭାରତରେ ମଧ୍ୟ ତାହା ଘଟିବ, ବିନ୍ଦୁସାର ପରେ । ମାତ୍ର କିଛିଦିନ ପୂର୍ବେ ଅଶୋକ ତା'ର ଜ୍ୟେଷ୍ଠ ଭ୍ରାତାକୁ ଯେପରି ନିର୍ଦ୍ଦୟ ପ୍ରହାର କରିଛି ତାହା ଦେଖିଥିଲେ ଆପଣ ମଧ୍ୟ ଚିନ୍ତିତ ହୁଅନ୍ତେ । ମୋର ଧାରଣା...

ଚନ୍ଦ୍ରଗୁପ୍ତ କହିଲେ ଦେବୀ, ତୁମର ଧାରଣା ଭ୍ରମପୂର୍ଣ୍ଣ । ତୁମେ ଅଶୋକର ବାହାରଟା ଦେଖିଛ, ବୋଧହୁଏ ତାହାର ଭିତରର ସନ୍ଧାନ ପାଇନ । ରୁକ୍ଷ ପ୍ରସ୍ତର ତଳେ ଯେଉଁ ଅନ୍ତଃସଳିଳା ଫଲ୍‌ଗୁ ପ୍ରବାହିତ ହେଉଛି ତା'ର ସନ୍ଧାନ ପାଇ ନାହ । ଯେଉଁ ଦୁର୍ଦ୍ଦମନୀୟ ଆବେଗରେ ଅଶୋକ କ୍ରୂର, ସେଇ ଦୁର୍ଦ୍ଦମନୀୟ ଆବେଗ ହିଁ ଅଶୋକକୁ ମହାଶିକ୍ଷା ଦେବ । ମୁଁ ଭବିଷ୍ୟଦ୍ ବାଣୀ କରୁଛି ଦେବୀ, ଅଶୋକ ପାଇଁ ମୌର୍ଯ୍ୟ ବଂଶ ଚିରସ୍ମରଣୀୟ ହୋଇ ରହିବ, କେବଳ ଭାରତରେ ନୁହେଁ, ପୃଥିବୀରେ ।

କହୁ କହୁ ଚନ୍ଦ୍ରଗୁପ୍ତ ହଠାତ୍ ନୀରବ ହୋଇଗଲେ । ଆଖି ତାଙ୍କର ଅଶ୍ରୁସଜଳ ହୋଇ ଉଠିଲା । ଦୃଷ୍ଟି ତାଙ୍କର ପୁନରାୟ ଅସୀମରେ ଆବଦ୍ଧ ହେଲା । ହୃଦୟର ଆବେଗ

ସମ୍ଭାଳି ନ ପାରି ସେ ହେଲେନାଙ୍କ ହାତ ଧରି ପକାଇ ଆବେଗଭରା କଣ୍ଠରେ କହିଲେ, ଦେବୀ...ଦେବୀ...ବୃଥା ମୋର ସାମ୍ରାଜ୍ୟ, ବୃଥା ମୋର ଶକ୍ତି, ବୃଥା ମୋର ଆଡ଼ମ୍ବର, ଯଦି ଚିରସତ୍ୟ ମୁଁ ଜାଣି ନପାରଲି । ଗୁରୁଦେବ ହଠାତ୍ ବାନପ୍ରସ୍ଥ ଅବଲମ୍ବନ କଲେ... ।

ଏହି ସମୟରେ ଜଣେ ଦୌବାରିକ ପ୍ରବେଶ କରି ପ୍ରଣିପାତାନ୍ତେ ସମ୍ବାଦ ଦେଲା, ଅର୍ହଦ୍ ଭଦ୍ରବାହୁ ମହାରାଜଙ୍କ ଦର୍ଶନାଭିଳାଷୀ ହୋଇ ମନ୍ତ୍ରଣା ମନ୍ଦିରରେ ଅପେକ୍ଷା କରୁଅଛନ୍ତି ।

ଚନ୍ଦ୍ରଗୁପ୍ତଙ୍କ ବିଷଣ୍ଣ ବଦନ ହଠାତ୍ ଉଜ୍ଜ୍ୱଳ ହୋଇ ଉଠିଲା । ସେ ଆନନ୍ଦରେ ଅଧୀର ହୋଇ କହିଲେ, ଦେବୀ, ଦେବୀ, ସ୍ୱର୍ଗଦୂତ ସମାଗତ । ମୁଁ ଏହାଙ୍କୁ ହିଁ ମନେ ମନେ ସ୍ମରଣ କରୁଥିଲି । ବିଦାୟ ଦିଅ ଦେବୀ, ମୁଁ ଯାଏଁ...

ହେଲେନା ବିଷଣ୍ଣ ଭାବରେ ସମ୍ମତି ଦେଲେ । ଚନ୍ଦ୍ରଗୁପ୍ତ କ୍ଷିପ୍ର ଗତିରେ ପ୍ରସ୍ଥାନ କଲେ ।

ଚନ୍ଦ୍ରଗୁପ୍ତ ମନ୍ତ୍ରଣା ମନ୍ଦିରରେ ପ୍ରବେଶ କରି ଭଦ୍ରବାହୁଙ୍କୁ ପ୍ରଣାମ କଲେ । ଭଦ୍ରବାହୁ 'ଆୟୁଷ୍ମାନ୍ ଭବ' କହି ଚନ୍ଦ୍ରଗୁପ୍ତଙ୍କୁ ଆଶୀର୍ବାଦ କଲେ । ଚନ୍ଦ୍ରଗୁପ୍ତ ବ୍ୟଥିତ ଭାବରେ କହିଲେ, ଆପଣଙ୍କର ଏ ଆଶୀର୍ବାଦ ଫେରାଇ ନିଅନ୍ତୁ । ଆୟୁରେ ମୋର ପ୍ରୟୋଜନ ନାହିଁ ।

ଭଦ୍ରବାହୁ ସ୍ମିତ ହାସ୍ୟ କରି କହିଲେ, ବତ୍ସ, ଆୟୁ ଏ ନଶ୍ୱର ଶରୀରରେ ନଥାଏ, ଥାଏ କର୍ମରେ । ରାଜ୍ୟର ଚତୁର୍ଦ୍ଦିଗରେ ଦୁର୍ଭିକ୍ଷ, ମହାମାରୀ ବ୍ୟାପିଛି । ମୁଁ ସେଥିପାଇଁ ଭିକ୍ଷା ପାଇଁ ଆସିଛି । ମୋର ସମୟ ନାହିଁ । ଶୀଘ୍ର ଭିକ୍ଷା ଦେଇ ମୋତେ ବିଦାୟ ଦିଅ ।

ଚନ୍ଦ୍ରଗୁପ୍ତ ଅତୀବ ଆଶ୍ଚର୍ଯ୍ୟାନ୍ୱିତ ହୋଇ କହିଲେ, ଏ କ'ଣ କହୁଛନ୍ତି, ମହାଭାଗ ! ମୋର ରହସ୍ୟାଧିକୃତ ଗୁପ୍ତଚରମାନେ ଯେଉଁ ସାପ୍ତାହିକ ସମ୍ବାଦ ଦିଅନ୍ତି ସେ ସବୁରୁ ତ ମୁଁ ଜାଣେ ରାଜ୍ୟର ସର୍ବତ୍ର ସୁଖ ଶାନ୍ତି ବିରାଜୁଛି !

ଭଦ୍ରବାହୁ ହସ୍ତୋତ୍ତୋଳନ କରି ଚନ୍ଦ୍ରଗୁପ୍ତଙ୍କୁ ନୀରବ ରହିବାକୁ ସଙ୍କେତ କରି ମ୍ଳାନ ହସି କହିଲେ, -ବତ୍ସ, ପ୍ରଜାମଙ୍ଗଳ ରାଷ୍ଟ୍ର ଯଦି ଗଢ଼ିବାକୁ ଚାହ ତେବେ କେବଳ କର୍ମଚାରୀମାନଙ୍କ ସମ୍ବାଦ ଉପରେ ନିର୍ଭର କଲେ ମହା ଭ୍ରମରେ ପଡ଼ିବ ଏଥିରେ ସନ୍ଦେହ ନାହିଁ । କର୍ମଚାରୀମାନେ ସର୍ବଦା ସ୍ୱାର୍ଥାନ୍ୱେଷୀ, ନିଜର ସ୍ୱାର୍ଥସାଧନ ପାଇଁ ସେମାନେ କଦବା ମିଥ୍ୟା ସମ୍ବାଦ ମଧ ଦେଇଥାଆନ୍ତି । ଯେଉଁ ରାଜା ସେମାନଙ୍କ ସମ୍ବାଦ ଉପରେ ସମ୍ପୂର୍ଣ୍ଣ ନିର୍ଭର କରେ ସେ ହଠାତ୍ ଦିନେ ପ୍ରଜାବିଦ୍ରୋହ ଦେଖି ବିଚଳିତ ହୋଇ ନିର୍ମମ ଦମନଲୀଳା ଆରମ୍ଭ କରେ । କେବେହେଁ ପ୍ରଜାମାନଙ୍କ ଦୁଃଖ ବିଷୟରେ ଜ୍ଞାତ ନଥିବାରୁ ଏ ବିଦ୍ରୋହକୁ ଚକ୍ରାନ୍ତ ବୋଲି ଭାବିବା ହିଁ ସ୍ୱାଭାବିକ । ଦୁଃଖର ବିଷୟ, ମୁଁ ଲକ୍ଷ୍ୟ କରୁଛି, ଏ ବିଷୟରେ କୌଟିଲ୍ୟଙ୍କ ଉପଦେଶ ଆଉ ପାଳିତ ହେଉ ନାହିଁ । ସେ ଯାହା ହେଉ,

ସମ୍ରାଟଙ୍କ କର୍ତ୍ତବ୍ୟ ସମ୍ରାଟ ବୁଝିବେ । ମୁଁ ଚନ୍ଦ୍ରଗୁପ୍ତଙ୍କୁ ଭିକ୍ଷା ମାଗୁଛି ।

ଚନ୍ଦ୍ରଗୁପ୍ତ ବିମର୍ଷ ଭାବରେ କହିଲେ,- ଦେବ, ତୁଚ୍ଛ ସମ୍ରାଟତ୍ୱ ବ୍ୟତୀତ ଚନ୍ଦ୍ରଗୁପ୍ତର ଆଉ ନିଜସ୍ୱ କିଛି ନାହିଁ । ତଥାପି ମୁଁ ପ୍ରତିଜ୍ଞା କରୁଛି ଚନ୍ଦ୍ରଗୁପ୍ତ ଆପଣଙ୍କୁ ନିରାଶ କରିବ ନାହିଁ । ମହାଭାଗ, ଆପଣଙ୍କ ଆଦେଶ ଅପେକ୍ଷାରେ ରହିଲି ।

ଭଦ୍ରବାହୁ ଦଣ୍ଡାୟମାନ ହୋଇ କହିଲେ, - ବତ୍ସ, ମୋର ଭିକ୍ଷା ଚନ୍ଦ୍ରଗୁପ୍ତ । ସମ୍ରାଟ ଚନ୍ଦ୍ରଗୁପ୍ତ ନୁହେଁ, ମନୁଷ୍ୟ ଚନ୍ଦ୍ରଗୁପ୍ତ । ଦେଇ ପାରିବ ଏ ଭିକ୍ଷା, ବତ୍ସ ?

ଚନ୍ଦ୍ରଗୁପ୍ତ ଆନନ୍ଦିତ ହୋଇ କହିଲେ, - ଦେବ, ଆପଣ ଦେବଦୂତ ! ମୁଁ ଏହି ମୁହୂର୍ତ୍ତରେ ଯୁବରାଜ ବିନ୍ଦୁସାରଙ୍କୁ ରାଜ୍ୟ ଅର୍ପଣ କରି ଭିକ୍ଷାପାତ୍ର ହସ୍ତରେ ଆପଣଙ୍କର ଅନୁଗମନ କରିବି । ଏଇ ମୁହୂର୍ତ୍ତ ପାଇଁ ମୁଁ ସମସ୍ତ ଜୀବନ ଅପେକ୍ଷା କରି ରହିଥିଲି । ଏହାଠାରୁ ବଳି ଜୀବନରେ ଆଉ କି ଆନନ୍ଦ ଥାଇପାରେ !

ଏହା ପରେ ସମ୍ରାଟ ଚନ୍ଦ୍ରଗୁପ୍ତ ଅଳ୍ପ ସମୟ ମଧ୍ୟରେ ସମସ୍ତ କାର୍ଯ୍ୟ ସମାପନ କରି, ବିନ୍ଦୁସାରଙ୍କୁ ରାଜ୍ୟ ଅର୍ପଣ କରି ଶ୍ୱେତାମ୍ବର ପରିଧାନ କରି ଭିକ୍ଷାପାତ୍ର ହସ୍ତରେ ଭଦ୍ରବାହୁଙ୍କ ଅନୁଗମନ କଲେ ଏବଂ ସହସ୍ରାଧିକ ଜୈନ ଭିକ୍ଷୁଙ୍କ ସହ ଦକ୍ଷିଣଆଡ଼କୁ ଯାତ୍ରା କଲେ । ମଗଧ, ବିଦର୍ଭ ଓ ମହାକୋଶଳରେ ସେତେବେଳେ ଦୁର୍ଭିକ୍ଷର କରାଳ ମୂର୍ତ୍ତି ତାଣ୍ଡବ ଲୀଳା କରୁଥାଏ । ଚନ୍ଦ୍ରଗୁପ୍ତ ଏ ଦୁର୍ଭିକ୍ଷ ପ୍ରତିରୋଧ କରିବାକୁ ଅକ୍ଷମ ହେଲେ । ସେ ସେହିଦିନୁ ଦକ୍ଷିଣାପଥରେ ଶ୍ରବଣ-ବେଲଗାଲାଠାରେ ରହି ଉପବାସ କରିବାକୁ ଲାଗିଲେ ଏବଂ ଉପବାସ ଅବସ୍ଥାରେ ପ୍ରାଣତ୍ୟାଗ କଲେ ।...

X X X

ଦିନେ ଦ୍ୱିପ୍ରହର ସମୟରେ କଳିଙ୍ଗ ଦେଶର ପଶ୍ଚିମ ପ୍ରାନ୍ତବର୍ତ୍ତୀ ସୁଖିପଲ୍ଲୀ ନାମକ ଏକ ଅଖ୍ୟାତ ଜନପଦର ଅଧିବାସୀମାନେ ଦେଖିଲେ, ଜଣେ ଅଶ୍ୱାରୋହୀ ଯୁବକ ପ୍ରାୟ ଶତାଧିକ ଅଶ୍ୱରୋହୀଙ୍କ ସହ ନିକଟସ୍ଥ ଅରଣ୍ୟର ନିବିଡ଼ ଛାୟାତଳେ ବିଶ୍ରାମ ଗ୍ରହଣ କଲେ । ଯୁବକଟିର ଦୃପ୍ତ ଭଙ୍ଗି, ଗାମ୍ଭୀର୍ଯ୍ୟ ଓ ତତ୍‌ସହ ତୀକ୍ଷ୍ଣ ଦୃଷ୍ଟିରୁ ସହଜେ ଅନୁମିତ ହୁଏ ସେ ହିଁ ଦଳର ପଥପ୍ରଦର୍ଶକ ଓ ନେତା । ନିକଷକୃଷ୍ଣ କିନ୍ତୁ ଉଜ୍ଜ୍ୱଳ ଦେହବର୍ଣ୍ଣ, ମୁଖ ଓ ଅବୟବର ଅପୂର୍ବ ଗଠନ, ଲୌହମୂର୍ତ୍ତିବତ୍ ଦେହ ଏବଂ ଘନ ଭ୍ରୂଯୁଗଳ ତଳେ ଶାଣିତ ଛୁରିକା ଭଳି ନିଷ୍ଚଳ ତୀକ୍ଷ୍ଣ ନୟନ ଯୁଗଳ ସ୍ୱତଃ ହିଁ ଜନପଦବାସୀ ମାନଙ୍କର ଚିତ୍ତ ଆକର୍ଷଣ କଲା । ଯୁବକଟିର କ୍ରୋଡ଼ରେ ଗୋଟିଏ ଅପୂର୍ବ କମନୀୟ ଶିଶୁ ।

କ୍ରମେ କ୍ରମେ ବିଶ୍ରାମକାରୀମାନଙ୍କ ଚତୁର୍ଦ୍ଦିଗରେ କୁତୂହଳୀ ଜନପଦବାସୀମାନେ ରୁଣ୍ଡହୋଇ ଛିଡ଼ାହୋଇ ରହିଲେ । କୁତୂହଳୀ ଜନତାକୁ ଦେଖି ଯୁବକଟି ଗାତ୍ରୋତ୍‌ଥାନ

କରି ଅଗ୍ରସର ହୋଇ କହିଲେ, - ବନ୍ଧୁଗଣ, ମୋର ନାମ କ୍ଷେମରାଜ ସିଂହ। ଚେଡି ବଂଶରେ ମୋର ଜନ୍ମ। ମୁଁ ଓ ମୋର ସାଥୀମାନେ ମହାକୋଶଳବାସୀ। ଆପଣମାନେ ବୋଧହୁଏ ଅବଗତ ନୁହଁନ୍ତି ଯେ ବିଦର୍ଭ, ମଗଧ, ବିଦିଶା ଓ ମହାକୋଶଳ ଦୁର୍ଭିକ୍ଷର କରାଳ ଗ୍ରାସରେ ପତିତ। ବହୁଲୋକ ଏ ଦୁର୍ଭିକ୍ଷରେ ମୃତ। ମୋ ସ୍ତ୍ରୀ ମଧ୍ୟ ମୃତା। କେବଳ ମୋର ଏଇ ଶିଶୁ ପୁତ୍ର ବର୍ଦ୍ଧରାଜ ଓ ମୁଁ ଜୀବିତ। ଆମ୍ଭେମାନେ ସ୍ୱଦେଶ ତ୍ୟାଗ କରି ଦକ୍ଷିଣକୁ ଯାଉଅଛୁ। କିନ୍ତୁ ସ୍ୱଦେଶ ତ୍ୟାଗ କଲେହେଁ ଏ ଦେଶ ମୋର ମନେ ହେଉଚି ଯେପରି ମୋ ଦେଶ। ଏହାର ଉର୍ବର ସୁଶ୍ୟାମଳ ଭୂମି, ପୟସ୍ୱିନୀ ନଦୀ, ଘନନିବିଡ଼ ଅରଣ୍ୟ, ନିରଭିମାନୀ ଅଧିବାସୀ ସବୁ ମୋର ପ୍ରାଣକୁ ଆକୃଷ୍ଟ କରିଛନ୍ତି।

ଜନପଦବାସୀମାନଙ୍କ ମଧ୍ୟରୁ ମଣିଭଦ୍ର ନାମକ ଜଣେ ଯୁବକ ଆଗେଇ ଆସି କ୍ଷେମରାଜଙ୍କ ହସ୍ତ ଧାରଣ କରି କହିଲେ, - ବନ୍ଧୁ, ତୁମେ ତୁମର ସାଥୀମାନେ ନିର୍ବିଘ୍ନରେ ଏଠାରେ ବିଶ୍ରାମ କର। ମୁଁ ଅଳ୍ପକାଳ ମଧ୍ୟରେ ସମସ୍ତଙ୍କ ପାଇଁ ଖାଦ୍ୟ ଓ ପାନୀୟର ଆୟୋଜନ କରି ଦେଉଛି।

କହିବା ମାତ୍ରକେ ମଣିଭଦ୍ର କ୍ଷିପ୍ରବେଗରେ ଘନ ଅରଣ୍ୟ ମଧ୍ୟରେ ଅନ୍ତର୍ହିତ ହେଲେ ଏବଂ ଅଳ୍ପକାଳ ମଧ୍ୟରେ ମହିଷବାହିତ ଗୋଟିଏ ଶକଟରେ ଚାରିଗୋଟି ମୃତ ମୃଗ, ପ୍ରଚୁର ତଣ୍ଡୁଳ, କାଷ୍ଠ, କଳସ ଓ ମୃଣ୍ମୟ ପାତ୍ର ସହ ପ୍ରତ୍ୟାବର୍ତ୍ତନ କଲେ ଏବଂ ତତ୍‌କ୍ଷଣାତ୍ ରନ୍ଧନର ଆୟୋଜନ କରିବାକୁ ଲାଗିଲେ। କ୍ଷେମରାଜ ଓ ତାଙ୍କର ସାଥୀମାନେ ଅଶ୍ୱଗୁଡ଼ିକୁ ପ୍ରଥମେ ଆହାର ଖୁଆଇ ବୃକ୍ଷମାନଙ୍କରେ ବାନ୍ଧିଦେଇ ସ୍ନାନ କରିବାକୁ ଗଲେ ଏବଂ ସ୍ନାନାନ୍ତେ ଆନନ୍ଦରେ ଭୋଜନ କରି ଯାତ୍ରା ଆରମ୍ଭ କଲେ। ଯାତ୍ରା କରିବା ସମୟରେ କ୍ଷେମରାଜ ମଣିଭଦ୍ରଙ୍କ ହସ୍ତ ଧାରଣ କରି କହିଲେ, ବନ୍ଧୁ, ଏ ଉପକାର ମୁଁ ଭୁଲିବି ନାହିଁ। ଯଦି ସୁଦିନ ଆସେ...

କ୍ଷେମରାଜ ଆଉ କିଛି ନ କହି ପାରି ନୀରବ ରହିଲେ। ମୁହୂର୍ତ୍ତକ ପାଇଁ ତାଙ୍କର ତୀକ୍ଷ୍ଣ ଆଖି ଦିଓଟି ଅତି ଉଜ୍ଜ୍ୱଳ ହୋଇ ଉଠିଲା। ବନ୍ଧୁ ମଣିଭଦ୍ରକୁ ଆଲିଙ୍ଗନ କରି କ୍ଷେମରାଜ ସିଂହ ଅଶ୍ୱାରୋହଣ କଲେ ଏବଂ ଶିଶୁ ପୁତ୍ର ବର୍ଦ୍ଧରାଜଙ୍କୁ କ୍ରୋଡ଼ରେ ବସାଇ ଅଶ୍ୱଚାଳନ କଲେ।

X X X

କ୍ଷେମରାଜ ଓ ତାଙ୍କର ସାଥୀମାନେ ଏହାର ଏକମାସ ପରେ ଖଣ୍ଡଗିରି ନିକଟସ୍ଥ -'ଏକ ପ୍ରସ୍ତର' ନାମକ ସ୍ଥାନରେ ଉପସ୍ଥିତ ହୋଇ ସେହି ସ୍ଥାନ ବସବାସର ଉପଯୁକ୍ତ ବୋଲି ନିର୍ବାଚନ କରି ବସବାସ କରିବାକୁ ଲାଗିଲେ।

ଏହା ପରେ ନିଜ ବାହୁ ବୁଦ୍ଧି ଓ ବଳରେ କ୍ଷେମରାଜ ଓ ବର୍ଦ୍ଧରାଜ କିପରି କ୍ରମେ

ସେ ସ୍ଥାନର ରାଜା ହେଲେ ସେ ଇତିହାସ ରୋମାଞ୍ଚକର ହେଲେହେଁ ଏଠାରେ ଅପ୍ରାସଙ୍ଗିକ । ଏମାନଙ୍କର ରାଜତ୍ୱ ଐରବଂଶର ପ୍ରଥମ ପୁରୁଷ ଯୁଗ । କ୍ରମେ କ୍ରମେ ଐର ରାଜ୍ୟ ବିସ୍ତାର ଲାଭ କରିବାକୁ ଲାଗିଲା । ଅଳ୍ପକାଳ ମଧ୍ୟରେ ଉତ୍ତରରେ ମହାନଦୀ ପର୍ଯ୍ୟନ୍ତ ସମଗ୍ର ରାଜ୍ୟ ଐରମାନଙ୍କର ବଶ୍ୟତା ସ୍ୱୀକାର କଲେ ।

କ୍ଷେମରାଜ ରାଜା ହେଲେହେଁ ମଣିଭଦ୍ରଙ୍କୁ ଭୁଲି ନାହାନ୍ତି । ସୁଖିପଲ୍ଲୀ ଓ ଅନ୍ୟାନ୍ୟ ସମସ୍ତ ଜନପଦବାସୀମାନେ କ୍ଷେମରାଜଙ୍କ ବଶ୍ୟତା ସ୍ୱୀକାର କରିବା ପରେ କ୍ଷେମରାଜ ମଣିଭଦ୍ରଙ୍କୁ ସେ ସ୍ଥାନର ଗ୍ରାମଣୀ ନିଯୁକ୍ତ କଲେ ।

ଏଥି ମଧ୍ୟରେ ମଗଧ ସମ୍ରାଟ ବିନ୍ଦୁସାରଙ୍କର ମୃତ୍ୟୁ ହୋଇ ଯାଇଛି । ମୌର୍ଯ୍ୟାଧିପତି ଚନ୍ଦ୍ରଗୁପ୍ତ ସମଗ୍ର ଭାରତ ଜୟ କରିଥିଲେ ହେଁ କଳିଙ୍ଗ ଜୟ କରି ପାରିନଥିଲେ । ମହାରାଜା ବିନ୍ଦୁସାର ମଧ୍ୟ କଳିଙ୍ଗକୁ ନିଜ ସାମ୍ରାଜ୍ୟ ଅନ୍ତର୍ଭୁକ୍ତ କରିବାକୁ ଅକ୍ଷମ ହୋଇଥିଲେ । ଏ ନିରଭିମାନ ଜାତି ଯେପରି କୃଷି ଓ କଳାନିପୁଣ ସେହିପରି ଯୁଦ୍ଧରେ ଦୁର୍ଦ୍ଧର୍ଷ ଥିଲେ । ବିନ୍ଦୁସାରଙ୍କ ପରେ ଚଣ୍ଡାଶୋକ ତାଙ୍କର ସମସ୍ତ ଭ୍ରାତାମାନଙ୍କୁ ହତ୍ୟାକରି ସମ୍ରାଟ ହେବା ପରେ ପ୍ରଥମ ଦୃଷ୍ଟି ଦେଲେ କଳିଙ୍ଗ ଉପରେ ।

ଦିନେ ବୃଦ୍ଧ କଳିଙ୍ଗରାଜ କ୍ଷେମରାଜ ଐର ଆଚମ୍ବିତ ହୋଇ ଦେଖିଲେ ଚଳନ୍ତ ପର୍ବତଶ୍ରେଣୀ ପରି ଅଶୋକଙ୍କ ବିପୁଳ ସେନା କଳିଙ୍ଗ ଦ୍ୱାରଦେଶରେ ଉପସ୍ଥିତ । କ୍ଷେମରାଜଙ୍କ ଆଦେଶରେ ଅବିଳମ୍ବେ କଳିଙ୍ଗ ସେନା ପ୍ରତିରୋଧ ପାଇଁ ସଜ୍ଜିତ ହେଲେ । ମଣିଭଦ୍ର ମଧ୍ୟ ଅଚିରେ ତାଙ୍କର ସେନାସହ କ୍ଷେମରାଜଙ୍କ ସହ ଯୋଗଦେଲେ । ମଗଧ ଓ କଳିଙ୍ଗ ମଧ୍ୟରେ ଯୁଦ୍ଧର ନିଷ୍ଠୁରଣ ରକ୍ତକ୍ଷୟର ଲିପିବଦ୍ଧ କରିଛି ତାହା ସୁବିଦିତ କାହାଣୀ ଇତିହାସ । ତାହାର ଫଳ  କଳିଙ୍ଗର ଦାରୁଣ ପରାଭବ ସୂଚକ ମାତ୍ର  ଭାରତ ତଥା ପୃଥିବୀ ପକ୍ଷରେ ମହାକଲ୍ୟାଣକର ହେଲା ।

ଏହି ଯୁଦ୍ଧରେ କ୍ଷେମରାଜ ଓ ବର୍ଦ୍ଧରାଜ  ନିହତ ହେଲେ ଏବଂ ସେମାନଙ୍କର ମୃତ୍ୟୁ ସମ୍ବାଦ ପାଇ ବୃଦ୍ଧ ଗ୍ରାମଣୀ ମଣିଭଦ୍ର ଦୁଃଖରେ ପ୍ରାଣତ୍ୟାଗ କଲେ । ଏହାପରେ କଳିଙ୍ଗର ରାଜା ହେଲେ ଇନ୍ଦ୍ରରାଜ ଓ ତତ୍‌ପୁତ୍ର ଧର୍ମରାଜ । ଏହା ଐରବଂଶର ଦ୍ୱିତୀୟ ପୁରୁଷ ଯୁଗ । ମଣିଭଦ୍ରଙ୍କ ମୃତ୍ୟୁପରେ ତାଙ୍କର ପୁତ୍ର ଶ୍ରୀଭଦ୍ରଙ୍କୁ ଇନ୍ଦ୍ରରାଜ ପ୍ରାଦେଶିକ ଭାବରେ ନିଯୁକ୍ତ କଲେ । ଶ୍ରୀଭଦ୍ର ଅଶୋକଙ୍କ ବୌଦ୍ଧଧର୍ମ ପ୍ରତି ଆକୃଷ୍ଟ ହୋଇ ବୌଦ୍ଧଧର୍ମ ଗ୍ରହଣ କରି ତାଙ୍କର ରାଜ୍ୟର ନାମ ରଖିଲେ ବୌଦ୍ଧ ।

ଇନ୍ଦ୍ରରାଜ ଓ ଧର୍ମରାଜ ପ୍ରାଣତ୍ୟାଗ କରିବା ପରେ କଳିଙ୍ଗ ଅଧିପତି ହେଲେ ବୀର ମହାରାଜ ମହାମେଘବାହନ ଶ୍ରୀ ଖାରବେଳ ଐର ।

ବୌଦ୍ଧ ରାଜ୍ୟରେ ସେତେବେଳେ ଶ୍ରୀଭଦ୍ରଙ୍କ ମୃତ୍ୟୁ ପରେ ସୁଭଦ୍ର ପ୍ରାଦେଶିକ । ସୁଭଦ୍ରଙ୍କ ଅନ୍ତରର କାମନା ସେ ରାଜୁକ ହେବେ ଏବଂ ନିଜ ରାଜ୍ୟ ବିସ୍ତାର କରିବେ ।

# ୨

ବୌଦ୍ଧରାଜ୍ୟର ସୁଖପଲ୍ଲୀରେ ଆଜି ମହୋତ୍ସବ ।

ସକାଳ ନ ହେଉଣୁ ପଲ୍ଲୀବାସୀମାନେ ମନୋହର ବେଶରେ ସଜ୍ଜିତ ହୋଇ ଉତ୍ସବ ସ୍ଥାନକୁ ବାହାରି ପଡ଼ିଲେଣି । ରକ୍ତିମ ଅନ୍ତରବାସକ ଓ ପୀତ ଉତ୍ତରସଙ୍ଗ ପରିଧାନ ପୂର୍ବକ କେଶପାଶ କୁଞ୍ଚିତ ଓ ସୁଗନ୍ଧିତ କରି ଯୁବକମାନେ ହସି ହସି ଚାଲିଛନ୍ତି । ଯୁବତୀମାନେ ଦ୍ରାପି ଓ ତଦୁପରି ଝିନବାସ, ଅଙ୍ଗେ ମେଖଳା କେୟୂର କଙ୍କଣ ଆଦି ଅଳଙ୍କାର ପିନ୍ଧି ହାତରେ ଲୀଳା ପଦ୍ମ ଧରି ଯୁବକମାନଙ୍କ ଆଗରେ ମରାଳ ଗମନରେ ଚାଲିଛନ୍ତି । ସୂକ୍ଷ୍ମ ଝିନବାସ ତଳୁ ସେମାନଙ୍କର ତରଙ୍ଗିତ ଯୌବନ ଲାବଣ୍ୟ ପରିସ୍ଫୁଟ । ଆଗରେ ଯାଉଥିବା ସେଇ ଅଳସଗମନାମାନଙ୍କର ସୁବର୍ତ୍ତୁଳ ଅଙ୍ଗ ଚାଳନାରୁ ଯୁବକମାନେ ଆଖି ଫେରାଇ ପାରୁ ନାହାନ୍ତି । ଉତ୍ସବରେ ଯୋଗ ଦେବା ପାଇଁ ଯୁବକମାନେ ବ୍ୟଗ୍ର ଥିଲେହେଁ ଯୁବତୀମାନଙ୍କୁ ଅତିକ୍ରମ କରି ଯିବାକୁ ସେମାନଙ୍କ ମନ ବଳୁନାହିଁ । ମଝିରେ ମଝିରେ ମନ୍ଦବହ ଯୁବତୀମାନଙ୍କର ଅଙ୍ଗସୁବାସ ବହିଆଣି ଯୁବକମାନଙ୍କର ଦେହ ଓ ମନରେ ଏକ ଅପୂର୍ବ ଅତୃପ୍ତିର ପୁଲକ ଶିହରଣ ଖେଳାଇ ଦେଇଯାଉଛି । କେଉଁ ଅଧୀର ଯୁବକ କେତେବେଳେ ବା ତା'ର ହସ୍ତସ୍ଥିତପ୍ରିୟ ପାରାବତଟିକୁ ସ୍ନେହଚୁମ୍ବନ ଦେଇ ବ୍ୟତିବ୍ୟସ୍ତ କରି ପକାଉଛି । କେଉଁ ଯୁବତୀ ହୁଏତ ଅପାଙ୍ଗ ଦୃଷ୍ଟିରେ ପଛକୁ ଚାହିଁ ଯୁବକମାନଙ୍କର ଅବସ୍ଥା ଦେଖି ହସର ଢେଉ ଖେଳାଇ ଦେଉଛି ।

ସମସ୍ତ ସୁଖପଲ୍ଲୀ ଆଜି ଜନମାନବହୀନ, ଗୋଟିଏ କୁକୁର ସୁଦ୍ଧା ପଲ୍ଲୀପଥରେ ନାହିଁ, ସମସ୍ତେ ଉତ୍ସବସ୍ଥଳୀକୁ ଯାତ୍ରା କଲେଣି । ଏ ମହୋତ୍ସବ ଆଜି ଦୁଇଜଣ ମହାଯଶସ୍ୱୀ ପୁରୁଷଙ୍କ ଆଗମନକୁ କେନ୍ଦ୍ର କରି ପାଳିତ ହେଉଛି । ବହୁ ବର୍ଷ ପରେ ସେମାନେ ନିଜ ପଲ୍ଲୀକୁ ଫେରୁଛନ୍ତି । ପଲ୍ଲୀବାସୀମାନେ ତେଣୁ ପଲ୍ଲୀସୀମାନ୍ତ ପ୍ରାନ୍ତରକୁ ଯାଉଅଛନ୍ତି ସେମାନଙ୍କୁ ଅଭିନନ୍ଦନ ଜଣାଇବାକୁ । ସେ ଦୁଇ ଜଣଙ୍କ ମଧ୍ୟରୁ ଜଣେ ମହାକାଞ୍ଚନ, ମହାଯୋଗୀ ଓ ମଗଧାଧିପତି ପୁଷ୍ୟମିତ୍ରଙ୍କର ରାଜଗୁରୁ ଓ ଅନ୍ୟ ଜଣେ ହେଉଛନ୍ତି ମହାଶାଳ, ମହାରାଜ ଖାରବେଳଙ୍କ ମହାସୈନ୍ୟାଧ୍ୟକ୍ଷ । ସେମାନଙ୍କର ଅଭିନନ୍ଦନ ପାଇଁ ପଲ୍ଲୀପ୍ରାନ୍ତରରେ ନାନା କ୍ରୀଡ଼ା-କୌଶଳ ପ୍ରଦର୍ଶନ, ଯୁବତୀମାନଙ୍କ ଦ୍ୱାରା ନୃତ୍ୟଗୀତ ଓ ସନ୍ଧ୍ୟା ପରେ ପ୍ରୀତିଭୋଜନର ଆୟୋଜନ ହୋଇଛି ।

ପଲ୍ଲୀ ନିର୍ଜନ, କିନ୍ତୁ ବହୁକାଳପରିତ୍ୟକ୍ତ ମନ୍ଦିରରେ ଗୋଟିଏ ଯୁବତୀ ପ୍ରାର୍ଥନାରତା । ତାହାର ଗଣ୍ଡ ଦେଶ ଅଶ୍ରୁପ୍ଲାବିତ । ମନ୍ଦିରରେ କୌଣସି ଦେବତା ବା

ଦେବୀ ମୂର୍ତ୍ତି ନାହିଁ । କେହି କୁହନ୍ତି ଏଠାରେ କେଉଁ ବିସ୍ମୃତ ଯୁଗରେ ଜଣେ ବୋଧିସତ୍ତ୍ୱ ନିର୍ବାଣପ୍ରାପ୍ତ ହୋଇଥିଲେ । କେହିବା କୁହନ୍ତି ଏଠାରେ ବହୁକାଳ ପୂର୍ବେ ଭଗବାନ ରୁଦ୍ର ରୂପେ ପୂଜା ପାଉଥିଲେ । କିମ୍ବଦନ୍ତୀ ଯାହା ଥାଉ, ବର୍ତ୍ତମାନ ଏହା ପରିତ୍ୟକ୍ତ ଏବଂ ସର୍ପ ଶୃଗାଳମାନଙ୍କର ନିରାପଦ ନିବାସସ୍ଥଳୀରେ ପରିଣତ ହୋଇଛି । ମନ୍ଦିର ଭିତରକୁ ଯିବାକୁ ହେଲେ ଅନେକଗୁଡ଼ିଏ ପାବଚ୍ଛ ଅତିକ୍ରମ କରି ଯିବାକୁ ହୁଏ । ଯୁବତୀଟି ପ୍ରାର୍ଥନା ଶେଷ କରି ମନ୍ଦିର କାନ୍ଥକୁ ଧରି ଛିଡ଼ା ହେବାକୁ ଚେଷ୍ଟା କଲା, ଛିଡ଼ାହୋଇ ନ ପାରି ସେ ପୁଣି ବସିପଡ଼ି ଗୋଟିଏ ଦୀର୍ଘ ନିଃଶ୍ୱାସ ପକାଇ ବାହାରକୁ ଚାହିଁ ରହିଲା । ଦୂରରୁ ଭାସି ଆସୁଛି ଉତ୍ସବକୁ ଯାଉଥିବା ଯୁବକ ଯୁବତୀମାନଙ୍କର ଗୀତ ଓ ବଂଶୀବାଦନ । ସମସ୍ତେ ଆଜି ଉତ୍ସବକୁ ଯାଉଅଛନ୍ତି କିନ୍ତୁ ସେ ଅକ୍ଷମ, ତାହାର ଚାଲିବାର ଶକ୍ତି ନାହିଁ ।

କୋହର ଆତିଶଯ୍ୟରେ ତାହାର ବକ୍ଷ ସ୍ଫୀତ ହେଲା, ଅଧର ପ୍ରାନ୍ତ ଥରି ଉଠିଲା ଏବଂ ଦୁଇବିନ୍ଦୁ ଅଶ୍ରୁ ତାହାର ମସୃଣ ଗଣ୍ଡଦେଶ ଦେଇ ବହିଆସି ଉନ୍ନତ ବକ୍ଷ ଉପରେ ପଡ଼ିଲା । ହଠାତ୍ ମନ୍ଦିର ମଧ୍ୟରୁ ଝଲକାଏ ଆଲୋକ ଦେଖି ସେ ଚମକି ପଡ଼ିଲା । ପ୍ରଥମେ ସେ ଭାବିଲା ବିଜୁଳି ପ୍ରଭା । କିନ୍ତୁ ଆକାଶ ନିର୍ମଳ । ସୂର୍ଯ୍ୟ ସେତେବେଳକୁ ତାଙ୍କର ସ୍ୱର୍ଣ୍ଣ କିରଣ ଜାଲ ବିସ୍ତାର କଲେଣି । ଚମକି ପଡ଼ିବାବେଳେ ଯୁବତୀର ଆସାବାଡ଼ି ଦୁଇଟି ହାତରୁ ଖସିଯାଇ ପାବଚ୍ଛରେ ଗଡ଼ି ଗଡ଼ି ଭୂମିରେ ପଡ଼ିଲା । ଆସାବାଡ଼ି ଆଣିବା ପାଇଁ ଗୁରୁଣ୍ଡି ଗୁରୁଣ୍ଡି ଗୋଟି ଗୋଟି କରି ପାବଚ୍ଛ ବାଟେ ଅବତରଣ କରିବାକୁ ପଡ଼ିବ । ତା'ର ଦୁର୍ଭାଗ୍ୟ ଆଜି ଯେପରି ଶତଗୁଣିତ । ସେ ଆଉ କୋହ ସମ୍ଭାଳି ପାରିଲା ନାହିଁ । ମନ୍ଦିର କାନ୍ଥରେ ମଥା ପିଟି ଅଶ୍ରୁ ମୋଚନ କରିବାକୁ ଲାଗିଲା ।

- ତୁମେ କାହିଁକି କାନ୍ଦୁଛ ?

ଚମକି ଚାହିଁ ଯୁବତୀଟି ଦେଖିଲା ଗୋଟିଏ କମନୀୟ ବାଳକ ତା ପଛରେ ଠିଆହୋଇଛି । ଘନ ଶ୍ୟାମ ବର୍ଣ୍ଣ, ବର୍ଷାର ନୂତନ ମେଘ ପରି । ପୀତ ବସନ ତ୍ରିକଚ୍ଛ କରି ପିନ୍ଧା ହୋଇଛି । ପଦ ଯୁଗଳ ଲାକ୍ଷାରସରେ ରଞ୍ଜିତ । ଗଳାରେ ବନମଲ୍ଲୀର ହାର । କୁଞ୍ଚିତ କେଶଦାମର ଚୂର୍ଣ୍ଣ କୁନ୍ତଳଗୁଡ଼ିକ ବାୟୁରେ ଆନ୍ଦୋଳିତ, ସେଥିରେ ଗୋଟିଏ ମୟୂର ପୁଚ୍ଛ । ମୁଖମଣ୍ଡଳରେ ଅପୂର୍ବ ଶୋଭା, ଅଧରରେ ବିମୋହନ ସ୍ମିତହାସ । ମନେହେଲା ବାଳକଟି ଯେପରି ଆଲୋକ ଝଲକରୁ ବାହାରି ଆସିଲା । ଅତି ସୁନ୍ଦର ସୁଠାମ କିଶୋର ବିଗ୍ରହ ।

- କାନ୍ଦନା, ତୁମର ନା' କ'ଣ ?

- ଚମ୍ପା ।

- ବାଃ ! ସୁନ୍ଦର ନା'ଟିଏ । ଗାଁର ସମସ୍ତେ ଉତ୍ସବକୁ ଯାଇଛନ୍ତି, ତୁମେ ଯାଇନାହଁ ଯେ ?

- ମୁଁ ଯେ ଛୋଟୀ । ମୋତେ ମା' ଓ ମଧୁକକା ସାଙ୍ଗରେ ନେଲେ ନାହିଁ । ମୁଁ ଏକା ଯାଉଥିଲି, ଆଉ ଯାଇ ନପାରି ଏଇଠି ବସି ପଡ଼ିଲି । କିନ୍ତୁ ତୁମେ କେଉଁଠୁ ଆସିଲ ?

ମନ୍ଦିରରେ ତ କେହି ନଥିଲେ...

ବାଳକଟି ଖିଲି ଖିଲି ହୋଇ ହସି ଉଠିଲା । ସେ ହସରେ ଚମ୍ପାର ସମସ୍ତ କ୍ଷୋଭ ଦୁଃଖ ଯେପରି ନିମିଷକେ ଭାସିଗଲା ।

- ବାଃ, ତୁମେ ପ୍ରାର୍ଥନା କରୁଥିଲ । ମୁଁ କ'ଣ ଦେଖି ନାହିଁ ?

- ଛୋଟୀ ହେବା ଦିନରୁ ମୁଁ ନିଇତି ଆସେ ଏଠାକୁ ପ୍ରାର୍ଥନା କରିବା ପାଇଁ । ନିଇତି କୁହେ, ହେ ଭଗବାନ, ମୋତେ ମୋ ଗୋଡ଼ ଫେରାଇ ଦିଅ ।

- ତୁମର ଭଗବାନ କିଏ ?

ଚମ୍ପା ଏଥର ଚିନ୍ତିତ ହେଲା । ଭଗବାନ ତ ଭଗବାନ, କିଏ କ'ଣ ? ଚମ୍ପାକୁ ଚିନ୍ତା କରିବାର ଦେଖି ବାଳକଟି ହସି କହିଲା, ଆଚ୍ଛା, ତୁମ ଭଗବାନ ଯିଏ ହୁଅନ୍ତୁ, ତୁମେ ଠିକ୍ ଜାଣ ଯେ ତାଙ୍କୁ ଡାକିଲେ ସେ ତୁମର ଗୋଡ଼ ଫେରାଇ ଦେବେ ?

- ସମସ୍ତେ ତ ତାହାହିଁ କୁହନ୍ତି । ମୋର ମଧ ତାହାହିଁ ବିଶ୍ୱାସ ।

ବାଳକଟି ଏଥର ହସି ହସି ଚମ୍ପାର କୋଳରେ ବସି ପଡ଼ିଲା ! ଚମ୍ପା ଆଦରରେ ତା'ର ମସ୍ତକ ଆଘ୍ରାଣ କରି ତା'ର ଚିବୁକ ଟେକି ଧରି ତା'ର ଅପୂର୍ବ କମନୀୟ ମୁଖମଣ୍ଡଳକୁ କିଛିକ୍ଷଣ ଚାହିଁ ରହିଲା ।

ଆଜି ପର୍ଯ୍ୟନ୍ତ ଚମ୍ପା କାହାରିକୁ ନିଜର କରୁଣ କାହାଣୀ କହିବାକୁ ମନ ବଳାଇ ନାହିଁ । କେହି ଦିନେ ତାହାକୁ 'ଆହା' ବୋଲି କହିନାହିଁ । ସେ ସମସ୍ତଙ୍କଠାରେ ଉପେକ୍ଷିତା । ବାଳକଟି ତା'ର କୋଳରେ ବସି ଯିବାରୁ ତାହାର ମନେ ହେଲା ବାଳକଟି ଯେପରି ତା'ର ମା' ପେଟର ଭାଇ । ହେଉ ନା ସେ ବାଳକ, ତାକୁହିଁ ଆଜି ସେ ହୃଦୟ ଖୋଲି ନିଜର କରୁଣ କାହାଣୀ କହିବାକୁ ବସିଲା । ମୁହୁର୍ମୁହୁଃ ଅଶ୍ରୁପାତ ମଧରେ ଚମ୍ପା ନିଜର ଯେଉଁ ପରିଚୟ ଦେଲା ତାହା ମର୍ମସ୍ପର୍ଶୀ ।

ଚମ୍ପା ସୁଖିପଲ୍ଲୀର ଲାଙ୍ଗଳୀଶ ନାମକ ଜଣେ କୃଷକର ଏକମାତ୍ର ସନ୍ତାନ । ତା'ର ଦୁଇ ବର୍ଷ ବେଳେ ସେ ତା'ର ପିତାଙ୍କୁ ହରାଇଛି । ସେ ଆଜିକୁ ଚଉଦ ବର୍ଷ ତଳର କଥା । ଆଜିକୁ ଦୁଇ ବର୍ଷ ତଳେ ଦିନେ ଗାଈକୁ ବାନ୍ଧିବା ସମୟରେ ଗାଈ ତାକୁ ଶିଙ୍ଗରେ ଟେକି ଫୋପାଡ଼ି ଦେବାରୁ ସେ ତଳେ ପଥର ଉପରେ ପଡ଼ିଗଲା । ପଡ଼ିଯାଇ ଗୋଡ଼ ଦୁଇଟିରୁ ତା'ର ସାମାନ୍ୟ ରକ୍ତପାତ ହୋଇଥିଲା । ସମସ୍ତେ କହିଲେ ସେ କିଛି ନୁହେଁ, ଅଳ୍ପଦିନ ମଧରେ ଭଲ ହୋଇଯିବ । ସେଇଦିନ ରାତିରେ ତାକୁ ଭାରି ଜ୍ୱର ହେଲା । ଜ୍ୱର ଉପଶମ ହେଲା ଦୁଇ ତିନି ଦିନ ପରେ । କିନ୍ତୁ ଚମ୍ପା ଆଉ ଉଠି ପାରିଲା ନାହିଁ, ଗୋଡ଼ ଦୁଇଟି ତା'ର ପ୍ରାଣହୀନ କାଷ୍ଠଖଣ୍ଡ ପରି ଶରୀରରେ ଲାଗିଥିଲା ପରି ବୋଧହେଲା । ପଲ୍ଲୀର ବୈଦ୍ୟ କହିଲେ, ପାଦଦ୍ୱୟରୁ ଚଳତ୍‌ଶକ୍ତି କୌଣସି ପୂର୍ବଜନ୍ମର ପାପରୁ ଅପହୃତ

ହୋଇଛି, ଏହା ଦୈବଦଣ୍ଡ; ସେ ଏହାର ପ୍ରତିକାର କରିବାକୁ ଅକ୍ଷମ । ସମସ୍ତେ ସେ ପାପ ଛାଣିଥିବା ଭଳି ମଥା ହଲାଇ ନାସିକା କୁଞ୍ଚନ କରି ଚାଲିଗଲେ ।

ବାଳକଟି ସବୁ ଶୁଣି ହସି କହିଲା, ଗୋଡ଼ ଗଲେ ଯାଉ, ହାତ ତ ଅଛି ।

ଚମ୍ପା ବିଷାଦମୟ ହସ ହସି କହିଲା, ହଁ, ସେ ଦୁଇଟି ଅଛି, ନ ଥିଲେ ତ ମୁଁ କେବେଠୁଁ ମରି ସାରନ୍ତିଣି । କିନ୍ତୁ ମୁଁ ଗୋଡ଼ ପାଇଁ କାନ୍ଦୁନାହିଁ । କାନ୍ଦୁଛି...

ଚମ୍ପା ଆଉ କହି ନପାରି ନୀରବରେ ଅଶ୍ରୁପାତ କରିବାକୁ ଲାଗିଲା । ବାଳକଟି କିଛିକ୍ଷଣ ନୀରବ ରହି ଚମ୍ପାର ଚିବୁକ ଧରି କାନ୍ଦ କାନ୍ଦ ହୋଇ ପଚାରିଲା, - କୁହନା, କାହିଁକି କାନ୍ଦୁଛ ?

ଚମ୍ପା ଅଶ୍ରୁପୋଛି କହିଲା, ତୁ କ'ଣ ବୁଝିବୁରେ, ପିଲା ତୁ । ମୁଁ ଛୋଟୀ ହେବା ଦିନରୁ, ଯାହାକୁ ଭଲ ପାଉଥିଲି ସେ ଆଉ ଆସୁନାହିଁ ।

- ବୁଝିଲି, ବୁଝିଲି, ବାଳକଟି ପୁଣି ସେହିପରି ଖିଲି ଖିଲି ହସି କହିଲା, କିନ୍ତୁ ଯିଏ ତୁମକୁ ଦୁଃଖରେ ଛାଡ଼ି ଚାଲିଯାଉଛି ସେ କଦାପି ତୁମକୁ ଭଲ ପାଉ ନଥିଲା ।

- ନାରେ ନା, ସେ ମୋତେ ନିଜ ପ୍ରାଣ ଭଳି ଭଲ ପାଏ । ସେ କିଏ ଜାଣୁ ? ସେ ଏହି ଗ୍ରାମର କୃଷକ ଶିବିର ପୁଅ ଚନ୍ଦ୍ର । ଶିବି ଭାରି କୃପଣ । ଚନ୍ଦ୍ର ସହିତ ମୋର ବିବାହରେ ତାହାର ଆଦୌ ମତ ନାହିଁ । କାରଣ କପର୍ଦ୍ଦକଟିଏ ସୁଦ୍ଧା ଦେବାକୁ ଅକ୍ଷମ ଆମେ । କିନ୍ତୁ ଚନ୍ଦ୍ର ମୋତେ ବିବାହ ନ କଲେ ବୌଦ୍ଧ ଭିକ୍ଷୁ ହୋଇ ଚାଲିଯିବ ବୋଲି ଭୟ ଦେଖାଇବାରୁ ଶିବି ବାଧ ହୋଇ ଏ ବିବାହରେ ସମ୍ମତି ଦେଇଥିଲେ । କିନ୍ତୁ ଠିକ୍ ଏହି ସମୟରେ ମୋର ଏ ଦୁର୍ଭାଗ୍ୟ । ପୁରୁଷ ସବୁଦିନ ପୁରୁଷ । କେଉଁ ପୁରୁଷ ଛୋଟୀ ସ୍ତ୍ରୀ ନେଇ ଚିରଦିନ ଘରେ ପୋଷିବାକୁ ଚାହେଁ, ପୁଣି ଏ ଦୁର୍ଦ୍ଦିନରେ ? ତା'ର ଦୋଷ କ'ଣ ? ସବୁ ମୋର ଭାଗ୍ୟର ଦୋଷ । ମୁଁ ତାଙ୍କ ଘରର କୌଣସି କାମକୁ ଅକ୍ଷମ ହେବି । ଶିବି ତେଣୁ ଚନ୍ଦ୍ରର ବିବାହ ଅନ୍ୟ ଗ୍ରାମରେ ଗୋଟିଏ ଧନୀ କନ୍ୟା ସହ ସ୍ଥିର କରିଛନ୍ତି । ତାକୁ ଦେଖିଛୁ ତୁ ? ମୁଁ ତାକୁ ଦେଖି ନାହିଁ ।

- ସେ କିଏ ମୁଁ କେମିତି ଜାଣିବି !

- ଧନୀ କନ୍ୟା ହେଲେ କ'ଣ ହେବ, ଭାରି କୁତ୍ସିତା ସେ ।

- ତୁମେ ପରା ତାକୁ ଦେଖିନା, କୁତ୍ସିତା ବୋଲି ଜାଣିଲ କେମିତି ?

- ନିଶ୍ଚୟ ହୋଇଥିବ ।

ଏହି ସମୟରେ ଦୂରରୁ ଭାସି ଆସିଲା ଉତ୍ସବର ଶଙ୍ଖ ଘଣ୍ଟା ଧ୍ୱନି । ଚମ୍ପା ଅଶ୍ରୁପ୍ଲୁତ ମୁହଁ ଟେକି କହିଲା, ତୁ ଯା ଭାଇ, ଉତ୍ସବକୁ ଯା' । ବାଳକଟି ମୁହଁ ମୋଡ଼ି କହିଲା, ଯିବି ନାହିଁ, ଯିବାକୁ ଭଲ ଲାଗୁନାହିଁ । ଚମ୍ପାକୁ ଏହା ବଡ଼ ଆଶ୍ଚର୍ଯ୍ୟ ଲାଗିଲା ।

ସେ ଏଥର ଭଲକରି ବାଳକଟି ଆଡ଼େ ଚାହିଁ ପଚାରିଲା, ତୋର ଘର କ'ଣ ଏଇ ଗାଁରେ ?

- ନା ।

- ମୁଁ ସେଇଆ ଭାବୁଥିଲି । ମୁଁ ତ ଏ ଗାଁର ସମସ୍ତଙ୍କୁ ଜାଣେ, ତୋତେ ତ କେବେହେଁ ଆଗରୁ ଦେଖି ନାହିଁ ।

ବାଳକଟି ଏହାର କୌଣସି ଉତ୍ତର ନ ଦେଇ ପଚାରିଲା, ଭଉଣୀ, ତୁମେ ତୁମର ଗୋଡ଼ ଫେରି ପାଇବାକୁ ଚାହଁ ?

ଚମ୍ପା ଦୀର୍ଘ ନିଃଶ୍ୱାସ ପକାଇ କହିଲା, ଗୋଡ଼ ଦୁଇଟି ଫେରି ପାଇଲେ ମୁଁ ମୋର ସର୍ବସ୍ୱ ଦେବି । ଗୋଡ଼ ଦୁଇଟି ପାଇଁ ନୁହେଁ, ଗୋଡ଼ ଦୁଇଟି ଫେରି ପାଇଲେ ମୁଁ ମୋର ଚନ୍ଦ୍ରକୁ ଫେରି ପାଇବି ବୋଲି ।

- ତାହାହେଲେ ତୁମର ଗୋଡ଼ କି ଉପାୟରେ ଫେରି ପାଇବ ମୁଁ କହୁଛି । ସୋମଦତ୍ତଙ୍କର ତିନି ପୁଅ ଭିତରୁ ଯେଉଁ ପୁଅ ସବୁଠୁଁ ଧାର୍ମିକ ସେ ଯଦି ତୁମକୁ ଆସାବାଡ଼ି ଫିଙ୍ଗି ଦେଇ ଚାଲିବାକୁ ଆଦେଶ ଦିଏ ତେବେ ତୁମର ଗୋଡ଼ ତୁମେ ଫେରି ପାଇବ ।

ବାଳକଟି ଅକସ୍ମାତ୍ ଆବିର୍ଭାବ, ତା'ର ଅପୂର୍ବ ମୋହନ ରୂପ ଓ କଥାର ଭଙ୍ଗିରେ ଚମ୍ପା ଏତେ ମୁଗ୍ଧ ହୋଇଥିଲା ଯେ ବାଳକର କଥାରେ ତା'ର ପୂର୍ଣ୍ଣ ବିଶ୍ୱାସ ଜନ୍ମିଲା ।

ସେ ଆଶ୍ଚର୍ଯ୍ୟ ଭାବରେ ବାଳକକୁ ଚାହିଁ ରହିଲା । ଏହି ସମୟରେ ମନ୍ଦିର ମଧ୍ୟରେ ପୁଣି ଥରେ ପୂର୍ବ ପରି ଆଲୋକ ଝଲସି ଉଠିଲା ଆଲୋକର ତୀବ୍ର ପ୍ରଭାରେ ଚମ୍ପା ଆଖି ବୁଜି ପକାଇଲା । ଆଖି ଖୋଲିଲା ପରେ ଦେଖିଲା ବାଳକଟି ନାହିଁ । ଆକାଶର ଆଲୋକ ସହିତ ବାଳକଟି ଯେପରି ମିଳାଇ ଯାଇଛି, କେବଳ ରହିଯାଇଛି ତା'ର କଣ୍ଠହାରର ବନମଲ୍ଲୀର ସୁବାସ ।

ଚମ୍ପା ଆନନ୍ଦରେ ଚିତ୍କାର କରି କହିଲା ସ୍ୱୟଂ ଭଗବାନ୍ ! ସେ ଯୁଗପତ୍ କାନ୍ଦିବାକୁ ଓ ହସିବାକୁ ଲାଗିଲା ।

ଶୀଘ୍ର ଏ ସମ୍ବାଦଟି ତା'ର ପ୍ରିୟ ମଧୁକକା ଓ ମା'କୁ ଦେବାପାଇଁ ଦୌଡ଼ିବାକୁ ଇଚ୍ଛା କରି ସେ ଭୁଲିଗଲା ଯେ ତାହାର ଚାଲିବାର ଶକ୍ତି ନାହିଁ । ପାବଚ୍ଛରେ ଗଡ଼ି ଗଡ଼ି ସେ ତଳେ ପଡ଼ି ଆସାବାଡ଼ି ଦୁଇଟି ଧରି ଅଣ୍ଟି ପୋଛୁ ପୋଛୁ ଯଥାସାଧ ଦ୍ରୁତ ଗତିରେ ଘରକୁ ଗଲା । ଘରକୁ ଫେରି ଆସି ତା'ର ମନେ ପଡ଼ିଲା ସମସ୍ତେ ଉତ୍ସବକୁ ଯାଇଛନ୍ତି । ଉତ୍ତେଜନାରେ ସେ ଖଣ୍ଡେ ପୁରୋଡାଶ ଖାଇ ପାଣି ପିଇ ସାରି ଗୃହ କୋଣରେ ଥିବା ମାଧ୍ୱୀ ପେଟେ ପିଇଦେଲା । ତା'ର ମଦ୍ୟପ ମଧୁକକା ଗୃହ କୋଣରେ ସୁରା ଲୁଚାଇ ରଖିଥାଏ । ସେଇ ମାଧ୍ୱୀ ସୁରା ପାନ କରିବା ପରେ ଚମ୍ପା ସାଙ୍ଗେ ସାଙ୍ଗେ ଶୋଇ ପଡ଼ିଲା ।

# ୩

ଚମ୍ପା ଦରିଦ୍ରା । ଓଳିଏ ଖାଇବାକୁ ପାଏତ ଓଳିଏ ପାଏନା । ମାସରେ ହୁଏତ ଅଧେ ଦିନ ଉପବାସ କରିବାକୁ ପଡ଼େ । ଚମ୍ପାର ମା' ବହୁ କଷ୍ଟରେ ସଂସାର ଚଳାଏ । କିନ୍ତୁ ମେଘ ଯେତେବେଳେ ପୂର୍ଣ୍ଣଚନ୍ଦ୍ରକୁ ଘୋଡ଼ାଏ ପୂର୍ଣ୍ଣଚନ୍ଦ୍ରର ଶୋଭା ସେଥିରେ ଅଧିକ ବଢ଼ିଯାଏ । ଦାରିଦ୍ର୍ୟ ସତ୍ତ୍ୱେ ଚମ୍ପାର ରୂପ ଲାବଣ୍ୟ ଦିନକୁ ଦିନ ବଢ଼ିବାକୁ ଲାଗିଲା । ସେ ଯୁଗରେ କି ଯୁବକ କି ଯୁବତୀ କେଶ ପାଶ କୁଞ୍ଚିତ କରୁଥିଲେ । କିନ୍ତୁ ଚମ୍ପାର ଆଜାନୁଲମ୍ବିତ ଘନକୃଷ୍ଣ କେଶ ସ୍ୱଭାବତଃହିଁ କୁଞ୍ଚିତ । ଦେହର ବର୍ଣ୍ଣ ଚମ୍ପା ଫୁଲ ପରି । ନୟନ ଯୁଗଳ ଆକର୍ଣ୍ଣବିସ୍ତୃତ । ସେଥିରେ ପୁଣି ଡାହାଣ ଗଣ୍ଡରେ ଗୋଟିଏ ତିଳ ଚିହ୍ନ ବଦନ ଶୋଭାକୁ ଶହେଗୁଣ ବଢ଼ାଇ ଦେଉଛି । ସେ ତିଳଚିହ୍ନ ଦେଖି କବିମାନେ ହୁଏତ କହିବେ ଗୋଟିଏ ଭ୍ରମର ସେ ମୁଖ ପଦ୍ମର ଲୋଭ ଛାଡ଼ି ନପାରି ଲାଖି ରହିଯାଇଛି । କିନ୍ତୁ ପଲ୍ଲୀର ଯୁବକମାନେ କହୁଥିଲେ ସେ ତିଳ ଚିହ୍ନ ଆଦୌ ନୁହେଁ, ଭ୍ରମର ମଧ୍ୟ ନୁହେଁ, ସେମାନଙ୍କର ହୃଦୟ ଜଳି ପାଉଁଶ ହୋଇ ସେଠି ଲାଖି ରହିଛି !

ଚମ୍ପାର ରୂପ ଯେତେବେଳେ ଦିନକୁ ଦିନ ବଢ଼ିବାକୁ ଲାଗିଲା ଓ ଚମ୍ପାର ମା' ଯେତେବେଳେ ଆଉ ବେଶି କାମ ଧନ୍ଦା କରିବାକୁ ଅକ୍ଷମ ହେଲା, ସେତେବେଳେ ସେ ତା'ର ମୃତ ସ୍ୱାମୀର ଦୂର ସମ୍ପର୍କୀୟ ଭାଇ ମଧୁକରକୁ ଆଣି ଘରେ ରଖିଲା । କିନ୍ତୁ ମଧୁକର ସାହାଯ୍ୟ ପରିବର୍ତ୍ତେ ବୋଝ ଉପରେ ନଳିତା ବିଡ଼ା ହୋଇରହିଲା ।

ମଧୁକର ଆଜିର ଅନ୍ୟତମ ମହାମାନ୍ୟ ଅତିଥି ମହାକାଞ୍ଚନର ବାଲ୍ୟ ସାଥୀ । ମହାକାଞ୍ଚନ ସହିତ ସେ ମଧ୍ୟ ପାଟଳିପୁତ୍ର ଯାଇଥିଲେ ମହର୍ଷି ପତଞ୍ଜଳିଙ୍କ ଠାରୁ ଯୋଗ ଶିକ୍ଷା କରିବାକୁ । କିନ୍ତୁ ମଧୁକର ପିଲାଟି ଦିନରୁ ଅନ୍ୟରୂପ । କୌଣସି କାର୍ଯ୍ୟ ବା ଅବସ୍ଥା ତାଙ୍କୁ ବେଶି ଦିନ ଭଲ ଲାଗେ ନାହିଁ । ତାଙ୍କର ସ୍ୱଭାବ ଉନ୍ମୁକ୍ତ ଆକାଶର ବିହଙ୍ଗମ ପରି । ପତଞ୍ଜଳିଙ୍କ ଆଶ୍ରମରେ ସେ ଅନ୍ୟାନ୍ୟ ଶିଷ୍ୟମାନଙ୍କର ଯୋଗାଭ୍ୟାସରେ ବାଧା ଜନ୍ମାଇବାକୁ ଲାଗିଲା । ମହର୍ଷି ପତଞ୍ଜଳି ଶତ ଚେଷ୍ଟା କରି ମଧ୍ୟ ମୁହୂର୍ତ୍ତକ ପାଇଁ ମଧୁକରର ମନକୁ ସ୍ଥିର କରାଇ ପାରିଲେ ନାହିଁ । ଦିନେ ବ୍ରାହ୍ମ ମୁହୂର୍ତ୍ତରେ ଆଶ୍ରମର ଶିଷ୍ୟାନେ ଧ୍ୟାନାଭ୍ୟାସରତ ଥିବା ସମୟରେ ପତଞ୍ଜଳି ଦେଖିଲେ ମଧୁକର ସୁରାପାନରତ । ମହର୍ଷି ମଧୁକରର ସ୍କନ୍ଧରେ ଧୀରେ ହସ୍ତ ରଖି କହିଲେ,- ବତ୍ସ, 'ଯୋଗଃ ଚିତ୍ତବୃତ୍ତିନିରୋଧଃ' ।

ମଧୁକର ଅମ୍ଳାନ ବଦନରେ ପାତ୍ରଟିକୁ ନିଃଶେଷ କରି କହିଲେ, - ଗୁରୁଦେବ,

'ବୃତ୍ତିସାରୂପ୍ୟମିତରତ୍ର' ଏକଥା ମଧ ଆପଣ କହିଛନ୍ତି । ନିଜକୁ ସବୁ ପଦାର୍ଥରେ ଏବଂ ସବୁ ପଦାର୍ଥକୁ ନିଜ ଭିତରେ ଅଛି ବୋଲି ଜ୍ଞାନ କରିବାକୁ ଆପଣ ଉପଦେଶ ଦେଇଅଛନ୍ତି । ତା ଛଡ଼ା, ମୁଁ ଆବିଷ୍କାର କରିଛି ଯେ ସୁରାପାନ ଧ୍ୟାନକୁ ସାହାଯ୍ୟ କରେ ।

- ବତ୍ସ, ଯୋଗର ଉଦ୍ଦେଶ୍ୟ କୈବଲ୍ୟ ପ୍ରାପ୍ତି । ସବୁଥିରେ ଥାଇ କାହାରି ସହିତ ସମ୍ବନ୍ଧ ନଥିବା ଅବସ୍ଥାକୁ କୈବଲ୍ୟ କୁହାଯାଏ । ଯେଉଁ ଚିତ୍ତବୃତ୍ତି ଅବିଦ୍ୟାଦି କ୍ଳେଶର କାରଣ ତାହା କ୍ଳିଷ୍ଟ ଏବଂ ଯାହା ତାହାର ବିପରୀତ ତାହା ଅକ୍ଳିଷ୍ଟ । ବୈଧ ମନୋବୃତ୍ତି ଅକ୍ଳିଷ୍ଟ ଓ ଅବୈଧ ଚିତ୍ତବୃତ୍ତି କ୍ଳିଷ୍ଟ ।

ଏତିକି ମାତ୍ର କହି ପତଞ୍ଜଳି ମଧୁକରର ମସ୍ତକରେ କିୟଦ୍‌କ୍ଷଣ ହସ୍ତ ରଖି ସ୍ମିତ ହାସ୍ୟ କରି ସେ ସ୍ଥାନରୁ ଚାଲି ଗଲେ ।

ମଧୁକର ଏହା ପରେ କିଛିକ୍ଷଣ ଚିନ୍ତା କରି ଆଶ୍ରମରୁ ବିଦାୟ ନେଲେ । ସେତେବେଳେ ମଧୁକରର ବୟସ ଥିଲା ମାତ୍ର କୋଡ଼ିଏ ।

ଆଶ୍ରମରୁ ବିଦାୟ ନେଇ ମଧୁକର ଗୋଟିଏ ବୌଦ୍ଧ ସଂଘରେ ରହିଲେ । କିନ୍ତୁ ସେଠାରେ ମଧ ସେ ବେଶି ଦିନ ତିଷ୍ଠି ରହି ପାରିଲେ ନାହିଁ । ଦିନେ ଆଶ୍ରମପାଳ ମଧୁକରକୁ ଜଣେ ଭିକ୍ଷୁଣୀ ସହିତ ଅସଂଯତ ଅବସ୍ଥାରେ ଦେଖିଲେ । ଆଶ୍ରମପାଳ ମଧୁକରକୁ ପ୍ରତିମୋକ୍ଷ ପାଇଁ ଆଦେଶ ଦେଲେ, କିନ୍ତୁ ମଧୁକର ଏହାକୁ ପାପ ବୋଲି ସ୍ୱୀକାର କରିବାକୁ ଅନିଚ୍ଛୁକ ହେବାରୁ ଅଗତ୍ୟା ସଂଘରୁ ତାଙ୍କୁ ବହିଷ୍କାର କରିବାକୁ ଆଶ୍ରମପାଳ ବାଧ ହେଲେ । ଭିକ୍ଷୁର ପୀତବସନ ଓ ଭିକ୍ଷାପାତ୍ର ଫେରାଇ ଦେଇ ମଧୁକର ବୌଦ୍ଧ ବିହାରରୁ ବିଦାୟ ନେବାବେଳେ ଭିକ୍ଷୁଣୀକୁ ନିଜ ସହିତ ନେଇ ଯିବାକୁ ପ୍ରସ୍ତାବ କରିଥିଲେ । କିନ୍ତୁ ଅନ୍ୟାନ୍ୟ ଭିକ୍ଷୁ ଓ ଆଶ୍ରମପାଳ ଏଥିରେ ଘୋର ଆପତ୍ତି କରିବାରୁ ମଧୁକର ସଦୁଃଖେ ବିହାରରୁ ଏକାକୀ ବିଦାୟ ନେଲେ ।

ଏହାପରେ ମଧୁକର ଗୋଟିଏ ଭ୍ରାମ୍ୟମାଣ ଯାତ୍ରାଦଳ ସହିତ ଯୋଗ ଦେଲେ । ଏମାନଙ୍କ ସହିତ ବହୁ ଦେଶ ଭ୍ରମଣ କରି ଦୁଇବର୍ଷ ପରେ ଦିନେ ଅସ୍ଥିଚର୍ମସାର ଅବସ୍ଥାରେ ସୁଖିପଲ୍ଲୀକୁ ଫେରିଲେ । ପିଲାଦିନରୁ ସେ ପିତା ମାତା ହରାଇଛନ୍ତି । ଆପଣାର ବୋଲି ତାଙ୍କର ଆଉ କେହି ନାହିଁ । ଗ୍ରାମରେ ଅଳ୍ପଦିନ ରହିବା ପରେ ମଧୁକର ଯେତେବେଳେ ଟିକିଏ ସୁସ୍ଥ ବୋଧ କଲେ ତାଙ୍କର ମନ ପୁଣି ଚଞ୍ଚଳ ହୋଇ ଉଠିଲା । ସେ ଘରଛଡ଼ାକୁ ସୁଖିପଲ୍ଲୀ ବାନ୍ଧି ରଖି ପାରିଲା ନାହିଁ । ସୁଦୂରପ୍ରସାରୀ ରାଜମାର୍ଗ ତାକୁ ହାତଠାରି ଡାକିଲା ଦୂର ଦିଗ୍‌ବଳୟର ରେଖାଆଡ଼କୁ । ଦିନେ ରାତିରେ ଆକାଶରେ ଚନ୍ଦ୍ର ଯେତେବେଳେ ତାର ନୌକା ଭସାଇ ଦେଇଥାଏ ଅସୀମରେ, ମଧୁକର କାହାରିକୁ କିଛି ନ କହି ଘରୁ ବାହାରି ପଡ଼ିଲେ ଏକ ବସ୍ତ୍ରରେ । ଏଥର ସେ ମନସ୍ଥ କଲେ ତକ୍ଷଶିଳା । * ବିହାରକୁ ଯାଇ ବିଦ୍ୟାଭ୍ୟାସ କରିବେ ।

ତକ୍ଷଶିଳାରେ ସେ ରହିଥିଲେ ତିନି ବର୍ଷ । କିନ୍ତୁ ସମୟ ତୁଳନାରେ ବିଦ୍ୟାର୍ଜ୍ଜନ କରିଥିଲେ ଅତି ସାମାନ୍ୟ । ସେ ଥିଲେ ଦର୍ଶନ ଶାସ୍ତ୍ରର ଅଧ୍ୟାୟୀ, କିନ୍ତୁ ଅଧିକାଂଶ ସମୟ ସେ କାବ୍ୟ ନାଟକ ପ୍ରଭୃତିର ପୋଥି ଆଣି ପଢୁଥିଲେ । ସାଙ୍ଗରେ ଯାହା ଅର୍ଥ ଥିଲା ସମସ୍ତ ସେ ସୁରାପାନ ଓ ଅଷ୍ଟାପଦ କ୍ରୀଡ଼ାରେ ବ୍ୟୟ କରିବାକୁ ଲାଗିଲେ । ତାଙ୍କର ଅଧିକାଂଶ ସମୟ ଶୌଣ୍ଡିକଗୃହରେ ବ୍ୟୟିତ ହେବାକୁ ଲାଗିଲା । ଅଳ୍ପକାଳ ମଧ୍ୟରେ ତାଙ୍କର ଅର୍ଥସମ୍ବଳ କ୍ଷୀଣରୁ କ୍ଷୀଣତର ହେବାକୁ ଲାଗିଲା । କିନ୍ତୁ ସେ ଜୀବନକୁ ଉପଭୋଗ କରିବାରୁ କ୍ଷାନ୍ତ ହେଲେ ନାହିଁ । ତାଙ୍କର ରସାଳ କଥାବାର୍ତ୍ତା, ସୁମଧୁର କଣ୍ଠ ଓ ଭଦ୍ର ବ୍ୟବହାର ପାଇଁ ସେ ଅନେକ ନଗରବାସୀଙ୍କ ପ୍ରିୟପାତ୍ର ହୋଇ ପାରିଥିଲେ । ଯାତ୍ରାଦଳ ସହ ଦୁଇ ବର୍ଷ ତାଙ୍କର ବୃଥା ଯାଇନାହିଁ । ସେ ନାଟକ ଓ କବିତା ଲେଖିବାର ପ୍ରେରଣା ସେହିଠାରୁ ପାଇଥିଲେ । ନିଜ ଜୀବନର ବହୁ ଘଟଣାର ଘାତ ପ୍ରତିଘାତରେ ସେ ବହୁ ଅଭିଜ୍ଞତା ଅର୍ଜ୍ଜନ କରିଥିଲେ । ଏ ଉପାଦାନଗୁଡ଼ିକ ନେଇ ସେ ନାଟକ ରଚନା କରିବାକୁ ଲାଗିଲେ । ସେ ନାଟକଗୁଡ଼ିକ ରସିକ ମଣ୍ଡଳୀ ମଧ୍ୟରେ ଆଦର ପାଇବାକୁ ଲାଗିଲା । ତକ୍ଷଶିଳାରେ ବିଦ୍ୟାର୍ଜ୍ଜନ ହେଉ ବା ନହେଉ ମଧୁକରଙ୍କର ଏଇ ଗୋଟିଏ ଲାଭ ହୋଇଥିଲା । କିନ୍ତୁ ଏଥିପାଇଁ ଦିନେ ତାଙ୍କୁ ତକ୍ଷଶିଳା ତ୍ୟାଗ କରିବାକୁ ପଡ଼ିଲା ।

ସେ ସମୟରେ ଉତ୍ତରାପଥର ଅଧିବାସୀମାନେ ରାଜକର ଭାରରେ ଉତ୍ତ୍ୟକ୍ତ ହୋଇ ପଡ଼ିଥିଲେ । ନାନାପ୍ରକାର ରାଜକର ଦେବା ପରେ ନିଜର ଭରଣ ପୋଷଣ ପାଇଁ ସେମାନଙ୍କର ଆଉ କିଛି ରହୁ ନଥିଲା ବୋଲି କହିଲେ ଚଳେ । ସର୍ବାଗ୍ରେ ଦେୟ 'ଭାଗ' ଅର୍ଥାତ୍ ନିଜେ ଉତ୍ପାଦନ କରୁଥିବା ଶସ୍ୟର ଏକ ଷଷ୍ଠାଂଶ ଦେବାକୁ ପଡୁଥିଲା ରାଜାଙ୍କୁ । ଏହା ଉପରେ ଦେବାକୁ ପଡୁଥିଲା କର ଓ ଶୁଳ୍କ । ରାଜାଙ୍କର କନ୍ୟା ବା ପୁତ୍ରର ବିବାହାଦି ଉତ୍ସବରେ ଦେବାକୁ ପଡୁଥିଲା 'ପ୍ରଣୟ', ଅର୍ଥାତ୍ ବାଧ୍ୟତାମୂଳକ ପ୍ରୀତ୍ୟୁପହାର ବା ଅର୍ଥ । ଏହାଛଡ଼ା 'ବଳୀ' ଅର୍ଥାତ୍ କୌଣସି ବୃହତ୍ କାର୍ଯ୍ୟରେ ବାଧ୍ୟତାମୂଳକ ଅର୍ଥ ସାହାଯ୍ୟ । ଲୋକମାନଙ୍କୁ ଏ ସବୁ ଉପରେ ଯେତେବେଳେ 'ବିଷ୍ଟି' କରିବାକୁ ଅର୍ଥାତ୍ ବେଠି ଖଟିବାକୁ ପଡ଼ିଲା ସେତେବେଳେ ଗୁପ୍ତବିଦ୍ରୋହର ମନ୍ତ୍ରଣା ଚାଲିଲା । ରାଜା ସେତେବେଳେ ଗୋଟିଏ ପ୍ରକାଣ୍ଡ ରାଜପୁରୀ ନିର୍ମାଣ କରାଉଥିଲେ । ସେ ସେହି କାର୍ଯ୍ୟରେ ସମସ୍ତଙ୍କୁ 'ବିଷ୍ଟି' କରିବାକୁ ବାଧ୍ୟ କରାଉଥିଲେ । ଏହି ସମୟରେ ମଧୁକର ଗୋଟିଏ ବିଦ୍ରୂପାତ୍ମକ ନାଟକ ଅଭିନୟ ଆରମ୍ଭ କଲେ । ନାଟକଟି ସ୍ୱଭାବତଃ ଜନପ୍ରିୟ ହେଲା ଏବଂ ପ୍ରଜାମାନଙ୍କର ମନରେ ବିଦ୍ରୋହ ଭାବ ଉଦ୍ରେକ କରାଇଲା । ଫଳରେ ରାଜଦ୍ରୋହ ଅପରାଧରେ ମଧୁକର ଉତ୍ତରାପଥରୁ ନିର୍ବାସିତ ହେଲେ ।

ଏହାପରେ ମଧୁକର ଗଲେ ଭୋଜକ ରାଜ୍ୟକୁ । ସେ ଦେଶର ଲୋକେ ଯାଦୁବିଦ୍ୟା ନିପୁଣ । ସେଠାରେ ସେ ଯାଦୁବିଦ୍ୟା ଶିକ୍ଷା କରିବାକୁ ଲାଗିଲେ । ଅଳ୍ପକାଳ ମଧ୍ୟରେ ସେ

ଭୋଜକ ରାଜ୍ୟରେ ଯାଦୁବିଦ୍ୟାରେ ଖ୍ୟାତି ଅର୍ଜନ କରିବାକୁ ଲାଗିଲେ । ଏହା ପରେ ଏହି ବିଦ୍ୟାହିଁ ତାଙ୍କର ଭରଣପୋଷଣ ପାଇଁ ସାହାଯ୍ୟ କଲା । ସେ ଏହି ବିଦ୍ୟା ସାହାଯ୍ୟରେ ଅର୍ଥ ଉପାର୍ଜନ କରୁ କରୁ ପହଞ୍ଚିଲେ କର୍ଣ୍ଣାଟ ଦେଶରେ ।

ଦିନେ କର୍ଣ୍ଣାଟ ଦେଶର ରାଜା ସାତକର୍ଣ୍ଣି ରାଜସଭାରେ ଆସୀନ । ଏହି ସମୟରେ ମଧୁକର ଦରିଦ୍ର ବେଶରେ ଗୋଟିଏ ନାରୀ ସହ ରାଜସଭାରେ ପ୍ରବେଶ କରି ଯାଦୁବିଦ୍ୟା ଦେଖାଇବାର ଅଭିଳାଷ ପ୍ରକାଶ କଲେ । ନାନା ଯାଦୁକ୍ରୀଡ଼ା ଦେଖାଇ ସେ ଦର୍ଶକମାନଙ୍କୁ ମୁଗ୍ଧ କରିବାକୁ ଲାଗିଲେ । କ୍ରୀଡ଼ା ପ୍ରାୟ ଶେଷ ହୋଇ ଆସିବା ସମୟରେ ବହୁ ଦୂରରୁ ଦାମାମା ନିର୍ଘୋଷ ଶୁଣାଗଲା । ଦର୍ଶକାମାନେ ଆଶ୍ଚର୍ଯ୍ୟ ହୋଇ ଏଣେ ତେଣେ ଚାହିଁବାକୁ ଲାଗିଲେ ।

ସେତେବେଳକୁ କଳିଙ୍ଗରାଜ ଖାରବେଳ ବିଜୟ ଅଭିଯାନ ଆରମ୍ଭ କଲେଣି ବୋଲି ଲୋକ ମୁଖେ ଶୁଣା ଯାଉଥିଲା । ଖାରବେଳଙ୍କ ବିକ୍ରମ କଥା ସମଗ୍ର ଦକ୍ଷିଣ ଭାରତରେ ପ୍ରଚାରିତ ହୋଇ ସାରିଥାଏ । ସମସ୍ତେ ଭାବିଲେ ଖାରବେଳଙ୍କ ସୈନ୍ୟ କର୍ଣ୍ଣାଟ ଆକ୍ରମଣ କରି ସାରିଲେଣି । ମଧୁକର କାନ ଡେରି ସେ ଦାମାମା ନିର୍ଘୋଷ ଶୁଣି କହିଲେ, - ମହାରାଜ, ଏ ମର୍ତ୍ତ୍ୟର ଯୁଦ୍ଧର ଦାମାମା ଶବ୍ଦ ନୁହେଁ । ସ୍ୱର୍ଗରେ ଯୁଦ୍ଧ ଲାଗିଛି ଦେବ ଓ ଦାନବ ମଧ୍ୟରେ । ଦାନବ ସୈନ୍ୟରେ ମୋର ଜଣେ ବନ୍ଧୁ ଅଛନ୍ତି । ସେ ଥରେ ମୋର ପ୍ରାଣ ବଞ୍ଚାଇଥିଲେ । ମୁଁ ତାଙ୍କ ନିକଟରେ ପ୍ରତିଜ୍ଞା କରିଥିଲି ତାଙ୍କର ବିପଦବେଳେ ମୁଁ ତାଙ୍କୁ ସାହାଯ୍ୟ କରିବି । ବର୍ତ୍ତମାନ ତାଙ୍କର ବିପଦ ଉପସ୍ଥିତ । ମୋର ପ୍ରତିଜ୍ଞା ରକ୍ଷା କରିବାକୁ ମୁଁ ଯାଉଛି । ଅଳ୍ପକାଳ ପରେ ଫେରି ଆସିବି ! ମୁଁ ଫେରି ନ ଆସିବା ପର୍ଯ୍ୟନ୍ତ ମୋର ସ୍ତ୍ରୀକୁ ଆପଣଙ୍କ ନିକଟରେ ଛାଡ଼ି ଦେଇ ଯାଉଛି । ମୁଁ ଫେରି ଆସିଲେ ଆପଣଙ୍କ ନିକଟରୁ ତାଙ୍କୁ ଘେନି ଯିବି ।

ମହାରାଜ ସମ୍ମତି ଦିଅନ୍ତେ ମଧୁକର ତାଙ୍କର ଯାଦୁ ପେଟିକାରୁ ଗୋଟିଏ ରଜ୍ଜୁ ବାହାର କରି ଉପରକୁ ଫିଙ୍ଗି ଦେଲେ । ଦଉଡ଼ିଟି ଧୀରେ ଧୀରେ ଉପରକୁ ଉଠିବାକୁ ଲାଗିଲା ଏବଂ ଦେଖୁ ଦେଖୁ ତା'ର ଅଗ୍ରଭାଗ ଶୂନ୍ୟରେ ମିଳାଇଗଲା । ମଧୁକର ସମସ୍ତଙ୍କୁ ପ୍ରଣାମ କରି ସ୍ତ୍ରୀ ନିକଟରୁ ବିଦାୟ ନେଇ ମହାରାଜଙ୍କୁ ନିଜର ସ୍ତ୍ରୀ ବିଷୟରେ ତାଙ୍କର ଦାୟିତ୍ୱ ଆଉଥରେ ସ୍ମରଣ କରାଇ ଦଉଡ଼ି ବାହି ଉପରକୁ ଉଠିବାକୁ ଲାଗିଲେ । ସମସ୍ତେ ଆଶ୍ଚର୍ଯ୍ୟ ହୋଇ ଦେଖିବାକୁ ଲାଗିଲେ ଏଇ ଅଦ୍‌ଭୁତ ଯାଦୁକର କ୍ରମେ ଅସୀମ ଆକାଶରେ ଅଦୃଶ୍ୟ ହୋଇଗଲା ।

ଏଥର ଦାମାମା, ଭେରୀ, ତୁରୀ, ଶଙ୍ଖ ଶବ୍ଦରେ ଚତୁର୍ଦ୍ଦିଗ ପ୍ରକମ୍ପିତ ହେବାକୁ ଲାଗିଲା । ସମସ୍ତେ ଭୟଭୀତ ହୋଇ ଭାବିଲେ ଦେବ ଦାନବମାନେ ଯୁଦ୍ଧ କରୁ କରୁ ବୋଧହୁଏ ମର୍ତ୍ତ୍ୟକୁ ଓହ୍ଲାଇ ଆସୁଅଛନ୍ତି । ଭୟରେ ସମସ୍ତେ ସ୍ଥାଣୁ ପରି ଯେ ଯାହା ଆସନରେ ବସି ରହିଲେ । କିଛିକ୍ଷଣ ପରେ ସଭାସ୍ଥ ଲୋକେ ଭୟ ବିହ୍ୱଳ ହୋଇ ଦେଖିଲେ

ଗୋଟିଏ ରକ୍ତାକ୍ତ ଛିନ୍ନ ପାଦ ସଭାସ୍ଥଳରେ ଆସି ପଡ଼ିଲା, ଏହାପରେ ଦୁଇଟି ହସ୍ତ ବକ୍ଷ ଆଦି ଅବୟବଗୁଡ଼ିକ ପୃଥକ୍ ପୃଥକ୍ ଭାବରେ ରକ୍ତାକ୍ତ ଅବସ୍ଥାରେ ପଡ଼ିବାକୁ ଲାଗିଲେ ।

ମଧୁକରଙ୍କ ସଙ୍ଗିନୀ ସେଇ ନାରୀଟି ଗୋଟିଏ ଶୋଣିତଲିପ୍ତ ପାଦ ଟେକି ଧରି କହିଲା, - ଏ ମୋର ସ୍ୱାମୀଙ୍କର ପାଦ । ଏହା କହି ସେ କାନ୍ଦିବାକୁ ଲାଗିଲା । ସଭାସ୍ଥ ଲୋକେ ତାକୁ ଆଶ୍ୱାସନା ଦେବାକୁ ଲାଗିଲେ । କିନ୍ତୁ ନାରୀଟି ଅଶ୍ରୁ ପୋଛୁ ପୋଛୁ କହିଲା, ମୋର ଜୀବନରେ ଆଉ ଲାଭ କ'ଣ ? ମହାରାଜ, ଚିତା ପ୍ରସ୍ତୁତ କରାନ୍ତୁ, ମୁଁ ଅଗ୍ନିରେ ଜୀବନ ଦେବି । ସମସ୍ତେ ବାଧା ଦେବାକୁ ଲାଗିଲେ । କିନ୍ତୁ ନାରୀ ସମସ୍ତଙ୍କୁ ଆକ୍ଷେପ କରି କହିବାକୁ ଲାଗିଲା- ଆପଣମାନେ ମୋର ନାରୀ ଧର୍ମରେ ବାଧା ଦିଅନ୍ତୁ ନାହିଁ, ଆପଣମାନଙ୍କ 'ପାପ ହେବ । ମହାରାଜ, ଆପଣଙ୍କୁ ମୋର ଭିକ୍ଷା ମୋର ନାରୀଧର୍ମ ରକ୍ଷା କରନ୍ତୁ ।

ମହାରାଜ ସାତକର୍ଣ୍ଣି ଅଗତ୍ୟା ଚିତା ପ୍ରସ୍ତୁତ କରାଇଲେ । ଚିତାରେ ଅଗ୍ନି ସଂଯୋଗ କରି ନାରୀ ତାକୁ ପ୍ରଦକ୍ଷିଣ କରି ସେଥିରେ ପ୍ରବେଶ କଲା ଏବଂ ଅଳ୍ପକାଳ ମଧ୍ୟରେ ଭସ୍ମୀଭୂତ ହୋଇଗଲା ।

ଏହାର କିଛିକ୍ଷଣ ପରେ ସମସ୍ତେ ଅତୀବ ଆଶ୍ଚର୍ଯ୍ୟ ହୋଇ ଦେଖିଲେ ଐନ୍ଦ୍ରଜାଲିକ ମଧୁକର ରାଜକୀୟ ପରିଚ୍ଛଦ ପରିଧାନ କରି ଉକ୍ତ ଦଉଡ଼ିବାହି ଅବତରଣ କରୁଅଛନ୍ତି । ପରେ ଭୂମି ସ୍ପର୍ଶ କରି ସେ ଦେବ-ଦାନବ ଯୁଦ୍ଧର ଭୟାବହ ଘଟଣାର ବର୍ଣ୍ଣନା ଦେବାକୁ ଲାଗିଲେ । ବର୍ଣ୍ଣନା ଶେଷରେ କହିଲେ, - ଦାନବର ଜୟ ହୋଇଛି । ମୋର ବନ୍ଧୁଙ୍କୁ ମୁଁ ସାହାଯ୍ୟ କରିଥିବାରୁ ସେ ମୋତେ ଏହି ପରିଚ୍ଛଦ ଓ ଏହି ମୁକ୍ତାମାଳା ଉପହାର ଦେଇ ଅଛନ୍ତି । ମହାରାଜ, ଆଉ ଭୟ କରିବାର କିଛି ନାହିଁ । ଏଥର ମୋତେ ମୋର ସ୍ତ୍ରୀକୁ ଫେରାଇ ଦିଅନ୍ତୁ ।

ମହାରାଜ ମଥାରେ ହାତ ଦେଇ ବସିଲେ । ମହାମନ୍ତ୍ରୀ ସମସ୍ତ ବୃତ୍ତାନ୍ତ ପ୍ରକାଶ କରି କ୍ଷମା ମାଗି କହିଲେ, - ହେ ମାୟାବୀ, ଆମର କିଛି ଉପାୟ ନଥିଲା ।

ମଧୁକର ଏ ବୃତ୍ତାନ୍ତ ଶୁଣି ବିଳାପ କରିବାକୁ ଲାଗିଲେ ଏବଂ କହିଲେ,- ମହାରାଜ, ଆପଣ ଶେଷ ପର୍ଯ୍ୟନ୍ତ ଅପେକ୍ଷା ନକରି ଏପରି କରିଅଛନ୍ତି । ଏହା ବିବେକର କାର୍ଯ୍ୟ ହୋଇନାହିଁ । ଯାହାହେଉ ଆପଣଙ୍କ ରାଜଧର୍ମ ଆପଣ ବୁଝିବେ, ମାତ୍ର ମୁଁ ସାଥୀହରା ହେବି ନାହିଁ ।

ଏହା କହି ମଧୁକର ନିର୍ବାପିତ ଚିତାକୁ ବିପରୀତ ପ୍ରଦକ୍ଷିଣ କରି ରମଣୀର ନାମ ଧରି ଡାକିବାକୁ ଲାଗିଲେ । ରମଣୀ ସେତେବେଳେ ବହୁମୂଲ୍ୟ ଅଙ୍ଗବାସ ପରିଧାନ କରି ଚିତା ମଧ୍ୟରୁ ଉଠି ଆସିଲା । ଏତେବେଳେ ସମସ୍ତେ ବୁଝିଲେ ଯେ ସେ ସବୁ ସତ୍ୟ ଘଟଣା ନୁହେଁ, କୁହକ ବିଦ୍ୟାର ଅଲୀକ ବିସ୍ମୟ । ସଭାସ୍ଥ ସମସ୍ତେ ଧନ୍ୟ ଧନ୍ୟ କରିବାକୁ ଲାଗିଲେ । ସାତକର୍ଣ୍ଣି ଅତ୍ୟନ୍ତ ସନ୍ତୁଷ୍ଟ ହୋଇ ମଧୁକରଙ୍କୁ ବହୁ ଅର୍ଥ ପ୍ରଦାନ କଲେ ।

ଏହାପରେ ମଧୁକର ମହାସୁଖରେ କର୍ଣ୍ଣାଟରେ ବସବାସ କରିବାକୁ ଲାଗିଲେ । କିନ୍ତୁ ଅଳ୍ପକାଳ ପରେ ତାଙ୍କୁ ପିଞ୍ଜରାବଦ୍ଧ ପକ୍ଷୀ ପରି ଲାଗିଲା । ମୁକ୍ତ ଆକାଶ ତଳେ ଯଥେଚ୍ଛ ଭ୍ରମଣ କରିବାକୁ ମନ ତାଙ୍କର ପୁଣି ଅସ୍ଥିର ହୋଇ ଉଠିଲା । କର୍ଣ୍ଣାଟରେ ଥିବା ସମୟରେ ପେରିପ୍ଲସ୍ ନାମକ ଜଣେ ମିଶର-ଦେଶବାସୀ ଗ୍ରୀସୀୟ ନାବିକ-ବଣିକଙ୍କ ସହିତ ତାଙ୍କର ଘନିଷ୍ଠ ବନ୍ଧୁତ୍ୱ ହୋଇଗଲା । ଦୁହିଁଙ୍କର ମନ ଯେପରି ଥିଲା ଏକା ସ୍ୱରରେ ବନ୍ଧା । ପେରିପ୍ଲସ୍ ଯେଉଁଦିନ ନିଜର ପୋତରେ ସୁବର୍ଣ୍ଣ ଦ୍ୱୀପକୁ ଯାତ୍ରା କରିବାକୁ ବାହାରିଲେ ମଧୁକର ମଧ ତାଙ୍କ ସହିତ ଯୋଗ ଦେଲେ । ମଧୁକରଙ୍କ ଏ ପ୍ରଥମ ସମୁଦ୍ର ଯାତ୍ରା । ସମୁଦ୍ର ଯାତ୍ରାର ମାଦକତା ତାଙ୍କୁ ଅଧିକ ଆକୃଷ୍ଟ କଲା । ସୁବର୍ଣ୍ଣ ଦ୍ୱୀପ, ଜମ୍ବୁ ଦୀପ (କାମ୍ବୋଡିଆ) ଆଦି ନାନା ଦେଶମାନଙ୍କରେ ପ୍ରାୟ ଆଠ ବର୍ଷ କଟାଇ ପେରିପ୍ଲସ୍ ସହିତ ସେ ପୁଣି ଫେରି ଆସିଲେ ସୁଖପଲ୍ଲୀକୁ । ମାତ୍ର କୁହକବିଦ୍ୟା କଲ୍ୟାଣରୁ ମଧୁକର ଯେପରି ଧନୋପାର୍ଜନ କରିଥିଲେ ତାଙ୍କର ବ୍ୟୟଶୌଣ୍ଡ ସ୍ୱଭାବ ଲାଗି ସେତେବେଳକୁ ସେ ଧନର ପ୍ରାୟ ସବୁ ସେଇ କୁହକ ଭଳି ଉଡ଼ି ଯାଇଥାଏ ମଧ ।

ଏହି ସମୟରେ ଚମ୍ପାର ମା' ତାଙ୍କୁ ନିଜ ଘରକୁ ଡାକି ନେଇଥିଲେ । ଚମ୍ପାର କରୁଣ ସୌନ୍ଦର୍ଯ୍ୟ ଦେଖି ମଧୁକରଙ୍କ ମନରେ ଏକ ଅନନୁଭୂତପୂର୍ବ ବାତ୍ସଲ୍ୟ ଭାବ ଜାତ ହେଲା । ଏ ଅପୂର୍ବ ଚିତ୍ତବୃତ୍ତି ତାଙ୍କୁ ବାନ୍ଧି ରଖିଦେଲା ଚମ୍ପା ଗୃହରେ । ମଧୁକର ଦେଖିଲେ ତାଙ୍କର ଭ୍ରାତୃଷ୍ପୁତ୍ରୀ ବୁଦ୍ଧିମତୀ, ସେ ସାନନ୍ଦରେ ଚମ୍ପାକୁ ନାନା ବିଷୟରେ ଶିକ୍ଷା ଦେବାକୁ ଲାଗିଲେ । ତାଙ୍କର ଦେଶଦେଶାନ୍ତର ଭ୍ରମଣର ଅଭିଜ୍ଞତା ଗ୍ରନ୍ଥରୁ । କେତେବେଳ ବା ତାଙ୍କର ସ୍ୱକୃତ ନାଟକ ଓ କବିତାଗୁଡ଼ିକ ପଢ଼ି ତାକୁ ଶୁଣାଇବାକୁ ଲାଗିଲେ । ଚମ୍ପାର ସ୍ମରଣଶକ୍ତି ଅସାଧାରଣ । ମଧୁକରର ସମସ୍ତ କବିତା ଓ ନାଟକ ତା'ର କଣ୍ଠସ୍ଥ ହୋଇଗଲା । ନିଜର ନାଟକ ଓ କବିତାଗୁଡ଼ିକ ଚମ୍ପା ମୁଖରୁ ଶୁଣି ମଧୁକର ଏକ ବିଚିତ୍ର ଆନନ୍ଦ ଅନୁଭବ କରିବାକୁ ଲାଗିଲେ । ଏହିପରି ଦାରିଦ୍ର୍ୟ ସତ୍ତ୍ୱେ ମହାସୁଖରେ ମଧୁକରଙ୍କ କାଳ କଟିବାକୁ ଲାଗିଲା ।

କିନ୍ତୁ ଚମ୍ପା ଯେଉଁ ଦିନ ତା'ର ପାଦ ଦୁଇଟିର ଶକ୍ତି ହରାଇ ଶଯ୍ୟାରେ ପଡ଼ି ରହିଲା ସେହି ଦିନୁ ମଧୁକର ସମ୍ପୂର୍ଣ୍ଣ ଭାଙ୍ଗି ପଡ଼ିଲେ । ସେହି ଦିନୁ ତାଙ୍କର ଏକ ମାତ୍ର ଉଦ୍ଦେଶ୍ୟ ରହିଲା ଚମ୍ପାକୁ ସୁଖୀ କରିବା । ଚମ୍ପାର ଶଯ୍ୟା ନିକଟରେ ବସି ସୁମଧୁର କଣ୍ଠରେ ଗାନ କରି, କେତେବେଳେ ବା ନାଟକ ପଢ଼ି ସେ ଚମ୍ପାର ମନୋରଞ୍ଜନ କରିବାକୁ ଲାଗିଲେ । କିନ୍ତୁ ପ୍ରେମର ଗୀତ କିମ୍ବା ନାଟକରେ ପ୍ରେମର ଦୃଶ୍ୟ ବର୍ଣ୍ଣନା ଶୁଣି ଚମ୍ପାର କୋହ ଏତେ ଅଧିକ ହେଉଥିଲା ଯେ ମଧୁକର ନାଟକ ପାଠ ଓ ଗୀତ ସ୍ଥଗିତ ରଖିବାକୁ ବାଧ୍ୟ ହେଉଥିଲେ । ସେ ଦେଶ ବିଦେଶର ନାନା ରୋମାଞ୍ଚକର ଗଳ୍ପ ଶୁଣାଇ ଚମ୍ପାର ମନ ରଞ୍ଜାଇବାକୁ ଲାଗିଲେ । କ୍ରମେ ଚମ୍ପା ଆସାଯଷ୍ଟି ଅବଲମ୍ବନ କରି ଗମନାଗମନରେ ଅଭ୍ୟସ୍ତା ହେଲା ।

# ୪

ଚମ୍ପା ଅନେକ ବେଳଯାଏ ଶୋଇ ପଡ଼ିଲା । ମା' ଆସି ଦ୍ୱାରରେ କରାଘାତ କରିବା ଶବ୍ଦରେ ସେ ଚମକି ଉଠି ଦ୍ୱାର ଖୋଲି ପଚାରିଲା, - ମା' ମଧୁକକା କାହିଁ ?

- ଆଉ କେଉଁଠି ଥିବ, ଶୁଣ୍ଡି ଘରେ ପଡ଼ିଥିବ । ଠିକ୍ ଭୋଜନ ବେଳକୁ ଆସିବ - କହି ମା' ରାତ୍ରି ଭୋଜନର ବ୍ୟବସ୍ଥା କରିବାକୁ ଚାଲିଗଲେ ।

ଚମ୍ପା ଆସାବାଡ଼ିଟି ଧରି ଧୀରେ ଧୀରେ ଆସି ମା' ପାଖରେ ଛିଡ଼ା ହୋଇ କହିଲା, ମା', ମୁଁ ଆଜି ସ୍ୱୟଂ ଭଗବାନଙ୍କୁ ଦେଖିଛି ।

- ଭଲ କରିଛୁ ମା । ଯା ଟିକିଏ ଚୁଲି ଜାଳି ଦେ । ତୋ ମଧୁକକା ଏହିକ୍ଷଣି ହୁଏତ ଭୋକରେ ପାଗଳ ହୋଇ ଆସି ପହଞ୍ଚିଯିବ ।

ଚମ୍ପା ସେ କଥା ନଶୁଣି କହିଲା, ମା', ମୋ କଥା ଟିକିଏ ଶୁଣ । ମୁଁ ସତ କହୁଛି, ସ୍ୱୟଂ ଭଗବାନଙ୍କୁ ଦେଖିଛି । ଖାଲି ଦେଖି ନାହିଁ, କଥା କହିଛି ତାଙ୍କ ସାଙ୍ଗରେ । ସେ ଆସି ମୋ କୋଳରେ ବସିଥିଲେ ।

ମା' ହସି ହସି କହିଲେ, - ମୁଁ ଆସିଲାବେଳକୁ ତୁ'ତ ନିଘୋଡ଼ ନିଦରେ ଶୋଇଥିଲୁ । ହେଲେ, ଭଗବାନଙ୍କୁ ସ୍ୱପ୍ନରେ ଦେଖିବା ବି ବହୁ ସୌଭାଗ୍ୟର କଥା । ଯା' ଚୁଲି ଜାଳିଦେ । ମୁଁ ଭାରି କ୍ଳାନ୍ତ ।

ଚମ୍ପା ଅଧୀର ହୋଇ କହିଲା, ନା ମା' ସ୍ୱପ୍ନ ନୁହେଁ । ମୁଁ ସଶରୀରେ ତାଙ୍କୁ ଦେଖିଛି । ଏଠି ନୁହେଁ, ଭଙ୍ଗା ମନ୍ଦିରରେ ।

ଚମ୍ପା ଆଦ୍ୟୋପାନ୍ତ ସବୁ କଥା କହିଗଲା । ଚମ୍ପାର ମା' ଚିନ୍ତିତ ଭାବରେ ତଳକୁ ଚାହିଁ ବସି ରହିଲେ । ଚମ୍ପା ସମସ୍ତ ଘଟଣାଟି ଏତେ ଟିକିନିଖି ବିବରଣୀ ସହ କହିଲା ଯେ ତା'ର ମା' ଘଟଣାଟିକୁ ସ୍ୱପ୍ନ ବୋଲି ବିଶ୍ୱାସ ଭାବିପାରିଲେ ନାହିଁ, କିନ୍ତୁ ସତ୍ୟ ବୋଲି ମଧ ତାଙ୍କର ପ୍ରତ୍ୟୟ ହେଲା ନାହିଁ ।

ଅନେକକ୍ଷଣ ଚିନ୍ତା କରିବା ପରେ ମା' କହିଲେ, - ତୋ କଥାଟି ସ୍ୱପ୍ନ ହେଉ ବା ସତ ହେଉ ମହାକାଞ୍ଚନ ଯେ ମହାଧାର୍ମିକ ଏଥିରେ ସନ୍ଦେହ ନାହିଁ । ଶୁଣିଛି, ସେ ଭାରି ଯୋଗୀ ମଧ । ସେ ଆଦେଶ ଦେଲେ ତୋର ଗୋଡ଼ ହୁଏତ ଭଲ ହୋଇଯାଇ ପାରେ । ଏମିତି ଅନେକ ଘଟିବାର ମୁଁ ଶୁଣିଛି ।

ଚମ୍ପା ଉତ୍ସାହ ପାଇ କହିଲା, - ମୁଁ ଶୁଣିଛି ମଧୁକକା ତା'ର ଭାରି ବନ୍ଧୁ । ଦୁହେଁ

ଏକା ସାଙ୍ଗରେ କୁଆଡ଼େ ତପସ୍ୟା କରିବାକୁ ଯାଇଥିଲେ । ମଧୁକକାକୁ କହିଲେ ସେ ମୋତେ ତାଙ୍କ ପାଖକୁ ନେଇଯିବେ ନାହିଁ ?

ମା' ବିରକ୍ତ ହୋଇ କହିଲ, - ଚୁପ୍‌କର, ମୋତେ ଭାବିବାକୁ ଦେ । ତୁ ମଧୁକୁ କିଛି କହିବୁ ନାହିଁ କି କାହାରିକି କିଛି କହିବୁ ନାହିଁ । ସେ ଖାଇସାରି ଟିକିଏ ସୁସ୍ଥ ହେବା ପରେ ମୁଁ ସୁବିଧା ଦେଖି ତାକୁ କହିବି । ଯା ଚୁଲି ଜାଳିଦେ ।

ମା'ର କାମରେ ଆଉ ମନ ଲାଗିଲା ନାହିଁ । ସଂସାରରେ ସେ ଅନେକ ଦୁଃଖ କଷ୍ଟ ଭିତର ଦେଇ ଆସିଛନ୍ତି । ମନର ସାହସ ସେ କେବେହେଁ ହରାଇ ନାହିଁ । ଯେତେବଡ଼ ବିପଦ ହେଉ ସେ ଧୀର ଭାବରେ ସହ୍ୟ କରି ଯାଇଛନ୍ତି । କିନ୍ତୁ ଏ ତ ବିପଦ ନୁହେଁ, ଗୋଟାଏ ଅଭାବନୀୟ ପରିସ୍ଥିତି । ଏହାକୁ ତାଙ୍କର ବୁଦ୍ଧି ପାଇଲା ନାହିଁ । କେତେବେଳେ ଭାବିଲେ ହୁଏତ ଗୋଡ଼ ପାଇଁ ବିବାହ ନ ହେବାରୁ ଚମ୍ପାର ମସ୍ତିଷ୍କ ବିକୃତି ଘଟିଛି, କେତେବେଳେ ଭାବିଲେ ହୁଏତ ସତ୍ୟ ବି ହୋଇପାରେ । ଏହିପରି ସଂଶୟ ମଧରେ ପଡ଼ି ସେ ମଧୁକରଙ୍କ ଆଗମନକୁ ଅପେକ୍ଷା କରି ରହିଲେ ।

କିଛି ସମୟ ପରେ ନିଜର ଗୋଟିଏ ନାଟକର ଏକ ଅଂଶ ଆବୃତ୍ତି କରୁ କରୁ ଟଳ ଟଳ ହୋଇ ମଧୁକର ପ୍ରବେଶ କଲେ । ଖାଇ ବସିବା ବେଳେ ସେ ଉତ୍ସବ ବିଷୟରେ ଚମ୍ପାକୁ ବିଶଦ ବିବରଣୀ ଦେବାକୁ ଯାଇ ମହାକାଞ୍ଚନ ଓ ମହାଶାଳ ବିଷୟରେ ଅନେକ କଥା କହିଲେ ।

## ୪

ସୋମଦତ୍ତ ସୁଖପଲ୍ଲୀର ଜଣେ ଅତି ଦରିଦ୍ର ବ୍ରାହ୍ମଣ । ସେ ମହା ପଣ୍ଡିତ, ନୈଷ୍ଠିକ ଓ ସତ୍ୟବାଦୀ । ସୋମଦତ୍ତଙ୍କ ସ୍ତ୍ରୀ କାତ୍ୟାୟନୀ ତିନୋଟି ପୁତ୍ର ସନ୍ତାନ ପ୍ରସବ କରିଥିଲେ; ମହାକାଞ୍ଚନ, ମହାଶାଳ ଓ ମହାସାର । ଭାରତରେ ସେତେବେଳେ ବୌଦ୍ଧଧର୍ମ ହିଁ ପ୍ରଧାନ ଧର୍ମ ଥିଲେ ହେଁ ସୋମଦତ୍ତ ସେ ଧର୍ମକୁ ଘୃଣାର ଚକ୍ଷୁରେ ଦେଖୁଥିଲେ । ଯେଉଁ ଧର୍ମ ବେଦର ପ୍ରାଧାନ୍ୟ ସ୍ୱୀକାର କରେ ନାହିଁ, ବ୍ରାହ୍ମଣକୁ ତା'ର ନ୍ୟାଯ୍ୟ ସମ୍ମାନ ଦିଏ ନାହିଁ, ସେ ଧର୍ମ ତାଙ୍କ ନିକଟରେ ଅତି ନିକୃଷ୍ଟ ଓ ସର୍ବଥା ବର୍ଜନୀୟ । ବୌଦ୍ଧ ରାଜ୍ୟର ସୁଖପଲ୍ଲୀର ଅଧିବାସୀମାନେ ବୌଦ୍ଧ ଥିଲେ କିନ୍ତୁ ସୋମଦତ୍ତ ଓ ଅନ୍ୟ କେତେକ ଏ ପର୍ଯ୍ୟନ୍ତ ସେ ଧର୍ମ ଗ୍ରହଣ କରିନାହାନ୍ତି ।

ସୋମଦତ୍ତଙ୍କ ଜ୍ୟେଷ୍ଠ ପୁତ୍ର ମହାକାଞ୍ଚନ ବାଲ୍ୟକାଳରୁ ଅସାଧାରଣ ମେଧାବୀ, ନିଷ୍ଠାବାନ୍ ଓ ଧାର୍ମିକ ଥିଲେ । ମହାକାଞ୍ଚନ ମଧ ବାଲ୍ୟକାଳରୁ ବୌଦ୍ଧ ଧର୍ମ ପ୍ରତି ବିଦ୍ୱେଷ ଭାବ ପୋଷଣ କରିବାକୁ ଲାଗିଲେ ।

ପିତାଙ୍କ ନିକଟରେ ସମସ୍ତ ଶାସ୍ତ୍ରାଧ୍ୟୟନ ଶେଷ କରିବା ସମୟରେ ତାଙ୍କୁ ବୟସ ମାତ୍ର କୋଡ଼ିଏ । ଏହି ସମୟରେ ସେ ମହର୍ଷି ପତଞ୍ଜଳିଙ୍କ ଯୋଗଦର୍ଶନର ନାମ ଶୁଣିବାକୁ ପାଇ ପିତାଙ୍କ ଅନୁମତି ନେଇ ଯୋଗ ଶିକ୍ଷାର୍ଥେ ପତଞ୍ଜଳିଙ୍କ ଆଶ୍ରମକୁ ଯାତ୍ରା କଲେ । ମଧୁକର ମହାକାଞ୍ଚନଙ୍କ ବାଲ୍ୟ ସାଥୀ । ସେ ବନ୍ଧୁ ମହାକାଞ୍ଚନଙ୍କୁ ଏ ସଂକଳ୍ପରୁ ନିବର୍ତ୍ତାଇବାକୁ ନାନା ଚେଷ୍ଟା କରିଥିଲେ । କିନ୍ତୁ ମହାକାଞ୍ଚନ ସଂକଳ୍ପରେ ଅଟଳ ଦେଖି, ଯେଉଁ ଦିନ ମହାକାଞ୍ଚନ ପତଞ୍ଜଳିଙ୍କ ଆଶ୍ରମକୁ ଯାତ୍ରା କଲେ ସେ ମଧ ତାଙ୍କ ସହିତ ଯାତ୍ରା କଲେ ।

ମହର୍ଷି ପତଞ୍ଜଳି ମହାକାଞ୍ଚନଙ୍କ ଦୀର୍ଘ, ସୁଠାମ, ତେଜୋଦୀପ୍ତ ରୂପ ଦେଖି ଦ୍ୱିଧା ନ କରି ତାଙ୍କୁ ଶିଷ୍ୟତ୍ୱରେ ବରଣ କଲେ ଏବଂ ମହାକାଞ୍ଚନଙ୍କ ଅନୁରୋଧରେ ମଧୁକରଙ୍କୁ ମଧ ଶିଷ୍ୟତ୍ୱରେ ଗ୍ରହଣ କଲେ । ମଧୁକର କିପରି ଅବସ୍ଥାରେ ଅଳ୍ପ ଦିନ ପରେ ଆଶ୍ରମରୁ ବିଦାୟ ନେଲେ ତାହା ପୂର୍ବରୁ ବର୍ଣ୍ଣିତ ହୋଇଅଛି ।

ମହାକାଞ୍ଚନଙ୍କ ମନଃସଂଯୋଗର ମଧ ଶକ୍ତି ଅସାଧାରଣ । ତାଙ୍କର ସଂକଳ୍ପ ମଧ ହିମାଳୟ ପରି ଅଟଳ । ଅହିଂସା, ସତ୍ୟନିଷ୍ଠା, ଅସ୍ତେୟ, ବ୍ରହ୍ମଚର୍ଯ୍ୟ, ଅପରିଗ୍ରହ ଏହି ପାଞ୍ଚ ପ୍ରକାର ଯମ ଅଭ୍ୟାସ କରିବା ସାଙ୍ଗେ ସାଙ୍ଗେ କ୍ଷିତି ଅପ୍ ତେଜ ମରୁତ୍ ବ୍ୟୋମ ଦ୍ୱାରା ବାହ୍ୟକ ଶୌଚ ଓ ଭାବଶୁଦ୍ଧି ଦ୍ୱାରା ଅନ୍ତଃଶୌଚ, ସନ୍ତୋଷ, ତପସ୍ୟା, ସ୍ୱାଧ୍ୟାୟ, ଈଶ୍ୱରଚିନ୍ତା ଏଇ ପାଞ୍ଚ ପ୍ରକାର ନିୟମ ପାଳନ କରିବାକୁ ଲାଗିଲେ ଏବଂ ପ୍ରତିପକ୍ଷ ଭାବନା, ମୈତ୍ରୀ, କରୁଣା, ମୁଦିତା ଓ ଉପେକ୍ଷା ଦ୍ୱାରା ଚିତ୍ତସଂଯମ ଅଭ୍ୟାସ କଲେ ।

ଦିନେ ମହାକାଞ୍ଚନ, ଗୁରୁଦେବଙ୍କ ସହ ବ୍ରାହ୍ମ ମୁହୂର୍ତ୍ତରେ ଅବଗାହନ କରିବାକୁ ଯିବା ସମୟରେ ଶୌଚ କ୍ରିୟା ପାଇଁ ଘନ ଅରଣ୍ୟ ମଧ୍ୟରେ ପ୍ରବେଶ କରନ୍ତେ ଏକ ମହାବଳ ବାଘ ତାହାଙ୍କୁ ଦେଖି ଧାବିତ ହେଲା । ମହାକାଞ୍ଚନ ସ୍ଥିର ଭାବରେ ଦଣ୍ଡାୟମାନ ହୋଇ ରହିଲେ । ବାଘ ନିକଟକୁ ଆସି ମହାକାଞ୍ଚନଙ୍କୁ ପ୍ରଦକ୍ଷିଣ କରି ତାଙ୍କ ଶରୀର ଆଘ୍ରାଣ କରି ଚାଲିଗଲା । ମହର୍ଷି ପତଞ୍ଜଳି ତାହା ଦେଖିବାକୁ ପାଇଥିଲେ ।

ମହାକାଞ୍ଚନ ପ୍ରତ୍ୟାବର୍ତ୍ତନ କରନ୍ତେ ମହର୍ଷି ତାଙ୍କୁ କହିଲେ, - ବତ୍ସ, ଯୋଗଭ୍ୟାସର ପ୍ରଥମ ସୋପାନ ପ୍ରକରଣ ଯମ, ଯମର ପ୍ରଥମ ସୋପାନ ଅହିଂସା । ସେଥିରେ ତୁମେ ସିଦ୍ଧ ହୋଇଅଛ, ତେଣୁ ତୁମ୍ଭଙ୍କୁ ହିଂସ୍ର ଜନ୍ତୁ ମଧ ହିଂସା କରୁନାହିଁ । ଏଥିରେ ତୁମ୍ଭେ ଆନନ୍ଦିତ ବା ବିସ୍ମିତ ହୁଅ ନାହିଁ । ପ୍ରକୃତ ପକ୍ଷେ ତୁମ୍ଭର ଯମ ଓ ନିୟମ ଏ ଦୁଇ ପ୍ରକରଣରେ ହିଁ ସିଦ୍ଧି ଲାଭ ହୋଇସାରିଛି । ବର୍ତ୍ତମାନ ତୁମ୍ଭେ ଆସନ ଆରମ୍ଭ କର । ପ୍ରଥମରେ ସ୍ଥିର ସୁଖାସନ । ଶରୀର ଓ ମନ ଅବିକମ୍ପିତ ଥିବ ଏବଂ କୌଣସି ପ୍ରକାର ଆୟାସ ବା କଷ୍ଟ ଶରୀରକୁ ଆସୁନଥିବ, ଏହି ରୂପ ଉପବେଶନର ନାମ ସୁଖାସନ ।

ଅଳ୍ପ କାଳ ମଧରେ ମହାକାଞ୍ଚନଙ୍କ ଆସନ ସିଦ୍ଧି ହେଲା । ଶୀତ ଗ୍ରୀଷ୍ମାଦି ଦ୍ୱାରା ତାଙ୍କର ଶରୀର ଆଉ ଆହତ ହେଲା ନାହିଁ । ଅତଃପର ମହର୍ଷି ତାଙ୍କୁ ପ୍ରାଣାୟାମ ଶିକ୍ଷା

ଦେବାକୁ ଲାଗିଲେ । ମହାକାଞ୍ଚନ ଆସନରେ ଉପବେଶନ କରି ଶ୍ୱାସ ପ୍ରଶ୍ୱାସର ଗତି ବିଚ୍ଛିନ୍ନ କରିବା ଅଭ୍ୟାସ କଲେ । କ୍ରମେ କ୍ରମେ ଦଣ୍ଡ, ଦିନ, ମାସ ଓ ଶେଷକୁ ବର୍ଷ କାଳ ପର୍ଯ୍ୟନ୍ତ ନିଃଶ୍ୱାସ ରୋଧ କରିବାକୁ ମହାକାଞ୍ଚନ ସମର୍ଥ ହେଲେ ।

ଦିନେ ମହାକାଞ୍ଚନ ଆସନରେ ବସି ପ୍ରାଣାୟାମ କରୁ କରୁ ଦେଖିଲେ ଏକ ଅପୂର୍ବ ଜ୍ୟୋତି । ମହାକାଞ୍ଚନଙ୍କର ସମସ୍ତ ଶରୀର ରୋମାଞ୍ଚିତ ହୋଇଉଠିଲା । ସେ ଅପାର ଆନନ୍ଦ ଓ ବିସ୍ମୟରେ ସେ ଜ୍ୟୋତିକୁ ଚାହିଁ ରହିଲେ । ମହାକାଞ୍ଚନଙ୍କର ମନେ ହେଲା ତାଙ୍କ ଶରୀରରେ ଯେପରି ଶତ ସିଂହର ଶକ୍ତି । ମହାକାଞ୍ଚନ ଆନନ୍ଦରେ ଆସନ ତ୍ୟାଗ କରି ଦଣ୍ଡାୟମାନ ହେଲେ । ଏତେ ଦିନେ ତାଙ୍କର ଅଭୀଷ୍ଟ ସିଦ୍ଧ ହୋଇଅଛି ଭାବି ସେ ପୁଲକିତ ହେଲେ ।

ଏହି ସମୟରେ ପତଞ୍ଜଳି ସେଠାରେ ଉପସ୍ଥିତ ହୋଇ କହିଲେ, - ବତ୍ସ, ଯୋଗର ପ୍ରତ୍ୟେକ ପ୍ରକରଣ ସିଦ୍ଧି ସମୟରେ ଯେଉଁ ସବୁ ଫଳ ପ୍ରାପ୍ତି ହୁଏ ସେଗୁଡ଼ିକ ଉପସର୍ଗ ଓ ଉପଦ୍ରବ ମାତ୍ର ବୋଲି ଜ୍ଞାନ କରିବ । ସେଗୁଡ଼ିକ ଯୋଗର ପରାକାଷ୍ଠା ସମାଧିର ଶତ୍ରୁ । ସୁତରାଂ ଯୋଗ ସମୟରେ ସେ ସବୁ ଫଳ ଆଗମନ ହେଲେ ସେଥିରେ ବିସ୍ମିତ ଓ ପୁଲକିତ ହେବା କିମ୍ବା ସେ ସବୁ ସ୍ୱୀକାର କରି ସନ୍ତୁଷ୍ଟ ହେବା କୈବଲ୍ୟକାମୀ ଯୋଗୀର କର୍ତ୍ତବ୍ୟ ନୁହେଁ । ତୁମର ପ୍ରାଣାୟାମ ଏ ପର୍ଯ୍ୟନ୍ତ ଉତ୍ତମ ରୂପେ ସିଦ୍ଧ ହୋଇ ନାହିଁ । ଯୋଗର ଅନ୍ତ୍ୟପ୍ରକରଣ ସମାଧି ବହୁ ଦୂରରେ ଅଛି । ପ୍ରାଣାୟାମ ପରେ ପ୍ରତ୍ୟାହାର, ତା'ପରେ ଧାରଣା, ତା'ପରେ ଧ୍ୟାନ ଏବଂ ତା'ପରେ ସମାଧି । ସମାଧି ପୁଣି ଛଅ ପ୍ରକାର - ସବିତର୍କ, ନିର୍ବିତର୍କ, ସବିଚାର, ନିର୍ବିଚାର, ଆନନ୍ଦ ଓ ଅସ୍ମିତ । ତୁମ୍ଭେ ଏତେବେଳୁ ଆନନ୍ଦରେ ଅଧୀର ହେଲେ ଲକ୍ଷ୍ୟଭ୍ରଷ୍ଟ ହେବ । ଯୋଗର ଲକ୍ଷ୍ୟ ଚିତ୍ତବୃତ୍ତିର ଲୋପ ସାଧନ କରି ପ୍ରଜ୍ଞା ଦ୍ୱାରା ସୃଷ୍ଟିର ସତ୍ୟ ଉପଲବ୍ଧି କରି ଆତ୍ମା ସହିତ ମିଳିତ ହେବା । ବିଭୂତି ଏଥିପାଇଁ ଏକ ପନ୍ଥା ମାତ୍ର, ଲକ୍ଷ୍ୟ ନୁହଁ ।

ମହାକାଞ୍ଚନ କିନ୍ତୁ ଲକ୍ଷ୍ୟଭ୍ରଷ୍ଟ ହେଲେ । ତାଙ୍କର ମନ ହଠଯୋଗ ପ୍ରତି ଆକୃଷ୍ଟ ହେଲା । ହଠଯୋଗ ଦ୍ୱାରା ନିଜର ଶକ୍ତି ବୃଦ୍ଧି କରି ସେ ବୌଦ୍ଧଧର୍ମ ଲୋପ କରି ବ୍ରାହ୍ମଣ୍ୟ ଧର୍ମର ପୁନରୁତ୍ଥାନ ପାଇଁ ବ୍ୟଗ୍ର ହୋଇ ପଡ଼ିଲେ । ମହାକାଞ୍ଚନ ପୂର୍ଣ୍ଣ ପ୍ରାଣରେ ବିଶ୍ୱାସ କରୁଥିଲେ ଯେ ବେଦନିର୍ଦ୍ଦିଷ୍ଟ ଧର୍ମ ହିଁ ଏକମାତ୍ର ଧର୍ମ । ବେଦର ପନ୍ଥା ହିଁ ଏକମାତ୍ର ପନ୍ଥା ଏବଂ ବେଦର ସତ୍ୟ ହିଁ ଏକମାତ୍ର ସତ୍ୟ । ଜଗତର କଲ୍ୟାଣ କେବଳ ବେଦ ଦ୍ୱାରା ହିଁ ସାଧିତ ହେବ । ଅନ୍ୟ ଧର୍ମ ଜଗତର ଅକଲ୍ୟାଣକର ।

ପ୍ରିୟ ଶିଷ୍ୟର ପରିବର୍ତ୍ତନ ଦେଖି ମହର୍ଷି ପତଞ୍ଜଳି ବ୍ୟଥିତ ହେଲେ । ଏହା ପରେ ମହାକାଞ୍ଚନ ପତଞ୍ଜଳିଙ୍କ ଆଶ୍ରମ ପରିତ୍ୟାଗ କରି ନିକଟସ୍ଥ ପାଟଳିପୁତ୍ର ନଗରୀକୁ ଆସିଲେ । ତାହା ପରଠୁ ଏଥି ମଧ୍ୟରେ ଦୀର୍ଘ ଆଠ ବର୍ଷ ବିତି ଯାଇଛି ।

ମହାକାଞ୍ଚନ ପତଞ୍ଜଳିଙ୍କ ଆଶ୍ରମ ତ୍ୟାଗ କରି ପାଟଳିପୁତ୍ର ଗଲାବେଳକୁ ମୌର୍ଯ୍ୟ ବଂଶର ଶେଷ ରାଜା ଅଶୋକଙ୍କ ପ୍ରପୌତ୍ର ବୃହଦ୍ରଥ ରାଜତ୍ୱ କରୁଥିଲେ । ବୃହଦ୍ରଥ ବୌଦ୍ଧ । ବୌଦ୍ଧ ଧର୍ମ ସେତେବେଳେ ଶୋଚନୀୟ ଆକାର ଧାରଣ କରିଥିଲା । ବୃହଦ୍ରଥ ସୁରା ଓ ଭିକ୍ଷୁଣୀମାନଙ୍କ ସହିତ ବିକୃତ କଦାଚାରଣରେ କାଳାତିପାତ କରିବାକୁ ଲାଗିଲେ । ମହାକାଞ୍ଚନ ପାଟଳିପୁତ୍ର ଆସି ସମସ୍ତ ସମ୍ବାଦ ସଂଗ୍ରହ କଲେ ।

ଦିନେ ପ୍ରାତଃ କାଳରେ ଗଙ୍ଗାସ୍ନାନ କରିବା ସମୟରେ ବୃଦଦ୍ରଥଙ୍କର ବ୍ରାହ୍ମଣ ସେନାପତି ପୁଷ୍ୟମିତ୍ର ତାଙ୍କ ନିକଟରେ ସ୍ନାନ କରିବାକୁ ଲାଗିଲେ । ମହାକାଞ୍ଚନ ସ୍ନାନ ସମାପନ କରି ଉଠିବା ସମୟରେ ପୁଷ୍ୟମିତ୍ରଙ୍କର ପାଦ ସଂଚାଳନ ଦ୍ୱାରା ଉଦ୍‌ଥିତ ଜଳ ଦୈବାତ୍ ମହାକାଞ୍ଚନଙ୍କ ଉପରେ ପଡ଼ିଲା । ମହାକାଞ୍ଚନ ରୋଷାନ୍ୱିତ ହୋଇ କହିଲେ, - ରେ ରେ ବୌଦ୍ଧ ନାସ୍ତିକ, ତୁ ବ୍ରାହ୍ମଣକୁ ଅସମ୍ମାନ କରୁଛୁ, ସାବଧାନ !

ପୁଷ୍ୟମିତ୍ର ଅବଜ୍ଞା ଭରି ହସି କହିଲେ, - ମହାଶୟ, ମୁଁ ବୌଦ୍ଧ ନୁହେଁ, ନାସ୍ତିକ ମଧ ନୁହେଁ । ମୁଁ ମଧ ବ୍ରାହ୍ମଣ । ଅତଏବ ଆପଣ ମଧ ସାବଧାନ ହୁଅନ୍ତୁ । ଆପଣ ବୋଧହୁଏ ନବାଗତ, ତେଣୁ ମୋର ପରିଚୟ ଆପଣ ଜ୍ଞାତ ନୁହନ୍ତି । ମୁଁ ମଗଧ ସେନାପତି ପୁଷ୍ୟମିତ୍ର ।

ମହାକାଞ୍ଚନ ପୁଷ୍ୟମିତ୍ରଙ୍କୁ କିପରି ସାକ୍ଷାତ କରିବେ ମନେ ମନେ ଚିନ୍ତା କରୁଥିଲେ । ପୁଷ୍ୟମିତ୍ରଙ୍କର ପରିଚୟ ପାଇ ତାଙ୍କୁ କିଛିକ୍ଷଣ ତୀକ୍ଷଣ ଦୃଷ୍ଟିରେ ଚାହିଁ ରହି କହିଲେ, - ବତ୍ସ, ତୁମେ ବ୍ରାହ୍ମଣ ବୋଲି ଆଉ ପରିଚୟ ଦିଅନା । ତୁମେ ଯଦି ବ୍ରାହ୍ମଣ ହୋଇଥାନ୍ତ ତେବେ ମଗଧରେ ଆଜି ଗୋଟିଏ ସୁଦ୍ଧା ବୌଦ୍ଧ ନଥାନ୍ତେ । ତୁମେ ଆଜି ରାତ୍ର ଦ୍ୱିପ୍ରହର ସମୟରେ ନଗରୀର ପର୍ବୋପାନ୍ତସ୍ଥ ମୋର ଆଶ୍ରମକୁ ଆସିବ, ସବିଶେଷ କଥା ଅଛି । ଏହା କହି ମହାକାଞ୍ଚନ ଆଶ୍ରମକୁ ପ୍ରତ୍ୟାବର୍ତ୍ତନ କଲେ ।

ପୁଷ୍ୟମିତ୍ର ନାନା ରାଜକାର୍ଯ୍ୟରେ ବ୍ୟସ୍ତ ଥାଇ ଏ କ୍ଷୁଦ୍ର ଘଟଣାଟି ଭୁଲିଗଲେ । କିନ୍ତୁ ସନ୍ଧ୍ୟାଗମେ ରାଜକାର୍ଯ୍ୟ ସମାପନ ହୁଅନ୍ତେ ନିଜର ପ୍ରାସାଦକୁ ପ୍ରତ୍ୟାବର୍ତ୍ତନ କରିବା ସମୟରେ ସିଂହଦ୍ୱାର ନିକଟରେ ମୁହୂର୍ତ୍ତକ ପାଇଁ ସେ ଯେପରି ସେଇ ତେଜୋଦୀପ୍ତ ଦୀର୍ଘକାୟ ସୁଠାମ ବ୍ରାହ୍ମଣ ମହାକାଞ୍ଚନଙ୍କୁ ଦେଖିବାକୁ ପାଇଲେ । ନିଜର କକ୍ଷକୁ ପ୍ରବେଶ କରି ସେ ପୁଣି ସେ କଥା ଭୁଲିଗଲେ । କିନ୍ତୁ ରାତ୍ରି ଦ୍ୱିପ୍ରହର ଆଗତ୍ ହୁଅନ୍ତେ କିଏ ଯେପରି ପ୍ରାସାଦ ବାହାରରୁ ତାଙ୍କୁ ଆକୃଷ୍ଟ କଲା । ସେ ଆକର୍ଷିତ ଭାବରେ ମହାକାଞ୍ଚନଙ୍କ ଆଶ୍ରମକୁ ଗଲେ । ଆଶ୍ରମ ମଧ୍ୟରେ ଅନେକ ସମୟ ପର୍ଯ୍ୟନ୍ତ ଦୁହିଁଙ୍କର କି ଆଲୋଚନା ହେଲା ଜାଣିବା ଅସମ୍ଭବ । ଆଲୋଚନାନ୍ତେ ମହାକାଞ୍ଚନ ପୁଷ୍ୟମିତ୍ରଙ୍କୁ ବିଦାୟ ଦେବା ସମୟରେ କହିଲେ ବତ୍ସ, ମହାତ୍ମା ପାଣିନିଙ୍କୁ କେବଳ ବୈୟାକରଣ ବୋଲି ଜ୍ଞାନ କରିବ ନାହିଁ, ତାଙ୍କର ପ୍ରତ୍ୟେକ ବ୍ୟାକରଣସୂତ୍ରର ନିଗୂଢ଼ ଅର୍ଥ ଅଛି । ତାଙ୍କର 'ନିପାତନେ ସିଦ୍ଧିଃ' ସୂତ୍ରଟି ସର୍ବଦା ସ୍ମରଣ ରଖିଥିବ ।

ଏହାର ପ୍ରାୟ ସପ୍ତାହକାଳ ପରେ ଦିନେ ପୁଷ୍ୟମିତ୍ର ବୃହଦ୍ରଥଙ୍କୁ ନିବେଦନ ଜଣାଇ କହିଲେ - ମହାରାଜ, ଗୁପ୍ତଚର ମୁଖରୁ ସମ୍ବାଦ ପାଇଛି । କଳିଙ୍ଗାଧିପତି ଖାରବେଳ ମଗଧ ଆକ୍ରମଣ କରିବାକୁ ସଜ୍ଜିତ ହେଉଅଛନ୍ତି । ଯେକୌଣସି ମୁହୂର୍ତ୍ତରେ କଳିଙ୍ଗର ଦୁର୍ଦ୍ଧର୍ଷସେନା ପାଟଳିପୁତ୍ର ଦ୍ୱାରଦେଶରେ ଉପସ୍ଥିତ ହୋଇପାରନ୍ତି । ପୁଣି ଉତ୍ତର ଆଡୁ ଯବନରାଜ ଦତ୍ତମିତ୍ର * ମଗଧ ଆକ୍ରମଣ କରିବାକୁ ମନସ୍ଥ କରିବାର ସମ୍ବାଦ ମିଳେ । ଦତ୍ତମିତ୍ରଙ୍କ ସେନା ଗ୍ରୀସୀୟ ପଦ୍ଧତିରେ ଶିକ୍ଷିତ ହେଲେ ମଧ ତାଙ୍କୁ ଭୟ କରିବାର ବିଶେଷ କିଛି ନାହିଁ । କିନ୍ତୁ କଳିଙ୍ଗାଧିପତି ଖାରବେଳ କର୍ଣ୍ଣାଟ ରାଜ ସାତକର୍ଣ୍ଣିଙ୍କୁ ପରାଜିତ କରି, ରାଷ୍ଟ୍ରିକ ଓ ଭୋଜକମାନଙ୍କୁ ପଦାନତ କରି, ଦାକ୍ଷିଣାତ୍ୟରେ ମୂଷିକମାନଙ୍କର ନଗରରେ ଭୟ ସଂଚାର କରାଇ ଉତ୍ତରଭାରତ ଜୟ ନିମିତ୍ତ ରଣସଜ୍ଜା କରୁଅଛନ୍ତି । ଖାରବେଳ ପ୍ରବଳ ପରାକ୍ରମୀ । ଅତଏବ, ମହାରାଜ, ଏଇ ମୁହୂର୍ତ୍ତରେ ମଗଧ ସେନା ପ୍ରସ୍ତୁତ କରିବା ଆବଶ୍ୟକ । ସୈନ୍ୟମାନଙ୍କୁ ଉତ୍ସାହ ଦେବାପାଇଁ ମୁଁ ନିବେଦନ କରୁଛି ଦେବପାଦ ମହାରାଜ କାଲି ପ୍ରାତଃକାଳରେ ସୈନ୍ୟ ସମାବେଶ ପର୍ଯ୍ୟବେକ୍ଷଣ କରିବା ନିମିତ୍ତ ବିଜେ କରିବା ହେବେ ।

ବୃହଦ୍ରଥ ଭୀତ ତ୍ରସ୍ତ ହୋଇ ସେନାପତିଙ୍କ ପ୍ରସ୍ତାବରେ ତତ୍‌କ୍ଷଣାତ୍ ସମ୍ମତି ପ୍ରଦାନ କଲେ । ବୃହଦ୍ରଥ ସୈନ୍ୟମାନଙ୍କ ସହିତ ଆଦୌ ପରିଚିତ ନୁହନ୍ତି । ସେନାପତି ପୁଷ୍ୟମିତ୍ର ତେଣୁ ମଗଧସେନାର ଅତ୍ୟନ୍ତ ପ୍ରିୟ ଥିଲେ । ପରଦିନ ସକାଳେ ବୃହଦ୍ରଥ ମହା ସମାରୋହରେ ସୈନ୍ୟ ସମାବେଶ ପର୍ଯ୍ୟବେକ୍ଷଣ କରିବାକୁ ଆସିଲେ । ଅନତିଦୂରରେ ମହାକାଞ୍ଚନ ଅନ୍ୟାନ୍ୟ କୁତୂହଳୀ ନାଗରିକମାନଙ୍କ ସହ ଦଣ୍ଡାୟମାନ ହୋଇ ସୈନ୍ୟ ସମାବେଶ ଦେଖୁଅଛନ୍ତି । କିନ୍ତୁ ନିରୀକ୍ଷଣ କଲେ ଦେଖା ଯିବ ତାଙ୍କର ଆଖିଯୋଡ଼ିକ ଯେପରି ଅପଲକ ଦୃଷ୍ଟିରେ ବୃହଦ୍ରଥ ଓ ପୁଷ୍ୟମିତ୍ରଙ୍କର ପ୍ରତ୍ୟେକ ଗତିବିଧି ଲକ୍ଷ କରୁଛି ।

ମହାରାଜ ବୃହଦ୍ରଥ ଯେତେବେଳେ ପର୍ଯ୍ୟବେକ୍ଷଣ ସମାପନାନ୍ତେ ସୈନ୍ୟ ଓ ନାଗରିକମାନଙ୍କର 'ଜୟ ମହାରାଜ ବୃହଦ୍ରଥଙ୍କର ଜୟ' ବିପୁଳ ଧ୍ୱନି ଭିତରେ ନିଜର ଶିବିରକୁ ପ୍ରତ୍ୟାବର୍ତ୍ତନ କରିବାକୁ ଅଗ୍ରସର ହେଲେ ସେତେବେଳେ ମହାକାଞ୍ଚନ ହଠାତ୍ ହସ୍ତୋତ୍ତୋଳନ କଲେ । ମୁହୂର୍ତ୍ତକ ମଧ୍ୟରେ ବୃହଦ୍ରଥଙ୍କର ମସ୍ତକ ପୁଷ୍ୟମିତ୍ରଙ୍କର ଶାଣିତ ଖଡ୍‌ଗରେ ସ୍କନ୍ଧଚ୍ୟୁତ ହେଲା । ସୈନ୍ୟମାନେ ଚିତ୍‌କାର କରି ଉଠିଲେ 'ଜୟ ମହାରାଜ ପୁଷ୍ୟମିତ୍ରଙ୍କର ଜୟ' । ନାଗରିକମାନଙ୍କ ମଧ୍ୟରୁ ମହାକାଞ୍ଚନ ମଧ ଚିତ୍‌କାର କରି କହିଲେ, - 'ଜୟ ମହାରାଜ ପୁଷ୍ୟମିତ୍ରଙ୍କର ଜୟ' । ନାଗରବାସୀମାନେ ଆଖି ଆଗରେ ଏଇ ଆକସ୍ମିକ ରାଜ ହତ୍ୟାରେ ସ୍ତମ୍ଭିତ ହୋଇ ଯାଇଥିଲେ । ମହାକାଞ୍ଚନ ବାରମ୍ବାର ପୁଷ୍ୟମିତ୍ରଙ୍କର ଜୟଧ୍ୱନି କରିବାରୁ ସେମାନେ ମଧ ଭୀତତ୍ରସ୍ତ ଭାବରେ 'ଜୟ ମହାରାଜ ପୁଷ୍ୟମିତ୍ରଙ୍କର ଜୟ' ବୋଲି ଚିତ୍କାର କରି ଉଠିଲେ ।

ଏହାପରେ ମହାକାଞ୍ଚନ ନାଗରିକମାନଙ୍କ ମଧ୍ୟରୁ ଧୀର ଦୃଢ଼ ପଦକ୍ଷେପରେ ଆସି ବୃହଦ୍ରଥଙ୍କର ରକ୍ତ ନେଇ ପୁଷ୍ୟମିତ୍ରଙ୍କ କପାଳରେ ରାଜ ତିଳକ ଅଙ୍କିତ କରି ଆଶୀର୍ବାଦ କଲେ ।

ପୁଷ୍ୟମିତ୍ର ଏହା ପରେ ନିଜକୁ ମଗଧାଧିପତି ବୋଲି ଘୋଷଣା କଲେ ଏବଂ ମହାକାଞ୍ଚନଙ୍କୁ ରାଜଗୁରୁ ଓ ପ୍ରଧାନ ମନ୍ତ୍ରୀ ପଦରେ ବରଣ କରି ବନ୍ଦନା କଲେ । ମହାକାଞ୍ଚନ ଏହା ପରେ ଗୋଟିଏ କ୍ଷୁଦ୍ର ଭାଷଣରେ ବେଦର ମାହାତ୍ମ୍ୟ ବୁଝାଇ ରାଜ ହତ୍ୟା ଦ୍ୱାରା ଏକ ନୂତନ ଯୁଗ ସୃଷ୍ଟି ହେଲା ବୋଲି ଘୋଷଣା କଲେ । ସଭା ପରେ ମହାକାଞ୍ଚନ ଅଶ୍ୱମେଧ ଯଜ୍ଞର ଆୟୋଜନ କରିବାକୁ ଘୋଷଣା କଲେ । ନାଗରିକମାନେ ବୌଦ୍ଧ, ସେମାନେ ଏ ଯଜ୍ଞାନୁଷ୍ଠାନ କଥା ବୁଝି ପାରିଲେ ନାହିଁ, କେବଳ ମହାକାଞ୍ଚନଙ୍କର ଅଚଞ୍ଚଳ ଶାନ୍ତ ଭାବ ଦେଖି କିଞ୍ଚିତ୍ ଆଶ୍ୱସ୍ତ ହୋଇ ନିଜ ନିଜ ଘରକୁ ଫେରିଗଲେ ।

## ୬

ପୁଷ୍ୟମିତ୍ର ମଗଧ ସିଂହାସନକୁ ଆରୋହଣ କରି ନିଜକୁ ପୁଷ୍ୟମିତ୍ର ସୁଙ୍ଗ ରୂପେ ଘୋଷଣା କରି ରାଜ୍ୟ ଶାସନ କରିବାକୁ ଲାଗିଲେ । କିନ୍ତୁ ସ୍ଥାନେ ସ୍ଥାନେ ବୌଦ୍ଧ ବିଦ୍ରୋହ ଦମନ ଓ ଯବନରାଜ ଦତ୍ତମିତ୍ରଙ୍କ ମଗଧ ଆକ୍ରମଣ ପ୍ରତିରୋଧରେ ବ୍ୟାପୃତ ରହିବାରୁ ଅଶ୍ୱମେଧ ଯଜ୍ଞ ଆରମ୍ଭ କରିବା ସମ୍ଭବପର ହେଲା ନାହିଁ । ପୁଷ୍ୟମିତ୍ରଙ୍କର ସିଂହାସନାରୋହଣର ତୃତୀୟ ବର୍ଷରେ ଦିନେ ଫାଲ୍‌ଗୁନ ମାସର ଶୁକ୍ଳ ପକ୍ଷ ଅଷ୍ଟମୀ ତିଥିରେ ଅଶ୍ୱମେଧ ଯଜ୍ଞ ଆରମ୍ଭ ହେଲା । ପୁରୋହିତମାନଙ୍କ ପାଇଁ ପ୍ରକାଣ୍ଡ ପାତ୍ରମାନଙ୍କରେ ବ୍ରହ୍ମାଣ୍ଡାନ୍ନ ପାକ ହେବାକୁ ଲାଗିଲା । ଚାରି ସହସ୍ର ଗାଭୀ ଓ ପୁଷ୍ୟମିତ୍ର ନାମାଙ୍କିତ ଚାରିଶତ ସ୍ୱର୍ଣ୍ଣମୁଦ୍ରା ପୁରୋହିତମାନଙ୍କୁ ବିତରିତ ହେଲା । ପୁଷ୍ୟମିତ୍ର ବହୁରତ୍ନଖଚିତ ପରିଚ୍ଛଦ ପରିଧାନ କରି ଚାରି ମହିଷୀଙ୍କ ସହ ଯଜ୍ଞ କାର୍ଯ୍ୟ ପର୍ଯ୍ୟବେକ୍ଷଣ କରିବାକୁ ଲାଗିଲେ । ପ୍ରତ୍ୟେକ ମହିଷୀଙ୍କର ଶତାଧିକ ପରିଚାରିକା ମଧ୍ୟ ସେମାନଙ୍କର ଅନୁଗମନ କରିବାକୁ ଲାଗିଲେ । ଖୌଲ୍ଲିକ, ଗୌଲ୍ମିକ, ମହାଧର୍ମାଧ୍ୟକ୍ଷ, ମହାମୁଦ୍ରାଧିକୃତ, ଉପରିକ, ବୃହଦ୍‌ଉପରିକ, ମହାମାତ୍ୟ, ରହସ୍ୟାଧିକୃତ ଠାରୁ ଆରମ୍ଭ କରି ଜ୍ୟେଷ୍ଠ କାୟସ୍ଥ, କରଣ, ଦିବିରପତି ଆଦି କର୍ମଚାରୀମାନେ ମଧ୍ୟ ମହାରାଜଙ୍କ ଅନୁଗମନ କରିବାକୁ ଲାଗିଲେ । ସନ୍ଧ୍ୟା ପରେ ଅଗ୍ନିହୋତ୍ର ନାମକ ପ୍ରାତ୍ୟହିକ ହୋମ ସମାପନାନ୍ତେ ମହାରାଜ ପୁଷ୍ୟମିତ୍ର ଉତ୍ତର ଦିଗକୁ ମୁହଁ କରି ଗାର୍ହପତ୍ୟ ଅଗ୍ନି ନିକଟରେ ଦ୍ୱିତୀୟ ମହିଷୀଙ୍କ ଦୁଇ ଜାନୁ ମଧ୍ୟରେ ଉପବେଶନ କରି ବ୍ରହ୍ମଚର୍ଯ୍ୟ ପାଳନ କରି ସମସ୍ତ ରାତ୍ରି ଯାପନ କଲେ ।

ପରଦିନ ପ୍ରଭାତରେ ଗୋଟିଏ ଉତ୍କୃଷ୍ଟ ଅଶ୍ୱ ଆନୀତ ହେଲା । ଅଶ୍ୱର ବଲ୍‌ଗାରେ ପୂର୍ବଦିନ ପୁରୋହିତମାନଙ୍କ ପାଇଁ ପାକ ହୋଇଥିବା ବ୍ରହ୍ମାଣ୍ଡୋନ୍ନ ପ୍ରଲେପ କରି ବଲ୍‌ଗାଟି ଅଶ୍ୱକୁ ପିନ୍ଧାଇ ତାହାକୁ ଗୋଟିଏ ନିର୍ମଳ ପୁଷ୍କରିଣୀରେ ସ୍ନାନ କରାଇ ଅଣାହେଲା । ଏହା ପରେ ଜଣେ ଶୂଦ୍ର ଗୋଟିଏ ଚତୁରକ୍ଷ କୁକୁରକୁ ସିନ୍ଧ୍ରକ କାଷ୍ଠ ଦ୍ୱାରା ହତ୍ୟା କରି ତାହାକୁ ଅଶ୍ୱର ପେଟ ତଳେ କୁଶାସନରେ ରଖିଲା । ମହାରାଜ ମନ୍ତ୍ରୋଚ୍ଚାରଣ କରିବାକୁ ଲାଗିଲେ । ଅଶ୍ୱଟିକୁ ଶୁଷ୍କ କରିବା ପାଇଁ ଅଗ୍ନି ନିକଟକୁ ନିଆ ଗଲା ଏବଂ ପୁରୋହିତମାନେ ମନ୍ତ୍ରୋଚ୍ଚାରଣ କରିବାକୁ ଲାଗିଲେ । ଅଶ୍ୱଟି ସମ୍ପୂର୍ଣ୍ଣ ଶୁଷ୍କ ହେବା ପରେ ସବିତୃଦେବଙ୍କ ଉଦ୍ଦେଶ୍ୟରେ ପୁରୋଡାଶ ନିକ୍ଷିପ୍ତ ହେବାକୁ ଲାଗିଲା ଏବଂ ପ୍ରତ୍ୟେକ ନିକ୍ଷେପ ସହିତ ପୁରୋହିତମାନେ ଶତ ସ୍ୱର୍ଣ୍ଣମୁଦ୍ରା ପ୍ରାପ୍ତ ହେବାକୁ ଲାଗିଲେ । ତୃତୀୟ ନିକ୍ଷେପ ଠାରେ ଅଶ୍ୱଟିକୁ ଉତ୍ତର-ପୂର୍ବ ଦିଗକୁ ମୁକ୍ତ କରାଗଲା ଏବଂ ଉକ୍ତ ଅଶ୍ୱ ସହିତ ଶତ ଗୋଟି ଅଶ୍ୱ ମଧ ଛାଡ଼ି ଦିଆଗଲା । ଅଶ୍ୱକୁ ରକ୍ଷା କରିବା ପାଇଁ ବହୁ ସୈନ୍ୟ ଅଶ୍ୱର ଅନୁଗମନ କଲେ । ଏମାନଙ୍କ ସହିତ ରାଜଗୁରୁ ମହାକାଞ୍ଚନ ମଧ ଯାତ୍ରା କଲେ ।

ଏହାପରେ ଯଜ୍ଞବେଦୀର ଦକ୍ଷିଣ ଦିଗରେ ସ୍ୱର୍ଣ୍ଣସିଂହାସନରେ ମହାରାଜ ଉପବେଶନ କଲେ ଏବଂ ତାଙ୍କ ନିକଟରେ ହୋତା, ଅଧ୍ୱର୍ଯ୍ୟୁ ଓ ଉଦ୍‌ଗାତାମାନେ ମଧ ଉପବେଶନ କଲେ । ଭାଟମାନେ ପ୍ରତ୍ୟହ·ପାରିପ୍ଲବ ଗାନ କରିବାକୁ ଲାଗିଲେ ଏବଂ ନାନା ବାଦ୍ୟ ସହ ନୃତ୍ୟଗୀତ ହେବାକୁ ଲାଗିଲା ।

ଅଶ୍ୱମେଧର ଅଶ୍ୱ ମହାକୋଶଳ, ଅଙ୍ଗ, ବଙ୍ଗ, ଅଯୋଧ୍ୟା ଆଦି ଦେଶ ନିର୍ବିଘ୍ନରେ ଭ୍ରମଣ କରି ଏକ ବର୍ଷ ପରେ କଳିଙ୍ଗର ଅନ୍ତର୍ଗତ ବୌଦ୍ଧରାଜ୍ୟରେ ସୁଖିପଲ୍ଲୀର ଅରଣ୍ୟରେ ପ୍ରବେଶ କଲା । ଏହି ସମୟରେ ସୋମଦତ୍ତଙ୍କ ମଧ୍ୟମ ପୁତ୍ର ମହାଶାଳ କଳିଙ୍ଗାଧିପତି ଖାରବେଳଙ୍କ ରାଜପାଦମୂଳିକ ଥିଲେ । ସେ ଏକଶତ ମାତ୍ର ସୈନ୍ୟ ସହ କଳିଙ୍ଗର ଉତ୍ତର ସୀମାକୁ ଗମନ କରୁଥିବା ସମୟରେ ପୁଷ୍ୟମିତ୍ରଙ୍କ ଅଶ୍ୱମେଧର ଅଶ୍ୱ, ସହସ୍ରାଧିକ ସେନାନୀ ଓ ଜ୍ୟେଷ୍ଠଭ୍ରାତା ମହାକାଞ୍ଚନଙ୍କୁ ଦେଖିଲେ ।

ଏହି ଅବସରରେ ମହାଶାଳଙ୍କ ପୂର୍ବବୃତ୍ତାନ୍ତ ସହିତ ପାଠକପାଠିକାଙ୍କ ଯତ୍‌କିଞ୍ଚିତ୍ ପରିଚୟ ହେବା ଆବଶ୍ୟକ ।

ମହାଶାଳ ମହାକାଞ୍ଚନଙ୍କ ଠାରୁ ଦୁଇ ବର୍ଷ ସାନ । ଜନ୍ମ ଦିନରୁ ତାଙ୍କୁ ବିଶାଳକାୟ ଦେଖି ସୋମଦତ୍ତ ତାଙ୍କର ନାମ ମହାଶାଳ ରଖିଥିଲେ । ମହାକାଞ୍ଚନଙ୍କ ପରି ସେ ମଧ ମେଧାବୀ ଥିଲେ । କିନ୍ତୁ ବାଲ୍ୟକାଳରୁ ତାଙ୍କର ମନ ଶାସ୍ତ୍ର ଆଡ଼େ ନଯାଇ ଶସ୍ତ୍ର ଆଡ଼େ ଗଲା । ତାଙ୍କୁ ଯେତେବେଳେ ମାତ୍ର ଆଠବର୍ଷ ବୟସ ସେ ସମସ୍ତ ଅସ୍ତ୍ର ଚାଳନା ନିଜେ ନିଜେ ଶିକ୍ଷା କଲେ । ସୋମଦତ୍ତ ତାହାଙ୍କ ଶାସ୍ତ୍ର ଶିକ୍ଷା ପାଇଁ ଯେତେ ଚେଷ୍ଟା କଲେ ସମସ୍ତ ବିଫଳ ହେଲା ।

ମହାଶାଳ ସର୍ବଦା ମୃଗୟାରେ ମତ୍ତ ରହିଲେ । ମୃଗୟାରେ କ୍ରମେ ସେ ଏପରି ନିପୁଣତା ଅର୍ଜନ କଲେ ଯେ, ଯେକୌଣସି ଅଦୃଶ୍ୟ ପଶୁ ପକ୍ଷୀର ଶବ୍ଦ ଶୁଣି ସେ ଅବ୍ୟର୍ଥ ଶରସନ୍ଧାନ କରିବାକୁ ସମର୍ଥ ହେଲେ । ବିଶାଳ କାର୍ମୁକ ହସ୍ତରେ ମହାଶାଳକୁ ଦେଖିବା ମାତ୍ରେକେ ବ୍ୟାଘ୍ର ସିଂହ ଆଦି ମହାବଳ ପଶୁମାନେ ମଧ ଭୟରେ ପଳାୟନ କରୁଥିଲେ ।

ମହାଶାଳଙ୍କ ଶକ୍ତି ଯେପରି ଅସାଧାରଣ ତାଙ୍କର ସାହସ ଓ ଆଶା ସେହିପରି ଅସୀମ ଥିଲା । ପିଲା ଦିନରୁ ତାଙ୍କର ଆକାଙ୍କ୍ଷା ଥିଲା ସେ କିପରି ଅଦ୍ୱିତୀୟ ବୀର ହେବେ । ଦିନେ ଏହି ସୁଯୋଗ ଉପସ୍ଥିତ ହେଲା । ମହାଶାଳଙ୍କ ଅଷ୍ଟାଦଶ ବର୍ଷ ବୟସରେ ମହାରାଜ ଖାରବେଳ ଥରେ ମୃଗୟାର୍ଥେ ସୁଖିପଲ୍ଲୀର ଘନ ଅରଣ୍ୟକୁ ବିଜେ କରିଥିଲେ । ମହାଶାଳ ସେତେବେଳେ ଅଧିକାଂଶ ସମୟ ଅରଣ୍ୟରେ ହିଁ ରହୁଥାଆନ୍ତି । ଦିନେ ଖାରବେଳ ମୃଗୟା କରୁ କରୁ ଅକସ୍ମାତ ଗୋଟିଏ ସିଂହ ମୁଖବ୍ୟାଦାନ କରି ଖାରବେଳଙ୍କ ଆଡ଼କୁ ଧାବିତ ହେଲା । ଖାରବେଳ ଧନୁରେ ଶର ସଂଯୋଗ କରିବାର ସମୟ ମଧ ପାଇଲେ ନାହିଁ । ସିଂହ ବିଦ୍ୟୁଦ୍‌ବେଗରେ ଖାରବେଳଙ୍କ ନିକଟବର୍ତ୍ତୀ ହୋଇ ଲମ୍ଫ ଦେଲା, କିନ୍ତୁ ତାହାର ଶୂନ୍ୟରେ ସ୍ଥିତି ମଧରେ ହିଁ କାହୁଁ ଯୁଗପଦ୍ ଦୁଇଟି ଶର ଆସି ଗୋଟିଏ ତା'ର ମୁଖ ଗହ୍ୱରରେ ପ୍ରବେଶ କଲା ଏବଂ ଅନ୍ୟଟି ତା'ର ହୃଦୟ ଭେଦ କରି ପୃଷ୍ଠ ଦେଇ ବାହାରିଗଲା । ଏପରି ଅଦ୍ଭୁତକର୍ମା ଶର ସନ୍ଧାନକାରୀ କିଏ ଜାଣିବାକୁ ଖାରବେଳ ଚାରିଆଡ଼େ ଚାହିଁଲେ । ଦେଖିଲେ ଅନତିଦୂରରେ ଜଣେ ଶାଳପ୍ରାଂଶୁ ଗୌରକାନ୍ତି ଯୁବକ ବିଶାଳ କାର୍ମୁକ ହସ୍ତରେ ଦଣ୍ଡାୟମାନ ।

ଖାରବେଳ ବିସ୍ମିତ ହୋଇ ପଚାରିଲେ, - ଯୁବକ, ତୁମ୍ଭର ପରିଚୟ ?

- ମହାରାଜ, ମୁଁ ସୁଖିପଲ୍ଲୀର ସୋମଦତ୍ତଙ୍କ ମଧମ ପୁତ୍ର ।

ଖାରବେଳ ତତ୍‌କ୍ଷଣାତ ମହାଶାଳଙ୍କୁ ସ୍ୱୀୟ ଅସି ଦ୍ୱାରା ସ୍ପର୍ଶ କରି ନିଜର ଦେହରକ୍ଷୀ କରିନେଲେ ।

ମହାଶାଳ ଥିଲେ ଅତ୍ୟନ୍ତ ଗର୍ବୀ । ସେ ନିଜ ବିଷୟରେ ଅତ୍ୟଧିକ ଉଚ୍ଚ ମତ ପୋଷଣ କରୁଥିଲେ ଏବଂ ଅବାଧ ଥିଲେ । ତେଣୁ କର୍ଣ୍ଣାଟ ବିଜୟ ଓ ରାଷ୍ଟ୍ରିକ ଏବଂ ଭୋଜକମାନଙ୍କର ଦମନ ଅଭିଯାନରେ ମହାଶାଳ ମହାପରାକ୍ରମ ଦେଖାଇଥିଲେ ମଧ ଖାରବେଳ ତାହାଙ୍କୁ ଶତାଧିକ ସୈନ୍ୟର ସେନାପତି କରିନଥିଲେ ।

ସୁଖିପଲ୍ଲୀରେ ମଗଧସେନା ଓ ଅଶ୍ୱମେଧର ଅଶ୍ୱ ଦେଖି ମହାଶାଳ ଚିନ୍ତା କଲେ, ସୁଦିନ ଆଗତ । ମଗଧରାଜଙ୍କ ଅଶ୍ୱମେଧ ଯଜ୍ଞ ବାର୍ତ୍ତା ଜଣେ ସୈନିକ ଦ୍ୱାରା ଖାରବେଳଙ୍କୁ ପଠାଇ ଦେଇ ସ୍ୱୟଂ ଆଉ ଉତ୍ତର ସୀମାନ୍ତକୁ ନଯାଇ ସୈନ୍ୟ ସହ ସୁଖିପଲ୍ଲୀର ଘନ ଅରଣ୍ୟ ମଧରେ ପ୍ରବେଶ କଲେ । ସେ ଜାଣନ୍ତି ଯେ ମଗଧ ସେନା ଦକ୍ଷିଣକୁ ଯିବା ପାଇଁ ନିଶ୍ଚୟ ଅରଣ୍ୟ ମଧରେ ପ୍ରବେଶ କରିବେ, କାରଣ ଅନ୍ୟ ମାର୍ଗ ନାହିଁ । ଅରଣ୍ୟ ମଧରେ ପ୍ରବେଶ

କରି ମହାଶାଳ ସୈନ୍ୟମାନଙ୍କୁ ବିଶ୍ରାମ କରିବା ପାଇଁ ଆଦେଶ ଦେଲେ । ସୈନ୍ୟମାନେ ଶୃଳପକ୍ୱ ବଣ୍ୟ ବରାହ ଆଦି ଭୋଜନ କରି ବିଶ୍ରାମ ନେଲେ । ସନ୍ଧ୍ୟା ଆଗତ ହୁଅନ୍ତେ ମହାଶାଳ ସୈନ୍ୟମାନଙ୍କୁ ବୃକ୍ଷ ଆରୋହଣ କରି ରାତ୍ରି ଯାପନ କରିବାକୁ ଆଦେଶ ଦେଲେ ।

ରାତ୍ରି ଦ୍ୱିପ୍ରହର ସମୟରେ ମଗଧ ସେନା ଅଶ୍ୱମେଧର ଅଶ୍ୱସହ ଅରଣ୍ୟରେ ପ୍ରବେଶ କଲେ ଏବଂ ରାତ୍ରିବାସ ପାଇଁ ସେଠାରେ ଶିବିର ସ୍ଥାପନ କଲେ । ଅଶ୍ୱଗୁଡ଼ିକୁ ବୃକ୍ଷରେ ବାନ୍ଧିଦେଇ ଭୋଜନାନ୍ତେ ସେମାନେ ଶୟନ କଲେ । ପଥଶ୍ରାନ୍ତ ହୋଇ ଥିବାରୁ ସେମାନେ ଅଳ୍ପ ସମୟରେ ନିଦ୍ରାଭିଭୂତ ହେଲେ । କେବଳ ଜଣେ ସୈନିକ ଅଶ୍ୱମେଧର ଅଶ୍ୱଟିକୁ ଜଗି ରହିଲା । କିଛି ସମୟ ପରେ ମହାଶାଳ ବୃକ୍ଷରୁ ଅବତରଣ କରି ଅତି ଧୀର ପଦକ୍ଷେପରେ ଉକ୍ତ ଜାଗରୂକ ସୈନିକର ପଶ୍ଚାଦ୍‌ବର୍ତ୍ତୀ ହୋଇ ହଠାତ୍ ତା'ର ମୁଖ ନିଜର ବିଶାଳ ହସ୍ତରେ ଚାପି ଧରିଲେ । ସୈନିକ ସାମାନ୍ୟ ଚିତ୍‌କାର କରିବାରୁ ମଧ ସମୟ ପାଇଲା ନାହିଁ । ମହାଶାଳଙ୍କ ତୀକ୍ଷ୍ଣ ଛୁରିକା ତା'ର ବକ୍ଷ ଭେଦ କଲା । ସୈନିକକୁ ଧୀରେ ତଳେ ଶୁଆଇ ଦେଇ ମହାଶାଳ ସଙ୍କେତ ଦେଲେ । କଳିଙ୍ଗ ସୈନ୍ୟମାନେ ଅତି ସନ୍ତର୍ପଣରେ ବୃକ୍ଷରୁ ଅବତରଣ କରି ସୁପ୍ତ ମଗଧସେନାଙ୍କୁ ଘେରି ଗଲେ । ମହାଶାଳ ପୁଣି ସଙ୍କେତ ଦେବା ପରେ କଳିଙ୍ଗସେନା କ୍ଷିପ୍ର ଗତିରେ ଅତର୍କିତେ ମଗଧ ସେନାଙ୍କୁ ଆକ୍ରମଣ କଲେ । ମଗଧ ସୈନ୍ୟମାନେ ଅସ୍ତ୍ର ଧରିବାକୁ ମଧ ସମୟ ପାଇଲେ ନାହିଁ । ଗୋଟିଏ ସୈନିକ ମଧ ପ୍ରାଣ ନେଇ ସେଠାରୁ ପଳାଇ ଯାଇପାରିଲା ନାହିଁ । ଅଶ୍ୱମେଧର ଅଶ୍ୱ ବନ୍ଦୀ ହେଲା । କେବଳ ମହାକାଞ୍ଚନ ମାତ୍ର ଦୁଇଜଣ ପାର୍ଶ୍ୱରକ୍ଷୀ ସହ ପଳାୟନ କରିପାରିଲେ ।

ପରଦିନ ପ୍ରଭାତରେ ମହାଶାଳ ବିଜୟୋଲ୍ଲାସରେ ଅଶ୍ୱ ସହ କଳିଙ୍ଗ ରାଜଧାନୀକୁ ଯାତ୍ରା କଲେ । ମହାରାଜ ଖାରବେଳ ଏ ସମ୍ବାଦ ପାଇବା ପୂର୍ବରୁ ମହାଶାଳ ରାଜଧାନୀରେ ଉପସ୍ଥିତ ହୋଇ ମହାରାଜଙ୍କୁ ସମସ୍ତ ବିଷୟ ଅବଗତ କରାଇ ନତ ମସ୍ତକରେ କହିଲେ, ମହାରାଜ ମୋର ଦୋଷ ମାର୍ଜନା କରିବେ । ମହାରାଜଙ୍କ ଆଦେଶ ପାଇବା ପର୍ଯ୍ୟନ୍ତ ଅପେକ୍ଷା କରିବାର ସମୟ ନଥିଲା । ତେଣୁ ଅବସ୍ଥାଚକ୍ରରେ ସ୍ୱାଧୀନ ଭାବରେ କାର୍ଯ୍ୟ କରିବାକୁ ମୁଁ ବାଧ ହୋଇଛି ।

ମହାରାଜ ଖାରବେଳ ସମସ୍ତ ବିଷୟ ଅବଗତ ହୋଇ ଅତୀବ ପ୍ରୀତ ହୋଇ ନିଜର ବିଶାଳ ଖଡ଼୍‌ଗ କୋଷମୁକ୍ତ କରି ମହାଶାଳଙ୍କ ମସ୍ତକ ସ୍ପର୍ଶ କରି କହିଲେ, - ମୁଁ ଆଜିଠାରୁ ତୁମକୁ ମୋର ମହାସୈନ୍ୟାଧକ୍ଷ କଲି ।

ମହାଶାଳ ନତମସ୍ତକରେ କୃତଜ୍ଞତା ଜ୍ଞାପନ କରି ପୁଣି ଜଣାଇଲେ : ମହାରାଜ, ମଗଧସେନା ପରାଜିତ ସତ୍ୟ, କିନ୍ତୁ କଳିଙ୍ଗଦ୍ରୋହୀ ମଗଧ - ରାଜଗୁରୁ ମହାକାଞ୍ଚନ ଅଦ୍ୟାପି ଜୀବିତ । ମୋର ଦୁର୍ଭାଗ୍ୟ, ମୁଁ ଦେଶଦ୍ରୋହୀ ମହାକାଞ୍ଚନର ମୃତ ଶରୀର ମହାରାଜଙ୍କ ସମ୍ମୁଖରେ ଉପସ୍ଥାପିତ କରି ପାରିଲି ନାହିଁ । ମହାକାଞ୍ଚନ ମୋର ସହୋଦର ।

ମୁଁ ଜାଣେ ସେ ତୀକ୍ଷ୍ଣ ବୁଦ୍ଧିସମ୍ପନ୍ନ । ସେ ମଗଧ ଯାଇ ସେନା ସହ କଳିଙ୍ଗ ଆକ୍ରମଣ ପାଇଁ ପ୍ରସ୍ତୁତ ହେବା ନିଶ୍ଚିତ । ତାହା ପୂର୍ବରୁ ଅତର୍କିତେ ମଗଧ ଆକ୍ରମଣ ପାଇଁ କଳିଙ୍ଗର ବିପୁଳ ସେନା ଚାଳନା କରିବା ପାଇଁ ମହାରାଜ ଆଦେଶ ଦିଅନ୍ତୁ, ଏହାହିଁ ମୋର ଅନୁରୋଧ । ମହାରାଜ ମଧ ଦାକ୍ଷିଣାତ୍ୟ ଜୟ ପରେ ଉତ୍ତରାଖଣ୍ଡ ଜୟ କରିବାକୁ ମନସ୍ଥ କରିଥିବାର ମୁଁ ଜାଣେ । କଳିଙ୍ଗର ସୀମା କାବେରୀରୁ ଗଙ୍ଗାଯାଏ ବ୍ୟାପିବ । ଅଶୋକଙ୍କର ଅଭିଯାନର ପ୍ରତିଶୋଧ ପାଇଁ ଏଇ ଉପଯୁକ୍ତ ସମୟ । ମଗଧର ଗର୍ବ ଖର୍ବ ହେବ ଚିରଦିନ ପାଇଁ । ଏ ଜାତିର ଓ ଦେଶର ଗୌରବ ବୃଦ୍ଧି ପାଇବ ଏବଂ ବୀର ମହାରାଜ ମହାମେଘବାହନ କଳିଙ୍ଗାଧିପତି ଖାରବେଳ ଐରଙ୍କ ନାମ ଇତିହାସରେ ସ୍ୱର୍ଣ୍ଣାକ୍ଷରରେ ଲିଖିତ ରହିବ ।

ମହାରାଜ ଖାରବେଳ ଏକଚାଟ୍ (ରାଜଚକ୍ରବର୍ତ୍ତୀ) ହେବା ପାଇଁ ଆଶା ପୋଷଣ କରିଥିଲେ । ମହାଶାଳଙ୍କ ଉତ୍ସାହବାଣୀ ତାଙ୍କର ଉତ୍ସାହକୁ ଦ୍ୱିଗୁଣିତ କଲା । ଖାରବେଳ ଦ୍ୱିଧା ନକରି ମହାଶାଳଙ୍କୁ କଳିଙ୍ଗ ସେନା ପ୍ରସ୍ତୁତ କରିବା ପାଇଁ ଆଦେଶ ଦେଲେ ।

ମହାଶାଳଙ୍କର ନବ ନବ ଯୁଦ୍ଧାସ୍ତ୍ର ଉଦ୍‌ଭାବନ କରିବା ପାଇଁ ଗୋଟିଏ ଗୁପ୍ତ ଗବେଷଣାଗାର ଥିଲା । ଅବସର ସମୟରେ ନାନା ବିଚିତ୍ର ଅସ୍ତ୍ର ଆବିଷ୍କାର କରିବା ତାହାଙ୍କର ଏକମାତ୍ର ଚିତ୍ତବିନୋଦନର ପନ୍ଥା ଥଲା । ମହାଶାଳ ମହାଶୈଳକଣ୍ଟକ ନାମକ ଏକ ଅଦ୍ଭୁତ ଅସ୍ତ୍ର ଆବିଷ୍କାର କରିଥିଲେ । ଆଉ କାଳ ବିଳମ୍ବ ନ କରି ମହାଶାଳ ଯୁଦ୍ଧର ଆୟୋଜନ କରିବାକୁ ଲାଗିଲେ । ଏକ ମାସ ମଧ୍ୟରେ ତୋମର, ପାଶ, କଚଗ୍ରହବିକ୍ଷେପ, କରଗ୍ରହବିକ୍ଷେପ, ମୂଷଳ, ଢାଲ, ଖଡ୍‌ଗ ଆଦି ନାନା ଅସ୍ତ୍ର ସ୍ତୂପୀକୃତ ହେଲା । ବହୁ ରଥ ମଧ ନିର୍ମିତ ହେଲା । ମହାଶାଳ ତାଙ୍କର ନିଜ ଆବିଷ୍କୃତ ମହାଶୈଳକଣ୍ଟକ ସହ ଏକ ଅକ୍ଷୌହିଣୀ କଳିଙ୍ଗ ସେନାର ସେନାପତି ହୋଇ ମଗଧାଭିମୁଖେ ଯାତ୍ରା କଲେ । ମହାରାଜ ଖାରାବେଳ ସ୍ୱୟଂ ସେନାର ମଧ ଭାଗରେ ହସ୍ତିପୃଷ୍ଠରେ ବହୁରତ୍ନଖଚିତ ବରଣ୍ଡକରେ ଉପବେଶନ କରି ପାର୍ଶ୍ୱରକ୍ଷୀ ପରିବେଷ୍ଟିତ ହୋଇ ଯାତ୍ରା କଲେ ।

କଳିଙ୍ଗ ସେନା ଏତେ କ୍ଷିପ୍ର ଗତିରେ ଅଗ୍ରସର ହେବାକୁ ଲାଗିଲେ ଯେ ମଗଧ ପହଞ୍ଚିବାକୁ ସେମାନଙ୍କ ମାତ୍ର ଏକମାସ ଲାଗିଲା । ମଗଧସେନା ସେତେବେଳକୁ ଆଦୌ ପ୍ରସ୍ତୁତ ହୋଇ ନାହାନ୍ତି । କଳିଙ୍ଗସେନା ଏତେ ଶୀଘ୍ର ଆକ୍ରମଣ କରିବେ ଏହା କାହାରି ଧାରଣା ନଥିଲା । କୌଣସି ପ୍ରକାରେ ମଗଧ ସେନାଙ୍କୁ ସଜ୍ଜିତ କରାଇ ପୁଷ୍ୟମିତ୍ର ଗୋରଧ ଗିରିଠାରେ କଳିଙ୍ଗ ସେନାକୁ ବାଧା ଦେବାକୁ ପ୍ରସ୍ତୁତ ହୋଇ ରହିଲେ । ଏହିଠାରେ ଦୁଇ ସେନାଙ୍କ ମଧ୍ୟରେ ପ୍ରଚଣ୍ଡ ଯୁଦ୍ଧ ହେଲା । କଳିଙ୍ଗର ଦୁର୍ଦ୍ଧର୍ଷସେନା ମଗଧ ସେନାଙ୍କୁ ବିପର୍ଯ୍ୟସ୍ତ କରି ପକାଇଲେ । ନୂତନ ଅସ୍ତ୍ର ମହାଶୈଳକଣ୍ଟକରୁ ଅଗଣିତ ଶିଳାଖଣ୍ଡ ନିକ୍ଷିପ୍ତ ହୋଇ ମଗଧସେନା ଉପରେ ପତିତ ହେବାକୁ ଲାଗିଲା । ମଗଧ ସେନା ଧ୍ୱସ୍ତ ବିଧ୍ୱସ୍ତ ହୋଇ ପଳାୟନ କରିବାକୁ ଲାଗିଲେ ।

ପରାଜୟ ନିଶ୍ଚିତ ଜାଣି ମହାକାଞ୍ଚନ ଚିନ୍ତିତ ହୋଇ ପୁଷ୍ୟମିତ୍ରଙ୍କୁ ସନ୍ଧି ସ୍ଥାପନ କରିବାକୁ ଉପଦେଶ ଦେଇ କହିଲେ - ବତ୍ସ, ଯୁଦ୍ଧରେ ଖାରବେଳଙ୍କୁ ପରାଜୟ କରିବା ଅସମ୍ଭବ । ମୁଁ କୌଣସି ରାଜା ବା ରାଜ୍ୟର ଜୟ ପରାଜୟ ନିମିତ୍ତ ଚିନ୍ତିତ ନୁହେଁ । କିନ୍ତୁ ମଗଧର ପରାଜୟ ହେଲେ ଧର୍ମର ପରାଜୟ ଘଟିବ, ଭାରତରେ ନାସ୍ତିକ୍ୟର ପ୍ରସାର ଘଟିବ । ବର୍ତ୍ତମାନ ପାଇଁ ତେଣୁ କଳିଙ୍ଗ ସହିତ ସନ୍ଧି ସ୍ଥାପନ ଶ୍ରେୟଃ ।

ପୁଷ୍ୟମିତ୍ର ଏଥିରେ ସମ୍ମତ ହେଲେ । ଗୋଟିଏ ଧବଳ ପାରାବତ କଳିଙ୍ଗ ଶିବିରକୁ ଉଡ଼ାଇ ଦିଆଗଲା । ମଗଧ ପକ୍ଷରୁ ମହାକାଞ୍ଚନ ସନ୍ଧିସ୍ଥାପନ ପାଇଁ ଖାରବେଳଙ୍କ ଶିବିରକୁ ଆସିଲେ । ସନ୍ଧିର ଅନ୍ୟାନ୍ୟ ସର୍ତ୍ତ ମଧ୍ୟରେ ଗୋଟିଏ ସର୍ତ୍ତାନୁସାରେ କଳିଙ୍ଗର ଜୈନ ମୂର୍ତ୍ତି ଋଷଭ ଦେବଙ୍କୁ ପୁଷ୍ୟମିତ୍ର ଖାରବେଳଙ୍କୁ ଫେରାଇ ଦେବାକୁ ସ୍ୱୀକୃତ ହେଲେ । ପୂର୍ବେ ମଗଧର ନନ୍ଦବଂଶୀୟ ରାଜା କଳିଙ୍ଗ ଜୟ କରି ଏହି ଦେବ ମୂର୍ତ୍ତି ମଗଧକୁ ନେଇ ଯାଇଥିଲେ । ଖାରବେଳ ମଧ୍ୟ ଅଶ୍ୱମେଧର ଅଶ୍ୱଟି ପୁଷ୍ୟମିତ୍ରଙ୍କୁ ଫେରାଇ ଦେଲେ ଏବଂ ଦୁଇ ରାଜ୍ୟ ମଧ୍ୟରେ ଚିର ବନ୍ଧୁତାର ନିଦର୍ଶନ ସ୍ୱରୂପ ମଗଧ ଆକ୍ରମଣକାରୀ ଯବନରାଜ ଦତ୍ତମିତ୍ରଙ୍କ ବିରୁଦ୍ଧରେ ଯୁଦ୍ଧ କରିବା ନିମିତ୍ତ କଳିଙ୍ଗ ସେନାର କିୟଦଂଶ ମଗଧରେ ରଖିବାକୁ ସ୍ୱୀକୃତ ହେଲେ । ଖାରବେଳ ଏହାପରେ ସେ ଜୈନ ଦେବମୂର୍ତ୍ତି ସହ ମହାସମାରୋହରେ କଳିଙ୍ଗ ପ୍ରତ୍ୟାବର୍ତ୍ତନ କଲେ ।

ଏହାପରେ ମହାକାଞ୍ଚନଙ୍କ ଆଦେଶରେ ପୁଷ୍ୟମିତ୍ରଙ୍କ ଅଶ୍ୱମେଧ ଯଜ୍ଞର ଅବଶିଷ୍ଟ କ୍ରିୟା କାଣ୍ଡର ସମାପନ ହେଲା । ପ୍ରଥମ ତିନି ମହିଷୀ 'ଭୂର୍ଭୁବଃସ୍ୱଃ' ମନ୍ତ୍ର ଉଚ୍ଚାରଣ କରୁ କରୁ ଅଶ୍ୱଟିକୁ ମନ୍ତ୍ରପୂତ ବାରି ଦ୍ୱାରା ସ୍ନାନ କରାଇଲେ । ସମ୍ମାନାନୁକ୍ରମେ ପଟ୍ଟମହିଷୀ ଅଶ୍ୱର ଅଗ୍ରଭାଗ, ଦ୍ୱିତୀୟା ମହିଷୀ ମଧ୍ୟଭାଗ ଏବଂ ତୃତୀୟା ପଶ୍ଚାଦ୍‌ଭାଗ ସ୍ନାନ କରାଇ ପ୍ରତ୍ୟେକେ ଏକ ଶତ ଅଳଙ୍କାର ଦ୍ୱାରା ଅଶ୍ୱର ମସ୍ତକ ଓ ପୁଚ୍ଛ ମଣ୍ଡନ କଲେ । ଏହାପରେ ଅଶ୍ୱଟିକୁ ଅନ୍ୟ ଷୋଳ ଗୋଟି ପଶୁସହ ଅଗ୍ନି ନିକଟରେ ବାନ୍ଧି ଦିଆଗଲା । ଅନ୍ୟାନ୍ୟ ପ୍ରତ୍ୟେକ ଯୂପରେ ପନ୍ଦର ଗୋଟି ଲେଖାଏ ପଶୁ ବନ୍ଧା ହେଲେ । ଯୂପମାନଙ୍କର ମଧ୍ୟବର୍ତ୍ତୀ ସ୍ଥାନମାନଙ୍କରେ ତେର ଗୋଟି ଲେଖାଏ ବନ୍ୟ ପଶୁ ପକ୍ଷୀ ବନ୍ଧା ହେଲେ ଏବଂ ପର୍ଯ୍ୟଗ୍ନିକରଣ ପରେ ସେମାନଙ୍କୁ ମୁକ୍ତ କରି ଦିଆଗଲା । ଏହାପରେ ଅଶ୍ୱଟିକୁ ବହୁମୂଲ୍ୟ ବସ୍ତ୍ର ଦ୍ୱାରା ଆବୃତ କରାଗଲା ଏବଂ ପଟ୍ଟମହିଷୀ ଉକ୍ତ ବସ୍ତ୍ର ମଧ୍ୟରେ ଅଶ୍ୱ ସହ ରାତ୍ରିଯାପନ କରିବା ପରେ ପ୍ରାତଃକାଳରେ ଅଶ୍ୱଟିକୁ ବଧ କରି, ତା'ର ରକ୍ତରେ ତା'ର ମାଂସ ସିଦ୍ଧ କରି ଅଗ୍ନିକୁ ସମର୍ପଣ କରିବା ପରେ ଯଜ୍ଞ ସମାପ୍ତ ହେଲା ।

ଏହାପରେ କଳିଙ୍ଗାଧିପତି ଖାରବେଳଙ୍କ ନିମନ୍ତ୍ରଣ କ୍ରମେ ପୁଷ୍ୟମିତ୍ର ରାଜଗୁରୁ ମହାକାଞ୍ଚନଙ୍କୁ ମହାରାଜ ଖାରବେଳଙ୍କର ରାଜସୂୟ ଯଜ୍ଞକୁ ପ୍ରେରଣ କଲେ । ରାଜସୂୟ ଯଜ୍ଞ ସମାପନାନ୍ତେ ମହାକାଞ୍ଚନ କଳିଙ୍ଗ ରାଜଧାନୀରୁ ବିଦାୟ ଗ୍ରହଣ କରି ପାଟଳିପୁତ୍ର

ପ୍ରତ୍ୟାବର୍ତ୍ତନ ପଥରେ ପିତାମାତାଙ୍କୁ ଦର୍ଶନ କରିବା ପାଇଁ ନିଜର ଗ୍ରାମ ସୁଖପଲ୍ଲୀକୁ ଆସିଲେ ଏବଂ ତାଙ୍କ ସହ ମହାଶାଳ ମଧ ଆସିଲେ । ଦୁଇ ଭାଇ ବହୁ ଯଶଃ ଅର୍ଜନ କରି ପ୍ରାୟ ବାର ବର୍ଷ ପରେ ନିଜର ଗ୍ରାମକୁ ପ୍ରତ୍ୟାବର୍ତ୍ତନ କରୁଅଛନ୍ତି ବୋଲି ପଲ୍ଲୀବାସୀମାନେ ସେମାନଙ୍କୁ ସ୍ୱାଗତ ଜଣାଇ ଉତ୍ସବର ଆୟୋଜନ କରି ଅଛନ୍ତି । କାହାର ଜୟ ବା କାହାର ପରାଜୟ ହେଲା ସେଥିରେ ପଲ୍ଲୀବାସୀଙ୍କର କିଛି ଯାଏ ଆସେ ନାହିଁ । ନିଜ ନିଜର ଦୁଃଖକଷ୍ଟମୟ ବୈଚିତ୍ର୍ୟହୀନ ଜୀବନରେ ଟିକିଏ ଆନନ୍ଦ କରିବାକୁ ସେମାନେ ଉତ୍କଣ୍ଠାରେ ଚାହିଁ ରହିଥାଆନ୍ତି ।

## ୭

ସୋମଦତ୍ତଙ୍କର ତୃତୀୟ ପୁତ୍ର ମହାସାର ବିଷୟରେ ବିଶେଷ କିଛି କହିବାର ନାହିଁ । ମହାସାରର ବାଲ୍ୟକାଳୁଁ ପିତାମାତା ତାକୁ କୁଳର ଏକ ଅଯୋଗ୍ୟ ସନ୍ତାନ କୁଳପାଂଶୁଳ ବୋଲି ଧରି ନେଇଥିଲେ । ମହାସାର ମହାକାଞ୍ଚନଙ୍କ ଭଳି ବୁଦ୍ଧିମାନ ନୁହଁନ୍ତି କିମ୍ବା ମହାଶାଳ ପରି ଶକ୍ତିମାନ ମଧ ନୁହଁନ୍ତି । ସେମାନଙ୍କ ଭଳି ତାଙ୍କର କୌଣସି ଉଚ୍ଚାଭିଳାଷ ମଧ ନାହିଁ । ସୋମଦତ୍ତ ଶତଚେଷ୍ଟା କରି ମଧ କନିଷ୍ଠ ପୁତ୍ରର ଅକ୍ଷର ଶିକ୍ଷା କରାଇ ପାରିଲେ ନାହିଁ । ସୋମଦତ୍ତ ଯେତେବେଳେ ଅମରକୋଷରୁ 'ଅମରାନିର୍ଜରା ଦେବାଃ' ପଢ଼ାଇବାକୁ ଚେଷ୍ଟା କରନ୍ତି କିମ୍ବା ଫଳକ ଧରାଇ ଅକ୍ଷର ଲେଖାଇବାକୁ ଚେଷ୍ଟା କରନ୍ତି ସେତେବେଳେ ମହାସାର ଭାବନ୍ତି ଗୃହର ପଛଆଡ଼େ ଯେଉଁ କୁଷ୍ମାଣ୍ଡ ବୃକ୍ଷ ରୋପଣ କରିଅଛନ୍ତି ସେଥିରେ ଜଳ ସିଞ୍ଚନ କରିବା କଥା କିମ୍ବା ଭଗ୍ନପଦ କୌଣସି କୁକୁରର ପରିଚର୍ଯ୍ୟା କଥା । ଏହି କଥା ଭାବୁ ଭାବୁ ସେ ପିତାଙ୍କର କୌଣସି କଥା ଶୁଣି ନପାରି ଶୂନ୍ୟ ଦୃଷ୍ଟିରେ କେବଳ ପିତାଙ୍କ ଆଡ଼କୁ ଅନାଇ ରହନ୍ତି । ସୋମଦତ୍ତ ପ୍ରଚଣ୍ଡ କ୍ରୋଧରେ ହସ୍ତସ୍ଥିତ ଲଗୁଡ଼ ଦ୍ୱାରା ପ୍ରହାର କରି ତାଙ୍କୁ ରକ୍ତାକ୍ତ କରି ପକାଇଲେ ମଧ ସେ ନୀରବରେ ଅଶ୍ରୁପାତ କରିବା ଛଡ଼ା ଆଉ କିଛି କରନ୍ତି ନାହିଁ । ସୋମଦତ୍ତ ଅନନ୍ୟୋପାୟ ହୋଇ ମହାସାରଙ୍କୁ ଷୋଡ଼ଶ ବର୍ଷ ହୁଅନ୍ତେ ତାଙ୍କୁ ଅସ୍ତ୍ର ଶିକ୍ଷା କରିବା ପାଇଁ ମହାଶାଳଙ୍କ ସହିତ ବନକୁ ଛାଡ଼ିଦେଲେ । କିନ୍ତୁ ମହାସାର ଅସ୍ତ୍ର ଶିକ୍ଷା ପରିବର୍ତ୍ତେ ନିକଟବର୍ତ୍ତୀ ପଲ୍ଲୀର କଲାବୁ ନାମକ ଜଣେ ତୁନ୍ନବାୟ ବା ସୂଚୀଜୀବୀ ନିକଟରୁ ସୂଚୀକର୍ମ ଶିକ୍ଷା କରିବାକୁ ଲାଗିଲେ । ଏଥିରେ ମହାଶାଳ କ୍ରୁଦ୍ଧ ହେଲେ ସେ କୁହନ୍ତି, ଜୀବନଧାରଣ ପାଇଁ ଭଲ୍ଲ ଧାରଣର ପ୍ରୟୋଜନ ନାହିଁ । ଜୀବନ ଧାରଣ ପାଇଁ ଅସ୍ତ୍ର ଠାରୁ ସୂଚୀ ଅଧିକ ଉପଯୋଗୀ । ପ୍ରତିପତ୍ତି ପ୍ରସାର ପାଇଁ ଅସ୍ତ୍ରର ପ୍ରୟୋଜନ ହୋଇପାରେ । କିନ୍ତୁ ପ୍ରତିପତ୍ତି ପାଇଁ ମୋର ତିଳେମାତ୍ର ଅଭିଳାଷ ନାହିଁ । ଅସ୍ତ୍ରକୁ ମୁଁ ଘୃଣା କରେ ।

ସୋମଦତ୍ତ ଏକଥା ଶୁଣି ହତାଶ ହେଲେ ଏବଂ ମହାଶାଳଙ୍କ ନିକଟରୁ ମହାସାରଙ୍କୁ ଫେରାଇ ଆଣି ଗୃହରେ ରଖିଲେ । ମହାସାର ଏଥର ଗୃହରେ ରହି ସାମାନ୍ୟ ପୈତୃକ

ସମ୍ପତ୍ତିର ତତ୍ତ୍ୱାବଧାନ କରିବାକୁ ଲାଗିଲେ ଏବଂ ପିତାମାତାଙ୍କର ସେବାରେ ମନ ନିୟୋଗ କଲେ । ବୃଦ୍ଧ ପିତାମାତାଙ୍କ ପାଇଁ ଦନ୍ତକାଷ୍ଠିକା ସଂଗ୍ରହ, ସ୍ନାନୋଦକ ଆନୟନ, ପାଦପ୍ରକ୍ଷାଳନାଦି ସେବାକାର୍ଯ୍ୟ ଏବଂ ଗୃହମାର୍ଜନା, ଗୋସେବା, ଇନ୍ଧନ ସଂଗ୍ରହ, ଭୂମି କର୍ଷଣ ଆଦି କାର୍ଯ୍ୟ କରିବା ପରେ ଯାହା ଅଳ୍ପ ସମୟ ପାଆନ୍ତି ତାହା ସେ କଲାବୁ ଗୃହରେ ସୂଚୀକର୍ମ ଶିକ୍ଷାରେ ବ୍ୟୟ କରନ୍ତି ।

ବୟଃପ୍ରାପ୍ତ ହୁଅନ୍ତେ ମହାସାର ଯେତେବେଳେ କଲାବୁର ଏକମାତ୍ର କନ୍ୟା ଇରାକୁ ବିବାହ କଲେ ସେତେବେଳେ ସୋମଦତ୍ତ ଓ କାତ୍ୟାୟନୀ ଦେବୀ ଲଜ୍ଜାରେ ଅଧୋବଦନ ହୋଇ ରହିଲେ । ମହାସାର ନୀଚ କୁଳରୁ କନ୍ୟା ବିବାହ କରିବା ନିମିତ୍ତ ବ୍ରାହ୍ମଣ ସମାଜଚ୍ୟୁତ ହେବାରୁ ପିତାମାତାଙ୍କ ସାନ୍ନିଧ ତ୍ୟାଗ କରିବାକୁ ବାଧ ହେଲେ । ସେ ସେହି ଦିନୁ ଶ୍ୱଶୁର ଗୃହରେ ରହିଲେ ।

ଏହାର କିଛିଦିନ ପରେ କଲାବୁ ପ୍ରାଣତ୍ୟାଗ କରିବାରୁ ଶ୍ୱଶୁରଙ୍କ ବ୍ୟବସାୟ ମହାସାର ପୂର୍ଣ୍ଣପ୍ରାଣରେ ଗ୍ରହଣ କଲେ । ଏଥି ମଧ୍ୟରେ ସେ ସୂଚୀ କର୍ମରେ ନିପୁଣତା ଲାଭ କରି ସାରିଥିଲେ । ନିଜର ଅଧ୍ୟବସାୟ ଏବଂ ଭାର୍ଯ୍ୟା ଇରାର ସାହାଯ୍ୟ ଦ୍ୱାରା ସେ ନିପୁଣ ତୁନ୍ନବାୟ ହୋଇ ଉତ୍ତମ ଉପାର୍ଜନ କରିବାକୁ ଲାଗିଲେ । ପାଞ୍ଚ ବର୍ଷ ମଧ୍ୟରେ ସେ ତିନୋଟି ସନ୍ତାନର ପିତା ମଧ୍ୟ ହେଲେ ।

ନିଜର ନାନା କାର୍ଯ୍ୟ ସତ୍ତ୍ୱେ ମହାସାର ପ୍ରତ୍ୟହ ସୁଖିପଲ୍ଲୀକୁ ଆସନ୍ତି ପିତାମାତାଙ୍କ ସେବା କରିବା ପାଇଁ । ଅକ୍ଷମ ପିତାମାତାଙ୍କର ସେବା ଏବଂ ସେମାନଙ୍କର ପ୍ରୟୋଜନୀୟ ସମସ୍ତ ପଦାର୍ଥାଦି ଆୟୋଜନ ପ୍ରତ୍ୟହ ସକାଳେ କରି ସାରିବା ପରେ ମହାସାର ନିଜ ପରିବାରର କାର୍ଯ୍ୟ କରନ୍ତି । ସୁଖିପଲ୍ଲୀର ବ୍ରାହ୍ମଣମାନେ ତୁନ୍ନବାୟ କହି ମହାସାରକୁ ଉପହାର କଲେ ସେ ଅଳ୍ପ ହସି ନମସ୍କାର କରି ଚାଲିଯାଆନ୍ତି । ତାଙ୍କର ଏହିପରି ନିର୍ବିକାର ଭାବ ଯୋଗୁ ଉପହାସକାରୀମାନେ ପ୍ରତ୍ୟାଶିତ ଆମୋଦ ନ ପାଇବାରୁ କ୍ରମେ କ୍ଷାନ୍ତ ହେଲେ । ଉପରନ୍ତୁ ମହାସାରର ସରଳ ସ୍ୱଭାବ ପାଇଁ ପଲ୍ଲୀବାସୀମାନେ କ୍ରମେ କ୍ରମେ ତାହାଙ୍କୁ ଶ୍ରଦ୍ଧା କରିବାକୁ ଲାଗିଲେ ।

ମହାସାର ଦରିଦ୍ର ହେଲେ ମଧ୍ୟ କେବେ ହେଁ କୌଣସି ଭିକ୍ଷୁକ ତାଙ୍କର ଦ୍ୱାରରୁ ଶୂନ୍ୟ ପାତ୍ରରେ ଫେରିଯାଏ ନାହିଁ । ପ୍ରତ୍ୟେକଙ୍କ ବିପଦ ଓ ଦୁଃଖରେ ମହାସାର ଆଗଭର ହୋଇ ସାହାଯ୍ୟ କରନ୍ତି । କାଳକ୍ରମେ ମହାସାରର ଗୃହଟି ଯେପରି ପଲ୍ଲୀର ଏକ ଆନନ୍ଦମୟ ପ୍ରମୋଦ ଗୃହରେ ପରିଣତ ହେଲା ।

ସୋମଦତ୍ତ ଓ କାତ୍ୟାୟନୀ ଦେବୀ ବର୍ତ୍ତମାନ ଅବସ୍ଥାରେ ସମ୍ପୂର୍ଣ୍ଣ ରୂପେ ମହାସାରଙ୍କର ସେବା ଓ ସାହାଯ୍ୟ ଉପରେ ନିର୍ଭର କରନ୍ତି । ତଥାପି ସେମାନଙ୍କର ମନରେ ସର୍ବଦା ଦୁଃଖ ଯେ ସେମାନଙ୍କର କନିଷ୍ଠ ପୁତ୍ର ବ୍ରାହ୍ମଣକୁଳର କଳଙ୍କ । ବୃଦ୍ଧ ବୟସରେ ତେଣୁ

ସେମାନେ ମହାସାରଙ୍କର ସମସ୍ତ ସେବା ଓ ଯତ୍ନ ସତ୍ତ୍ୱେ ହେଁ ତାକୁ ସର୍ବଦା ଅବଜ୍ଞାର ଚକ୍ଷୁରେ ଦେଖନ୍ତି । ସେମାନଙ୍କର ସମସ୍ତ ସ୍ନେହ ଓ ଶ୍ରଦ୍ଧା ଅନ୍ୟ ଦୁଇ ପୁତ୍ର ପ୍ରତି କେବଳ ସଞ୍ଚିତ ଥାଏ ।

## ୮

ବହୁ ବର୍ଷ ପରେ ଦୁଇ ଯଶସ୍ୱୀ ପୁତ୍ର ପିତାମାତାଙ୍କର ଦର୍ଶନାଭିଳାଷରେ ଆସୁଅଛନ୍ତି । ଏ ସମ୍ବାଦ ପାଇଲାକ୍ଷଣି ପିତାମାତା ଆନନ୍ଦରେ ଆଜି ଅଧୀର । ଆନନ୍ଦାଶ୍ରୁରେ ସେମାନଙ୍କର ଗଣ୍ଡଦେଶ ଆଜି ପ୍ଲାବିତ ।

ମହାକାଞ୍ଚନ ରାଜକାର୍ଯ୍ୟରେ ବ୍ୟସ୍ତ ଥାଇ ମଧ୍ୟ ପିତାମାତାଙ୍କର ସମ୍ବାଦ ଯଥାକିଞ୍ଚିତ୍ ରହସ୍ୟାଧିକୃତଙ୍କ ନିକଟରୁ ସଂଗ୍ରହ କରୁଥିଲେ । ମହାଶାଳ ଆଜି ପର୍ଯ୍ୟନ୍ତ ପିତାମାତାଙ୍କର କୌଣସି ସମ୍ବାଦ ରଖିନାହାନ୍ତି । କିନ୍ତୁ କେହି ହେଲେ ପିତାମାତାଙ୍କର ଏ ବୟସରେ ତାଙ୍କର କୌଣସି ସେବାରେ ଲାଗି ପାରିନାହାନ୍ତି । ସୋମଦତ୍ତ ଓ କାତ୍ୟାୟନୀଙ୍କର ସେଥିପାଇଁ ତିଳେ ମାତ୍ର ଦୁଃଖ ନାହିଁ । ସେମାନେ ଜାଣନ୍ତି ଯେ ପୁତ୍ରମାନେ ବିରାଟ କାର୍ଯ୍ୟରେ ବ୍ୟାପୃତ । ପୁତ୍ରମାନଙ୍କର ଯଶଃ ଓ ଗୌରବରେ ସେମାନେ ଆଜି ଯଶସ୍ୱୀ ଓ ଗୌରବାନ୍ୱିତ । ପଲ୍ଲୀବାସୀଙ୍କର ସ୍ୱତଃ ଆନନ୍ଦ ସେମାନଙ୍କର ଗୌରବ ଆଜି ଆହୁରି ବଢ଼ାଇ ଦେଇଛି । ସେମାନେ ପୁତ୍ର ଦ୍ୱୟଙ୍କର ଆଗମନକୁ ଉଦ୍‌ଗ୍ରୀବ ହୋଇ ଚାହିଁ ରହିଛନ୍ତି ।

ଉତ୍ସବ ଦିନ ଆଗତ ହୁଅନ୍ତେ ସୋମଦତ୍ତ ଓ କାତ୍ୟାୟନୀ ନିତ୍ୟକର୍ମ ଶେଷ କରି ପଲ୍ଲୀ ପ୍ରାନ୍ତରକୁ ଯାତ୍ରା କଲେ । ତେଣେ ତୁନ୍ନବାୟ ପଲ୍ଲୀରୁ ମହାସାର, ଇରା ଓ ସେମାନଙ୍କର ସନ୍ତାନମାନେ ମଧ୍ୟ ସୁନ୍ଦର ପରିଚ୍ଛଦ ପିନ୍ଧି ଉତ୍ସବକୁ ବାହାରିଛନ୍ତି । ଦୂରରେ ମହାକାଞ୍ଚନ ଓ ମହାଶାଳଙ୍କର ରଥ ଦୃଷ୍ଟ ହୁଅନ୍ତେ ପଲ୍ଲୀବାସୀଗଣ ବିପୁଳ ହର୍ଷ ଧ୍ୱନି କରି ବାଦ୍ୟ ଗୀତ କରୁ କରୁ ଅଗ୍ରସର ହେବାକୁ ଲାଗିଲେ । ସେମାନଙ୍କ ସହିତ ମହାସାର ଇରାର ହସ୍ତ ଧାରଣ କରି ଏବଂ ଦୁଇ ସନ୍ତାନଙ୍କୁ ଦୁଇ କାନ୍ଧରେ ଓ କନିଷ୍ଠଟିକୁ କ୍ରୋଡ଼ରେ ଧରି ଆନନ୍ଦରେ 'ମହାକାଞ୍ଚନ ଓ ମହାଶାଳଙ୍କର ଜୟ' ଧ୍ୱନି କରୁ କରୁ ଅଗ୍ରସର ହେଲେ ।

ମହାକାଞ୍ଚନ ପୂର୍ବପରି ସେହିପରି ଦୀର୍ଘକାୟ, ସୁଠାମ ଓ ତେଜୋଦୀପ୍ତ । କେବଳ ପୂର୍ବର ସେ ଗୌର ବର୍ଣ୍ଣ ନାହିଁ । ଅବିରତ ନାନା ଯଜ୍ଞ କ୍ରିୟାର୍ଥେ ଅଗ୍ନି ସାନ୍ନିଧ୍ୟରେ ରହିବାରୁ ତାଙ୍କ ଦେହ ତାମ୍ର ବର୍ଣ୍ଣ ଧାରଣ କରିଛି । ତାଙ୍କର ମସ୍ତକ ମୁଣ୍ଡିତ, କପାଳରେ ରକ୍ତ ଚନ୍ଦନର ପ୍ରଲେପ ଲେଲିହାନ୍ ଅଗ୍ନିଶିଖା ପରି ଦେଦୀପ୍ୟମାନ । ପରିଧାନରେ ଗୈରିକ ବସନ ଓ ଗୈରିକ ଉତ୍ତରୀୟ । ଚକ୍ଷୁ ଯୁଗଳ ସେହିପରି ଉଜ୍ଜ୍ୱଳ ଓ ତୀକ୍ଷ୍ଣ । ସମସ୍ତ ଶରୀରଟି ଯେପରି ଗୋଟିଏ ଚଳିଷ୍ଣୁ ଅଗ୍ନିଶିଖା । ମହାଶାଳ ମଧ୍ୟ ପୂର୍ବପରି ବିଶାଳ ଓ ଉନ୍ନତ ଦେହ । କେବଳ

ତାଙ୍କର ଶରୀରରେ କିଞ୍ଚିତ୍ ମେଦ ବୃଦ୍ଧି ଏବଂ ଭାବରେ ମଦ ବୃଦ୍ଧି ଲକ୍ଷ କରାଯାଏ । ତାଙ୍କର ରତ୍ନଖଚିତ ଲୌହ ବର୍ମରୁ ଲକ୍ଷଣୀୟ ଦୀର୍ଘ ତରବାରି ଲମ୍ବମାନ । ତାଙ୍କର ସ୍କନ୍ଧ ଦେଶରେ କାର୍ମୁକ, ପୃଷ୍ଠ ଦେଶରେ ତୂଣୀ ଓ ମସ୍ତକରେ ବହୁମୂଲ୍ୟ ଉଷ୍ଣୀଷ ।

ମହାକାଞ୍ଚନ ରଥରୁ ଅବତରଣ କରିବା ମାତ୍ରକେ ତାଙ୍କର ଅଗ୍ନିଶିଖା ପରି ରୂପ ଓ ତେଜ ଦେଖି ପଲ୍ଲୀବାସୀମାନଙ୍କର ମସ୍ତକ ସ୍ୱତଃ ଅବନତ ହେଲା । ମହାକାଞ୍ଚନ ସ୍ମିତ ବଦନରେ ସେମାନଙ୍କୁ ଆଶୀର୍ବାଦ କରି ପଛକୁ ଚାହିଁ ଦେଖିଲେ ମହାଶାଳ ରଥରୁ ଅବତରଣ କରିନାହାନ୍ତି । ସେ ବୁଝି ପାରିଲେ ଯେ ମହାମାନ୍ୟ ଅତିଥି ରଥରୁ ଅବତରଣ କରିବା ସମୟରେ ସସମ୍ମାନେ ହସ୍ତ ପ୍ରସାରଣ କରି ତାଙ୍କୁ ଯେପରି ପାଛୋଟି ଆଣନ୍ତି ସେପରି କେହି କରି ନଥିବା ଯୋଗୁଁ ସେ ରଥରୁ ଅବତରଣ କରିନାହାନ୍ତି । ସେ ଅଳ୍ପ ହସି ହସ୍ତ ପ୍ରସାରଣ କରି ମହାଶାଳଙ୍କୁ ରଥରୁ ଅବତରଣ କରିବାରେ ସାହାଯ୍ୟ କଲେ ।

ପଲ୍ଲୀବାସୀମାନେ ମହାକାଞ୍ଚନ ଓ ମହାଶାଳଙ୍କୁ ଘେରି ଯାଇ ବିପୁଳ ଜୟଧ୍ୱନି କରିବାକୁ ଲାଗିଲେ । ମହାକାଞ୍ଚନ ସମସ୍ତଙ୍କ ମସ୍ତକ ସ୍ପର୍ଶ କରି ଆଶୀର୍ବାଦ କରୁ କରୁ ଅଗ୍ରସର ହେଲେ ଏବଂ ତାଙ୍କର ପଶ୍ଚାତ୍‌ରେ ମହାଶାଳ ସ୍ୱୀୟ ତରବାରି ଦ୍ୱାରା ପଲ୍ଲୀବାସୀମାନଙ୍କୁ ନିଜଠାରୁ ଦୂରରେ ରଖି ଅଗ୍ରସର ହେବାକୁ ଲାଗିଲେ । ପିତାମାତାଙ୍କ ସମୀପବର୍ତ୍ତୀ ହୁଅନ୍ତେ ମହାକାଞ୍ଚନ ଓ ମହାଶାଳ ପିତାମାତାଙ୍କୁ ଭୂମିଷ୍ଠ ପ୍ରଣାମ କଲେ । କାତ୍ୟାୟନୀ ଦେବୀ ଆନନ୍ଦାଶ୍ରୁ ସମ୍ବରଣ କରି ପାରିଲେ ନାହିଁ । ସୋମଦତ୍ତଙ୍କ ଚକ୍ଷୁ ମଧ ବାଷ୍ପାକୁଳ ହୋଇଗଲା । ପିତାମାତାଙ୍କୁ ପ୍ରଣାମ କରିବା ପରେ ମହାକାଞ୍ଚନ ପଚାରିଲେ, - ତାତ, ମହାସାର କାହିଁ ? ଜନତା ମଧ୍ୟରୁ କେହି ବିଦ୍ରୂପ କରି କହିଲା, ମହାମୂର୍ଖ ଏହିଠାରେ - ସମସ୍ତ ଜନତା ହସି ଉଠିଲେ ।

ମହାସାର ଜନତାର ସବା ପଛରେ ଛିଡ଼ା ହୋଇଥିଲେ । ଜ୍ୟେଷ୍ଠ ଭ୍ରାତା ତାହାଙ୍କ ଦର୍ଶନାଭିଳାଷୀ ଶୁଣି ସେ ଆନନ୍ଦରେ ସମସ୍ତଙ୍କୁ ବାଟ ଛାଡ଼ିବା ପାଇଁ ଅନୁରୋଧ କରୁ କରୁ ମହାକାଞ୍ଚନଙ୍କ ନିକଟକୁ ଗଲେ । ନିଜେ ଜ୍ୟେଷ୍ଠ ଭ୍ରାତାଙ୍କୁ ସାଷ୍ଟାଙ୍ଗ ପ୍ରଣିପାତ କରି ସେ ସନ୍ତାନମାନଙ୍କୁ ଓ ଇରାକୁ ତଦ୍ରୂପ ପ୍ରଣାମ କରିବାକୁ କହିଲେ । ମହାକାଞ୍ଚନ ସେମାନଙ୍କ ମସ୍ତକ ଆଘ୍ରାଣ କରି ଆଶୀର୍ବାଦ କରି ଆନନ୍ଦରେ କହିଲେ, ସୁଧନ୍ୟ ! ମହାସାରର ସନ୍ତାନଗୁଡ଼ିକ ବେଶ୍ ସୁସ୍ଥ ଓ ସବଳ ହୋଇଛନ୍ତି । ମହାସାର ଓ ତାଙ୍କର ସ୍ତ୍ରୀ ଓ ସନ୍ତାନମାନେ ମହାକାଞ୍ଚନଙ୍କୁ ପ୍ରଣିପାତାନ୍ତେ ମହାଶାଳଙ୍କୁ ପ୍ରଣାମ କଲେ । ମହାଶାଳ ମୁଣ୍ଡ ସାମାନ୍ୟ ନୁଆଇଁ ସେମାନଙ୍କୁ ଆଶୀର୍ବାଦ ଜ୍ଞାପନ କଲେ ।

ପଲ୍ଲୀବାସୀମାନେ ଶୋଭାଯାତ୍ରାରେ ସୋମଦତ୍ତ, କାତ୍ୟାୟନୀ ଦେବୀ, ମହାକାଞ୍ଚନ ଓ ମହାଶାଳଙ୍କୁ ନେଇ ଗୋଟିଏ ବୃକ୍ଷ ତଳେ କାଷ୍ଠାସନରେ ବସାଇଲେ । ଏହା ପରେ ଉତ୍ସବ ଆରମ୍ଭ ହେଲା । ପଲ୍ଲୀବାସୀ ଯୁବକମାନେ ନାନା କ୍ରୀଡ଼ା କୌତୁକ

ଦେଖାଇଲେ । ମଧୁକର ମଧ ନିଜ ନାଟକରୁ ଆବୃତ୍ତି କରି ପାଠ କରିବାକୁ ଲାଗିଲେ ଏବଂ ଯାଦୁବିଦ୍ୟା ଦେଖାଇଲେ । ତାହାପରେ ଯୁବତୀମାନେ ନୃତ୍ୟ ଗୀତ ଆରମ୍ଭ କଲେ ।

ମହାକାଞ୍ଚନ ଓ ମହାଶାଳ ଉତ୍ସବ କ୍ଷେତ୍ରରେ କିଛି କ୍ଷଣ ରହି ପିତାମାତା ସହ ସ୍ୱଗୃହକୁ ଯାତ୍ରା କଲେ । ପଲ୍ଲୀବାସୀମାନେ ଦିନଟିଯାକ ନାନା କ୍ରୀଡ଼ା କୌତୁକ କରି ରାତ୍ରିରେ ପ୍ରୀତିଭୋଜନ ପରେ ସ୍ୱ ସ୍ୱ ଗୃହକୁ ପ୍ରତ୍ୟାବର୍ତ୍ତନ କଲେ ।

ମହାଶାଳ ଏଥି ମଧରେ କୌଣସି ପଲ୍ଲୀବାସୀଠାରୁ ମହାସାରର ସମସ୍ତ ତଥାକଥିତ କଳଙ୍କ କାହାଣୀ ଶୁଣି ସାରିଥିଲେ ।

ନିଜ ଗୃହରେ ପ୍ରବେଶ କରିବା ମାତ୍ରକେ ମହାଶାଳ ଦୃପ୍ତ କଣ୍ଠରେ କହିଲେ,- ମହାକାଞ୍ଚନ, ମହାସାର ଆମ୍ଭମାନଙ୍କର ସମସ୍ତ ମର୍ଯ୍ୟାଦା ଓ ଗୌରବରେ କୁଠାରାଘାତ କରିଛି ।

ମହାକାଞ୍ଚନ ଏ ସମ୍ବାଦରେ କିଛି ମାତ୍ର ବିଚଳିତ ନ ହୋଇ କହିଲେ, - ମୁଁ ଜାଣେ ତୁମେ ଯାହା କହିବାକୁ ଯାଉଛ ।

ମହାଶାଳ ବିସ୍ମିତ ହୋଇ ପଚାରିଲେ, ଆଶ୍ଚର୍ଯ୍ୟ ! ତୁମ୍ଭେ ଜାଣି ଶୁଣି ସୁଦ୍ଧା...

ମହାକାଞ୍ଚନ ସେହିପରି ଶାନ୍ତ ଭାବରେ କହିଲେ, ମୋତେ ଅନେକ ଦିନରୁ ଏହା ଜ୍ଞାତ । ନାନା କାର୍ଯ୍ୟବଶତଃ ଭଗବାନ ମୋତେ ପିତାମାତାଙ୍କର ସେବା ସୁଖରୁ ବଞ୍ଚିତ କଲେ ମଧ ମୁଁ ସମସ୍ତଙ୍କର ସମ୍ବାଦ ସଂଗ୍ରହ କରେ ।

ମହାଶାଳ ବିରକ୍ତ ଭାବରେ କହିଲେ, କଳିଙ୍ଗର ବିରାଟ ସେନାର ସେନାପତି ହେବା ଯେ କି ଦୁରୂହ କାର୍ଯ୍ୟ ତାହା ତୁମ୍ଭେ ସ୍ୱଚକ୍ଷୁରେ ଦେଖି ଆସିଛ । ମୋର ଏ ସାମାନ୍ୟ କାର୍ଯ୍ୟ ପାଇଁ ସମୟ ନଥାଏ । କିନ୍ତୁ ମହାସାରର ସବୁ କଥା ଯଦି ତୁମ୍ଭେ ଆଗହୁଁ ଜ୍ଞାତ ଥିଲ ତେବେ ଏହାର ପ୍ରତିକାର ନକରି ସ୍ଥିର ଥିଲ କିପରି ? ପିତା ଯଦି ମୋତେ ପୂର୍ବେ ସମ୍ବାଦ ଦେଇ ଥାଆନ୍ତେ ତେବେ ମୁଁ ଏହାର କଠୋର ପ୍ରତିକାର କରି ଥାଆନ୍ତି ।

ମହାକାଞ୍ଚନ କହିଲେ, ଆମ୍ଭ ଦୁହିଁଙ୍କର ଅନୁପସ୍ଥିତିରେ ମହାସାର ପିତାମାତାଙ୍କର ବୃଦ୍ଧ ବୟସରେ ସେବା ଶୁଶ୍ରୂଷା କରିଅଛି । ତେଣୁ ତା'ର ପଦସ୍ଖଳନ ମୁଁ କ୍ଷମଣୀୟ ବୋଲି ଭାବେ ।

ମହାଶାଳ ଘୃଣାର ସହିତ କହିଲେ, ମହାକାଞ୍ଚନ, ମୁଁ ସୈନିକ । ମୁଁ ବଂଶମର୍ଯ୍ୟାଦାକୁ ସବୁଠାରୁ ଉଚ୍ଚ ସ୍ଥାନ ଦିଏ । ବଂଶମର୍ଯ୍ୟାଦାର ହାନି କଲେ ଯେଉଁ ଗୁରୁପାପ ହୁଏ ତା ତୁଳନାରେ ପିତାମାତାଙ୍କର ସେବା ଜନିତ ପୁଣ୍ୟ ଅତି ସାମାନ୍ୟ ।

ମହାକାଞ୍ଚନ ଅବଜ୍ଞା ସହ କହିଲେ, ମହାଶାଳ ପାପ ପୁଣ୍ୟ ବିଷୟରେ ମୋତେ ଅଧିକ ଜଣା, ତୁମ୍ଭେ ସ୍ୱୀକାର କରିବାକୁ ବାଧ୍ୟ । ତୁମ୍ଭେ ନାସ୍ତିକର କର୍ମଚାରୀ ମାତ୍ର । ପିତାମାତାଙ୍କର ସେବା ଯେ କେତେ ପୁଣ୍ୟ ତାହା ଉପଲବ୍ଧି କରିବାର ଶକ୍ତି ତୁମ୍ଭର ନାହିଁ ।

ତୁମ୍ଭେ ପିତାମାତାଙ୍କର ଦର୍ଶନଜନିତ ପୁଣ୍ୟ ଅର୍ଜନ ପାଇଁ ଆସି ନାହଁ । ଏବେ ମଧ ତୁମ୍ଭେ ଯେ ଅଭିପ୍ରାୟରେ ଆସିଅଛ ମୁଁ ତାହା ଅଜ୍ଞାତ ନୁହଁ ।

- ତୁମ୍ଭେ କିଛି ଜାଣନା ।

- ମୁଁ ଯାହା ଜାଣେ ତାହା ପ୍ରକାଶ କରିବାର ସମୟ ବର୍ତ୍ତମାନ ନୁହଁ । ଏତିକି ମାତ୍ର କହି ରଖେ ଯେ ବିନୀତା ବର୍ତ୍ତମାନ ଅନ୍ୟ ମାର୍ଗରେ । ସେ ଯାହା ହେଉ, ତୁମ୍ଭେ ଯେଉଁ ଖ୍ୟାତି ଅର୍ଜନ କରିଅଛ ମହାସାରର କଳଙ୍କ ତାହାକୁ ତିଳେ ମାତ୍ର ହ୍ରାସ କରିବାକୁ ସକ୍ଷମ ହେବ ନାହିଁ । ତେଣୁ ମହାସାରର କଳଙ୍କ ପାଇଁ ତୁମ୍ଭର ଚିନ୍ତିତ ହେବାର କିଛି ନାହିଁ । ତୁମ୍ଭେ ନିଜ ଖ୍ୟାତି ଓ ଯଶଃବଳରେ ବୌଦ୍ଧ ରାଜ୍ୟର ପ୍ରାଦେଶିକଙ୍କୁ ତାଙ୍କର କନ୍ୟା ବିନୀତାଙ୍କର ପାଣିଗ୍ରହଣ ପ୍ରସ୍ତାବ ଦେଇପାର ।

- ମହାକାଞ୍ଚନ, ବିନୀତାଙ୍କ ସହିତ ତୁମ୍ଭର ପ୍ରେମ କଥା ମୋତେ ଅଜ୍ଞାତ ବୋଲି ଭାବିବ ନାହିଁ । ତୁମ୍ଭେ ଯେ ସେହିପରି ଉଦ୍ଦେଶ୍ୟରେ ନ ଆସିଛ ତା'ର ପ୍ରମାଣ ବା କାହିଁ । ଯେଉଁମାନଙ୍କର ମୌଖିକ ଆଦର୍ଶ ଓ ଅନ୍ତରର କାମନାରେ ଆକାଶ ପାତାଳ ପ୍ରଭେଦ ସେମାନଙ୍କୁ ଶାସ୍ତ୍ରରେ କ'ଣ କହନ୍ତି ତାହା ତୁମ୍ଭଙ୍କୁ ଅଧିକ ଜଣା, ସ୍ୱୀକାର କରୁଛି । କିନ୍ତୁ ମୁଁ ଜାଣେ, ସେମାନଙ୍କର ପରାଜୟ ସୁନିଶ୍ଚିତ । ତାହା ମଧ ଉତ୍ତମ ରୂପେ ଅନୁଭବ କରି ସାରିଛ ।

ମହାକାଞ୍ଚନଙ୍କ ଆଖି ଜଳି ଉଠିଲା । କିନ୍ତୁ ସେ ଆତ୍ମ ସମ୍ବରଣ କରି ନିରୁତ୍ତର ରହିଲେ । ମହାସାର ତା'ର ଭାର୍ଯ୍ୟା ଓ ସନ୍ତାନମାନଙ୍କୁ ପିତାମାତାଙ୍କ ପଖାରେ ବସାଇ ନିଜେ ଅଗ୍ରଜମାନଙ୍କ ପାଖରେ ଆସି ଅଧୋବଦନରେ ବସିଥିଲେ । ଆଜିକାର ଆନନ୍ଦରେ ଦୁଇ ଜ୍ୟେଷ୍ଠଙ୍କ ମଧରେ ଅପ୍ରୀତିକର କିଛି ଘଟିବାର ଆଶଙ୍କାରେ ସେ ଉଠି କହିଲେ, ଆପଣମାନେ ଶାନ୍ତ ହୁଅନ୍ତୁ । ସବୁ ବଂଶରେ କେଉଁ ସମୟରେ ଗୋଟାଏ କୁଳକଳଙ୍କ ଜନ୍ମ ହୋଇଥାଏ । ମୋତେ ତାହା ହିଁ ଭାବି କ୍ଷମା କରନ୍ତୁ । ଆପଣମାନଙ୍କର କୀର୍ତ୍ତି ହିମାଳୟ ପରି ଉନ୍ନତ, ସମସ୍ତେ କାଳକାଳକୁ ଆପଣମାନଙ୍କୁ ସ୍ମରଣ ରଖିବେ । ମୋତେ ସମସ୍ତେ ପାଶୋରି ପକାଇବେ । ଭବିଷ୍ୟତର ଗୌରବ ଗାଥ ।ରେ ମୁଁ ବା ମୋ ଭଳି ଲୋକମାନଙ୍କର କଥା ଲିଖିତ ରହିବ ନାହିଁ, ରହିବ ଆପଣମାନଙ୍କର କୀର୍ତ୍ତି କଥା ।

ମହାଶାଳ ଗର୍ଜି ଉଠି କହିଲେ, - ତୁମକୁ ଧିକ୍, ଶତଧିକ୍, ମୋର କୀର୍ତ୍ତି ତୁମେ ମଳିନ କରି ଦେଇଅଛ ।

ମହାସାର ବିନୀତ ଭାବରେ କହିଲେ, - ଭାଇ, ସମସ୍ତ ବିଷୟଟି ଟିକିଏ ସହଜ ଭାବରେ ଆଲୋଚନା କରନ୍ତୁ । କୌଣସି ବିଷୟ ବା ସମସ୍ୟାକୁ ଯଦି ନିଜର ବା ବଂଶର ବା ଧର୍ମର ବା ଜାତିର ମର୍ଯ୍ୟାଦାଭିମାନ ଦୃଷ୍ଟିରୁ ଦେଖାଯାଏ ତେବେ ବିଷୟଟି ଅଯଥା ବୃହତ୍ ଓ ଜଟିଳ ମନେ ହୁଏ । ଧରନ୍ତୁ, ବ୍ୟବସାୟରେ ପ୍ରତିଦ୍ୱନ୍ଦ୍ୱିତା ହେତୁ ଜଣେ ଆଉ ଜଣକୁ ବିଦ୍ୱେଷ କଲା, ଏପରିକି ହତ୍ୟା ପାଇଁ ଚେଷ୍ଟିତ ହେଲା । ଦୁହିଁଙ୍କର ଜଣେ ମନେ କରନ୍ତୁ ବ୍ରାହ୍ମଣ ଅନ୍ୟ

ଜଣେ ବୌଦ୍ଧ ଅଥବା ଜୈନ । ଏବେ ଆମେ ଯଦି ଦୁହିଁଙ୍କ ମଧ୍ୟରେ ସ୍ୱାଭାବିକ ପ୍ରତିଦ୍ୱନ୍ଦ୍ୱିତା ଓ ତଜ୍ଜନିତ ନିନ୍ଦନୀୟ ବିଦ୍ୱେଷ କଥା ନ ଭାବି ଏଥିରେ ତଦପେକ୍ଷା ନିନ୍ଦନୀୟ ଧର୍ମୀୟ ବିଦ୍ୱେଷ କଳ୍ପନା କରି ବସୁ ତା' ହେଲେ ତତ୍‌କ୍ଷଣାତ୍ ବ୍ୟାପାରଟି କେତେ ଗୁରୁତର ହୋଇ ପଡୁଛି ଥରେ ଚିନ୍ତା କରନ୍ତୁ । ସେ ବିଦ୍ୱେଷ ବ୍ୟବସାୟ କ୍ଷେତ୍ରରୁ ହଠାତ୍ ଜାତିଧର୍ମ ମର୍ଯ୍ୟାଦାଭିମାନ କ୍ଷେତ୍ରକୁ ଚହଟି ଯାଇ ଦୁଇ ଧର୍ମ ସମ୍ପ୍ରଦାୟ ମଧ୍ୟରେ ପ୍ରଚଣ୍ଡ ଶତ୍ରୁତା ମଧ୍ୟ ସୃଷ୍ଟି କରିପାରେ । ଆମେ ସ୍ୱୟଂ ବ୍ରାହ୍ମଣ ବୋଲି ହୁଏତ ନ୍ୟାୟ ନ ଦେଖି ବ୍ରାହ୍ମଣ ପକ୍ଷ ଅବଲମ୍ବନ କରି ବସିବୁ, ମୂଳ ସମସ୍ୟାଟି ଆମ ଦୃଷ୍ଟିରୁ ଅନ୍ତର ହୋଇଯିବ । ଅଯଥା ଜାତି ଧର୍ମକୁ ନ ଚାହିଁ ସେ ଦୁହିଙ୍କୁ କେବଳ ମନୁଷ୍ୟ ବୋଲି ଦେଖିଲେ ଆମେ ଏ ଘଟଣାର ନ୍ୟାୟ ଦେଖି ପାରନ୍ତେ ।

ମାତ୍ର ଅଗ୍ରଦ୍ୱୟଙ୍କ ବ୍ରାହ୍ମଣତ୍ୱର ଅଭିମାନ ଅଧିକ । ମହାଶାଳଙ୍କ ପୁଣି ତଦୁପରି ଶକ୍ତିର ମଦ, ସେ କହିଲେ, - ତୁମେ ଅନ୍ତତଃ ବ୍ରାହ୍ମଣର ଉପଯୁକ୍ତ କାର୍ଯ୍ୟ ପୌରୋହିତ୍ୟ ଅବଲମ୍ବନ କରି ପାରିଥାନ୍ତ, କିନ୍ତୁ ତୁମେ ତୁନ୍ନବାୟର ବ୍ୟସାୟ ଧରିଲ ।

- ପୁରୋହିତ ହେବା କଥା ମୁଁ ଭାବି ନାହିଁ ଏପରି ନୁହେଁ, ବ୍ରାହ୍ମଣ ସନ୍ତାନ ପକ୍ଷେ ତା' ସ୍ୱାଭାବିକ ଥିଲା । କିନ୍ତୁ ମୋର ଗୋଟାଏ ଦୋଷ ମୁଁ ଭାବି ବସିଲେ ଟିକିଏ ବେଶି ଆଗକୁ ଭାବି ପକାଏ ! ମୋତେ ଯେମିତି ଦେଖାଗଲା ମନୁଷ୍ୟ ଓ ଭଗବାନ ମଧ୍ୟରେ ପୁରୋହିତ ଏକ ମଧ୍ୟସ୍ୱତ୍ୱାଧିକାରୀ ଭଳି । ଅପରପକ୍ଷେ, ତୁନ୍ନବାୟ କହନ୍ତୁ ତନ୍ତୁବାୟ କହନ୍ତୁ, ଏପରିକି ସମସ୍ତଙ୍କ ତଳେ ସାମାନ୍ୟ ରାଜପଥସମ୍ମାର୍ଜକ କହନ୍ତୁ ସେମାନେ ସମାଜର ଅତି ପ୍ରୟୋଜନୀୟ କାର୍ଯ୍ୟ ସମ୍ପାଦନ କରିଥାଆନ୍ତି, ପରିବର୍ତ୍ତେ ସାମାନ୍ୟ ବେତନ ମାତ୍ର ନିଅନ୍ତି । ଜୀବନଧାରଣର କି ସରଳ ଓ ସତ୍‌ମାର୍ଗ ।

ଏ କଥାର ସତ୍ୟତାକୁ ଅସ୍ୱୀକାର କରି ନ ପାରି ମହାଶାଳ ଏ ଥର ଧୈର୍ଯ୍ୟ ହରାଇ ତରବାରି କୋଷମୁକ୍ତ କରି ସଗର୍ଜନେ ମହାସାରଙ୍କ ଆଡ଼କୁ ଅଗ୍ରସର ହେଲେ । ମହାକାଞ୍ଚନ ଝଟିତି ଉଠିଯାଇ ମହାସାରଙ୍କୁ ଅନ୍ତରାଳ କଲେ । ମହାଶାଳ ନିରସ୍ତ ହେଲେ ।

ଅତଃପର ମହାସାର ଅଗ୍ରଜଦ୍ୱୟଙ୍କୁ ପ୍ରଣାମ କରି ସ୍ତ୍ରୀ ଓ ସନ୍ତାନଙ୍କୁ ଧରି ସ୍ୱଗୃହକୁ ଫେରିଗଲେ ।



ରାତ୍ରିଭୋଜନାନ୍ତେ ମଧୁକର ଶୟନ କରିବାକୁ ଗଲେ । ଉତ୍ସବରୁ ପ୍ରତ୍ୟାବର୍ତ୍ତନ ପରେ ଆଜି ତାଙ୍କର ମନର ଉତ୍ସ ଉଠୁଛି ପଡୁଛି । ସେ ନ ଶୋଇ ଦୀପଟି ତେଜି ଦେଇ ଉଚ୍ଚ କଣ୍ଠରେ ନିଜ ନାଟକରୁ ଆବୃତ୍ତି କରିବାକୁ ଲାଗିଲେ । ଆଜି ମାଧ୍ୱୀ ସୁରା ଟିକିଏ ଅତି

ମାତ୍ରାରେ ସେ ପାନ କରି ଅଛନ୍ତି । ମନର ଆବେଗ ଆଜି ତାଙ୍କର ଆଉ ସ୍ଥାନ କାଳ ପାତ୍ରର ବାଧା ମାନୁନାହିଁ ।

ଚମ୍ପାର ମା' ସମସ୍ତ ଗୃହକାର୍ଯ୍ୟ ସମାପନ କରି ଧୀରେ ପ୍ରବେଶ କରି କହିଲେ - ମଧୁକର, କିଛି ବିଶେଷ କଥା ଅଛି । ତୁମ୍ଭେ ପ୍ରଳାପ ବନ୍ଦ କର-

ମଧୁକର ନିଜର ଓଷ୍ଠରେ ଅଙ୍ଗୁଳି ରଖି କହିଲେ, - ନାରୀ, ତୁଷ୍ଣୀମ୍ଭବ । ଏ ଯୁଗର ଜଣେ ମହାକବିର ନାଟକ ଶୁଣ...

ଚମ୍ପାର ମା' ଶାନ୍ତ କୌତୁକ ସହିତ କହିଲେ, - ସେ ଅଧମ ମହାକବି କିଏ ମୁଁ ଜାଣେ । ସେ ଲେଖା ସବୁ ଦିନେ ମୋର ରୋଷ ଘରର ଇନ୍ଧନ ହେବ । ସେ ସବୁ ରଖି ମୋ କଥା ଶୁଣ ।

ମଧୁକର ହତାଶ ଭାବରେ କହିଲେ, ହାୟ ନାରୀ, ତୁମ୍ଭେ ଚିରଦିନ ନାରୀ ! ଯଥାର୍ଥରେ ଚାଣକ୍ୟ କହିଛନ୍ତି - ନଖୀ-ଦନ୍ତୀ-ଶୃଙ୍ଗୀ-ସ୍ତ୍ରୀଣାଂ...

- ଦଶହାତ ଦୂରରେ ରଖିବାକୁ ନା ? କିନ୍ତୁ ଭଗବାନ ଏମିତି କରିଛନ୍ତି ଯେ ଦୁହେଁ ଦୁହିଙ୍କ ସହିତ ମିଶିଯିବାକୁ ଚାହାନ୍ତି । ଅଯଥା ଗୁଡ଼ାଏ ଲେଖି ଲାଭ କ'ଣ ହୁଏ ଶୁଣେ ! ମୋ କଥା ଶୁଣ ।

-କୁହ ଆର୍ଯ୍ୟେ, ଶୀଘ୍ର କୁହ ।

ଚମ୍ପାର ମା' ଚମ୍ପାର ଭଗବଦ୍ଦର୍ଶନ ବିଷୟଟି ଆମୂଳଚୂଳ କହିଲେ । ମଧୁକର ସମସ୍ତ ଶୁଣି ହସି କହିଲେ, ଅଳୀକ ସ୍ୱପ୍ନ ବ୍ୟତୀତ ଆଉ କିଛି ନୁହେଁ ।

- ମୁଁ ତ ତାହା ହିଁ କହିଲି ଚମ୍ପାକୁ । କିନ୍ତୁ ସେ ଯେପରି ଭାବରେ ସବୁ କହୁଛି ସେଥିରେ ତ ସ୍ୱପ୍ନ ମନେ ହେଉ ନାହିଁ ।

ମଧୁକର କିଛିକ୍ଷଣ ଚିନ୍ତା କରି କହିଲେ, ମୁଁ ଚମ୍ପା ମୁଖରୁ ନିଜେ ସବୁ ଶୁଣିବାକୁ ଚାହେଁ ।

ଚମ୍ପାର ମା' ଚମ୍ପାକୁ ଡାକନ୍ତେ ଚମ୍ପା ବିଶଦ ଭାବରେ ସମସ୍ତ ଘଟଣାଟି ପୁଣି ଥରେ କହିଲା ।

ମଧୁକର ସସ୍ନେହେ ଚମ୍ପାର ମସ୍ତକରେ ହାତ ରଖି କହିଲେ, - ମା, ଭଗବାନ ଅଛନ୍ତି ଏ କଥାର ପ୍ରମାଣ ଆଜି ପର୍ଯ୍ୟନ୍ତ ହୋଇନାହିଁ । ସେ ଯଦି ଥାଆନ୍ତି ତେବେ ବି ତାଙ୍କର କି ରୂପ ତାହା ମଧ କେହି ଜାଣନ୍ତି ନାହିଁ । ତାଙ୍କର ଯଦି କୌଣସି ରୂପ ଥାଏ ତେବେ ସେ ରୂପ ଦେଖିବାକୁ ଯୋଗ ସାଧନା ଦରକାର ବୋଲି ଅନେକେ କୁହନ୍ତି । ତୋର କି ସାଧନା ଅଛି ?

- ମଧୁକକା, ମୋର ଦୁଃଖ ହିଁ ମୋ ସାଧନା । ଚମ୍ପା ଆଉ କହି ପାରିଲା ନାହିଁ ।

ମଧୁକର ତା'ର ଲୁହ ପୋଛି କହିଲେ, - ମା', ତୁ ବୁଝିପାରୁନୁ । ଏ କଥା ପ୍ରକାଶ

ପାଇଲେ ବିଭ୍ରାଟ ସୃଷ୍ଟି ହେବ । ବୌଦ୍ଧରାଜ୍ୟର ପ୍ରାଦେଶିକ ସୁଭଦ୍ରଦେବ ବୌଦ୍ଧମତ ହିଁ ପୋଷଣ କରନ୍ତି । ତାଙ୍କର ଏକମାତ୍ର କନ୍ୟା ବିନୀତା ଭିକ୍ଷୁଣୀ ବ୍ରତ ଗ୍ରହଣ କରିଅଛନ୍ତି । ଏଣେ କଳିଙ୍ଗ ସମ୍ରାଟ ଖାରବେଳ ଜୈନ ଏବଂ ତାଙ୍କର ମହାସୈନ୍ୟାଧକ୍ଷ ମହାଶାଳ ସ୍ୱୟଂ ସୁଖପଲ୍ଲୀରେ ବର୍ତ୍ତମାନ । ପୁଣି ଯିଏ ଆଦେଶ ଦେଲେ ତୁ ତୋର ପାଦ ଫେରି ପାଇବୁ ବୋଲି ବିଶ୍ୱାସ କରୁଛୁ ସେ ମହାକାଞ୍ଚନ ବ୍ରାହ୍ମଣ, ଯିଏ ବୌଦ୍ଧ ଓ ଜୈନ ଧର୍ମକୁ ଘୃଣା କରେ । ଏ କଥାଟି ପ୍ରକାଶ ପାଇଲେ ତୋତେ କେଉଁ ଭଗବାନ କାହାର ଭଗବାନ ଦର୍ଶନ ଦେଇଛନ୍ତି ତା' ନେଇ ତୁମୁଳ ବାଦାନୁବାଦ ଉପସ୍ଥିତ ହେବ ଏବଂ ସେ ବିବାଦର ପରିସମାପ୍ତି କେଉଁଠାରେ ହେବ ତାହା କିଏ କହିପାରେ ? ବର୍ତ୍ତମାନ ଏ କଥା ପ୍ରକାଶ କରିବାର ସମୟ ନୁହଁ । ପରେ ଚିନ୍ତା କରି ମୁଁ ପନ୍ଥା ନିରୂପଣ କରିବି ।

ଚମ୍ପା ଅଧୀର ଭାବରେ କହିଲା, - ସେ ଭଗବାନ ଯାହାର ହୁଅନ୍ତୁ, ମହାକାଞ୍ଚନ ଯେ ସୋମଦତ୍ତର ସବୁ ପୁତ୍ରମାନଙ୍କଠାରୁ ଧାର୍ମିକ ଏଥିରେ ତ ସନ୍ଦେହ ନାହିଁ । ଆଉ ମୁଁ ଶୁଣିଛି ଯୋଗୀମାନଙ୍କର ଅଦ୍ଭୁତ କ୍ଷମତା ଥାଏ । ମହାକାଞ୍ଚନ ଆଦେଶ ଦେଲେ ମୁଁ ମୋର ଗୋଡ଼ ଫେରି ପାଇବି, ଏଥିରେ ମୋର ସନ୍ଦେହ ନାହିଁ । ଏଥିରେ ଆଉ ସନ୍ଦେହ କରିବାର କିଛି ନାହିଁ ମଧୁକକା । ତୁମ୍ଭେ ମହାକାଞ୍ଚନକୁ ଏକଥା ଜଣାଅ ।

ମଧୁକର କହିଲେ, - ଆଚ୍ଛା, ତୁ ଶୋଇବୁ ଯା । କାଲି ଯାହା କରିବାର କରାଯିବ । ବର୍ତ୍ତମାନ ରାତି ଅନେକ ହେଲାଣି, ତୁ ଶୋଇବୁ ଯା ।

ଚମ୍ପା ଶୋଇବାକୁ ଯିବା ପରେ ମଧୁକର ଚମ୍ପାର ମା'କୁ କହିଲେ, ଉତ୍ସବକୁ ନ ଯାଇ ସେ ଦୁଃଖରେ ଅଧୀରା ହୋଇଥିବାରୁ ଏପରି ସ୍ୱପ୍ନ ଦେଖିଛି । ଆଜି ରାତ୍ରିରେ ଶୟନ କରିବା ପରେ କାଲି ସକାଳେ ସେ ନିଜେ ବୁଝି ପାରିବ ଯେ ସେ ସ୍ୱପ୍ନ ଦେଖିଥିଲା । ଯାଅ, ଶୋଇବ ଯାଅ ।

ପରଦିନ ସକାଳ ନ ହେଉଣୁ ଚମ୍ପା ମଧୁକର ନିକଟକୁ ଯାଇ ତାହାକୁ ଶେଯରୁ ଠେଲି ଉଠାଇ କହିଲା, - ମଧୁକକା, ସକାଳ ହେଲାଣି । ଉଠ, ମହାକାଞ୍ଚନ ନିକଟକୁ ଯିବ ପରା ?

ମଧୁକର ଚମ୍ପାକୁ କିଛିକ୍ଷଣ ବିସ୍ମୟରେ ଚାହିଁ ମନେ ମନେ ଚିନ୍ତା କଲେ ତେବେ କ'ଣ ଚମ୍ପାର ସ୍ୱପ୍ନ ସ୍ୱପ୍ନ ନୁହେଁ, ସତ୍ୟ ?

ସେହି ଦିନ ପକ୍ଷର ଚତୁର୍ଦ୍ଦଶ ଦିବସ ଥିବାରୁ ପ୍ରତିମୋକ୍ଷ ପାଇଁ ଚମ୍ପାର ମା' ସକାଳୁ ସ୍ନାନ କରି ସୁଖପଲ୍ଲୀର ବୌଦ୍ଧ ସଂଘକୁ ଗଲେ । ଧର୍ମପାଳ ଉକ୍ତ ବୌଦ୍ଧ ସଂଘର ସିଦ୍ଧାଚାର୍ଯ୍ୟ । ସେ ଥିଲେ ବଜ୍ରଯାନ ପନ୍ଥୀ । ସୁଖପଲ୍ଲୀର ଆର୍ଯ୍ୟ ଆର୍ଯ୍ୟାଣୀମାନେ (ଗୃହସ୍ଥ ବୌଦ୍ଧ ଭିକ୍ଷୁ ଓ ଭିକ୍ଷୁଣୀ) ମାସର ପ୍ରତ୍ୟେକ ପକ୍ଷର ଚତୁର୍ଦ୍ଦଶ ଓ ପଞ୍ଚଦଶ ଦିବସରେ ବହୁମୂଲ୍ୟ ବସ୍ତ୍ର ପରିଧାନ କରି ମହାର୍ଘ୍ୟ ଆସନରେ ଉପବେଶନ କରି ଅନେକ ଗୁଡ଼ିଏ ପାପର ନାମ କହି ଯାଆନ୍ତି । ସେଗୁଡ଼ିକ ମଧ୍ୟରୁ ଯିଏ ଯେଉଁ ପାପ କରିଥାଏ ସ୍ୱୀକାର କରେ ଏବଂ ପାପର ମାତ୍ରାନୁସାରେ ଧର୍ମପାଳ ଅର୍ଥ ଦଣ୍ଡ ଦିଅନ୍ତି ।

ପ୍ରତିମୋକ୍ଷ ପରେ ଧର୍ମପାଳଙ୍କୁ ଏକା ପାଇ ଚମ୍ପାର ମା' କନ୍ୟାର ଭଗବଦ୍ଦର୍ଶନ ବିଷୟକ ସମସ୍ତ ଘଟଣା କହିଲେ । ଧର୍ମପାଳ ସମସ୍ତ କଥା ଶୁଣି କହିଲେ, - ମୋର ଧାରଣାରେ ମଧୁକର ଅତିଶୟ ପାପୀ । କିନ୍ତୁ ଏ କଥା ପ୍ରକାଶ କରିବାକୁ ବାରଣ କରି ସେ ବୁଦ୍ଧିମାନର କାର୍ଯ୍ୟ କରିଅଛି । ମୁଁ ଏ କଥା ବଜ୍ରଗୁରୁଙ୍କୁ ଜଣାଇବି । 'କିନ୍ତୋ ମନ୍ତେ କିନ୍ତୋ ତନ୍ତେ କିନ୍ତୋରେ ଝଣେ ବଖାଣେ । ଅପଇଠାନ ମହାସୁଖଲୀଲେ ଦୁଲଖ ପରମ ନୀବାଣେ ॥' ମନ୍ତ୍ର ତନ୍ତ୍ର ଧାନ ବା ବ୍ୟାଖ୍ୟାନରେ କିଛି ଲାଭ ନାହିଁ । ବଜ୍ରଗୁରୁଙ୍କ ଆଦେଶ ଅନୁସାରେ କାର୍ଯ୍ୟ କଲେ ସବୁ ସୁଖ ମିଳିବ । ଚମ୍ପା ଯେ ବାଳକରୂପୀ ବଜ୍ରସତ୍ତ୍ୱଙ୍କର ଦର୍ଶନ ପାଇଅଛି, ଏଥିରେ ସନ୍ଦେହ ନାହିଁ । ମୁଁ କାଲି ବଜ୍ରଗୁରୁଙ୍କୁ ସାକ୍ଷାତ କରିବାକୁ ଯାତ୍ରା କରିବି । ପ୍ରତ୍ୟାବର୍ତ୍ତନ ନ କରିବା ପର୍ଯ୍ୟନ୍ତ ତୁମ୍ଭେ କାହାରିକୁ, ବିଶେଷତଃ ପ୍ରାଦେଶିକଙ୍କ କନ୍ୟା ବିନୀତାଙ୍କୁ କିଛି କହିବ ନାହିଁ ।

ଚମ୍ପାର ମା' ବିଦାୟ ନେଲେ । ଧର୍ମପାଳ ମଧ ବ୍ୟସ୍ତ ଭାବରେ ବଜ୍ରଗୁରୁଙ୍କ ସକାଶେ ଯିବା ପାଇଁ ଆୟୋଜନ କରିବାକୁ ଲାଗିଲେ । ବଜ୍ରଗୁରୁଙ୍କ ଠାରୁ ଅନୁମତି ପାଇ ଯଦି ସ୍ୱୟଂ ଧର୍ମପାଳହିଁ ଚମ୍ପାକୁ ଆଦେଶ କରନ୍ତି ଏବଂ ଚମ୍ପା ତା'ର ଗୋଡ଼ ଫେରି ପାଏ ତେବେ ତାଙ୍କର ପ୍ରତିପତ୍ତି ଅଧିକ ବୃଦ୍ଧି ପାଇବ, ଏହି ଆଶାରେ ସେ ଅଧୀର ହୋଇ ପଡ଼ିଲେ ।

କିନ୍ତୁ ଧର୍ମପାଳ ଯାହା ଭୟ କରିଥିଲେ ତାହା ହିଁ ଘଟିଲା । ଚମ୍ପାର ମା' ବିନୀତାଙ୍କୁ ପ୍ରତ୍ୟେହ ଫୁଲ ଦେବାକୁ ଯା'ନ୍ତି । ସେଇ ସୂତ୍ରେ ଚମ୍ପାର ମା' ବିନୀତାଙ୍କ ନିକଟରେ ଆଦ୍ୟାନ୍ତ ସମସ୍ତ ଘଟଣା ସବିସ୍ତାରେ ବର୍ଣ୍ଣନା କଲେ । ଅବଶ୍ୟ ବର୍ଣ୍ଣନା ଶେଷରେ ଚମ୍ପାର ମା' ବିନୀତାଙ୍କୁ ଅନୁରୋଧ କଲେ ଯେ, ଏ କଥା ଯେପରି ଆଉ କେହି ନ ଜାଣନ୍ତି । କିନ୍ତୁ ସେ ନିଜେ କ୍ରମେ କ୍ରମେ ସମସ୍ତ ପଲ୍ଲୀବାସୀମାନଙ୍କୁ ସମସ୍ତ କହି ପ୍ରତ୍ୟେକକୁ ଅନୁରୋଧ କଲେ ଯେ ଏ କଥା ସେ ଯେପରି ଅନ୍ୟତ୍ର ପ୍ରକାଶ ନ କରନ୍ତି ।

## ୧୦

ବୌଦ୍ଧ ରାଜ୍ୟର ବର୍ତ୍ତମାନ ପ୍ରାଦେଶିକ ସୁଭଦ୍ର ଦେବ । ସୁଭଦ୍ରଙ୍କ ବିରାଟ ପ୍ରାସାଦ ସୁଖପଲ୍ଲୀଠାରୁ ଅନତିଦୂରରେ ମହାନଦୀ କୂଳରେ ଅବସ୍ଥିତ । ସୁଭଦ୍ରଙ୍କର ଆଶା ସେ ପ୍ରାଦେଶିକରୁ ରାଜୁକ ପଦକୁ କଳିଙ୍ଗାଧିପତି ଖାରବେଳଙ୍କ ଦ୍ୱାରା ଉନ୍ନୀତ ହେବେ । ଖାରବେଳଙ୍କ ଉତ୍ତର, ଦକ୍ଷିଣ, ପୂର୍ବ ଓ ପଶ୍ଚିମ ଅଭିଯାନମାନଙ୍କରେ ସେ ପ୍ରଭୂତ ଅର୍ଥ ଓ ସୈନ୍ୟ ସାହାଯ୍ୟ କରି ଖାରବେଳଙ୍କ ପ୍ରିୟପାତ୍ର ହୋଇ ପାରିଛନ୍ତି । ଦିନେ ସୁଯୋଗ ଦେଖି ସୁଭଦ୍ର ତାଙ୍କର ଏକ ମାତ୍ର ସନ୍ତାନ, କନ୍ୟା ବିନୀତାଙ୍କୁ ସମ୍ରାଟଙ୍କ ପୁତ୍ର କୁଡେପଙ୍କ ସହିତ ବିବାହ ଦେବାକୁ ଖାରବେଳଙ୍କୁ ଅନୁରୋଧ କରିଥିଲେ । ଖାରବେଳ ଏ ପ୍ରସ୍ତାବ ଅସ୍ୱୀକାର

କରିନଥିଲେ ହେଁ କୁଡେପ ସେତେବେଳେ ମାତ୍ର ଦ୍ୱାଦଶ ବର୍ଷ ବୟସ୍କ ଥିବାରୁ ତିନି ବର୍ଷ ପରେ କୁଡେପ ଯୌବରାଜ୍ୟରେ ଅଭିଷିକ୍ତ ହେବା ପରେ ଏ ପ୍ରସ୍ତାବ ପୁନରାୟ ଆଗତ କରିବାକୁ ସୁଭଦ୍ରଙ୍କୁ କହିଥିଲେ । ସୁଭଦ୍ର ତେଣୁ ବିନୀତାଙ୍କ ସହିତ କଳିଙ୍ଗ ଯୁବରାଜଙ୍କର ବିବାହ ସୁନିଶ୍ଚିତ ବୋଲି ଧରି ନେଇଥିଲେ ।

ବିନୀତା ସୁଭଦ୍ରଙ୍କର ଏକମାତ୍ର ସନ୍ତାନ ଥିବା ହେତୁ ଅତ୍ୟନ୍ତ ଆଦରରେ ପାଳିତା । ପିଲା ଦିନରୁ ବିନୀତା ତେଣୁ ଦୁର୍ବିନୀତା । ଥରେ କନ୍ୟାର ଶିକ୍ଷା ପାଇଁ ସୁଭଦ୍ର ଜଣେ ଆଚାର୍ଯ୍ୟ ନିଯୁକ୍ତ କରିଥିଲେ । ବିନୀତାର ଅମନୋଯୋଗିତା ପାଇଁ ଆଚାର୍ଯ୍ୟ ଦିନେ ଭର୍ତ୍ସନା କରନ୍ତେ ବିନୀତା ଆଚାର୍ଯ୍ୟଙ୍କୁ ପୋଥିରେ ପ୍ରହାର କରିଥିଲେ । ସୁଭଦ୍ର ଏ କଥା ଶୁଣି ଆଚାର୍ଯ୍ୟଙ୍କୁ କହିଥିଲେ- ମହାଶୟ, ମୋର କନ୍ୟା କଳିଙ୍ଗର ସମ୍ରାଜ୍ଞୀ ହେବ । ଆପଣ ତାକୁ ସେହିପରି ଜ୍ଞାନ କରି ବିଦ୍ୟା ଶିକ୍ଷା ଦେବେ । ଏହା ପରେ ବିନୀତାଙ୍କ ବିଦ୍ୟା ଶିକ୍ଷା ସ୍ଥଗିତ ରହିଲା ।

ବିନୀତା ବୟସରେ ମାତ୍ର ଦ୍ୱାଦଶ ବର୍ଷୀୟା ହେଲେ ମଧ୍ୟ ଦେହ ଓ ମନରେ ସେ ପରିପୂର୍ଣ୍ଣା ନାରୀ । ଦିନେ ବିନୀତା ପରିଚାରିକା ସହ ମହାନଦୀ କୂଳରେ ସାନ୍ଧ୍ୟ ଭ୍ରମଣ କରୁ କରୁ ଜଣେ ଯୁବକକୁ ମହାନଦୀରେ ସ୍ନାନ କରୁଥିବାର ଦେଖିଲେ । ଯୁବକର ସୁଠାମ ସୁନ୍ଦର ରୂପଶ୍ରୀ ଦେଖି ବିନୀତା ତାଙ୍କୁ ଚାହିଁ ରହିଲେ । ଯୁବକ ସ୍ନାନ ସମାପନ କରି ଚାଲିଯିବା ପରେ ବିନୀତା ପରିଚାରିକାକୁ ପଚାରିଲେ, ଏ ଯୁବକ କିଏ ?

ପରିଚାରିକା ତାଚ୍ଛଲ୍ୟ ସ୍ୱରରେ ଉତ୍ତର ଦେଲା, ସେ ସୁଖିପଲ୍ଲୀର ଜଣେ ଦରିଦ୍ର ବ୍ରାହ୍ମଣର ଜ୍ୟେଷ୍ଠପୁତ୍ର, ନାମ ମହାକାଞ୍ଚନ । ନବୀନବୟଃସ୍ଥ ମହାକାଞ୍ଚନ ସେ ସମୟରେ ପିତାଙ୍କ ନିକଟରେ ବିଦ୍ୟା ଶିକ୍ଷା କରୁଥିଲେ ।

ବିନୀତା ନୀରବରେ ସେ ଦିନ ପ୍ରାସାଦକୁ ଫେରିଲେ । ସେ ରାତ୍ରିରେ ତାଙ୍କର ଆଉ ନିଦ୍ରା ହେଲା ନାହିଁ । ସେହି ଯୁବକର ସୁନ୍ଦର ସୁଠାମ ମୂର୍ତ୍ତି ବାରମ୍ବାର ତାଙ୍କ ଆଖି ସାମନାରେ ଭାସିବାକୁ ଲାଗିଲା ଏବଂ ସମସ୍ତ ଶରୀର ରୋମାଞ୍ଚିତ ହେବାକୁ ଲାଗିଲା ।

ବିନୀତାଙ୍କର ବିଶ୍ୱାସ ତାଙ୍କର ସୌନ୍ଦର୍ଯ୍ୟର ଆକର୍ଷଣୀ ଶକ୍ତି ନିକଟରେ କେହି ସ୍ଥିର ରହିପାରିବେ ନାହିଁ । ମହାକାଞ୍ଚନଙ୍କ ଉପରେ ସେହି ଶକ୍ତି ପ୍ରୟୋଗ କରିବା ଉଦ୍ଦେଶ୍ୟରେ ସେ ପ୍ରତ୍ୟହ ମହାକାଞ୍ଚନଙ୍କ ସନ୍ଧ୍ୟାସ୍ନାନ ସମୟରେ ସାନ୍ଧ୍ୟଭ୍ରମଣାର୍ଥେ ସେହି ସ୍ଥାନକୁ ଯିବାକୁ ଲାଗିଲେ । ମହାକାଞ୍ଚନ ଯେତେବେଳ ପର୍ଯ୍ୟନ୍ତ ସ୍ନାନ କରୁଥାଆନ୍ତି, ବିନୀତା ସେତେବେଳ ପର୍ଯ୍ୟନ୍ତ ଅନତିଦୂରରେ ଲାସ୍ୟମୟ ଭଙ୍ଗୀରେ ଛିଡ଼ା ହୋଇ ମହାକାଞ୍ଚନଙ୍କ ପ୍ରତି ନୟନବାଣ ନିକ୍ଷେପ କରୁଥାଆନ୍ତି । ଏହିପରି କିଛି ଦିନ ଗଲା, କିନ୍ତୁ ମହାକାଞ୍ଚନଙ୍କର ଆକୃଷ୍ଟ ହେବାର କୌଣସି ଲକ୍ଷଣ ସେ ଦେଖିଲେ ନାହିଁ । ମହାକାଞ୍ଚନ ସ୍ନାନ ଶେଷ କରି କୌଣସି ଆଡ଼େ ନ ଚାହିଁ ଚାଲି ଯାଆନ୍ତି । ବିନୀତା କ୍ରମେ ଧୈର୍ଯ୍ୟ ହରାଇଲେ। ତାଙ୍କର ବିଫଳତାର କ୍ରୋଧ ଯେତେ ବଢ଼ିବାକୁ ଲାଗିଲା କାମନା ମଧ୍ୟ ସେତେ ତୀବ୍ର ହେବାକୁ ଲାଗିଲା । ବିନୀତା

ଆହାର ନିଦ୍ରା ତ୍ୟାଗ କରି ମହାକାଞ୍ଚନଙ୍କୁ ବଶ କରିବା ଧ୍ୟାନରେ ହିଁ ରହିଲେ ।

ଦିନେ ମହାକାଞ୍ଚନ ସନ୍ଧ୍ୟା ସ୍ନାନ ସମାପନାନ୍ତେ ଗୃହକୁ ପ୍ରତ୍ୟାବର୍ତ୍ତନ କରିବା ସମୟରେ ମୁହୂର୍ତ୍ତକ ପାଇଁ ଛିଡ଼ା ହୋଇ ବିନୀତା ଆଡ଼େ ଚାହିଁଲେ । ତାଙ୍କର ଆଖିରେ ଭାବାନ୍ତର ଦେଖି ବିନୀତା ଆନନ୍ଦିତା ହେଲେ । ମହାକାଞ୍ଚନ ସେ ଦିନ ଅଳ୍ପ ହସି ଚାଲିଗଲେ ।

ବିନୀତା ଜାଣିଲେ ତାଙ୍କର ଜୟ ହୋଇଅଛି । ସେ ଆନନ୍ଦରେ ପ୍ରାସାଦକୁ ଫେରି ନିଜ ପଲଙ୍କ ଉପରେ ଶୋଇ ହସିବାକୁ ଲାଗିଲେ । ଆନନ୍ଦର ଆତିଶଯ୍ୟାରେ ଆଖି ତାଙ୍କର ଛଳଛଳ ହୋଇଗଲା, ଶରୀରରେ ରୋମାଞ୍ଚ ଜାତ ହେଲା । ସେ ବୁଝି ପାରିଲେ ଏହା କେବଳ ନାରୀ ସୁଲଭ କୌତୁକ ନୁହେଁ । ମହାକାଞ୍ଚନଙ୍କୁ ଭାବିବା ମାତ୍ରକେ ଯେଉଁ ଉନ୍ମାଦନା, ଯେଉଁ ପୁଲକ ସେ ପ୍ରତି ଲୋମକୂପରେ ପାଉଛନ୍ତି ତାହା ପ୍ରେମ । ବିନୀତା ସେ ଦିନ ମନେ ମନେ ମହାକାଞ୍ଚନଙ୍କୁ ପତି ରୂପେ ବରଣ କଲେ ଏବଂ ସୁଯୋଗ ଦେଖି ପିତାଙ୍କୁ ନିଜ ମନ କଥା କହିବାକୁ ସ୍ଥିର କଲେ ।

ପରଦିନ ସକାଳ ନ ହେଉଣୁ ବିନୀତା ସନ୍ଧ୍ୟା ସମୟ ପାଇଁ ବ୍ୟାକୁଳ ଭାବରେ ପ୍ରତୀକ୍ଷା କରିବାକୁ ଲାଗିଲେ । ନିଜର ଶୟନ ଗୃହ ଗବାକ୍ଷରୁ ସେ ମୁହୁର୍ମୁହୁଃ ସୂର୍ଯ୍ୟଙ୍କ ଗତି ଲକ୍ଷ୍ୟ କରିବାକୁ ଲାଗିଲେ । ସୂର୍ଯ୍ୟଦେବ ଆଜି ଜାଣି ଶୁଣି ତାଙ୍କର ଗତି ଶ୍ଲଥ କରିବା ପରି ବୋଧ ହେଲା । ଉତ୍କଣ୍ଠାର ଆତିଶଯ୍ୟାରେ ତାଙ୍କୁ ଆଜି ଆହାରରେ ମଧ୍ୟ ରୁଚି ହେଲା ନାହିଁ । ଅତ୍ୟଧିକ ଉତ୍କଣ୍ଠାରୁ ମାନସିକ କ୍ଲାନ୍ତିବଶତଃ ସେ ସୂର୍ଯ୍ୟଙ୍କୁ ଚାହିଁ ସେହି ଗବାକ୍ଷ ଉପରେ ହିଁ ମଥା ରଖି ଶୋଇ ପଡ଼ିଲେ । ହଠାତ୍ ନିଦ୍ରାଭଙ୍ଗ ହୁଅନ୍ତେ ସେ ଦେଖିଲେ ସୂର୍ଯ୍ୟ ଆଉ ପୂର୍ବ ଗବାକ୍ଷରେ ଦିଶୁନାହାନ୍ତି । ପଶ୍ଚିମ ଗବାକ୍ଷକୁ ଯାଇ ଦେଖିଲେ ସୂର୍ଯ୍ୟ ପଶ୍ଚିମ ଦିଗନ୍ତାବଲମ୍ବୀ ।

ବିନୀତା ଅସ୍ଥିର ହୋଇ ପରିଚାରିକାକୁ ଡାକ ପକାଇଲେ । ପରିଚାରିକା ଆସିବାରୁ ସେ ତାକୁ ଶୀଘ୍ର ପ୍ରସାଧାନରେ ସାହାଯ୍ୟ କରିବାକୁ କହି ନିଜେ ଦର୍ପଣ ସମ୍ମୁଖରେ ଛିଡ଼ା ହୋଇ ନିଜକୁ ପ୍ରସାଧନ କରିବାକୁ ଲାଗିଲେ । ପେଟିକାରୁ ଉତ୍କୃଷ୍ଟତମ ଝିନବାସ ଆଣି ତାକୁ ପିନ୍ଧି ସେ ପାଦଯୁଗଳ ପରିଚାରିକା ଆଡ଼କୁ ବଢ଼ାଇ ଦେଲେ । ପରିଚାରିକା ପାଦଯୁଗଳ ଲାକ୍ଷାରସରେ ରଞ୍ଜିତ କରୁ କରୁ ସେ ନିଜେ ନୟନରେ ଅଞ୍ଜନ ଲଗାଇବାକୁ ଲାଗିଲେ । ଆଜି ସେ ଯିବାକୁ ଯେତେ ତରତର ହେଉଥାନ୍ତି ପ୍ରସାଧନରେ ସେତେ ଭୁଲ ହେଉଥାଏ । ନୟନର ଅଞ୍ଜନ ଗଣ୍ଡ ଦେଶରେ ଲାଗିଲା । ତାକୁ ପୋଛୁ ପୋଛୁ ଅଯତ୍ନପିନଦ୍ଧ କଞ୍ଚୁଳିକା ଠେଲି ଘନ ପୟୋଧର ଯୁଗଳ ସହସା ଉନ୍ମୁକ୍ତ ହୋଇ ପଡ଼ିଲା । ବିନୀତା ଏହିପରି ବ୍ୟତିବ୍ୟସ୍ତ ହୋଇ କୌଣସି ପ୍ରକାରରେ ପ୍ରସାଧନ ଶେଷ କରି ଆଜି ଏକାକିନୀ ଯାତ୍ରା କଲେ । ନଦୀ ପୁଳିନରେ ପହଞ୍ଚିଲା ବେଳକୁ ମହାକାଞ୍ଚନଙ୍କର ସନ୍ଧ୍ୟା ସ୍ନାନ ଶେଷ ହୋଇ ସେ କୂଳରେ ଛିଡ଼ା ହୋଇ ନିମୀଳିତ ନେତ୍ରରେ ସୂର୍ଯ୍ୟପ୍ରଣାମ କରୁଅଛନ୍ତି ।

ବିନୀତା ଆଜି ଦୂରରୁ ଫେରିଯିବା ପାଇଁ ଆସି ନାହାନ୍ତି । ସେ ନଦୀତୀରରୁ ଓହ୍ଲାଇ ସ୍ରୋତୋଧାରା ନିକଟକୁ ଯାଇ ହଠାତ୍ ପାଦସ୍ଖଳନ ହେବାର ଅଭିନୟ କଲେ । ମହାକାଞ୍ଚନ ଗୋଟିଏ ଶବ୍ଦ ଶୁଣି ପଛକୁ ଚାହିଁ ଦେଖିଲେ ଯୁବତୀ ନଦୀ ମଧ୍ୟରେ । ସେ ଶୀଘ୍ର ଯାଇ ବିନୀତାର ହାତ ଧରି ଉଠାଇ ତାଙ୍କୁ କୂଳକୁ ନେଇ ଆସିଲେ । ବିନୀତାଙ୍କର ପ୍ରତି ଅଙ୍ଗରେ ଅପୂର୍ବ ଶିହରଣ ଜାତ ହେଲା । ସେ ଆବେଗ ବିହ୍ୱଳ ହେଇ ମହାକାଞ୍ଚନଙ୍କ ବକ୍ଷରେ ଢଳି ପଡ଼ିଲେ । ଏହି ଆକସ୍ମିକ ରମଣୀ ସାନ୍ନିଧ୍ୟରେ କିୟତ୍‌କ୍ଷଣ ବିବଶ ରହିବା ପରେ ମହାକାଞ୍ଚନ ତାଙ୍କର ସମସ୍ତ ଆତ୍ମସଂଯମ ଦ୍ୱାରା ଆପଣା ଉପରେ କର୍ତ୍ତୃତ୍ୱ ଫେରିପାଇ ଧୀରେ ନିଜକୁ ମୁକ୍ତ କରିନେଇ ନୀରବରେ ଚାଲିଗଲେ ।

ଏହି ପ୍ରତ୍ୟାଖ୍ୟାନରେ ଅଭିମାନବିକ୍ଷୁବ୍ଧ ନ ହୋଇ ବିନୀତା ତାକୁ ସାମୟିକ ପରାଜୟ ବୋଲି ଜ୍ଞାନ କରି ପରଦିନ ମଧ୍ୟ ନଦୀକୂଳକୁ ଗଲେ । କିନ୍ତୁ ବହୁକ୍ଷଣ ଅପେକ୍ଷା କରି ସୁଦ୍ଧା ମହାକାଞ୍ଚନଙ୍କର ଦର୍ଶନ ପାଇଲେ ନାହିଁ । ବିମର୍ଷ ଭାବରେ ପ୍ରାସାଦକୁ ଫେରି ସେ ପରିଚାରିକାକୁ ସୋମଦତ୍ତଙ୍କ ଗୃହକୁ ପଠାଇଲେ ମହାକାଞ୍ଚନଙ୍କର ଶରୀର ସୁସ୍ଥ ଅଛି କି ନା ଜାଣି ଆସିବାକୁ । ପରିଚାରିକା ସନ୍ଧାନ ନେଇ ଆସି ଜଣାଇଲା ମହାକାଞ୍ଚନ ସମ୍ପୂର୍ଣ୍ଣ ସୁସ୍ଥ । ବିନୀତା ଚିନ୍ତିତା ହେଲେ । ନାନା ସନ୍ଦେହ ସଂଶୟ ଆଶା ଆଶଙ୍କା ମଧ୍ୟରେ ସେ ବିନିଦ୍ର ରଜନୀ ଯାପନ କଲେ । ତା'ପର ଦିନ ମଧ୍ୟ ବିନୀତା ଉକ୍ତ ସ୍ଥାନକୁ ଗଲେ, କିନ୍ତୁ ସେ ଦିନ ମଧ୍ୟ ମହାକାଞ୍ଚନ ଆସିଲେ ନାହିଁ । ଏହିପରି ତିନି ସନ୍ଧ୍ୟା ଯିବା ପରେ ବିନୀତା ପରିଚାରିକା ଠାରୁ ସମ୍ବାଦ ପାଇଲେ ମହାକାଞ୍ଚନ ନଦୀର ଅନ୍ୟ କେଉଁ ଘାଟରେ ସନ୍ଧ୍ୟା ସ୍ନାନ କରୁଅଛନ୍ତି ।

ବିନୀତା ମର୍ମାହତ ହେଲେ । ଏଥର ତାଙ୍କର ହୃଦୟ ଅଭିମାନରେ ଭରିଗଲା । ପରାଜୟର ଗ୍ଲାନିରେ ଅନ୍ତର ବିକ୍ଷୁବ୍ଧ ହେଲା । ସେ ମନସ୍ଥ କଲେ ଆଜି ଶେଷ ଯୁଦ୍ଧ କରିବେ । ସନ୍ଧ୍ୟାରେ ଯଥାସାଧ୍ୟ ମୋହିନୀ ବେଶ ଧାରଣ କରି ନଦୀକୂଳରେ ବହୁ ଅନ୍ୱେଷଣ କରି ଗୋଟିଏ ସ୍ଥାନରେ ମହାକାଞ୍ଚନଙ୍କୁ ଦେଖିଲେ । ମହାକାଞ୍ଚନ ସ୍ନାନ ଶେଷ କରିବା ପର୍ଯ୍ୟନ୍ତ ସେ କୂଳରେ ଅପେକ୍ଷା କରି ରହିଲେ । ସ୍ନାନାନ୍ତେ ମହାକାଞ୍ଚନ ବିନୀତାଙ୍କୁ ଦେଖି ନଦେଖିଲା ପରି ଚାଲି ଯାଉଥିଲେ । ବିନୀତା ତାଙ୍କର ପଥରୋଧ କରି ନିଜ ଗଳାରୁ ପୁଷ୍ପମାଳା ବାହାର କରି କହିଲେ, ଏ ମାଳା ଆଜି ମୁଁ ତୁମ୍ଭକୁ ପିନ୍ଧାଇବି ।

ମହାକାଞ୍ଚନ ପୂର୍ବ ପରି ଶୂନ୍ୟରେ ଦୃଷ୍ଟି ରଖି କହିଲେ - ଦେବୀ, ମୁଁ ଯୋଗୀ । ସେ ପୁଷ୍ପମାଲ୍ୟରେ ମୋର ପ୍ରୟୋଜନ ନାହିଁ । ମୁଁ କାଲି ସକାଳେ ସୁଖପଲ୍ଲୀ ପରିତ୍ୟାଗ କରି ମହର୍ଷି ପତଞ୍ଜଳିଙ୍କ ପାଖରେ ଯୋଗ ଶିକ୍ଷା କରିବାକୁ ଯାଉଅଛି । ଏ ମାଳା ତୁମେ ରଖି ଦିଅ ଅନ୍ୟ କାହାରି ପାଇଁ । ମୁଁ ଏହାର ଯୋଗ୍ୟ ନୁହେଁ ।

ବିନୀତାଙ୍କ ହାତରୁ ମାଳା ଖସି ତଳେ ପଡ଼ିଗଲା । କାଷ୍ଠ ପ୍ରତିମା ପରି ସେ ସେଠି ଛିଡ଼ା

ହୋଇ ରହିଲେ । ମହାକାଞ୍ଚନ ଆଉ କିଛି ନକହି ଚାଲିଗଲେ । ବିନୀତା ସେହିପରି କିଛିକ୍ଷଣ ନିର୍ବାକ୍ ଭାବରେ ଛିଡ଼ା ହୋଇ ଫୁଲ ହାରଟି ତଳୁ ଗୋଟାଇ ନେଇ ଦେଖିଲେ ମହାକାଞ୍ଚନଙ୍କ କାଷ୍ଠ ପାଦୁକାରେ ତାହା ଦଳିତ । ଫୁଲହାରଟି ସେ ନିଜ ବକ୍ଷରେ ଚାପି ଧରି ଅନେକକ୍ଷଣ ନୀରବରେ ଅଶ୍ରୁପାତ କଲେ । ଅବଶେଷରେ ସେ ଧୀରେ ଧୀରେ ପ୍ରାସାଦକୁ ଫେରିଲେ ।

ସେହି ଦିନ ରାତ୍ରିରେ ବିନୀତା ଜ୍ୱରାକ୍ରାନ୍ତ ହେଲେ । ସୁଭଦ୍ର ବ୍ୟସ୍ତ ହୋଇ ରାଜବୈଦ୍ୟ ଡକାଇଲେ । ବୈଦ୍ୟରାଜ ବହୁ କ୍ଷଣ ପରୀକ୍ଷା କରି କହିଲେ, - ଏହା ଶାଲକ୍ୟ, ହଠାତ୍ ଶଲାକାବଦ୍ଧ କୌଣସି ମାନସିକ ସଂଘାତରେ ମସ୍ତୁଲୁଙ୍ଗ ଭିତରେ ପ୍ରବିଷ୍ଟ ହୁଏ । ବିପର୍ଯ୍ୟସ୍ତ ହେବାରୁ ଜ୍ୱର ବିକାର ଦେଖା ଦେଇଅଛି । ପ୍ରତିକାର ସ୍ୱରୂପ ପ୍ରଲେପାର୍ଥେ ତୈଳ ଏବଂ ବାହୁରେ ଧାରଣ କରିବାକୁ ଗୁଲ୍‌ଗୁଲୁ ନାମକ କବଚ ଦେଇ ବୈଦ୍ୟରାଜ ପ୍ରସ୍ଥାନ କଲେ । କିନ୍ତୁ ସବୁ ବିଫଳ ହେଲା । ବିନୀତାଙ୍କ ଅବସ୍ଥା ଦିନକୁ ଦିନ ଶୋଚନୀୟ ହେବାକୁ ଲାଗିଲା । ବୌଦ୍ଧ ସଂଘରେ ପ୍ରାର୍ଥନା, ସୋମଦତ୍ତଙ୍କ ଶାନ୍ତି ସ୍ୱସ୍ତ୍ୟୟନ ଓ ଦେବପୂଜା, ବୈଦ୍ୟରାଜଙ୍କ ଚିକିତ୍ସା ସବୁ ବିଫଳ ହେଲା । ବିନୀତା ଦିନକୁ ଦିନ କ୍ଷୀଣ ହେବାକୁ ଲାଗିଲେ ।

ଏହିପରି ତିନିମାସ ଯିବାପରେ ବିନୀତାଙ୍କ ଦୁଃଖ କ୍ରମେ କ୍ରମେ ଉପଶମ ହେବାକୁ ଲାଗିଲା ଏବଂ ଶରୀର ମଧ୍ୟ ସୁସ୍ଥ ହେବାକୁ ଲାଗିଲା । ସମ୍ପୂର୍ଣ୍ଣ ଆରୋଗ୍ୟ ଲାଭ କରିବା ପରେ ଦିନେ ବିନୀତା ପିତାଙ୍କୁ ଜଣାଇଲେ ସେ ବିବାହ ନ କରି ଆଜୀବନ ଭିକ୍ଷୁଣୀ ବ୍ରତ ନେବାକୁ ଇଚ୍ଛା କରନ୍ତି ।

ସୁଭଦ୍ର ଏହା ଶୁଣି ବଜ୍ରାହତ ପରି ଛିଡ଼ା ହୋଇ ରହିଲେ । ସେ ଜାଣନ୍ତି ତାଙ୍କର କନ୍ୟା ଯାହା କହିବେ ତା'ର ଅନ୍ୟଥା ହେବା ଅସମ୍ଭବ ।

ଏହାର କିଛିଦିନ ପରେ ବିନୀତା ଦିନେ ବୌଦ୍ଧ ବିହାରରୁ ସିଦ୍ଧାଚାର୍ଯ୍ୟ ଧର୍ମପାଳଙ୍କୁ ଡକାଇ ନିଜର ଇଚ୍ଛା ପ୍ରକାଶ କଲେ । ଧର୍ମପାଳ ପ୍ରାଦେଶିକଙ୍କ କନ୍ୟାଙ୍କୁ ଭିକ୍ଷୁଣୀ ବ୍ରତରେ ଦୀକ୍ଷିତା କରିବାର ସୁଯୋଗ ପାଇ ଅତିଶୟ ଆହ୍ଲାଦିତ ହେଲେ । ତାଙ୍କର ସଂଘର ଭୂସମ୍ପତ୍ତି ବଢ଼ାଇବାର ବହୁ ଦିନର ଇଚ୍ଛା ପୂରଣ କରିବାର ସୁଯୋଗ ସେ ଏତେ ଦିନେ ପାଇଲେ । ସୁଭଦ୍ର ବାଧ୍ୟ ହୋଇ ଧର୍ମପାଳଙ୍କ ଯଥାରୀତି କାର୍ଯ୍ୟ କରିବାର ଅନୁମତି ଦେଇ ଅଶ୍ରୁ ପୋଛୁ ପୋଛୁ ସେଠାରୁ ଚାଲିଗଲେ ।

ପରଦିନ ବିନୀତା ଧର୍ମପାଳଙ୍କ ସଂଘକୁ ଭିକ୍ଷୁଣୀ ବ୍ରତ ନେବା ପାଇଁ ଗଲେ । ସଂଘର ପ୍ରାଙ୍ଗଣରେ ବହୁମୂଲ୍ୟ ଚନ୍ଦ୍ରାତପ ପଡ଼ିଲା । ସଂଘର ଅନ୍ୟାନ୍ୟ ଭିକ୍ଷୁକମାନେ ପ୍ରାଙ୍ଗଣରେ ସମବେତ ହେଲେ । ବିନୀତା ଅତି ସାଧାରଣ ବସ୍ତ୍ର ପରିଧାନ କରି ଭିକ୍ଷୁଣୀର ପୀତବସନ ହାତରେ ଧରି ପ୍ରବେଶ କଲେ । ନିୟମାନୁସାରେ ଜଣେ ଭିକ୍ଷୁ ବିନୀତାଙ୍କ ସହିତ ସିଦ୍ଧାଚାର୍ଯ୍ୟ ଧର୍ମପାଳ ଓ ଅନ୍ୟାନ୍ୟ ଭିକ୍ଷୁମାନେ ପରିଚୟ କରାଇ ଦେଲେ । ଏହାପରେ ବିନୀତା ତିନିଥର କହିଲେ - ମୋତେ ଦୟା କରି ଭିକ୍ଷୁଣୀ ବ୍ରତ ଗ୍ରହଣ କରିବାକୁ ଅନୁମତି ଦିଅନ୍ତୁ । ମୁଁ ନିର୍ବାଣ ଚାହେଁ । ଧର୍ମପାଳ ବିନୀତାଙ୍କ ହସ୍ତରୁ ପୀତବସନ ନେଇ ବିନୀତାଙ୍କ ଅଙ୍ଗ ଆବୃତ କଲେ ।

ବିନୀତା ନତଜାନୁ ହୋଇ ବସି ଆବୃତ୍ତି କଲେ -

ଧର୍ମଂ ଶରଣଂ ଗଚ୍ଛାମି
ବୁଦ୍ଧଂ ଶରଣଂ ଗଚ୍ଛାମି
ସଂଘଂ ଶରଣଂ ଗଚ୍ଛାମି ।

ବିହାର ପ୍ରାଙ୍ଗଣରେ ଗମ୍ଭୀର ନିନାଦରେ ଘଣ୍ଟାଧ୍ୱନି ହେବାକୁ ଲାଗିଲା । ସିଦ୍ଧାଚାର୍ଯ୍ୟ ତାଙ୍କର ଉପଦେଶ ବାଣୀରେ କହିଲେ, - ଧର୍ମ ହେଉଛନ୍ତି ପ୍ରଜ୍ଞା, ବୁଦ୍ଧ ପାରମିତା ଏବଂ ସଂଘ ମହାସୁଖ । ପ୍ରଜ୍ଞା ସ୍ତ୍ରୀ, ପାରମିତା ପୁରୁଷ ଏବଂ ଦୁହିଁଙ୍କର ମିଳନରେ ମହାସୁଖ ।

ସେହି ଦିନୁ ବିନୀତା ଧର୍ମପାଳଙ୍କ ସଂଘରେ ରହି ବ୍ରତ ପାଳନ କରିବାକୁ ଲାଗିଲେ । କିନ୍ତୁ ବିନୀତାଙ୍କ ହୃଦୟରେ ଯେଉଁ ଅଗ୍ନି ଅନୁକ୍ଷଣ ଜଳୁଥିଲା ତାହା ବାହାରର କ୍ରିୟାନୁଷ୍ଠାନ ଦ୍ୱାରା ନିର୍ବାପିତ ହେଲା ନାହିଁ, ଉପରନ୍ତୁ ତୀବ୍ରତର ହେବାକୁ ଲାଗିଲା । ବିନୀତା ମହାକାଞ୍ଚନଙ୍କୁ ଭୁଲି ପାରିଲେ ନାହିଁ । ସଂଘର ବଜ୍ରଗୁରୁଙ୍କ ପରିବର୍ତ୍ତେ ମହାକାଞ୍ଚନ ହିଁ ତାଙ୍କର ଧ୍ୟାନ ଧାରଣା ହେଲେ । ତାଙ୍କର ବର୍ତ୍ତମାନ ପୂର୍ଣ୍ଣ ଯୌବନ । ଯୌବନର ଉଦ୍ଦାମ ସ୍ରୋତ ବାଧା ପାଇ ଦିନକୁ ଦିନ ସ୍ଫୀତ, ବିକ୍ଷୁବ୍ଧ ହେଲା ।

ବିହାର ବିନୀତାଙ୍କର ଆଉ ସହ୍ୟ ହେଲା ନାହିଁ । ସେ କେବେ ହେଁ କୌଣସି ଦିନ ନିୟମର ଅନୁବର୍ତ୍ତୀ ହୋଇ ଚଳି ନାହାନ୍ତି । ବିହାରର ପ୍ରତ୍ୟେକ ନିୟମ ସେ ପଦେ ପଦେ ଲଙ୍ଘନ କରିବାକୁ ଲଗିଲେ । ଉପରନ୍ତୁ ବୌଦ୍ଧ ବଜ୍ରଯାନର ଗୁହ୍ୟ ଦୀକ୍ଷା ତାଙ୍କର ଗୁଢ଼ କାମନାର ଅଗ୍ନିଶିଖାକୁ ଅଧିକ ପ୍ରଜ୍ଜ୍ୱଳିତ କରିବାକୁ ଲାଗିଲା । 'ପଞ୍ଚକାଶାନ୍ ପରିତ୍ୟଜ୍ୟ ତପୋଭିର୍ନୈବ ପୀଡ଼ୟେତ୍ । ସୁଖେନ ସାଧୟେତ୍ ବୋଧିଃ ଯୋଗତନ୍ତ୍ରାନୁସାରତଃ ।' ପଞ୍ଚପ୍ରକାର ଭୋଗବାସନାକୁ ତ୍ୟାଗ କରି ନିଜକୁ ପୀଡ଼ା ଦିଅନା, ଯୋଗତନ୍ତ୍ର ଅନୁସାରେ ପଞ୍ଚ ମ- କାରର ସୁଖ ଭୋଗ କରୁ କରୁ ସାଧନା କର । ବ୍ରଜତନ୍ତ୍ରର ଏସବୁ ଗୂଢ଼ ଅର୍ଥ ଧର୍ମପାଳ ଯେପରି ସବିସ୍ତାରେ ବୁଝାଇବାକୁ ଲାଗିଲେ ସେଥିରେ ବିନୀତାଙ୍କ ନିରୁଦ୍ଧ କାମନା ତାଙ୍କୁ ଅଧିକ ପୀଡ଼ା ଦେବାକୁ ଲାଗିଲା । ବଜ୍ରଗୁରୁଙ୍କୁ ପୂଜା ନ କରି ସେ ନିଜ ପ୍ରକୋଷ୍ଠରେ ଆବଦ୍ଧ ରହି ଅନ୍ୟ ଏକ ମୂର୍ତ୍ତିର ପୂଜା କରିବାକୁ ଲାଗିଲେ ।

ବିନୀତା ଅନ୍ୟ କାହାର ମୂର୍ତ୍ତି ନିଜ ପ୍ରକୋଷ୍ଠରେ ଲୁକ୍କାୟିତ ଭାବରେ ପୂଜା କରୁଥିବାର ଜାଣିପାରି ଦିନେ ସିଦ୍ଧାଚାର୍ଯ୍ୟ ତାଙ୍କୁ ଭର୍ତ୍ସନା କଲେ । ବିନୀତା ସେଇ ଦିନ ବିହାର ତ୍ୟାଗ କରି ପ୍ରାସାଦକୁ ଫେରି ଆସିଲେ ଏବଂ ପିତାଙ୍କୁ କହି ପ୍ରାସାଦର ପ୍ରଶସ୍ତ ଉଦ୍ୟାନରେ ଗୋଟିଏ ମନ୍ଦିର ନିର୍ମାଣ କରାଇ ଗୋଟିଏ ଗୁହ୍ୟସମାଜ ପ୍ରତିଷ୍ଠା କରାଇଲେ । କନ୍ୟା ସଂସାର ତ୍ୟାଗ କରି ମଧ୍ୟ ଅନ୍ତତଃ ତାଙ୍କ ନୟନଗୋଚର ରହିଛି ଏକଥା ଚିନ୍ତା କରି ସୁଭଦ୍ର ଦେବ ଅନ୍ତରରେ ପ୍ରୀତିଲାଭ କଲେ, କୌଣସି ଆପତ୍ତି ଉଠାଇଲେ ନାହିଁ ।

ନିଜର ପ୍ରତିଷ୍ଠିତ ମନ୍ଦିରରେ ବିନୀତା ତାଙ୍କ ଆରାଧ୍ୟ ମୂର୍ତ୍ତି ଗୁପ୍ତ ଭାବରେ ରଖି ପୂଜା କରିବାକୁ ଲାଗିଲେ । ବିନୀତାଙ୍କ ପ୍ରତିଷ୍ଠିତ ଗୁହ୍ୟସମାଜରେ କ୍ରମେ କ୍ରମେ ଆହୁରି ବୌଦ୍ଧ ଭିକ୍ଷୁ ଓ ଭିକ୍ଷୁଣୀ ଯୋଗ ଦେଲେ । ସେମାନେ ମଧ୍ୟ ନିଜ ନିଜର ଆରାଧ୍ୟ ମୂର୍ତ୍ତି- ଯାହା ଶମ୍ବର ବୋଲି କଥିତ- ସେଇ ମନ୍ଦିରରେ ଗୁହ୍ୟ ଭାବରେ ରଖି ପୂଜା କରିବାକୁ ଲାଗିଲେ । ସେଗୁଡ଼ିକ ମଧ୍ୟରୁ ଅଧିକାଂଶ ଗୋଟିଏ ଗୋଟିଏ ଉତ୍‌କଟ କାମକୁଟିଳ ମୂର୍ତ୍ତି ।

ବିନୀତା ଭିକ୍ଷୁଣୀବ୍ରତ ଧାରଣ କରିବାଠାରୁ ବହୁବର୍ଷ ବିତିଯାଇଛି । ଏତେକାଳ ପରେ ଏବେ ମହାକାଞ୍ଚନ ପିତାମାତାଙ୍କ ଦର୍ଶନ ପାଇଁ ସୁଖିପଲ୍ଲିକୁ ଆସିଛନ୍ତି - ସାଙ୍ଗରେ ମହାଶାଳ ମଧ୍ୟ ଆସିଛନ୍ତି - ଏ ସଂବାଦ ବିନୀତାଙ୍କ ଗୋଚରକୁ ଆସିଅଛି । ଏହି ସମୟରେ ବିନୀତା ଚମ୍ପାର ଅଦ୍ଭୁତ କାହାଣୀ ଶୁଣିବାକୁ ପାଇଲେ । ଚମ୍ପାର ଇତିହାସ ଶୁଣି ଗୋଟିଏ ଅଭିନବ ଚିନ୍ତା ବିନୀତାଙ୍କ ମନକୁ ଆସିଲା । ଗୋଟିଏ କ୍ଷୀଣ ହାସ୍ୟ ତାଙ୍କ ଅଧରରେ ଖେଳିଗଲା । ସେ ଭାବିଲେ, ଚମ୍ପା ଯେଉଁ ବାଳକ ମୂର୍ତ୍ତି ଦେଖିଅଛି ତାହା ମୋର ଏଇ ଗୁହ୍ୟସମାଜର ଭଗବାନ 'ତଥାଗତ ଗୁହ୍ୟକ' ବୋଲି ଯଦି ମୁଁ ପ୍ରମାଣ କରାଇପାରେ ତେବେ ମୋର ସମାଜ ସମ୍ୟକ ପ୍ରତିଷ୍ଠା ଲାଭ କରିବ । ବିନୀତା ଚିରକାଳ ଆଶୁକାରୀ । ସେ ତତ୍‌କ୍ଷଣାତ୍ ଉଠି ମହାକାଞ୍ଚନଙ୍କୁ ଗୋଟିଏ ପତ୍ର ଲେଖି ତାଙ୍କର ସମାଜ ମନ୍ଦିରକୁ ଥରେ ପରିଦର୍ଶନ କରିବା ପାଇଁ ଆମନ୍ତ୍ରଣ ଜଣାଇଲେ ।

# ୧୧

ବିନୀତାଙ୍କ ଠାରୁ ଅପ୍ରତ୍ୟାଶିତ ଭାବରେ ପତ୍ର ପାଇ ମହାକାଞ୍ଚନ ବିସ୍ମୟାବିଷ୍ଟ ହେଲେ । ବିନୀତାଙ୍କ ପ୍ରେମନିବେଦନ ଓ ମହାକାଞ୍ଚନଙ୍କ ପ୍ରତ୍ୟାଖ୍ୟାନ - ସେ ସବୁ ଦୀର୍ଘ ବାର ବର୍ଷ ପୂର୍ବ କଥା । ଏତେଦିନ ପରେ ବିନୀତା କ'ଣ ଏବେ ମଧ୍ୟ ତାଙ୍କର ପ୍ରେମପ୍ରତ୍ୟାଶୀ ହୋଇ ରହିଛନ୍ତି ? ବିନୀତାଙ୍କ ଭିକ୍ଷୁଣୀ ବ୍ରତ ଗ୍ରହଣ କଥା ସେ ଶୁଣିଥିଲେ । ସେ ନିଜେ ମଧ୍ୟ ଏଯାବତ୍ ଦାରପରିଗ୍ରହ କରି ନାହାନ୍ତି -ତାହା ଯେଉଁ କାରଣରୁ ହେଉ । ହୋଇପାରେ ତା' ତାଙ୍କ ଜୀବନରେ ଧର୍ମ ଓ ରାଜନୀତିର ଯୁଗପତ୍ ପ୍ରବେଶ ଯୋଗୁଁ । ମାତ୍ର ବିନୀତାଙ୍କୁ ପ୍ରତ୍ୟାଖ୍ୟାନ କରିଥିଲେ ସୁଦ୍ଧା ତାଙ୍କର ସୁତୀବ୍ର କାମନାଜଡ଼ିତ ପ୍ରେମ ମହାକାଞ୍ଚନଙ୍କ କୌମାର ଚିତ୍ତରେ ପ୍ରବଳ ରେଖାପାତ କରିଥିଲା । ତେଣୁ ପରସ୍ପର ବିରୋଧୀ ଚିନ୍ତାରେ ସେ ଆନ୍ଦୋଳିତ ହେଲେ ଏବଂ ଅବଶେଷରେ ବିନୀତାଙ୍କ ଆମନ୍ତ୍ରଣ ସ୍ୱୀକାର କରି ବାହକ ହସ୍ତେ ପତ୍ରର ଉତ୍ତର ପ୍ରେରଣ କଲେ ।

ପରଦିନ ପୂର୍ବାହ୍ଣରେ ମହାକାଞ୍ଚନ ବିନୀତଙ୍କ ସମାଜ ମନ୍ଦିରରେ ଯାଇ ଉପସ୍ଥିତ ହେଲେ । ମହାକାଞ୍ଚନଙ୍କ ଆଗମନ ବାର୍ତ୍ତା ଶୁଣି ବିନୀତାଙ୍କ ମନ ଚଞ୍ଚଳ ହୋଇ ଉଠିଲା ।

ପରିଚାରିକାମାନେ ମଧ ଜଣେ ମହାନ୍ ଯୋଗୀଙ୍କ ଆଗମନ ବାର୍ତ୍ତା ପାଇ ବିବ୍ରତ ହୋଇ ପଡ଼ିଲେ । ମହାକାଞ୍ଚନ ଆସି ସମାଜର ପ୍ରତୀକ୍ଷା ଗୃହରେ ଉପବେଶନ କରିବାରୁ ଜଣେ ଭିକ୍ଷୁଣୀ ଆସି କହିଲେ, - ଦେବୀ ଆପଣଙ୍କ ସହିତ ନିଭୃତରେ ସାକ୍ଷାତ କରିବାକୁ ଇଚ୍ଛୁକ, ଆପଣ ଦୟା କରି ମୋ ସହିତ ଆସନ୍ତୁ ।

ମହାକାଞ୍ଚନଙ୍କ ଭ୍ରୂଯୁଗଳ ମୁହୂର୍ତ୍ତକ ପାଇଁ କୁଞ୍ଚିତ ହେଲା । କିନ୍ତୁ କିଛି ନ କହି ସେ ଭିକ୍ଷୁଣୀର ଅନୁଗମନ କଲେ । ଭିକ୍ଷୁଣୀ ବିନୀତାଙ୍କ ଗୃହ ଦେଖାଇ ଦେଇ ଚାଲି ଗଲା । ମହାକାଞ୍ଚନ ପ୍ରବେଶ କରି କାଷ୍ଠାସନରେ ଉପବେଶନ କଲେ ।

ବିନୀତା ଅନ୍ତରର ଚଞ୍ଚଳତା ଦମନ କରି ସ୍ମିତ ହାସ ସହ କହିଲେ, - ମୁଁ ଆଶା କରିଥିଲି ଆପଣ ଦିନେ ମୋର ସମାଜକୁ ଆସିବେ, କାରଣ ମୁଁ ବର୍ତ୍ତମାନ ଭିକ୍ଷୁଣୀବ୍ରତ ଧାରିଣୀ, ମୋ ଠାରୁ କାହାରି ସାଧନ ପଥରେ ଅନ୍ତରାୟ ଘଟିବା ସମ୍ଭାବନା ନାହିଁ । ମାତ୍ର ଆପଣଙ୍କୁ କ୍ଳେଶ ଦେଇ ଆପଣଙ୍କୁ ଆମନ୍ତ୍ରଣ କଲି, ଆଶା କରେ ଅପରାଧ କ୍ଷମା କରିବେ ।

ବିନୀତାଙ୍କ ପ୍ରେମ ପ୍ରାର୍ଥନା ଯେପରି ଗତ କାଲିର କଥା ! ମହାକାଞ୍ଚନ ସେହି ଗୋଟିଏ ଯୁଗ ପୂର୍ବର ଦିନଟି ଭଳି ଆପାତ ଉଦାସୀନ ନତ ଦୃଷ୍ଟିରେ କହିଲେ, - ଅନାବଶ୍ୟକ ବାକ୍ୟ ପରିହାର କରି ଅନୁଗ୍ରହ ପୂର୍ବକ ଆପଣଙ୍କର ବକ୍ତବ୍ୟ ପ୍ରକାଶ କରନ୍ତୁ । ଅଧିକ କ୍ଷଣ ନାରୀସାନ୍ନିଧ ଶରୀର ଓ ମନ ଉଭୟ ପକ୍ଷରେ ଅମଙ୍ଗଳକର ବୋଲି ମୁଁ ମଣେ ।

ବିନୀତା ତାଙ୍କ ବକ୍ତବ୍ୟ କହିବାକୁ ଯାଇ ମଧ କିଛି କହି ପାରିଲେ ନାହିଁ । ଅକସ୍ମାତ ଉଦ୍‌ବେଳିତ ଆବେଗରେ ତାଙ୍କର ବାକ୍‌ରୋଧ ହେଲା । ଅଶ୍ରୁପ୍ଳୁତ ନୟନରେ ସେ କେବଳ ମହାକାଞ୍ଚନଙ୍କୁ ଚାହିଁ ରହିଲେ । ମହାକାଞ୍ଚନ ପୂର୍ବବତ୍ ନତ ନେତ୍ରରେ ବସି ରହିଲେ ।

କେତୋଟି ନୀରବ ମୁହୂର୍ତ୍ତ ଏହିପରି ବିତି ଗଲା । ମହାକାଞ୍ଚନ କିଞ୍ଚିତ୍ ଅଧୀର ଭାବରେ କହିଲେ, - ଆପଣଙ୍କ ପତ୍ରରୁ ଅବଗତ ହେଲି ଆପଣ କୌଣସି ଗୁରୁ କାର୍ଯ୍ୟରେ ମୋର ସାହାଯ୍ୟପ୍ରାର୍ଥିନୀ । ଦୟା କରି ସେ ବିଷୟଟି ପ୍ରକାଶ କରି ମୋତେ କୃତାର୍ଥ କରନ୍ତୁ ।

ବିନୀତା ଅସୀମ ବଳରେ ଆପଣା କର୍ତ୍ତୃତ୍ୱ ଫେରିପାଇ ସହଜ କଣ୍ଠରେ କହିଲେ,- ତା ପୂର୍ବରୁ ଆପଣଙ୍କୁ ମୋର ଅଭିନନ୍ଦନ ଜଣାଉଛି । ମଗଧରାଜ ଓ କଳିଙ୍ଗାଧିପତିଙ୍କ ମଧ୍ୟରେ ଯେଉଁ ଲୋକହିତକର ସନ୍ଧି ସ୍ଥାପିତ ହୋଇ ପାରିଛି ତାହା କେବଳ ଆପଣଙ୍କ ଭଳି ମହାଯୋଗୀଙ୍କ ଯୋଗବଳରେ ହିଁ -

ମହାକାଞ୍ଚନ ହସ୍ତୋତ୍ତୋଳନ କରି ବାଧା ଦେଇ କହିଲେ - କ୍ଷମା କରିବେ ଦେବୀ, ମୁଁ ନିଜର ପ୍ରଶଂସା ଶୁଣିବାକୁ ଆସି ନାହିଁ । ଆପଣଙ୍କର ବକ୍ତବ୍ୟଟି କହିଲେ ମୁଁ ଅଧିକ ପ୍ରୀତ ହେବି ।

- ଆପଣ ବିନୟୀ । ମୋ ପ୍ରଶଂସାରେ ଯଦି ଆପଣଙ୍କ ବିନୟ ବିଚଳିତ ହୋଇ ଥାଏ ତେବେ ମୋତେ କ୍ଷମା କରିବେ । କିନ୍ତୁ ଆପଣଙ୍କ ଯୋଗବଳ ବିଷୟରେ ହିଁ କିଛି କହିବା ଉଦ୍ଦେଶ୍ୟରେ ମୁଁ ଆପଣଙ୍କୁ ଏଠାକୁ ଆସିବାକୁ ଅନୁରୋଧ କରିଛି । ସୁଖପଲ୍ଲୀର ବାଳିକା ଚମ୍ପା କାହାଣୀ ବୋଧ ହୁଏ ଆପଣଙ୍କୁ ଅବିଦିତ ନୁହେଁ ?

- ତା'ର ସେ ସ୍ୱପ୍ନ କଥା ମୁଁ ଶୁଣିଛି । ଚମ୍ପା ନିର୍ବୋଧ ବାଳିକା । ତା'ର କଥାରେ କିଛି ମାତ୍ର ଗୁରୁତ୍ୱ ଦେବା ଉଚିତ ନୁହେଁ ।

- ଚମ୍ପା ନିର୍ବୋଧ ନୁହେଁ, ସରଳା । କୌଣସି ନିର୍ବୋଧ ଅଥବା ଧୂର୍ତ୍ତା ବାଳିକା ପକ୍ଷରେ ଏ ପ୍ରକାର ମିଥ୍ୟା ଏଡ଼େ ବିଶଦଭାବରେ କହିବା ସମ୍ଭବ ନୁହେଁ । ତା'ର କାହାଣୀରେ ଆଦ୍ୟନ୍ତ ଗୋଟିଏ ସଙ୍ଗତି ଅଛି । ମୋର ବିଶ୍ୱାସ ଆପଣ ତାକୁ ଆଦେଶ କଲେ ସେ ଚଳତ୍‌ଶକ୍ତି ଫେରି ପାଇବ ।

ମହାକାଞ୍ଚନ ହଠାତ୍ ବ୍ୟଥାତୁର କଣ୍ଠରେ କହିଲେ - ଦେବୀ, ମୋର କୌଣସି ଅଲୌକିକ କ୍ଷମତା ନାହିଁ । ମୁଁ ନିଶ୍ଚୟ ପାପୀ । ତା 'ନହେଲେ ଆଜି ମଗଧର ପରାଜୟ ଘଟିନଥାନ୍ତା, ଧର୍ମର ପରାଜୟ ଘଟିନଥାନ୍ତା ।

- କିନ୍ତୁ ସୁଖପଲ୍ଲୀରେ ଆପଣଙ୍କ ବିଷୟରେ ଧାରଣା ଅନ୍ୟରୂପ । ଏଠାରେ ଲୋକେ ଆପଣଙ୍କର ଅଲୌକିକ ଶକ୍ତି ବଳରେ ଚମ୍ପାର ନିରାମୟ ଦେଖିବାକୁ ଚାହିଁ ବସିଅଛନ୍ତି । ମଗଧର ପରାଜୟକୁ ହୁଏତ ଆପାତ ଦୃଷ୍ଟିରେ ଧର୍ମର ପରାଜୟ ବୋଲି ଆପଣଙ୍କ ପ୍ରତୀତି ହେଉଛି । ଆପଣଙ୍କ ପ୍ରକୃତ ଧର୍ମବଳ ସୁଖପଲ୍ଲୀରେ ପ୍ରମାଣିତ ହେବ ।

ମହାକାଞ୍ଚନ ଦୀର୍ଘ ନିଃଶ୍ୱାସ ପକାଇ କହିଲେ, - ଆଜି ଏଠାକୁ ଆସିବା ସମୟରେ କେତେ ପଲ୍ଲୀବାସୀ ମୋତେ ଦୂରରୁ ସାଷ୍ଟାଙ୍ଗ ପ୍ରଣିପାତ କରୁଥିବାର ଦେଖି ମୁଁ ଅନୁଭବ କରିଛି ଏଇ ଲୋକଧାରଣା କେତେ ଦୂର ଅଗ୍ରସର ହୋଇଛି । ଲୋକେ ଧର୍ମ ପାଳନ ପାଇଁ ଉତ୍ସାହୀ ନୁହଁନ୍ତି, ସେମାନେ ଅନ୍ୟର ଅଲୌକିକ ଶକ୍ତି ଦେଖିବାକୁ ଚାହାଁନ୍ତି - ତା' ସାହାଯ୍ୟରେ ନିଜର ବୈଷୟିକ ଉନ୍ନତି ସାଧନ କରିବା ଆଶାରେ । ମୁଁ ମନସ୍ଥ କରିଛି ଆଜି ଏକଥା ପଲ୍ଲୀବାସୀମାନଙ୍କୁ ବୁଝାଇ କହିବି । ଲୋକେ ମୋ କଥା ଅବଶ୍ୟ ବୁଝିବେ ।

ବିନୀତା ସ୍ମିତହାସ୍ୟ କରି କହିଲେ - ମୋର ଧୃଷ୍ଟତା ମାର୍ଜନା କରିବେ । ସାଧାରଣ ଲୋକର ମନ ବିଷୟରେ ଆପଣଙ୍କର କୌଣସି ଧାରଣା ନାହିଁ । ଆପଣ ଯେତେ ଯୁକ୍ତିଯୁକ୍ତ କଥା ବୁଝାଇଲେ ମଧ ସେମାନଙ୍କର ଅଲୌକିକ କ୍ରିୟା ଦେଖିବାର କୌତୂହଳ ଚରିତାର୍ଥ ନକଲେ ସେମାନେ  ଆପଣଙ୍କଠାରେ କେବଳ ଭକ୍ତି ହରାଇବେ ନାହିଁ, ଆପଣଙ୍କୁ ଅବଜ୍ଞାର ପାତ୍ର ଜ୍ଞାନ କରିବେ ।

ମହାକାଞ୍ଚନ ବିନୀତାଙ୍କ ସୂକ୍ଷ୍ମ ମନ୍ତବ୍ୟରେ ବିସ୍ମିତ ହେଲେ, ମାତ୍ର ନୀରବ

ରହିଲେ । ବିନୀତା ପୁଣି କହିଲେ - ଯଦି ଅନ୍ୟରୂପ ନ ଭାବନ୍ତି ତେବେ ଆପଣଙ୍କୁ ମୁଁ ଗୋଟିଏ ପରାମର୍ଶ ଦେବି - ଏହି ନିବେଦନ ।

- ମୁଁ ବାଧିତ ହେବି; ଏ ବିଷୟରେ ମୁଁ ନିଜକୁ ଅସହାୟ ମନେ କରୁଛି ।

- ଏ ଘଟଣା ପରେ ମୁଁ ଚମ୍ପାକୁ ଏ ପର୍ଯ୍ୟନ୍ତ ସାକ୍ଷାତରେ ଦେଖି ନାହିଁ । ଆପଣ କ'ଣ ଦେଖିଛନ୍ତି ?

- ନା ।

- ତେବେ କୌଣସି ସିଦ୍ଧାନ୍ତ କରିବା ପୂର୍ବରୁ ଚମ୍ପା ମୁହଁରୁ ସମସ୍ତ ଘଟଣାଟି ଶୁଣିବା ବୋଧହୁଏ ଶ୍ରେୟଃ ଅବଶ୍ୟ ।

- ହଁ, ତାହା ହିଁ ବିଧେୟ । ମୁଁ ଯାଇ ତାହା ସହିତ ସାକ୍ଷାତ କରିବି ।

ବିନୀତା ତଳକୁ ମୁହଁ ପୋତି କିଛିକ୍ଷଣ ନୀରବ ରହିଲେ । ମହାକାଞ୍ଚନ କହିଲେ - ଦେବୀ, ଏଥର ମୋତେ ବିଦାୟ ଦିଅନ୍ତୁ ।

ବିନୀତାଙ୍କ ସେହିପରି ତଳକୁ ଚାହିଁ କହିଲେ, -ଚମ୍ପାକୁ ଆପଣଙ୍କର ସାକ୍ଷାତ ବିଷୟରେ ମୋର ପ୍ରସ୍ତାବ ଚମ୍ପାକୁ ମୁଁ କାଲି ଏହିଠାକୁ ଆସିବା ପାଇଁ ଆଜି ସଂବାଦ ପଠାଇବି । ଆପଣ ଦୟା କରି ମୋର ଗୋଟିଏ ଅନୁରୋଧ ରଖିଲେ ମୁଁ କୃତାର୍ଥ ହେବି - ଆପଣ କାଲି ଆଉ ଗୋଟିଏ ଥର ଏଠାକୁ ଆସି ତା' ସହିତ ସାକ୍ଷାତ କରିବେ ।

- କାହିଁକି ଦେବୀ ?

- କାରଣ ଏଥିରେ ମୋର ଟିକିଏ ସ୍ୱାର୍ଥ ଅଛି । ...ତୁମେ ତ ଜାଣ...ତୁମେ ତ ଜାଣ...

କହୁ କହୁ ବିନୀତାଙ୍କ କଣ୍ଠରୋଧ ହେଲା । ଉଦ୍‌ଗତ ଅଶ୍ରୁ ସମ୍ବରଣ କରି ନ ପାରି ସେ ଅଧୋବଦନରେ ଛିଡ଼ା ହୋଇ ରହିଲେ । ଦୁଇ ବିନ୍ଦୁ ଅଶ୍ରୁ ବାଧା ନ ମାନି ବୋହି ଆସି ମହାକାଞ୍ଚନଙ୍କ ପାଦ ତଳେ ପଡ଼ିଲା । ମହାକାଞ୍ଚନ ଚମକି ପଡ଼ି ବିନୀତାଙ୍କ ମୁହଁ ଆଡ଼େ ଚାହିଁ ସ୍ତମ୍ଭିତ ହୋଇଗଲେ । ଯୁଗ ସଞ୍ଚିତ ଏକ ଅଜଣା ବ୍ୟଥାରେ ଆଜି ତାଙ୍କର ହୃଦୟ ମଥିତ ହେଲା । ବିନୀତା

ବହୁ ଆତ୍ମସଂବରଣ କରି କହିଲେ, - ତୁମେ ତ ଜାଣ ମୁଁ ବିବାହିତା ।

- ବିବାହିତା !!

- ହଁ, ସେଦିନ ଯେଉଁ ଫୁଲହାର ତୁମ କଣ୍ଠରେ ପିନ୍ଧାଇ ଯାଇଥିଲି ତାହା କ'ଣ ବହୁ ପୂର୍ବରୁ ମୋର ଅନ୍ତର ତୁମକୁ ପିନ୍ଧାଇ ନ ଥିଲା ?

ମହାକାଞ୍ଚନ ରୁଦ୍ଧବାକ୍ ହୋଇ ଚାହିଁ ରହିଲେ । ବିନୀତା ପ୍ରକୋଷ୍ଠ ଅଭ୍ୟନ୍ତରରେ ଏକ ରୁଦ୍ଧ ଦ୍ୱାର ଖୋଲି ଦେଇ କହିଲେ, - ସେଇଥିଲାଗି ତ ଏହି ସମାଜ ଆଜି ମୋର ପତିଗୃହ, ଏମୂର୍ତ୍ତି ମୋର... ମୋର ଦେବତା...

ମହାକାଞ୍ଚନ ସେ ମୂର୍ତ୍ତି ଦେଖି ଚମକି ପଡ଼ିଲେ । ଇଏ ତ ତାଙ୍କରି ପ୍ରତିମୂର୍ତ୍ତି ! ସେହିଦିନ ତା'ର ଗଳାରେ ସେଇ ପୁଷ୍ପହାର ଯାହା ସେହି ଦିନ ବିନୀତା ତାଙ୍କରି ଗଳାରେ ଦେବାକୁ ଚାହିଁଥିଲେ ।

ମହାକାଞ୍ଚନ ଏକ ଅପୂର୍ବ ବେଦନା ଅନୁଭବ କଲେ ।

ତା'ପରେ ହଠାତ୍ ଅତି ଅଧୀର ଭାବରେ କହିଲେ, - ଦେବୀ ! ଦେବୀ ! ଏ କାର୍ଯ୍ୟ ଆପଣ ତ୍ୟାଗ କରନ୍ତୁ । ଏ ମହାପାପ । ସାମାନ୍ୟ ନଶ୍ୱର ମନୁଷ୍ୟକୁ ଦେବତାଙ୍କ ଆସନରେ ବସାଇବା... !

ବିନୀତା ବେଦନାଦିଗ୍ଧ ସ୍ୱରରେ କହିଲେ - ଦେବ ! ବହୁ ଚେଷ୍ଟା କରିଛି, ପାରି ନାହିଁ । କିନ୍ତୁ ଯା ହବାର ନୁହଁ ସେ କଥା ଥାଉ । ଏଇଠି ଯଦି ଆପଣଙ୍କ ଯୋଗ ଓ ଧର୍ମବଳରେ ଚମ୍ପା ତା'ର ପାଦ ଫେରି ପାଏ ତେବେ ମୋର ଦେବତା ଚିରକାଳ ପୂଜା ପାଇବେ, ମୋର ସମାଜ କାଳକାଳକୁ ବଞ୍ଚି ରହିବ ।

ବିନୀତା ଅଧୀରା ହୋଇ ମହାକାଞ୍ଚନଙ୍କ ହାତ ଧରି ପକାଇଲେ । ମହାକାଞ୍ଚନ ଧୀରେ ନିଜର ହସ୍ତ ମୁକ୍ତ କରି ତା'ପରେ କହିଲେ,- ତାହାହିଁ ହେଉ ଦେବୀ । ମୁଁ ଜାଣେନା ଭଗବାନଙ୍କର କି ଉଦ୍ଦେଶ୍ୟ ଏଥିରେ ନିହିତ ଅଛି । ଆମେ ସମସ୍ତେ ତାଙ୍କ ହସ୍ତରେ କ୍ରୀଡ଼ନକ ମାତ୍ର । ଆପଣ କାଲି ଚମ୍ପାକୁ ଏଠାକୁ ଆଣନ୍ତୁ । ମୁଁ ସର୍ବାଦୀ ତା ମୁହଁରୁ ଆଦ୍ୟାନ୍ତ ସବୁ ଶୁଣିବା ପରେ ଯାହା ବିଧେୟ ତାହା କରିବି ।

ମହାକାଞ୍ଚନ ବିଦାୟ ନେଲେ । ଯେପରି କଷ୍ଟକାଳ ପରେ ଆଜି ବିନୀତାଙ୍କ ଅନ୍ଧକାର ଚିତ୍ତରେ ବିଚିତ୍ର ଆଲୋକୋଚ୍ଛ୍ୱାସ ହେଲା ।

# ୧୨

ପରଦିନ ମହାକାଞ୍ଚନ ପୁଣି ପ୍ରାସାଦ ପ୍ରାଙ୍ଗଣକୁ ଗଲେ । ବିନୀତା ଏଥି ପୂର୍ବରୁ ଚମ୍ପାକୁ ଅଣାଇ ସାରିଥିଲେ । ମହାକାଞ୍ଚନକୁ ଦେଖି ଚମ୍ପା ଆସାବାଡ଼ି ଧରି ଛିଡ଼ା ହେଲା ଏବଂ ଭୟ ଓ ଆଶ ଉତ୍ତେଜନାରେ କଦଳୀ ପତ୍ର ପରି ଥରିବାକୁ ଲାଗିଲା । ବିନୀତା ଚମ୍ପାକୁ ଧରି ଛିଡ଼ା ହେଲେ ।

ମହାକାଞ୍ଚନ ଚମ୍ପାର ମସ୍ତକ ସ୍ପର୍ଶ କରି କହିଲେ - ମା' ଭୟ କରନା । ସବୁ କଥା କୁହତ ମା' ।

ଚମ୍ପା ଆଦ୍ୟନ୍ତ ସବୁ କହି ଗଲା । ଲୋକଙ୍କ ଆଗରେ କହିକହି ସବୁ ତା'ର ପ୍ରାୟ କଣ୍ଠସ୍ଥ ହୋଇ ଯାଇଥିଲା । ଏବେ ତା'ର କେବେ କେବେ ଏପରି ବି ମନେ ହୁଏ ଯେ ଏସବୁ କ'ଣ ସତରେ ଘଟିଥିଲା, ନା ବାଲ୍ୟାବଧି କେଉଁ ଏକ ବହୁଶ୍ରୁତ କାହାଣୀ

ସେ ସମସ୍ତଙ୍କ ଆଗରେ ଗାହି ଯାଉଅଛି ? ମହାକାଞ୍ଚନ ତା'ର ସରଳ ସୁନ୍ଦର ମୁହଁକୁ ଚାହିଁ ଭାବିଲେ ତା'ର ଭ୍ରମ ହୋଇପାରିଥାଏ କିନ୍ତୁ ତା ଠାରେ ଛଳନା ଆଦୌ ନାହିଁ । ସେ ଚିନ୍ତା କରିବାକୁ ଲାଗିଲେ । ତାଙ୍କର ମନେ ହେଲା ବିନୀତାଙ୍କ କଥା ଯଥାର୍ଥ, ଯଦି ଏ ଆହ୍ୱାନ ସେ ପ୍ରତ୍ୟାଖ୍ୟାନ କରନ୍ତି ତେବେ ଲୋକେ ଭାବିବେ ସେ ଭୀରୁ, ଭଣ୍ଡ ତପସ୍ୱୀ । ଚମ୍ପାର କଥା ଯଦି ସତ୍ୟ ହୁଏ ଯଦି ପ୍ରକୃତରେ ଭଗବାନ ତାଙ୍କ ପ୍ରତି ନିର୍ଦ୍ଦେଶ କରିଥାନ୍ତି ଓ ଚମ୍ପା ତା'ର ଗୋଡ଼ ଫେରିପାଏ ତେବେ ଏହା ଦ୍ୱାରା ତାଙ୍କର ଉଦ୍ଦେଶ୍ୟ ମଧ ସାଧିତ ହେବ । ତାଙ୍କ ପିତାଙ୍କର ଆଦୃତ ବ୍ରାହ୍ମଣ୍ୟ ଧର୍ମର ଶ୍ରେଷ୍ଠତା ପ୍ରମାଣିତ ହେବ । ବ୍ରାହ୍ମଣ ମଗଧରାଜ ପରାଜିତ ହେଲେ ମଧ ଶେଷ ଓ ଚୂଡ଼ାନ୍ତ ଜୟ ବ୍ରାହ୍ମଣ୍ୟ ଧର୍ମର ହିଁ ହେବ । ତାଙ୍କର ମନେ ହେଲା ଭଗବାନ ଏହା ଦ୍ୱାରା ତାଙ୍କୁ ଗୂଢ଼ ଇଙ୍ଗିତ ଦେଉ ଅଛନ୍ତି । କିନ୍ତୁ...କିନ୍ତୁ...ଯଦି ଏ ଅସମ୍ଭବ ସମ୍ଭବ ନ ହୁଏ ?

ମହାକାଞ୍ଚନ ମହା ଦ୍ୱିଧାରେ ପଡ଼ି ଚିନ୍ତା କରିବାକୁ ଲାଗିଲେ । ବିନୀତା ମହାକାଞ୍ଚନଙ୍କୁ ଭାବିବା ପାଇଁ ସମୟ ଦେଇ କକ୍ଷାନ୍ତରକୁ ଗଲେ । ମହାକାଞ୍ଚନ ଅଧୀର ଭାବରେ ପଦଚାରଣ କରୁ କରୁ ଉପରକୁ ଚାହିଁ କହିଲେ - ହେ କରୁଣାମୟ, ମୋତେ ସ୍ପଷ୍ଟ ନିର୍ଦ୍ଦେଶ ଦିଅ । ମୁଁ ଅକ୍ଷମ । ଅବିରାମ ଅଶ୍ରୁ ତାଙ୍କର ଗଣ୍ଡଦେଶ ପ୍ଲାବିତ କରିବାକୁ ଲାଗିଲା । ତଥାପି ତାଙ୍କ ମନରୁ ସନ୍ଦେହ ଗଲା ନାହିଁ । କୌଣସି ଆଲୋକ ସେ ପାଇଲେ ନାହିଁ ।

ମହାକାଞ୍ଚନ ଦୁର୍ବଳଚେତା ନୁହଁନ୍ତି, ସେ ସ୍ଥିର କଲେ ଯେ ସ୍ପଷ୍ଟ ନିର୍ଦ୍ଦେଶ ଯଦି ନ ମିଳିଲା ତେବେ ସେ ଆତ୍ମଶକ୍ତି ଉପରେ ହିଁ ନିର୍ଭର କରିବେ, ଭଗବାନଙ୍କର ଯାହା ଇଚ୍ଛା ତାହା ହିଁ ହେବ । ସେହିଠାରେ ଯୋଗାସନରେ ବସି ସେ ଧ୍ୟାନସ୍ଥ ହେଲେ । ଏହା ପରେ ଯାହା ଘଟିଲା ତାହା ଦେଖି ଚମ୍ପା ପ୍ରସ୍ତର ମୂର୍ତ୍ତି ପାଲଟି ଗଲା । ଚମ୍ପା ସ୍ପଷ୍ଟ ଦେଖିଲା ମହାକାଞ୍ଚନ ଉପବିଷ୍ଟ ଅବସ୍ଥାରେ ଧୀରେ ଧୀରେ ଶୂନ୍ୟକୁ ଉଠିବାକୁ ଲାଗିଲେ ଏବଂ ଶୂନ୍ୟରେ କିଛିକ୍ଷଣ ଅବସ୍ଥାନ କରି ପୁଣି ଦୀରେ ଧୀରେ ଅବତରଣ କରି ଭୂମି ସ୍ପର୍ଶ କଲେ । ଚମ୍ପା ଏ ଦୃଶ୍ୟ ଦେଖି ମୂର୍ଚ୍ଛିତା ହୋଇପଡ଼ିଲା ।

ମହାକାଞ୍ଚନ ଅବରୁଦ୍ଧ ଶ୍ୱାସ ଧୀରେ ଧୀରେ ତ୍ୟାଗ କରି ଆସନ ତ୍ୟାଗ କରି ଉଠି ମୂର୍ଚ୍ଛିତା ଚମ୍ପାକୁ ଉଠାଇ ସାନ୍ତ୍ୱନା କରାଇଲେ । ତା'ପରେ ତାକୁ ସାବଧାନ କରାଇ କହିଲେ - ମା, ଯାହା ଦେଖିଲ ତାହା କାହାରିକୁ କହିବ ନାହିଁ ।

କିୟତ୍କ୍ଷଣ ପରେ ବିନୀତା ପ୍ରବେଶ କଲେ । ମହାକାଞ୍ଚନ ତାଙ୍କୁ ସୁସ୍ଥିରଭାବରେ କହିଲେ - କାଲି ମୁଁ ଚମ୍ପାକୁ ଆଦେଶ ଦେବି - ଆପଣଙ୍କ ଏଇ ମନ୍ଦିର ଚତ୍ୱରରେ ।

ଚମ୍ପା ଶୁଣି ଆନନ୍ଦରେ ବିଦାୟ ନେଲା ଏବଂ ଘରେ ପହଞ୍ଚିବା ମାତ୍ରେ ମା'କୁ ସମସ୍ତ କଥା ତତ୍କ୍ଷଣାତ୍ କହିଲା । ଚମ୍ପାର ମା' ଆନନ୍ଦରେ କାଳ ବିଳମ୍ବ ନକରି, ଏ ସମ୍ବାଦ ପର

ମୁହୂର୍ତ୍ତରେ ଚାରିଆଡ଼େ ପ୍ରଚାର କରି ଆସିଲେ ଏବଂ ମହାକାଞ୍ଚନଙ୍କ ଅଲୌକିକ କ୍ଷମତା, ଯାହା ଚମ୍ପା ସ୍ୱଚକ୍ଷୁରେ ଦେଖିଛି, ନିଜ ଅଜ୍ଞାତସାରରେ ଆହୁରି ଅତିରଞ୍ଜିତ କରି କହି ନିଶ୍ଚିନ୍ତ ହେଲେ !

ମଧୁକର ଏ ସମ୍ବାଦ ପାଇ ଚିନ୍ତିତ ହେଲେ । ସେ ନିଜେ ସୁଦକ୍ଷ ଯାଦୁକର । ଯୋଗ ସାଧନାକୁ ସେ ଏକ ଯାଦୁ ସାଧନା ବ୍ୟତୀତ କିଛି ମଣନ୍ତି ନାହିଁ । ତାଙ୍କ ମତରେ ଚରମ ସତ୍ୟ ବା ଭଗବଦ୍‌ରହସ୍ୟ ସହିତ ଏ ଶକ୍ତିର କୌଣସି ସମ୍ପର୍କ ନାହିଁ ଏହା ଦ୍ୱାରା ଜଗତର କୌଣସି ଉପକାର ସାଧିତ ହୁଏ ନାହିଁ, ଏକମାତ୍ର ସର୍ବଜୀବେ ପ୍ରୀତି ସାଧନ ଦ୍ୱାରା ହିଁ ତା' ସାଧିତ ହୋଇପାରେ ଏବଂ ଭଗବାନ ନାମକ ଚିରନ୍ତନ ରହସ୍ୟର କିଞ୍ଚିଦପି ନିକଟବର୍ତ୍ତୀ ହେବା ସମ୍ଭବ ହୋଇପାରେ । ସେ କେବଳ ନୀରବରେ ବନ୍ଧୁ ମହାକାଞ୍ଚନଙ୍କ ସଫଳତା ସମ୍ଭାବନା କେତେ ବା କେତେ ଟିକା ତାହାହିଁ ଚିନ୍ତା କରିବାକୁ ଲାଗିଲେ ।

ମହାକାଞ୍ଚନ ନିଜ ଗୃହକୁ ଫେରି ପୁନରାୟ ଧ୍ୟାନରେ ବସିଲେ । କିନ୍ତୁ ଶତ ଚେଷ୍ଟା କରି ମଧ୍ୟ ଆଜି ସେ ମନକୁ ନିଶ୍ଚଳ ରଖି ପାରିଲେ ନାହିଁ । ମନ ତାଙ୍କର ଆଶା ଓ ଆଶଙ୍କା ମଧ୍ୟରେ ପୂର୍ବବତ୍ ଦୋଳାୟମାନ ହୋଇ ରହିଲା ।

## ୧୩

ପରଦିନ ପ୍ରଭାତ ନ ହେଉଣୁ ସମସ୍ତ ପଲ୍ଲୀବାସୀ ପ୍ରାଦେଶିକଙ୍କ ପ୍ରାସାଦ ପ୍ରାଙ୍ଗଣରେ ଯାଇ ଏକତ୍ରିତ ହେଲେ । ସେହିଠାରେ ଗୋଟିଏ ଶମୀ ବୃକ୍ଷ ତଳେ ମହାକାଞ୍ଚନଙ୍କ ନିମିତ୍ତ ଗୋଟିଏ ବେଦୀ ବିନୀତା ନିର୍ମାଣ କରାଇଥିଲେ । ଚମ୍ପା ଆସାବାଡ଼ି ଦୁଇଖଣ୍ଡ ଧରି ବେଦୀ ମୂଳରେ ଠିଆ ହେଲା । ବିନୀତା ତା'ର ହାତ ଧରି ଠିଆ ହୋଇ ରହିଲେ । ଆଜି ବିନୀତା ବଡ଼ ସୁନ୍ଦର ଦେଖା ଯାଉଥାନ୍ତି । ତାଙ୍କର ଚାରିପାଖ ଘେରି ଯେପରି ଦିଶୁଥାଏ ଏକ କମନୀୟ ଆଭାର ପରିମଣ୍ଡଳ । ଚମ୍ପାର ଉଚ୍ଛଳିତ ମନୋଭାବ ଓ ସେହି ମତେ ମୁଖଭାବ ବର୍ଣ୍ଣନା କରିବା ଦୁଃସାଧ୍ୟ । ଏତିକି କହି ହେବ ଯେ ତା'ର ମନରେ ଓ ମୁଖରେ ବିଶ୍ୱାସର ଭାବ ହିଁ ପ୍ରଧାନ - ଆଜି ସେ ତା'ର ଚଳତ୍‌ଶକ୍ତି ଫେରିପାଇବ । ସେଥିପାଇଁ ଆନନ୍ଦ । ପୁଣି ତା'ରି ସହିତ କିଞ୍ଚିତ୍ ସନ୍ଦେହ -ସଂଶୟ, ସମସ୍ତ ବ୍ୟାପାରଟି ଘେନି ଉଦଗ୍ର ଉତ୍ତେଜନା ଆଉ - ଗୋଟିଏ କ'ଣ ଅଜଣା ଭୟ ! ପଲ୍ଲୀବାସୀମାନେ ଗୋଟିଏ ଅଲୌକିକ କ୍ରିୟା ଦେଖିବା ଆଶାରେ ଅସ୍ଥିର ଓ ଉତ୍‌ଫୁଲ୍ଲ ଭାବରେ ମହାକାଞ୍ଚନଙ୍କ ପ୍ରତୀକ୍ଷାରତ ।

ଏହି ସମୟରେ ମହାକାଞ୍ଚନଙ୍କ ତେଜୋଦୀପ୍ତ ରୂପ ପ୍ରାଙ୍ଗଣର ପ୍ରବେଶ ଦ୍ୱାରରେ ଦେଖାହେବା ମାତ୍ରେ ପଲ୍ଲୀବାସୀମାନେ ଜୟଧ୍ୱନି କରି ଉଠିଲେ । ମହାକାଞ୍ଚନ କୌଣସି

ଆଡ଼େ ଦୃଷ୍ଟିପାତ ନ କରି ବେଦୀ ଉପରକୁ ଉଠିଲେ । କିଛିକ୍ଷଣ ନୀରବ ରହି ସେ ଉପରକୁ ଚାହିଁ ନମସ୍କାର କଲେ । ତା'ପରେ ଚମ୍ପାକୁ ଧୀର ଗମ୍ଭୀର ଉଦାତ୍ତ କଣ୍ଠରେ ସେ କହିବାକୁ ଲାଗିଲେ-

ମୂକଂ କରୋତି ବାଚାଳଂ ପଙ୍ଗୁଂ ଲଘଂୟତେ ଗିରିମ୍ ।
ଯତ୍‌କୃପା ତମହଂ ବନ୍ଦେ ପରମାନନ୍ଦ ମାଧବମ୍ ।।

- ଯାହାଙ୍କର କୃପା ମୂକକୁ ବାଚାଳ କରାଏ, ପଙ୍ଗୁକୁ ଗିରି ଲଘଂନ କରାଏ, ସେହି ପରମାନନ୍ଦସ୍ୱରୂପ ମାଧବଙ୍କୁ ବନ୍ଦନା କରେ । ତାଙ୍କରି ନିର୍ଦ୍ଦେଶରେ ବ୍ରହ୍ମାଙ୍କର ଚାରି ମୁଖରୁ ଚାରି ବେଦ ନିର୍ଗତ ହୋଇ ଜଗତକୁ ଜ୍ଞାନାଲୋକ ବିକୀର୍ଣ୍ଣ କରୁଅଛି, ଯେଉଁ ବେଦ ଶୁଣିବା ମାତ୍ରକେ ସମସ୍ତ ପାପ ଅପଗତ ହୁଏ, ସେଇ ତାଙ୍କୁ ହିଁ କୋଟି ନମସ୍କାର କରି ମୁଁ ତୁମକୁ ଆଦେଶ ଦେଉଛି ତୁମର ଯଷ୍ଟିଦ୍ୱୟ ତ୍ୟାଗ କରି ସ୍ୱପାଦରେ ଗମନ କର ।

ସ୍ତବ୍ଧ ଜନତା ରୁଦ୍ଧଶ୍ୱାସରେ ଅପଲକ ଦୃଷ୍ଟିରେ ଚାହିଁ ରହିଲେ । ଚମ୍ପା ଉତ୍ତେଜନାରେ ଥରେ କମ୍ପି ଉଠି ଆସାଯଷ୍ଟି ଦୁଇଖଣ୍ଡ ଫିଙ୍ଗି ଦେଲା, ଅତ୍ୟୁଜ୍ଜ୍ୱଳ ନୟନରେ ଅନ୍ଧଦୃଷ୍ଟିରେ ଚାହିଁ ସେ ନିଜ ପାଦରେ ଚାଲିବାକୁ ଚେଷ୍ଟା କଲା । କିନ୍ତୁ ଗୋଟିଏ ପାଦ ଆଗକୁ ବଢ଼ାଇବା ମାତ୍ରକେ ଆର୍ତ୍ତ ଚିତ୍କାର କରି ତଳେ ପଡ଼ିଗଲା ।

ଚମ୍ପାକୁ ପଡ଼ି ଯିବାର ଦେଖି ଜନତା ପ୍ରଥମେ କିଛି ସମୟ ହତବୁଦ୍ଧି ହୋଇ ରହିଲେ । ତା'ପରେ ଚମ୍ପା ପାଦ ଫେରି ପାଇନାହିଁ ଏକଥା ହୃଦୟଙ୍ଗମ କରି ଆଶ୍ଚର୍ଯ୍ୟ ହୋଇ ମହାକାଞ୍ଚନଙ୍କୁ ଚାହିଁଲେ । କ୍ରମେ ସେମାନଙ୍କ ମଧ୍ୟରୁ ନାନା ମନ୍ତବ୍ୟର ଅସ୍ଫୁଟ ଗୁଞ୍ଜନ ଉତ୍‌ଥିତ ହେଲା ଏବଂ ଅତିରେ ତାହା କଟୁ ଓ ତୀକ୍ଷ୍ଣ ହୋଇ ଉଠିଲା ।

ବିନୀତା ମଧ୍ୟ ପ୍ରଥମେ ବିଶ୍ୱାସ କରିପାରିଲେ ନାହିଁ ଯେ ମହାକାଞ୍ଚନଙ୍କ ଆଦେଶ ବ୍ୟର୍ଥ ହୋଇଛି, ଭଗବାନଙ୍କ ନିର୍ଦ୍ଦେଶ ଗୋଟାଏ କ୍ରୂର ପରିହାସରେ ପରିଣତ ହୋଇଛି । ଚମ୍ପା କିନ୍ତୁ ତଥାପି ବଳପୂର୍ବକ ଆଉ ଥରେ ଉଠି ଚାଲିବାକୁ ଚେଷ୍ଟା କଲା । କିନ୍ତୁ ଏଥର ମଧ୍ୟ ସେ ବେଦନାରେ ଚିତ୍କାର କରି ତଳେ ପଡ଼ିଗଲା । ବିନୀତା ଆଶାଭଙ୍ଗର ଦୁଃଖ ଓ ତଜ୍ଜନିତ ତୀବ୍ର ବିରକ୍ତି ସହ ଚମ୍ପା ଆଡ଼େ ଚାହିଁଲେ । ତା'ପରେ ମହାକାଞ୍ଚନଙ୍କ ଆଡ଼େ ଚାହିଁ ଦେଖିଲେ ତାଙ୍କ ମୁହଁରେ ବ୍ୟର୍ଥତାର କାଳିମା । ମହାକାଞ୍ଚନ ମଧ୍ୟ ବିନୀତାଙ୍କୁ ଅସହାୟ ଓ ବ୍ୟଥିତ ଭାବରେ ଚାହିଁ ସେ ସ୍ଥାନ ତ୍ୟାଗ କଲେ । ମହାକାଞ୍ଚନଙ୍କ ପଛେ ପଛେ ସୋମଦତ୍ତ ଓ କାତ୍ୟାୟନୀ ମଧ୍ୟ ପ୍ରସ୍ଥାନ କଲେ ।

ଗୋଟି ଗୋଟି ହୋଇ ସମସ୍ତ ପଲ୍ଲୀବାସୀ ନାନା ମନ୍ତବ୍ୟ କରୁ କରୁ ନିଜ ନିଜ ଘରକୁ ଫେରିଲେ । କୌଣସି ନାଟକାଭିନୟ ମଧ୍ୟ ପଥରେ ହଠାତ୍ ବନ୍ଦ ହେଲେ ଦର୍ଶକମାନଙ୍କ ମନ ଯେପରି ତିକ୍ତ ହୋଇଯାଏ ସେମାନଙ୍କ ମନୋଭାବ ସେହିପରି ଜଣାପଡୁଥାଏ ।

ବିନୀତା ନିଜ ମନ୍ଦିର ପ୍ରକୋଷ୍ଠକୁ ଯାଇ ଅଶ୍ରୁବିସର୍ଜନ କରିବାକୁ ଲାଗିଲେ । ପ୍ରାସାଦଭୂମି ଜନଶୂନ୍ୟ ହେବା ପରେ ଚମ୍ପା ଧୀରେ ଗୁରୁଣ୍ଡି କରି ଉଠି ଆସାବାଡ଼ି ଦୁଇଖଣ୍ଡ ଧରି ଛିଡ଼ା ହେଲା । ମା’ ଓ ମଧୁକକାକୁ ଦେଖି ସେ ବଡ଼ ଅଶାନ୍ତ ଭାବରେ କାନ୍ଦିବାକୁ ଲାଗିଲା । ମଧୁକର ତାକୁ ଅନେକ ଆଦରକରି ସାନ୍ତ୍ୱନା ଦେଉ ଦେଉ ଘରକୁ ନେଇଗଲେ ।

# ୧୪

ସୋମଦତ୍ତ ଓ କାତାୟନୀ ଗୃହକୁ ଫେରି ଦେଖିଲେ ମହାକାଞ୍ଚନ ଅତି ବିମର୍ଷଭାବରେ ବସିଛନ୍ତି । ସୋମଦତ୍ତ ପୁତ୍ରକୁ ସାନ୍ତ୍ୱନା ଦେଇ କହିଲେ, - ବତ୍ସ ! ମୋର ଦୃଢ଼ ବିଶ୍ୱାସ ଚମ୍ପା ବର୍ତ୍ତମାନ ଚାଲି ପାରୁଛି । ଭଗବାନଙ୍କ ନିର୍ଦ୍ଦେଶ କଥା ଚମ୍ପାର ହୁଏତ ଭ୍ରମ ହୋଇପାରେ, କିନ୍ତୁ ଯୋଗବଳ ମିଥ୍ୟା ହୋଇପାରେନା । ଯୋଗବଳରେ ଯିଏ ଶୂନ୍ୟରେ...

ମହାକାଞ୍ଚନ ବାଧା ଦେଇ କହିଲେ - ପିତା ସେ କଥା କୁହନ୍ତୁ ନାହିଁ । ଶତ ଚେଷ୍ଟା କରି ମଧ ମୁଁ ଯେତେବେଳେ ଭଗବାନଙ୍କ ନିର୍ଦ୍ଦେଶ ଅନ୍ତରରେ ଉପଲବ୍ଧି କରି ପାରିଲି ନାହିଁ, ସେତେବେଳେ ସିଦ୍ଧାନ୍ତ କଲି ଚମ୍ପାର ବିଶ୍ୱାସବଳରେ ହିଁ ମୁଁ ସଫଳ ହେବାକୁ ଚେଷ୍ଟା କରିବି । ତେଣୁ କେବଳ ତାହାର ବିଶ୍ୱାସକୁ ଆହୁରି ଦୃଢ଼ କରିବା ପାଇଁ ମୁଁ ମୋର ହଠଯୋଗର ବଳ ପ୍ରଦର୍ଶନ କରିଥିଲି । ପିତା, ଏ ବ୍ୟର୍ଥତା ମୋର ପାପର ପ୍ରାୟଶ୍ଚିତ୍ତ । ମୋର ସେଇ ଅଦ୍ଭୁତ ପରିବ୍ରାଜକ କଥା ମନେ ପଡୁଛି । ସେ କହିଥିଲେ - ଐନ୍ଦ୍ରଜାଲିକ ତା’ର କ୍ରୀଡ଼ା ଦେଖାଇବାବେଳେ ଅନେକ ଅଦ୍ଭୁତ କର୍ମ କରେ, ତାହାଦ୍ୱାରା ଆମର ମନୋରଞ୍ଜନ ହୁଏ କିନ୍ତୁ ତାହା ଦ୍ୱାରା ସତ୍ୟର ସନ୍ଧାନ ମିଳେ ନାହିଁ ।

ମହାକାଞ୍ଚନ ହଠାତ୍ ଶିଶୁ ପରି କ୍ରନ୍ଦନ କରି ବ୍ୟାକୁଳ ଭାବରେ ଉପରକୁ ହାତ ଟେକି କହିଲେ - ହେ ଯୁବକ, ହେ ଯୁଗ ଯୁଗ ଧାବିତ ଯାତ୍ରୀ, ତୁମେ ଆସ, ହେ ସତ୍ୟାନ୍ୱେଷୀ, ଆସ ତୁମେ, ଫେରି ଆସ । ନୂତନ ଆଲୋକ ଦେଖାଅ । ମୋତେ କ୍ଷମା କର ।

ସୋମଦତ୍ତ ଆଶ୍ଚର୍ଯ୍ୟ ହୋଇ ପଚାରିଲେ, ଯୁବକ ! କିଏ ସେ ଯୁବକ ?

- ପିତା, ସେ ଏକ ଅଦ୍ଭୁତ ଯୁବକ । ମୁଁ ମଗଧ ରାଜଗୁରୁ ହେବା ପରେ ପାଟଳିପୁତ୍ରରେ ତାଙ୍କ ସହିତ ମୋର ପରିଚୟ ଘଟେ । ଗୋରଧଗିରି ଯୁଦ୍ଧର କିଛି ଦିନ ପୂର୍ବର ଘଟଣା । ମୁଁ ଯୁଦ୍ଧର ଆୟୋଜନରେ ବ୍ୟସ୍ତ ଥିଲି । ଦିନେ ଗୁପ୍ତଚର ଠାରୁ ସମ୍ବାଦ ପାଇଲି ପାଟଳିପୁତ୍ରକୁ ଜଣେ ଅଜ୍ଞାତନାମା ଯୁବକ ଆସିଛନ୍ତି ତାଙ୍କର ଅଦ୍‌ଭୁତ କଥାବାର୍ତ୍ତାରେ ପାଟଳିପୁତ୍ର ଯୁବକମାନେ ତାଙ୍କ ପ୍ରତି ଆକୃଷ୍ଟ ହେଉଛନ୍ତି, କେହି କେହି ତାଙ୍କର ଭକ୍ତ ହୋଇ ପଡୁଛନ୍ତି । ମଗଧର ନିୟମାନୁସାରେ ଶିକ୍ଷା ଦେବାର ଦାୟିତ୍ୱ ଏକମାତ୍ର ରାଜାଙ୍କର, ରାଜାଙ୍କ ମନୋନୀତ ଶିକ୍ଷକମାନେ ହିଁ ଶିକ୍ଷା ଦିଅନ୍ତି । ଗୁପ୍ତଚର ମୁଖରୁ ଏ ସମ୍ବାଦ ମଧ ପାଇଲି ଯେ

ସେ ଯୁବକ ଯେଉଁ ଶିକ୍ଷା ଦେଉଅଛନ୍ତି ତାହା ବେଦ ବିରୋଧୀ । ବୈଦିକ ଧର୍ମ ରକ୍ଷାର୍ଥେ ମଗଧରେ ମୁଁ ଯେଉଁ ନିୟମ ପ୍ରଚଳନ କରିଛି, ବେଦକୁ ଅବମାନନା କରୁଥିବା ଲୋକ ତଦ୍ଵାରା କଠୋର ଦଣ୍ଡରେ ଦଣ୍ଡିତ ହୁଏ । ସତ୍ୟାସତ୍ୟ ଜାଣିବା ପାଇଁ ମୁଁ ସେ ଯୁବକକୁ ଡକାଇଲି ।

ଯୁବକର ଆକାର ପ୍ରକାର ଦେଖି ମୁଁ ବିସ୍ମିତ ହେଲି । ଘନ ଶ୍ୟାମ ବର୍ଣ୍ଣ, ନାତିଦୀର୍ଘ କ୍ଷୀଣ ଦେହ, ଅଯତ୍ନବର୍ଦ୍ଧିତ ଦୀର୍ଘ କେଶ, ବେଶବାସ ମଧ ପାରିପାଟ୍ୟହୀନ । କିନ୍ତୁ ତାଙ୍କର ଆଖିଯୋଡ଼ିକ ଯେପରି ଅନନ୍ୟସାଧାରଣ । ସେ ଚକ୍ଷୁରେ ତୀକ୍ଷଣତା ନାହିଁ । ଅଛି ଯେପରି ଏକ ଅନ୍ତହୀନ ଅନୁସନ୍ଧିତ୍ସା । ସେ ଆଖି ଯେପରି ଅନନ୍ତକୁ ବିସ୍ତାରି ରହି ବିଶ୍ଵସୃଷ୍ଟି ପ୍ରତି ସଦା ବିସ୍ମୟରେ ବିସ୍ଫାରିତ । ଅଧରରେ ସଦା ସ୍ମିତ ହାସ୍ୟ । ଯୁବକ ଆସି ଅଭିବାଦନ କରି ଉପବେଶନ କଲେ ।

ମୁଁ ପଚାରିଲି,- ଯୁବକ ତୁମର ନାମ କ'ଣ ? ତୁମ୍ଭର ଜନ୍ମ କେଉଁ ଦେଶରେ ? ତୁମ୍ଭେ କାହାର ପୁତ୍ର ? ଜୀବିକା ନିର୍ବାହ କର କିପରି ?

ଯୁବକ ସ୍ମିତହାସ୍ୟ କରି କହିଲେ - ମୁଁ ଅମୃତର ସନ୍ତାନ । ମୋର ଜନ୍ମ ଏଇ ବିଶାଳ ସୃଷ୍ଟିରେ ପୃଥିବୀ ନାମକ ଏହି ମୃତ୍‌କଣିକାରେ । ମୁଁ ଚାର୍ବାକ ନାମରେ ପରିଚିତ । ମୋର ଜୀବିକା ନିର୍ବାହ ହୁଏ ଋଣଂ କୃତ୍ୱା ।

ମୁଁ କହିଲି - ତୁମ୍ଭର ନାମର ଅର୍ଥ ଚାରୁବାକ୍, ତୁମେ ସୁନ୍ଦର ବାକ୍ୟ କହିବ । ବେଦବିରୋଧୀ ତୁମର ବାକ୍ୟ କିନ୍ତୁ ସେଥିପାଇଁ ତୁମ୍ଭେ ଦୁଷ୍ଟବାକ୍ ଏବଂ ଦଣ୍ଡନୀୟ । ଉପରନ୍ତୁ ଜୀବିକା ନିର୍ବାହ ପାଇଁ ତୁମ୍ଭେ ସାଧୁ ପନ୍ଥା ଅବଲମ୍ବନ କରୁ ନ ଥିବାରୁ ଦଣ୍ଡନୀୟ ମଧ ।

- ରାଜଗୁରୁ ମହାଶୟ, ମୋର କଥାର ଉଚିତ ଅର୍ଥ କଲେ ନାହିଁ ଆପଣ । ମୁଁ କହୁଥିଲି ଯେ ଏ ପିଣ୍ଡ ଅନ୍ନରେ ବର୍ଦ୍ଧିତ ଓ ପରିପୁଷ୍ଟ ହୁଏ । ସେ ଅନ୍ନ ପାଇଁ ସମାଜର ସମସ୍ତେ ସମସ୍ତଙ୍କ ନିକଟରେ ଋଣୀ । କପର୍ଦ୍ଦିକ ବିନିମୟରେ ସେ ଅନ୍ନ କ୍ରୟ କଲେ ମଧ ଆପଣ ବିକ୍ରେତା ଠାରେ ଋଣୀ । ପୁଣି, ଆପଣ ସେ ଅନ୍ନ ନେବେ ଏକଥା ନିଶ୍ଚିତ ଜାଣି ବିକ୍ରେତା ସ୍ୱୟଂ କ୍ରେତା ହୋଇ କୃଷକ ଠାରୁ ଅନ୍ନ କ୍ରୟ କରେ, ସେହିପରି କୃଷକ ମଧ ଏକଥା ନିଶ୍ଚିତ ଜାଣି ବହୁ କଷ୍ଟ ସ୍ୱୀକାର କରି ଧାନ ଉତ୍‌ପନ୍ନ କରେ । ବସ୍ତ୍ର ଉତ୍‌ପାଦକ ତନ୍ତୁବାୟ ମଧ ସେହିପରି । ତେଣୁ କେହି ଯଦି କହେ ଯେ ସେ ଅନ୍ନବସ୍ତ୍ର ପାଇଁ କାହାରି ଠାରେ ଋଣୀ ନୁହେଁ ତେବେ ସେ ମୂଢ଼ ଅଥବା ପ୍ରବଞ୍ଚକ । କେହି ଯଦି ତାହାର ଉପାର୍ଜନ ପାଇଁ ସମାଜକୁ ଉପେକ୍ଷା କରି କେବଳ ଭଗବାନଙ୍କୁ କୃତଜ୍ଞତା ଜଣାଏ ତେବେ ସେ ଦାମ୍ଭିକ । ସମାଜରେ ତାହାର ସ୍ଥିତି ମଙ୍ଗଳକର ନୁହେଁ । ସମସ୍ତେ ଯଦି ନିଜକୁ ଅନ୍ୟ ସମସ୍ତଙ୍କଠାରେ ଋଣୀ ମନେ କରିବେ ତେବେ ସମସ୍ତେ ଘୃତ ପାନ କରି ପାରିବେ । ମୋର ନାମ ବିଷୟରେ ମୁଁ କହିବି ନାମ ସହିତ ମୋର ସମ୍ପର୍କ ନାହିଁ । ଯେଉଁ ନାମରେ ମତେ ଡାକନ୍ତୁ ସେଥିରେ ମୋର ଆପତ୍ତି ବା ଦୁଃଖ ନାହିଁ । ମୋର ବେଦବିରୋଧୀ ପ୍ରଚାର ବିଷୟରେ ଆପଣ ଯାହା କହିଲେ ସେ ବିଷୟରେ ମୁଁ

କେବଳ କହିବି ଯେ ଯୁଗେ ଯୁଗେ ମାନବ ମନରେ ଚିରତନ ନ୍ୟାୟବୁଦ୍ଧି କାରଣରୁ ନୂତନ ଚିନ୍ତାଧାରାର ଉଦ୍‌ଭବ ହୋଇଥାଏ । ସେତେବେଳେ ପୁରାତନ ଧାରାର ସୁବିଧାଭୋଗୀ ସମ୍ପ୍ରଦାୟ ତାଙ୍କର ସୁବିଧା ହରାଇବା ଭୟରେ ଭୀତ ହୋଇ ନୂତନ ଚିନ୍ତାଧାରାକୁ ଅଧର୍ମ ପାପ ରାଜଦ୍ରୋହ ପ୍ରଭୃତି ଆଖ୍ୟା ଦେଇ ବାଧା ଦିଅନ୍ତି, ନିଷ୍ଠୁରଭାବରେ ଦମନ କରିବାକୁ ମଧ୍ୟ ପଶ୍ଚାଦ୍‌ପଦ ହୁଅନ୍ତି ନାହିଁ । ମୋର ମନେ ହୁଏ ପରମ୍ପରାଗତ ପ୍ରଥାରେ ଧର୍ମାନୁଷ୍ଠାନ ପରିତ୍ୟାଗ କରି ମାନବ ମନର ଯେଉଁ ମୌଳିକ ଧର୍ମ- ତା'ର ଜିଜ୍ଞାସାର ଅନୁସନ୍ଧାନ - ତାହାକୁ ହିଁ ଅବଲମ୍ବନ କରି ନୂଆ କରି ତା'ର ଜିଜ୍ଞାସାର ଉତ୍ତର ଖୋଜିବା ସମୟ ଉପସ୍ଥିତ । ଲୋକେ କର୍ମକାଣ୍ଡର ନିୟମାଚରଣ ଦ୍ୱାରା ପାଶବଦ୍ଧ ପଶୁ ପରି ଭୟଭୀତ ।

ମୁଁ ବିରକ୍ତ ହୋଇ କହିଲି - ଶାସନନୀତି ବିଷୟରେ ମୁଁ ତୁମ୍ଭ ପରି ଅର୍ବାଚୀନ ଠାରୁ ଉପଦେଶ ନେବାକୁ ଚାହେଁ ନା । ତୁମ୍ଭେ ଜଣେ ସାଧାରଣ ଲୋକ । ସାଧାରଣ ଲୋକେ ଯଦି ରାଜନୀତି ଆଲୋଚନା କରନ୍ତି ତେବେ ଦେଶର ଶାସନ ପକ୍ଷରେ ତାହା ଅତ୍ୟନ୍ତ କ୍ଷତିକର ହୁଏ । ସମସ୍ତେ ଯଦି ରାଜ୍ୟ ଶାସନ ଆଲୋଚନା କରିବେ ତେବେ ଶାସନ ଦୁର୍ବଳ ଓ ବିପର୍ଯ୍ୟସ୍ତ ହୋଇପଡ଼େ । ସାଧାରଣ ଲୋକେ କେବଳ ରାଜାନୁଶାସନ ପାଳନ କରି ଯିବା ଉଚିତ ।

ଚାର୍ବାକ କହିଲେ -ମହାଶୟ, ସାଧାରଣ ଲୋକ ଚିରକାଳ ଏମିତି ନିମିତ୍ତମାତ୍ର ହୋଇ ରହନ୍ତି ନାହିଁ । ଦିନେ ସେ ପ୍ରଶ୍ନ କରିବାକୁ ଆରମ୍ଭ କରନ୍ତି, ସେତେବେଳେ ସଦୁତ୍ତର ନ ପାଇଲେ ରାଜାନୁଶାସନ ପ୍ରତି ଆସ୍ଥା ହରାଇ ବସନ୍ତି । ତା'ର ଏଇ ଅନାସ୍ଥାର ବିଷବାଷ୍ପ କାଳକ୍ରମେ ବିଦ୍ରୋହ ଆକାର ନେଇଥାଏ । କିନ୍ତୁ ଆଲୋଚନା ପାଇଁ ପଥ ବରାବର ଉନ୍ମୁକ୍ତ ଥିଲେ ତା' ଘଟି ପାରେନା ।

ଚାର୍ବାକର ଅକାଟ୍ୟ ଯୁକ୍ତି ମୋର କ୍ରୋଧ କ୍ରମେ ବର୍ଦ୍ଧିତ କରିବାକୁ ଲାଗିଲା । ମୁଁ ତିକ୍ତ ସ୍ୱରରେ କହିଲି, ଅର୍ବାଚୀନ ସହିତ ତର୍କ କରିବାର ସମୟ ମୋର ନାହିଁ । ମୁଁ ଜାଣିବାକୁ ଚାହେଁ ତୁମେ ବେଦ ବିରୁଦ୍ଧରେ ଶିକ୍ଷା ଦେଉଅଛ କି ନା ? ତୁମର ଧର୍ମନୀତି କ'ଣ ?

ଚାର୍ବାକ କହିଲେ, ମୁଁ କାହାରିକୁ ଶିକ୍ଷା ଦିଏ ନାହିଁ, ମୁଁ ଆଲୋଚନା କରେ କେବଳ । ମନୁଷ୍ୟ ନିଜେ ନିଜକୁ ଶିକ୍ଷା ଦେବା ଉଚିତ । ଏହା ଅବଶ୍ୟ ବହୁ ସମୟ ସାପେକ୍ଷ, କିନ୍ତୁ ସ୍ଥାୟୀ । ଅନ୍ୟ କେହି ଶିକ୍ଷା ଦେବାକୁ ଗଲେ ମନୁଷ୍ୟର ମନରେ ସ୍ୱତଃ ବିରୋଧ ଭାବ ଜାଗେ । ତା ଛଡ଼ା ବେଦ କାହିଁକି, କୌଣସି ଧର୍ମ ବିରୁଦ୍ଧରେ ମୁଁ କାହାରିକୁ କିଛି କୁହେ ନାହିଁ । ଯେ ସତ୍ୟାନ୍ୱେଷୀ,ସେ ଯେକୌଣସି ଧର୍ମର ହେଉ ନା କାହିଁକି, ମୋର ନମସ୍ୟ ।

ପଚାରିଲି, - ତା'ହେଲେ ତୁମେ ବେଦ ସ୍ୱୀକାର କର ?

- କରେ, ଯେପରି ସବୁ ମନୁଷ୍ୟର ଚିନ୍ତାକୁ ସ୍ୱୀକାର କରେ । ଯେପରି କରେ ଆପଣଙ୍କର ଓ ମୋର ଅସ୍ତିତ୍ୱକୁ । କିନ୍ତୁ ଇନ୍ଦ୍ରିୟ ସାହାଯ୍ୟରେ କୌଣସି ବିଷୟ ବା ବସ୍ତୁ

ସ୍ୱୀକାର କରିବା ଗୋଟାଏ କଥା ଏବଂ ଚରମ ସତ୍ୟ ଅନ୍ୟ ଗୋଟାଏ କଥା ।

- ତାହା ହେଲେ ତୁମ୍ଭେ କହିବାକୁ ଚାହଁ ବେଦରେ ଯାହା ଉକ୍ତ ହୋଇଛି ତା' ସତ୍ୟ ନୁହେଁ ?

- ତା' ମୁଁ କିପରି କହିବି ? ରୋମକରେ ଦେଖିଲି ଥୋକେ ଲୋକଙ୍କ ସତ୍ୟର ଅତ୍ୟାଚାରରେ ଅନ୍ୟ ଥୋକେ ଭୀତ, ତ୍ରସ୍ତ, ଉତ୍‌ପୀଡ଼ିତ । ହେଲେନ୍ ଦେଶକୁ ଯାଇ ଶୁଣିଲି ଥୋକେ ଲୋକ ସେମାନେ ବୋଲାଉଥିବା ସତ୍ୟର ପ୍ରତିଷ୍ଠା ଲାଗି ସେ ପୁଣି ସତ୍ୟର ବିତାଉଥିବା ନିଃସ୍ୱାର୍ଥ ଲୋକଙ୍କୁ ହତ୍ୟା କରୁଅଛନ୍ତି । ଏପରିକି ସେମାନେ କୁଆଡ଼େ ଶକ୍ରତୋଷ ବୋଲି ଏକ ଅତି ବଡ଼ ସତ୍ୟାନ୍ୱେଷୀକୁ ବିଷପାନ କରାଇ ହତ୍ୟା କରିଥିଲେ ।

ମୁଁ କିଞ୍ଚିତ୍ ବିସ୍ମିତ ହେଲି । ଚାର୍ବାକ ସେହିପରି କହି ଚାଲିଲେ - ପାଲସ୍ତନରେ ଦେଖିଲି ଲୋକେ ଭାବନ୍ତି ସେହିମାନେ ହିଁ କେବଳ ଭଗବାନଙ୍କର ପ୍ରିୟପାତ୍ର । ସେଠାରେ ମଧ୍ୟ ଗୋଟିଏ ଅଦ୍ଭୁତ ଯୁବକ ଏକ ସତ୍ୟ ପ୍ରଚାର କରୁଥିବାର ଦେଖିଲି, ନାମ ତା'ର ଯଶସ୍‌କୃଷ୍ଣ । ଲୋକେ କହୁଛନ୍ତି ସେ ଭଗବାନଙ୍କ ପୁତ୍ର । କିନ୍ତୁ ତାଙ୍କୁ ଚୋର ଏବଂ ଦସ୍ୟୁଙ୍କ ସହିତ ପ୍ରାଣଦଣ୍ଡ ଦିଆହେଲା । ଭାରତରେ ଆପଣ କହୁଛନ୍ତି ବେଦହିଁ ଏକମାତ୍ର ସତ୍ୟ । ବୁଦ୍ଧ ପ୍ରଚାର କରିଗଲେ ଆଉ ଏକ ସତ୍ୟ । କୁହନ୍ତୁ, କସ୍ମୈ ଦେବାୟ ହବିଷା ବିଧେମ ?

ଚାର୍ବାକ କେତେ ପର୍ଯ୍ୟଟନ କରିଛନ୍ତି । କେତେ କଥା ଜାଣି ପାରିଛନ୍ତି ଦେଖି ମୁଁ ବିସ୍ମୟରେ ହତବାକ୍ ହେଲି । ସେ ଆହୁରି ବି କହିଲେ, - ସମସ୍ତ ଦେଖି ମୋର ଧାରଣା ଜନ୍ମୁଛି ଯେ ସତ୍ୟପ୍ରଚାରକମାନେ ମନୁଷ୍ୟର ଦୁଃଖଦୁର୍ଦ୍ଦଶା ଦେଖି ବ୍ୟାକୁଳ ହୋଇ ବହୁ ଚିନ୍ତା ବହୁ ଆୟସ ପରେ ସେଥିରୁ ଉଦ୍ଧାର ଲାଗି ଯାହାକୁ ସତ୍ୟ ପଥ ବୋଲି ବିଚାରିଛନ୍ତି ତାହାହିଁ କହି ଯାଇଛନ୍ତି । ସେମାନଙ୍କ ବାଣୀର ବାହ୍ୟ ପରସ୍ପରଠାରୁ ଟିକିଏ ଟିକିଏ ଅଲଗା ମନେ ହେଉଥିଲେ ହେଁ ପ୍ରକୃତ ପକ୍ଷେ ଏକା । କିନ୍ତୁ ସେମାନଙ୍କର ଶିଷ୍ୟ-ପ୍ରଶିଷ୍ୟମାନେ କେବଳ ସେଇ ବାହ୍ୟ ପ୍ରଭେଦଗୁଡ଼ିକ ଘେନି ନାନା ବିଧି-ବିଧାନ ତିଆରି କରିଛନ୍ତି - ନିଜ ନିଜ ବଡ଼ିମା ପ୍ରତିପନ୍ନ କରିବାକୁ । ଫଳରେ ସେଇ ବିଧି-ବିଧାନଗୁଡ଼ିକ କ୍ରମେ ଅତିଶୟ ବଡ଼ ହୋଇ ତାହା ହିଁ ପ୍ରକୃତ ଧର୍ମ ବା ସତ୍ୟ ବୋଲି ପ୍ରତୀୟମାନ ହୋଇଛନ୍ତି ଓ ମନୁଷ୍ୟ ମନୁଷ୍ୟ ମଧ୍ୟରେ ଭେଦ ସୃଷ୍ଟି କରାଇଛନ୍ତି । ଏହାର ଫଳ ଏପରି ବିଷମୟ ହୋଇଛି ଯେ ମନୁଷ୍ୟର ଅନ୍ତର ଆଜି ଯେପରି ଆର୍ତ୍ତସ୍ୱରରେ ବୋଲିବାକୁ ଚାହେ, - କେଉଁଠି ତୁମ୍ଭେ, ସେଇ ମହାତ୍ମାମାନେ, ଯାହାଙ୍କ ହୃଦୟ କାନ୍ଦିଥିଲା ସର୍ବକାଳର ସମସ୍ତ ମନୁଷ୍ୟଙ୍କ ପାଇଁ ! ହାୟ, ତୁମ୍ଭେମାନେ ନ ଆସିଥିଲେ ହିଁ ଭଲ ହୋଇଥାନ୍ତା ପରା ! ତେବେ, ଯଦି ଆସିଥିଲ ଆଜି ଆଉଥରେ ଆସ, ଆସ ଆଜି ସମସ୍ତେ ଏକତ୍ରେ, ଦେଖାଇ ଦେଇ ଯାଅ ଯେ ତୁମ୍ଭମାନଙ୍କ ମଧ୍ୟରେ, ତୁମ୍ଭର ବିଭିନ୍ନ ପ୍ରଚାର ମଧ୍ୟରେ ଥିଲା ନାହିଁ କୌଣସି ପ୍ରକୃତ ବିଭେଦ, ଆସ ଆଜି । ନୋହିଲେ ତୁମ୍ଭ

ଜୀବନରେ ଯେପରି ଆମ ଦଶା ଦେଖି କାନ୍ଦିଥିଲ, ମରଣରେ ସେହିପରି ଆମ ବ୍ୟବହାର ଦେଖି କାନ୍ଦୁଥିବ ଅନନ୍ତକାଳ ।

- ସେ ସ୍ତବ୍ଧ ହେବା ପରେ ମୁଁ କହିଲି, - ମନୁଷ୍ୟର ସ୍ୱଭାବତଃ ଦୁଷ୍ଟ ବୁଦ୍ଧି ହିଁ ପ୍ରବଳ । ସେମାନଙ୍କର ଏଇ ଦୁଷ୍ଟ ବୁଦ୍ଧି ଯଦି ଦମନ କରା ନ ଯାଏ ତେବେ ପୃଥିବୀରେ ମହା ବିଶୃଙ୍ଖଳା ଜାତ ହେବ । ଏଥିପାଇଁ ତେଣୁ ଏକଚ୍ଛତ୍ର ବା ଏକନାୟକ ଶାସନ ଆବଶ୍ୟକ ।

- ଏହିଠାରେ ମୋ ସହିତ ଆପଣଙ୍କର ମୂଳଗତ ପାର୍ଥକ୍ୟ ଘଟୁଛି । ମୋର ମନେ ହୁଏ ମନୁଷ୍ୟ ଚିରଦିନ ସତ୍ୟ, ଶିବ, ସୁନ୍ଦରର ଉପାସକ । ମନୁଷ୍ୟ ବିଷୟରେ ଆପଣଙ୍କ ଧାରଣା ଯଦି ସତ୍ୟ ହୁଏ, ତେବେ ଅବଶ୍ୟ ଏକନାୟକ ଶାସନ ଆବଶ୍ୟକ । କିନ୍ତୁ ତାହାହେଲେ ଆପଣଙ୍କର କିମ୍ବା ଅନ୍ୟ କାହାରି ଶାସନକୁ ଲୋକେ ସ୍ୱୀକାର କରିନେବେ କାହିଁକି ? କାରଣ ସମସ୍ତେ ତ ମନୁଷ୍ୟ ମାତ୍ର । ପକ୍ଷାନ୍ତରେ ଯେବେ ମନୁଷ୍ୟ ବିଷୟରେ ମୋର ଧାରଣା ସତ୍ୟ ହୁଏ ତେବେ ସମଲୋଚନାମୂଳକ ଶାସନ ହିଁ ଶ୍ରେୟ । ତେଣୁ କୌଣସି ସିଦ୍ଧାନ୍ତରେ ଉପନୀତ ହେବା ପୂର୍ବରୁ ଏ ବିଷୟରେ ଗବେଷଣା ପ୍ରଥମେ ହିଁ ଆବଶ୍ୟକ । ମୋର ଧାରଣା ଯେ ପ୍ରତ୍ୟେକ ମନୁଷ୍ୟ ବିନା ପରିଶ୍ରମରେ ବୈଷୟିକ ସୁଖ ଭୋଗ କରିବାକୁ ଚାହେଁ । କାରଣ ସେ ଜଞ୍ଜାଳରେ ଲିପ୍ତ ନ ରହି ସତ୍ୟ କ'ଣ ସେ ବିଷୟରେ ଚିନ୍ତା କରିବାକୁ ଚାହେଁ । କିମ୍ବା ଧରନ୍ତୁ ଆହୁରି ସାଂସାରିକ ଉନ୍ନତି ନେଇ ଚିନ୍ତା କରିବାକୁ ଚାହେ । କିନ୍ତୁ ସେ ସୁଯୋଗ ଅଳ୍ପ କେତେ କାହିଁକି ପାଇବେ ? ସମସ୍ତେ କାହିଁକି ନ ପାଇବେ ? ସମସ୍ତଙ୍କୁ ସେ ସୁଯୋଗ ଦେବାକୁ ଗଲେ ସମସ୍ତଙ୍କୁ କିଛି ନା କିଛି ଶାରୀରିକ ଶ୍ରମ କରିବାକୁ ପଡ଼ିବ । ଅଳ୍ପ କେତେକଙ୍କୁ ସେ ସୁଯୋଗ ଦେଲେ କେବଳ ଗ୍ଲାନି ଓ ଲୋଭ ବଢ଼ିବ । କ୍ଷମତା ଯେତେ ଅଳ୍ପ ଲୋକଙ୍କ ହାତରେ ରହିବ ତା'ର ଉଦ୍ଦେଶ୍ୟ ଓ ଉଦ୍ଦେଶ୍ୟ ସାଧନର ଉପାୟ ମଧ୍ୟ ସେତେ ସଂକୀର୍ଣ୍ଣ ହୋଇଯିବ । ଶାସନ ଏପରି ଭାବରେ ଚାଳିତ ହେବା ଉଚିତ ଯେପରି ପ୍ରତ୍ୟେକ ଲୋକ ନିଜକୁ ଶାସକ, ପୁଣି ଶାସିତ ମନେ କରନ୍ତି ।

ତାଙ୍କର ଏ ଯୁକ୍ତି ମୋତେ ଅବାନ୍ତର ଲାଗିଲା । କହିଲି, - ଆପଣ ଯଦି ଆୟୁର୍ବେଦ ପଢ଼ି ଥାଆନ୍ତି ତେବେ ନିଶ୍ଚୟ ଜାଣନ୍ତି ଯେ ମନୁଷ୍ୟର ଶରୀରରେ ଦୁଇଟି ଉପାଦାନ ଅଛି, ଗୋଟିଏ ମଳ ଅନ୍ୟଟି ପ୍ରସାଦ । ମଳ ଶରୀରକୁ ଦୂଷିତ କରେ ଏବଂ ପ୍ରସାଦ ଶରୀରକୁ ପୁଷ୍ଟ କରେ । ମଳ ପୁଷ୍ଟିକର ଖାଦ୍ୟରୁ ହିଁ ନିର୍ଗତ ହୁଏ ଏବଂ ବାତ ପିତ୍ତ ଓ କଫ ରୂପେ ପ୍ରକାଶ ପାଏ । ବୈଦ୍ୟମାନେ ସବୁ ରୋଗର କାରଣ ଏହି ବାତ ପିତ୍ତ ଓ କଫ ବୋଲି କହନ୍ତି ଏବଂ ଏହି ତିନିର ସୁନିୟନ୍ତ୍ରଣ ପାଇଁ ବହୁ ପନ୍ଥା ମଧ୍ୟ ସେମାନେ ଉଦ୍ଭାବନ କରି ଅଛନ୍ତି । ମନୁଷ୍ୟର ସୁଗୁଣ ଥିଲେ ମଧ୍ୟ କାମ କ୍ରୋଧ ଲୋଭ ହିଁ ମନୁଷ୍ୟକୁ ଚାଳନା କରେ । ଅତଏବ ଏ ତିନିକୁ ଦମନ କରିବା ପାଇଁ ବୈଦ୍ୟରାଜ ରୂପକ ଏକନାୟକ ଶାସନ ଆବଶ୍ୟକ ।

- ରାଜଗୁରୁ ମହାଶୟ, ଯୁବକ ସ୍ମିତହାସ୍ୟ କରି କହିଲେ, ମୁଁ ମୋର ଆୟୁ ବିଷୟରେ

ବିଶେଷ ଚିନ୍ତିତ ନହେଲେ ମଧ ଆୟୁର୍ବେଦ ଅଧ୍ୟୟନ କରିଅଛି ଏବଂ ଏଥିରୁ ଏହା ମଧ ଜାଣିଅଛି ଯେ ଏହି ବାତ ପିତ୍ତ କଫ ଏ ତିନୋଟିଯାକ ଶରୀର ଧାରଣ ପାଇଁ ଆବଶ୍ୟକ ଏବଂ ଯେଉଁ ପରିମାଣରେ ଆବଶ୍ୟକ ତହିଁରୁ ଟିକିଏ ଊଣା ବା ଅଧିକ ହେଲେ ମୃତ୍ୟୁର କାରଣ ହୁଏ । ଶରୀର ପୁଷ୍ଟି ନିମିତ୍ତ ମଳର ସୃଷ୍ଟି ରୋଧ କରି ପାରିବେ କି ? ବା ରୋଧ କରିବା ବିଧେୟ ହେବକି ? କିନ୍ତୁ ମୂଳ ତର୍କରୁ ଆମ୍ଭେ ଦୂରକୁ ଚାଲି ଯାଉଅଛୁ । ପ୍ରତ୍ୟେକ ଅନ୍ଧ, ହସ୍ତୀର ଗୋଟିଏ ଗୋଟିଏ ଅଙ୍ଗ ସ୍ପର୍ଶ କରି ତାହାକୁ ହିଁ ହସ୍ତୀ ବୋଲି ଦୃଢ଼ ଧାରଣା କରି ନିଜ ନିଜ ମଧରେ ତର୍କ ଏବଂ ଯୁଦ୍ଧ କରୁଛନ୍ତି ।

ମୁଁ କହିଲି, ଆମ୍ଭେମାନେ ଆର୍ଯ୍ୟ । ଭଗବାନ ସ୍ୱୟଂ ଧରାଧାମରେ ଅବତୀର୍ଣ୍ଣ ହୋଇ ଆର୍ଯ୍ୟ ଋଷିମାନଙ୍କୁ ବେଦ ଦେଇ ଯାଇ ଅଛନ୍ତି । କୌଣସି ମନୁଷ୍ୟ ତାହାକୁ ସୃଷ୍ଟି କରିନାହିଁ । ଆପଣ ଅନ୍ୟାନ୍ୟ ଦେଶର ଯେତେ ଧର୍ମ କହିଲେ ସେ ସବୁ ମନୁଷ୍ୟର ଉଦ୍ଭାବନ । କିନ୍ତୁ ବେଦ ଅପୌରୁଷେୟ,ବୈଦିକ ଧର୍ମ ସନାତନ ଧର୍ମ । ଏହା ଭଗବତ୍‌ପ୍ରଦତ୍ତ ।

ଚାର୍ବାକ କୌତୁକ ଭରା ଦୃଷ୍ଟିରେ ମୋତେ ଚାହିଁ କହିଲେ, ଏହିପରି ପ୍ରହେଳିକା ସୃଷ୍ଟି କରି ଆପଣ ହୁଏତ ମୂର୍ଖଲୋକ ଆନୁଗତ୍ୟ ପାଇ ପାରିବେ କିନ୍ତୁ ତଦ୍ୱାରା ସତ୍ୟର ଆଲୋକ ପାଇବେ ନାହିଁ । ଲୋକେ ଚିରଦିନ ମୂର୍ଖ ରହିବେ ନାହିଁ, ଦିନେ ବେଦକୁ ମଧ ଲୋକେ ଟିକିନିଖି ସମାଲୋଚନା ଦୃଷ୍ଟିରେ ଦେଖିବେ, ସୀମିତ ଜ୍ଞାନରେ ସନ୍ତୋଷ ପାଇବେ ନାହିଁ, ଅସୀମକୁ ନିଜେ ଅନୁଭବ କରିବାକୁ ଚେଷ୍ଟା କରିବେ । ସେତେବେଳେ ଆପଣଙ୍କର ବେଦର ସ୍ଥାନ କେଉଁଠି ରହିବ ତାହା ଦୂରଦୃଷ୍ଟି ସାହାଯ୍ୟରେ ଥରେ ଭାବି ଦେଖନ୍ତୁ । ସବୁ ଧର୍ମ ହିଁ ମନୁଷ୍ୟର ଯୁଗାନୁଯାୟୀ ଚିନ୍ତା । ସେ ଚିନ୍ତାକୁ ଭଗବାନଙ୍କ ଦତ୍ତ ଇତ୍ୟାଦି କହି ପ୍ରଚାର କଲେ ନିଜର ଗୌରବ ବୃଦ୍ଧି ହୋଇପାରେ, କିନ୍ତୁ ସତ୍ୟର ସନ୍ଧାନ ସେଥିରେ ପାଇବେ ନାହିଁ । ଉପରନ୍ତୁ, ଲୋକମାନଙ୍କର ଅଜ୍ଞତାଜନିତ ଭାବପ୍ରବଣତା ଉପରେ ପ୍ରତିଷ୍ଠିତ ଶାସନ ବା ଧର୍ମ ବା ରାଜନୀତି ଆଗ୍ନେୟଗିରି ଉପରେ ପ୍ରତିଷ୍ଠିତ ନଗର ସଦୃଶ ।

ମୁଁ କ୍ରୋଧାନ୍ୱିତ ହୋଇ କହିଲି, ତୁମ୍ଭେ ନାସ୍ତିକ, ଅନାଚାରୀ, ତୁମେ ବେଦର ଅସମ୍ମାନ କରିଛ । ଏହାର ଉଚିତ ଦଣ୍ଡ ପାଇବ । କାଲି ତୁମ୍ଭର ବିଚାର ହେବ ।

ଚାର୍ବାକ ସେହିପରି ସ୍ମିତହାସ୍ୟ କରି କହିଲେ, - ମୁଁ ବିଚାର ବା ଦଣ୍ଡ ପାଇଁ ଦୁଃଖିତ ନୁହେଁ । ଆପଣ ଯେ ଏ ଗୁରୁତର ସମସ୍ୟା ବିଷୟରେ ଚିନ୍ତା କରିବାକୁ ଚାହାନ୍ତି ନାହିଁ ତାହାହିଁ ମୋତେ ଦୁଃଖ ଦେଉଛି । ହେଉ, ଆପଣଙ୍କର ଯେ ପ୍ରକାର ଅଭିରୁଚି ।

ଯୁବକକୁ ତତ୍‌କ୍ଷଣାତ୍ ବନ୍ଦୀ କରିବା ପାଇଁ ଆଦେଶ ଦେଇ ମୁଁ ପରଦିନ ବିଚାର ପାଇଁ ବିଚାରକମାନଙ୍କୁ ଆହ୍ୱାନ କଲି । ବିଚାରକମାନେ ମୋତେ ଚାହିଁ ମୋର ଇଚ୍ଛା ବୁଝି ପାରିଲେ । ବିଚାର କରିବା ପରେ ଚାର୍ବାକଙ୍କୁ ପଲାଲପୀଠକ ନାମକ ଅତି ଭୀଷଣ ଯନ୍ତ୍ରଣାଦାୟକ ମୃତ୍ୟୁଦଣ୍ଡ ଦେଲେ ।

ଚାର୍ବାକ ବିଚାରକମାନଙ୍କ ଘୋଷଣା ଶୁଣି ଥରେ ମୋ ଆଡ଼କୁ ଚାହିଁ ତାଙ୍କର ସେଇ ସ୍ମିତ ହାସ୍ୟ କଲେ । ବୁଝି ପାରିଲି ସେ ଜାଣି ପାରିଛନ୍ତି ମୋରି ଇଙ୍ଗିତରେ ବିଚାରକମାନେ ତାଙ୍କୁ ଏହି ଦଣ୍ଡ ଦେଇଅଛନ୍ତି । ମୋର ଲଜ୍ଜା ହେଲା ବିଚାରକମାନଙ୍କ ପରାଧୀନ ବିଚାର ପାଇଁ । କିନ୍ତୁ ପର ମୁହୂର୍ତ୍ତରେ ଭାବିଲି ଯେ ଶାସନ କରିବାକୁ ଗଲେ ଏହିପରି କଠୋରତା ଅପରିହାର୍ଯ୍ୟ ।

ପ୍ରହରୀମାନେ ଚାର୍ବାକଙ୍କୁ ବନ୍ଦୀଶାଳାକୁ ନେଇଗଲେ । ତାଙ୍କର ନମ୍ର ଶାନ୍ତ ବ୍ୟବହାର ଏବଂ ଏଡ଼େ ବଡ଼ ବିପଦରେ ମଧ ଧୈର୍ଯ୍ୟ ଦେଖି ମୁଁ ମୁଗ୍ଧ ହେଲି । ତେଣୁ ତାଙ୍କର ମୃତ୍ୟୁ ପୂର୍ବରୁ ତାଙ୍କର ମତ ପରିବର୍ତ୍ତନ କରାଇବା ପାଇଁ ମୁଁ ପୁଣି ଥରେ ଚେଷ୍ଟା କରିବାକୁ ବନ୍ଦୀଶାଳାକୁ ଗଲି ।

କହିଲି, - ଆପଣ ତ କହିଲେ ଯେ ସାଧାରଣ ଲୋକେ ବୈଷୟିକ ଉନ୍ନତି ଚାହାନ୍ତି । ତାହା ହିଁ ଯଦି ହୁଏ ତେବେ ଜଳସେଚନ ଯୋଜନା ଓ କୃଷି ବାଣିଜ୍ୟର ଉନ୍ନତି ପାଇଁ ଯୋଜନାମାନ ରାଜକୋଷରୁ କରିବାକୁ ମୁଁ ପ୍ରସ୍ତୁତ ଅଛି । ଆପଣ ତା'ହେଲେ ଏ ବିଦ୍ରୋହ ପ୍ରଚାର ଚେଷ୍ଟାରୁ ବିରତ ହୁଅନ୍ତୁ ।

ଚାର୍ବାକ କହିଲେ, ଲୋକମାନଙ୍କୁ ଅଜ୍ଞ ରଖିଲେ ସହସ୍ର ଯୋଜନା ଦ୍ୱାରା ମଧ ତାଙ୍କର ଉନ୍ନତି ହେବ ନାହିଁ । ବୈଷୟିକ ଉନ୍ନତି ଆଧାତ୍ମିକ ଉନ୍ନତିର ଏକ ପନ୍ଥା ହେବା ଉଚିତ । ତା ନହେଲେ ତାହା ଅଳ୍ପ କେତେକଙ୍କ ଶୋଷଣ, ବ୍ୟଭିଚାର, ଧନ ଲିପ୍ସା, ଚୌର୍ଯ୍ୟ, ପ୍ରବଞ୍ଚନା ଆଦିର ସୁଯୋଗ ଦିଏ । ଆଧାତ୍ମିକ ଉନ୍ନତି ନିର୍ଭର କରେ ସତ୍ୟ ଜ୍ଞାନ ଉପରେ । ତେଣୁ, କ୍ଷମା କରିବେ ରାଜଗୁରୁ ମହାଶୟ, ମୁଁ ମିଥ୍ୟା ନିକଟରେ ମୁଣ୍ଡ ନୁଆଁଇ ପାରିବି ନାହିଁ, ମୃତ୍ୟୁ ଭୟରେ ମଧ ନୁହେଁ । ମହାଶୟ, ଆଜି ଇହଧାମରେ ମୋର ଶେଷ ଦିନ । ଦୟାକରି ବୃଥା ସମୟ ନଷ୍ଟ ନକରି ପୂର୍ବର ଆଲୋଚନା ପୁଣି ଆରମ୍ଭ କଲେ ମୁଁ ବାଧିତ ହେବି । ମୁଁ କହିଲି, - ଦେଖନ୍ତୁ, ବେଦର ଅବମାନନା କରିଥିବାରୁ ଆପଣ ନରକରେ ପଡ଼ିବେ ।

ଚାର୍ବାକ କହିଲେ, ଆପଣ ଯାହାକୁ ଦୋଷୀ ବୋଲି ସାବ୍ୟସ୍ତ କରି ଅଛନ୍ତି ତା' ପାଇଁ ଭଗବାନ ଦଣ୍ଡ ଦେବେ କାହିଁକି ? ଭଗବାନ ତ ଆପଣଙ୍କ ଆଜ୍ଞାବାହୀ ବେତନଭୋଗୀ ବିଚାରକ ନୁହନ୍ତି, ତାଙ୍କର ବିଚାର ଅନ୍ୟ ରୂପ ହୋଇପାରେ । ଆପଣ ଆପଣଙ୍କ ଭୂମିକାରେ ଅଭିନୟ କରୁଅଛନ୍ତି । ମୋତେ ମଧ ମୋ ଭୂମିକାରେ ଅଭିନୟ କରିବାକୁ ହେବ । ମୁଁ ଆପଣଙ୍କୁ ଗୋଟାଏ ପ୍ରଶ୍ନ କରିବି । ମନୁଷ୍ୟକୁ ନାନା କର୍ମରେ ଲିପ୍ତ କରାଏ କେଉଁ ଶକ୍ତି ?

କହିଲି, - ମହାମୁନି କପିଳ କହି ଅଛନ୍ତି, ଏକାଦଶ ଇନ୍ଦ୍ରିୟ, ପଞ୍ଚ ତନ୍ମାତ୍ରା, ଅହଂକାର-

ଚାର୍ବାକ ବାଧା ଦେଇ କହିଲେ, - 'ଇତି ଅନୁଶୁଶ୍ରୁମ', 'ଏହିପରି ମୁଁ କହିବାର ଶୁଣିଛି' । କିନ୍ତୁ ଆପଣ ସ୍ୱୟଂ ଏ ବିଷୟରେ କ'ଣ ଚିନ୍ତା କରି ଅଛନ୍ତି ତାହାହିଁ ଶୁଣିବାକୁ ଚାହେଁ ।

ମୁଁ ନୀରବ ରହିଲି ।

ଯୁବକ କହିଲେ, ''ମୁଁ ଯାହା ଭାବିଛି ତାହା କହୁଛି । ମନୁଷ୍ୟକୁ କର୍ମରେ ଲିପ୍ତ କରାଏ

କାମନା । ଏ କାମନାକୁ ମିଥ୍ୟା, ମାୟା ବୋଲି କହି ଅସ୍ୱୀକାର କରି ଲାଭ ନାହିଁ । ଦେଖିବାକୁ ହେବ ଏ କାମନା କ'ଣ । ପୃଥିବୀ ଯେତେବେଳେ ତରୁଣ ଥିଲା ସେତେବେଳେ ଅବିରତ ବର୍ଷଣରେ ମହାପ୍ଲାବନ ହୋଇଥିଲା । ସେହି ପ୍ଲାବନ ଧାରଣ କଲା ମହାସମୁଦ୍ର, ସେଇ ସମୁଦ୍ରର ତଳଦେଶରେ ଜାତ ହେଲା ପ୍ରାଣପଙ୍କ ଏବଂ ପ୍ରାଣପଙ୍କରୁ ଜାତ ହେଲା ପ୍ରାଣକଣା । ଏହି ପ୍ରାଣକଣାର କେବଳ ଗୋଟିଏ ମାତ୍ର କାମନା ଥିଲା ବଞ୍ଚିବା । ଏହି କାମନା ପ୍ରଭାବରୁ ସେଇ ପ୍ରାଣକଣାର ଶାରୀରିକ ବିକାଶ ହେବାକୁ ଲାଗିଲା ଏବଂ କ୍ରମେ କ୍ରମେ ସେଇ ପ୍ରାଣକଣାଗୁଡ଼ିକ ଗଣନାତୀତ କାଳ ଧରି, ନାନା ବିବର୍ତ୍ତନ ମଧ୍ୟ ଦେଇ ବିଭିନ୍ନ ଭାବରେ ସଂଗଠିତ ହୋଇ ପଶୁପକ୍ଷୀ ଆଦି ନାନା ପ୍ରାଣୀରେ ପରିଣତ ହେଲେ । ଏହି ନାନା ଜାତିର ପ୍ରାଣୀମାନଙ୍କ ଭିତରୁ ଗୋଟିଏ ଜାତିର ପ୍ରାଣୀର ଗୋଟିଏ ନୂତନ କାମନା ଜାତ ହେଲା, ତାହା ପ୍ରତିଷ୍ଠା ପାଇବାର କାମନା । ଏହି ଦୁଇ କାମନା ଯୋଗୁଁ ଉକ୍ତ ପ୍ରାଣୀର ଶାରୀରିକ ବିକାଶ ଗୋଟିଏ ବିଶେଷ ରୀତିରେ ଘଟିବାକୁ ଲାଗିଲା ଏବଂ କେତେ ଲକ୍ଷ କୋଟି ବର୍ଷରେ ସେ ମନୁଷ୍ୟ ଆକାର ଧାରଣ କଲା । କହି ପାରନ୍ତି ଜୀବ ପ୍ରଥମେ ତାମସିକ ଭାବ ନେଇ ଜନ୍ମ ହେଲା, ଏବଂ ପରେ କେତେକ ଜୀବଙ୍କ ମଧ୍ୟରେ ରାଜସିକ ଭାବ ବି ଆସିଲା ।

''ମନୁଷ୍ୟ ରୂପ ପାଇବା ପରେ ଜୀବର ଗୋଟିଏ ନୂତନ କାମନା ଜାତ ହେଲା, ଏହାକୁ ସାତ୍ତ୍ୱିକ ଭାବ କହି ପାରନ୍ତି । ସେ କାମନା ବା ଆକୂତି ଅସୀମକୁ, ମହାସୃଷ୍ଟିର ଚରମ ସତ୍ୟକୁ ଉପଲବ୍ଧି କରିବାର କାମନା । ପୂର୍ବର ଦୁଇ କାମନାରୁ ସୃଷ୍ଟି ମନୁଷ୍ୟର କାମାଦି ଇନ୍ଦ୍ରିୟ ଅହଂକାର ଇତ୍ୟାଦି ସୁଖର ବାସନା, ତୃତୀୟ କାମନାରୁ ଆଦିର ଜନ୍ମ ଜ୍ଞାନ- ବିଜ୍ଞାନ ଏହାଙ୍କ ମଧ୍ୟରୁ କୌଣସଟି କାହାରି ଅପେକ୍ଷା କମ୍ ନୁହଁନ୍ତି । ପ୍ରଥମଟି ନ ଥିଲେ ପର ଦୁଇଟି ହୋଇ ପାରନ୍ତେ ନାହିଁ । ପୁଣି ତୃତୀୟଟି ବୈଜ୍ଞାନିକ ଆବିଷ୍କାର ଦେଇ ସାହାଯ୍ୟ କରେ ଆର ଦୁଇଟିକୁ । ବର୍ତ୍ତମାନ ଏଇ ତୃତୀୟ ପରେ ହୁଏତ ଆଉ ଏକ ନୂତନ, ଚତୁର୍ଥ କାମନାର ବୀଜ ବପନ ହୋଇଛି ମାତ୍ର - କେ କହିବ ? ସେ ବୀଜ ପୂର୍ଣ୍ଣ ବିକାଶ ପାଇଁ ମୃତ୍ତିକାର ଅନ୍ଧକାର ଭେଦ କରି ଆଲୋକ ପାଇବାକୁ ବ୍ୟାକୁଳ । ତୃତୀୟ କାମନା ବା ସାତ୍ତ୍ୱିକ ଭାବ ପ୍ରକୃତରେ ଆମଙ୍କୁ ଚରମ ସତ୍ୟ ବା ପରମ ସତ୍ୟର ଉପଲବ୍ଧିକୁ ଘେନି ଯିବ, ନା ସେଥିପାଇଁ ଆମକୁ କେବଳ ପ୍ରସ୍ତୁତ କରିବ ଏବଂ ପରିଶେଷରେ ଆଗାମୀ କାଳରେ ନୂତନ କାମନା ହିଁ ଆମକୁ ସେଇ ଉପଲବ୍ଧିକୁ ନେଇ ପହଞ୍ଚାଇ ଦେବ ଆମେ ତା' ଜାଣି ନାହୁଁ । ସେ ଅତି ଦୂରର ଭାବନା, ସେ ଥାଉ । ବର୍ତ୍ତମାନ ଆମେ ଦେଖୁଛୁ ପ୍ରଥମ ଦୁଇଟି କାମନା - ଏକତ୍ରେ କୁହାଯାଇପାରେ ବିଷୟ କାମନା - ଯଦି ଅଧିକ ପ୍ରଶ୍ରୟ ପାଏ ତା'ହେଲେ ତୃତୀୟ କାମନା - ସତ୍ୟ ଉପଲବ୍ଧିର କାମନା - ଦୁର୍ବଳ ହୋଇ ପଡ଼େ । ପୁଣି ତୃତୀୟଟିକୁ ଅଧିକ ଧରି ବସିଲେ, ବିଷୟ କାମନାକୁ ଏକାବେଳକରେ ହେଳା କଲେ ଜୀବନଧାରଣ ସମ୍ଭବ ହୁଏ ନାହିଁ । ଅତଏବ ଗୋଟିଏ ପଟରେ ତାମସିକ ଓ ରାଜସିକ (ବା ବିଷୟ) କାମନା ଓ ଅନ୍ୟ ପଟେ

ସାତ୍ତ୍ୱିକ (ବା ସତ୍ୟୋପଲବ୍ଧି) କାମନା- ଏ ଦୁଇ ପଟ ମଧ୍ୟରେ ସମନ୍ୱୟ ନିତାନ୍ତ ଆବଶ୍ୟକ । ଏଥିପାଇଁ ଆମର ଶିକ୍ଷାଦୀକ୍ଷା ଓ ସାମାଜିକ ରୀତିନୀତି କେବଳ ନୁହେଁ, ଆମର ଅର୍ଥନୀତି ରାଜନୀତି ଶାସନନୀତି - ଗୋଟିଏ କଥାରେ ଆମର ସମଗ୍ର ଜୀବନନୀତି ସେଇ ଏକ ଉଦ୍ଦେଶ୍ୟ ପ୍ରଣୋଦିତ ହେବାକୁ ପଡ଼ିବ ।

''ବିଷୟ କାମନା ଅଧିକ ପ୍ରଶ୍ରୟ ପାଇଲେ ସତ୍ୟୋପଲବ୍ଧିର କାମନା ଦୁର୍ବଳ ହୋଇ ପଡ଼େ, କହିଛି । କିନ୍ତୁ କେବଳ ସେତିକି ନୁହେଁ ସେଥିରେ ବିଷୟ କାମନାର ନିଜର ମଧ ବିକୃତି ଘଟେ । ଜୀବ-ଜଗତରେ ବିଷୟ ସୁଖ ପାଇବାକୁ ଗଲେ ରୀତିମତ ଚେଷ୍ଟା ଓ ଦେଶ କିଛିଟା କଷ୍ଟ ମଧ ଲୋଡ଼ା ଏହା ଆମେ ଦେଖି ଥାଉଁ । ସେଇ ସୁଖକୁ ଅତିଶୟ ସହଜଲଭ୍ୟ କରି ଦେଲେ ତା'ର ଗାଢ଼ତା ବା ତୀବ୍ରତା ନ ଥାଏ, ତେଣୁ ପୂର୍ଣ୍ଣତୃପ୍ତି ମଧ ମିଳେ ନାହିଁ । ପରିପୂର୍ଣ୍ଣ ତୃପ୍ତି ଆଶାରେ ମନୁଷ୍ୟ ସେ ସୁଖଲାଭର ପ୍ରକ୍ରିୟାରେ ନାନା ବୈଚିତ୍ର୍ୟ ଆଣିବା ପାଇଁ ଚେଷ୍ଟା କରେ, ଶେଷରେ ଅତି ବୈଚିତ୍ର୍ୟ ବିକୃତିରେ ପରିଣତ ହୁଏ । କିନ୍ତୁ ଅପରପକ୍ଷେ ବିଷୟସୁଖର କଷ୍ଟାର୍ଜିତ ସ୍ୱାଭାବିକ ପ ରିପୂର୍ଣ୍ଣ ତୃପ୍ତି ମନୁଷ୍ୟକୁ ବରଂ ସତ୍ୟକାମନା ଦିଗରେ ଉତ୍ସାହିତ କରେ ।

ତାଙ୍କର ଚିନ୍ତାର ପ୍ରସାର ଦେଖି ମୁଁ ନିର୍ବାକ୍ ହେଲି । ସେ ପୁଣି କହିଲେ, - ଯେ ବିକୃତି କଥା କହୁଥିଲି ତା' ବୋଧହୁଏ କେବଳ ସେଇଠି ନ ରହି ମାନସିକ କର୍କଟ ରୋଗ ଭଳି ଆମର ଉତ୍କୃଷ୍ଟ ଚିନ୍ତା ଓ ଜ୍ଞାନ ବିଜ୍ଞାନକୁ ମଧ ବିକୃତ କରିଥାଏ । ଆମର ଚିନ୍ତା ବୀଭତ୍ସ ରୂପ ଧାରଣ କରେ - ପରସ୍ପରକୁ ହତ୍ୟା କରିବାକୁ କହେ ଦେଶ ପ୍ରେମ, ପ୍ରବଞ୍ଚନାକୁ କହେ ରାଜନୀତି, କୌଣସି ପ୍ରାଚୀନ ଗ୍ରନ୍ଥକୁ କେବଳ କଣ୍ଠସ୍ଥ କରିବାକୁ କହେ ଧାର୍ମିକତା ।

ପୁଣି ବେଦ ପ୍ରତି ଆକ୍ଷେପ ! ମୁଁ ହତାଶ ହୋଇ ଫେରିଲି । ପଲାଲପୀଠକ ଅତି ଭୟଙ୍କର ଦଣ୍ଡ । ମସ୍ତକର କେଶ ସମେତ ମସ୍ତକର ଚର୍ମ ଉଦ୍‌ଘାଟିତ କରି କରୋଟିର ସମ୍ମୁଖ ଭାଗ ପ୍ରହାର ଦ୍ୱାରା ଉନ୍ମୁକ୍ତ କରି ତା' ଭିତରେ ଅତ୍ୟୁଷ୍ଣ ଲସିକା ଢଳାଯାଏ । ଅପରାଧୀର ଅବଶ୍ୟ ବହୁ ଆଗରୁ ମୃତ୍ୟୁ ହୋଇଯାଇଥାଏ । ଏହାର ଉଦ୍ଦେଶ୍ୟ କେବଳ ଲୋକଙ୍କ ମନରେ ଭୟ ଉତ୍ପାଦନ ।

ପିତା, ମୁଁ ଅନୁସନ୍ଧିତ୍ସାକୁ ହତ୍ୟା କରିଛି, କେବଳ ଦାମ୍ଭିକତାକୁ ହିଁ ଧର୍ମ ନାମରେ ପ୍ରଶ୍ରୟ ଦେଇଛି...

କହୁ କହୁ ମହାକାଞ୍ଚନ ନିକଟରେ ଥିବା ମହାଶାଳଙ୍କ ଅଶ୍ୱକଷା ଦ୍ୱାରା ନିଜକୁ ନିର୍ମମ ଭାବରେ ପ୍ରହାର କରିବାକୁ ଲାଗିଲେ । ସୋମଦତ୍ତ ଓ କାତ୍ୟାୟନୀ କିୟତ୍‌କ୍ଷଣ ହତବୁଦ୍ଧି ହୋଇ ଚାହିଁ ରହିବା ପରେ ଅସହାୟ ଦୁର୍ବଳ ଭାବରେ ତାଙ୍କୁ ନିରସ୍ତ କରିବା ପାଇଁ ଚେଷ୍ଟା କଲେ । ସତେବେଳକୁ ମହାକାଞ୍ଚନଙ୍କ ପୃଷ୍ଠ ଓ ବକ୍ଷ ଦେଶରୁ ରକ୍ତର ଧାର ବୋହିବାକୁ ଲାଗିଲାଣି । ସେ ହତଜ୍ଞାନ ହୋଇ ଭୂମିରେ ପଡ଼ିଲେ ।

# ୧୫

ମହାଶାଳ ସେତେବେଳେ ଗୃହରେ ନଥିଲେ, ସୁଭଦ୍ର ଦେବଙ୍କୁ ସାକ୍ଷାତ୍ ଉଦ୍ଦେଶ୍ୟରେ ତାଙ୍କ ପ୍ରାସାଦକୁ ଯାଇଥିଲେ । ସୋମଦତ୍ତ ଓ କାତ୍ୟାୟନୀ କଷ୍ଟେ ମହାକାଞ୍ଚନକୁ ଉଠାଇ ଶଯ୍ୟାରେ ଶୁଆଇ ପରିଚର୍ଯ୍ୟା କରିବାକୁ ଲାଗିଲେ ।

ଦିନାନ୍ତେ ମହାଶାଳ ଗୃହକୁ ଫେରିଲେ । ମହାକାଞ୍ଚନଙ୍କ ଶଯ୍ୟା ପାର୍ଶ୍ୱରେ ଛିଡ଼ା ହୋଇ ତାଙ୍କୁ ଚାହିଁ ମହାଶାଳ ହସି ହସି କହିଲେ, ମୁଁ ସବୁ ଶୁଣିଛି । ବର୍ତ୍ତମାନ କିପରି ବୋଧ ହେଉଛି ?

ମହାକାଞ୍ଚନ କହିଲେ, ସେ କିଛି ନୁହେଁ । ବର୍ତ୍ତମାନ ମୁଁ ଅନେକ ସୁସ୍ଥ ବୋଧ କରୁଛି । କାଲି ସମ୍ପୂର୍ଣ୍ଣ ସୁସ୍ଥ ହେବି ।

ମହାଶାଳ କିଞ୍ଚିତ ବିଦ୍ରୂପ ସ୍ୱରରେ ହସି କହିଲେ, - ମହାକାଞ୍ଚନ, ତୁମେ ତିନି ଭାଇ ମଧ୍ୟରେ ନିଜକୁ ସବୁ ଠାରୁ ଧାର୍ମିକ ଭାବି ଭୁଲ କରିଛ । ଚମ୍ପାର ବାଳକରୂପୀ ଭଗବାନ ଯେ ମୋତେ ହିଁ ନିର୍ଦ୍ଦେଶ ଦେଇ ଅଛନ୍ତି ତାହା ବୋଧହୁଏ ତୁମର ଧାରଣାର ବାହାରେ ।

ମହାକାଞ୍ଚନ ଆଶ୍ଚର୍ଯ୍ୟ ହୋଇ କହିଲେ, - ତୁମେ !!

ମହାଶାଳ ସେହିପରି ହସି କହିଲେ, - ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ, ମହାକାଞ୍ଚନ ! ତୁମେ ଦେଶଦ୍ରୋହୀ । ଦେଶଦ୍ରୋହୀର ନରକରେ ମଧ୍ୟ ସ୍ଥାନ ନାହିଁ । କିନ୍ତୁ ମୁଁ ଦେଶସେବକ । ମୁନିଋଷିମାନେ ବହୁ ଚିନ୍ତା ପରେ ଗୋଟିଏ ଗୋଟିଏ ଆଦର୍ଶ ଦିଅନ୍ତି । ସେ ଆଦର୍ଶକୁ ଦେଶରେ ପ୍ରଚଳିତ କରିବା ପାଇଁ ସୁଚତୁର ସାହସୀ ସେନାର ଆବଶ୍ୟକ । ଅତଏବ ସବୁ ନିର୍ଭର କରେ ସେନାପତି ଉପରେ । ତୁମ୍ଭର ଆଦର୍ଶ ଆଜି ବିଫଳ ହେବାର କାରଣ ତୁମ୍ଭର ଦେଶଦ୍ରୋହିତା ଏବଂ ମଗଧର ସୁଚତୁର ସାହସୀ ସେନାପତିର ଅଭାବ ।

ମହାକାଞ୍ଚନ ନୀରବ ରହିଲେ । ମହାଶାଳ କହି ଚାଲିଲେ, - କଳିଙ୍ଗ ରାଜ୍ୟ ସହିତ ମହାବୀର ଜିନଙ୍କ ଜୈନ ଆଦର୍ଶ ଆଜି ଉତ୍ତରରେ ଗଙ୍ଗାଠାରୁ ଦକ୍ଷିଣରେ କାବେରୀ ପର୍ଯ୍ୟନ୍ତ ଏବଂ ପୂର୍ବରେ ବ୍ରହ୍ମପୁତ୍ରଠାରୁ ପଶ୍ଚିମରେ ନର୍ମଦା ଓ ତାପ୍ତୀ ପର୍ଯ୍ୟନ୍ତ ବ୍ୟାପ୍ତ । ଏ ଜାତି ଓ ଦେଶର ଗୌରବ ବୃଦ୍ଧି କେବଳ ମୋରି ପାଇଁ । କଳିଙ୍ଗବାସୀମାନଙ୍କୁ ଶତ୍ରୁର ଆକ୍ରମଣ ଓ ଅତ୍ୟାଚାରରୁ କିଏ ରକ୍ଷା କରୁଛି ? କଳିଙ୍ଗର ମହାସୈନ୍ୟାଧ୍ୟକ୍ଷ ମହାଶାଳ । ଦେଶ ସୁଶାସନ କରି ପ୍ରଜାମାନଙ୍କୁ ମଙ୍ଗଳରେ ରଖିବାର ଚିନ୍ତା କିଏ କରୁଛି ? ମହାଶାଳ । ଅତଏବ ମୁଁ ଯଦି କୁହେ ଭଗବାନ ମୋତେ ହିଁ ନିର୍ଦ୍ଦେଶ ଦେଇ ଅଛନ୍ତି ତେବେ ଆଶ୍ଚର୍ଯ୍ୟ ହେବାର କ'ଣ ଅଛି ? ମୁଁ କର୍ମୀ, କର୍ମଯୋଗୀ, ଦେଶ ସେବା ହିଁ ମୋର ବ୍ରତ ।

ମହାକାଞ୍ଚନ ବିମର୍ଷ ଭାବରେ କହିଲେ, - ମହାଶାଳ, ଆମେ ସମସ୍ତେ ନିଜର ପ୍ରତିଷ୍ଠା ପାଇଁ ଜାତି ବା ଦେଶ ବା ଧର୍ମର ଦ୍ୱାହି ଦେଇ କାର୍ଯ୍ୟୋଦ୍ଧାର କରିବାକୁ ବ୍ୟଗ୍ର । ନିଜର ପ୍ରତିଷ୍ଠା ପାଇଁ ସହସ୍ର ନିର୍ଦ୍ଦୋଷ ବ୍ୟକ୍ତିର ହତ୍ୟାର ଏବଂ ଦୁଃଖର କାରଣ । ଆମେ କେବଳ ମୌଖିକ ଦେଶ ବା ଜାତି ବା ଧର୍ମର ସେବକ । ମୁଁ ସ୍ୱୀକାର କରୁଛି ମୋର ନରକରେ ମଧ୍ୟ ସ୍ଥାନ ନାହିଁ, କିନ୍ତୁ ତା' ହୁଏତ ଦେଶଦ୍ରୋହିତା ପାଇଁ ନୁହେଁ, ଆଉ କ'ଣ କାରଣରୁ । ଯା'ହେଉ ମୋର ଅନୁରୋଧ, ତୁମେ ଏ ଚମ୍ପାର ବ୍ୟାପରରେ ହସ୍ତକ୍ଷେପ କର ନାହିଁ । ଚମ୍ପା ନିଜେ ଏହା ବିଶ୍ୱାସ କରିବ ନାହିଁ, ପଲ୍ଲୀବାସୀମାନେ ମଧ୍ୟ କେହି ଏହା ଅନୁମୋଦନ କରିବେ ନାହିଁ ।

ମହାଶାଳ ଅବଜ୍ଞା ଭରେ କହିଲେ, ମୂର୍ଖ ଜନତାର ଅନୁମୋଦନ କିପରି ପାଇବାକୁ ହୁଏ ମୋତେ ଭଲ ଜଣା ଅଛି, ତୁମକୁ କହୁଛି ଶୁଣ । ପ୍ରାଦେଶିକ ସୁଭଦ୍ରଙ୍କ ସହିତ ମନ୍ତ୍ରଣା କରି ମୁଁ ସମସ୍ତ ଆୟୋଜନ କରିଛି । ଶତାଧିକ ପଲ୍ଲୀବାସୀଙ୍କୁ ମୁଁ ପ୍ରଚୁର ଅର୍ଥ ଦେଇ ପ୍ରଚାର କରିବାକୁ ପଠାଇଛି । ସୁଭଦ୍ରଙ୍କ ଆଜ୍ଞାରେ ସୁଦକ୍ଷ ଅକ୍ଷରଜୀବକ ଲୌହ କର୍ଣ୍ଣିକା ସାହାଯ୍ୟରେ ଗୋଟିଏ ଉତ୍ତମ ପ୍ରଚାର ପତ୍ର ଲେଖି ଦେଇଛି, ପ୍ରଚାରକମାନେ ତାକୁ କଣ୍ଠସ୍ଥ କରିଛନ୍ତି । ଚମ୍ପା ନିକଟକୁ ମଧ୍ୟ ଜନୈକ ପ୍ରଚାରକ ଯାଇଛି ତାକୁ ପ୍ରବର୍ତ୍ତାଇ ତା'ର ସ୍ୱୀକୃତି ଆଣିବା ପାଇଁ । ଆଉ ଅଳ୍ପ ସମୟ ପରେ ତୁମ୍ଭେ ସ୍ୱଚକ୍ଷୁରେ ଦେଖିବ, ପଲ୍ଲୀବାସୀମାନେ ମୋତେ ଅନୁରୋଧ କରିବାକୁ ଆସିବେ ଏ କାର୍ଯ୍ୟ କରିବା ପାଇଁ ।

- ଆଉ ତୁମେ ଯଦି ବିଫଳ ହୁଅ ?

- ବିଫଳ ହେବାର କୌଣସି ଆଶଙ୍କା ନାହିଁ । ଭଗବାନ୍ ସ୍ୱୟଂ ଯେ ଚମ୍ପାକୁ ଦେଖାଦେଇ ନିର୍ଦ୍ଦେଶ ଦେଇ ଅଛନ୍ତି, ଏହା ନିଶ୍ଚିତ । କାରଣ ତୁମେ ଯେତେବେଳେ ଏହା ବିଶ୍ୱାସ କରିଛ, ମୋର ସେଥିରେ ଆଉ ସନ୍ଦେହ ନାହିଁ । ଭଗବାନଙ୍କ ନିର୍ଦ୍ଦେଶ ଥିଲା ପିତାଙ୍କର ଯେଉଁ ପୁତ୍ର ସବୁଠାରୁ ଧାର୍ମିକ ତାହାରି ଆଦେଶରେ ଚମ୍ପା ତା'ର ପାଦଶକ୍ତି ଫେରି ପାଇବ । ସେ ଧାର୍ମିକ ପୁତ୍ର ଯେତେବେଳେ ତୁମେ ନୁହଁ, ନିଶ୍ଚୟ ମୁଁ । ମୁଁ ନିଶ୍ଚୟ ସଫଳ ହେବି । ଆଉ ବିଫଳ ଯଦି ହୁଏ ତା'ର ଉପାୟ ମଧ୍ୟ ଭାବି ସ୍ଥିର କରିଛି ।

- କ'ଣ ?

- ମୁଁ ବିଫଳ ହେଲେ ମୋର ପ୍ରଚାରକମାନେ ଚିତ୍କାର କରିବେ, 'ଚମ୍ପା ଡାକିନୀ, ତାକୁ ହତ୍ୟା କର ।' ସଫଳ ଯଦି ହୁଏ ତେବେ ମୋର କୀର୍ତ୍ତି ଚିରକାଳକୁ ରହିବ ଏବଂ ଅନ୍ୟ ଉଦ୍ଦେଶ୍ୟ ମଧ୍ୟ ସାଧିତ ହେବ । ଆଉ ମଧ୍ୟ ପିତାମାତା ଯେ ତୁମକୁ ଧାର୍ମିକ ବୋଲି ସ୍ନେହ କରନ୍ତି ସେମାନଙ୍କର ଭ୍ରମ ସେମାନେ ବୁଝି ପାରିବେ ।

- ଏକଥା ଯଦି ମୁଁ ପ୍ରକାଶ କରିଦିଏ ?

ମହାଶାଳ ଉଚ୍ଚହାସ୍ୟ କରି କହିଲେ, - କଳିଙ୍ଗର ମହାସେନାଧକ୍ଷଙ୍କୁ ଏଡ଼େ ମୂର୍ଖ ଭାବିବ ନାହିଁ ଯେ ସେ ଏ ସାମାନ୍ୟ ବିଷୟ ଚିନ୍ତା କରି ନାହାନ୍ତି । ତୁମେ ବର୍ତ୍ତମାନ କହିଲେ ସେ କଥା କେହି ବିଶ୍ୱାସ କରିବେ ନାହିଁ, ମୁଁ ତା'ର ବ୍ୟବସ୍ଥା ମଧ କରିଛି । ସମସ୍ତେ ଭାବିବେ ତୁମେ ନିଜେ ବିଫଳ ହେବାରୁ ଈର୍ଷାବଶରୁ ମୋ ବିରୋଧରେ ମିଥ୍ୟା ପ୍ରଚାର କରୁଛ ।

- ତୁମର ପ୍ରଚାରକମାନଙ୍କ ମଧ୍ୟରୁ ଯଦି କେହି ଏକଥା ପ୍ରକାଶ କରିଦିଏ ?

- କରିବେ ନାହିଁ । ସେମାନଙ୍କର ଭବିଷ୍ୟତରେ ଆହୁରି ଅର୍ଥ ପାଇବାର ଆଶା ଅଛି ଏବଂ ପ୍ରାଣର ମାୟା ମଧ ଅଛି ।

ମହାକାଞ୍ଚନ ନିର୍ବାକ ହୋଇ ଚାହିଁ ରହିଲେ । ଅବଶେଷରେ ଗୋଟାଏ ଦୀର୍ଘ ନିଃଶ୍ୱାସ ପକାଇ କହିଲେ, ମୋର ଆଉ କହିବାର କିଛି ନାହିଁ ।

ବାହାରେ ପଲ୍ଲୀବାସୀମାନେ ଇତୋମଧ୍ୟେ ଆସି ରୁଣ୍ଡ ହେବାରୁ ମହାଶାଳ ଈଷତ୍ ହସି ମହାକାଞ୍ଚନଙ୍କୁ ଚାହିଁ ଉଠିଗଲେ । ପଲ୍ଲୀବାସୀମାନଙ୍କର 'ମହାଶାଳଙ୍କର ଜୟ ହେଉ' ଧ୍ୱନି ଶୁଣି ମହାକାଞ୍ଚନ ଆଉଥରେ ଦୀର୍ଘ ନିଃଶ୍ୱାସ ପକାଇଲେ । ଏହି ସମୟରେ ସୋମଦତ୍ତ ଓ କାତ୍ୟାୟନୀ ପ୍ରବେଶ କରନ୍ତେ ମହାକାଞ୍ଚନ ମଧୁକରଙ୍କୁ ଡକାଇବାକୁ ଅନୁରୋଧ କଲେ ।

## ୧୬

ମହାଶାଳ ପଲ୍ଲୀବାସୀମାନଙ୍କ ସହିତ ଚାଲି ଯିବାର କିଛିକ୍ଷଣ ପରେ ମଧୁକର ପ୍ରବେଶ କଲେ । ଦୁଇ ବନ୍ଧୁ ଆଜି ବହୁ ବର୍ଷ ପରେ ପରସ୍ପରକୁ ସାକ୍ଷାତ କରୁଅଛନ୍ତି । ଦୁହେଁ ଦୁହିଁଙ୍କୁ ଅନେକକ୍ଷଣ ଚାହିଁ ରହିଲେ । ଦୁହେଁ ବର୍ତ୍ତମାନ ଯୌବନର ଶେଷ ସୀମାରେ । ଦୁହେଁ ହିଁ କ୍ଷୀଣ; ଜଣେ ଅତ୍ୟଧିକ କୃଚ୍ଛ୍ର ସାଧନା ହେତୁ ଏବଂ ଅନ୍ୟ ଜଣେ ଶରୀର ଉପରେ ଅତ୍ୟାଚାର ହେତୁ । ମୁହଁରେ ଜଣକର ବ୍ୟଥା ଓ ଅନ୍ୟର ସ୍ୱାଚ୍ଛନ୍ଦ୍ୟ ପ୍ରକାଶ ପାଉଥିଲା । କିନ୍ତୁ ଦୁହିଁଙ୍କର ଆଖି ଉଜ୍ଜ୍ୱଳ ଓ ତୀକ୍ଷ୍ଣ ।

ଅବଶେଷରେ ମଧୁକର ସ୍ୱଚ୍ଛନ୍ଦରେ ହସି କହିଲେ, - ମୋତେ ଡାକିଛ ବନ୍ଧୁ ?

ମହାକାଞ୍ଚନଙ୍କର ବ୍ୟଥାତୁର ଅଧର ପ୍ରାନ୍ତରେ ଆନନ୍ଦର ହାସ୍ୟ ଦେଖା ଦେଲା । ସେ କହିଲେ, - ବନ୍ଧୁ ! ବହୁ ବର୍ଷ ପରେ 'ବନ୍ଧୁ' ସମ୍ବୋଧନ ଏଇ ପ୍ରଥମ ଶୁଣିଲି ।

ମଧୁକର କହିଲେ, - ସଖା, ବଡ଼ ହେବାର ଦୁଃଖ ତ ସେଇଠି । ତା'ର ବନ୍ଧୁ କେହି ନାହିଁ ।

ମହାକାଞ୍ଚନ ଦୀର୍ଘ ନିଃଶ୍ୱାସ ପକାଇ କହିଲେ, ଯଥାର୍ଥ ବନ୍ଧୁ, ଯଥାର୍ଥ । ତଥାପି

ମୁଁ ବୋଧହୁଏ ଏକାବେଳକେ ବନ୍ଧୁହୀନ ନୁହେଁ ଏମିତି ମୋର କେବେ କେମିତି ମନେ ହେଉଥାଏ - ଯେତେବେଳେ ତୁମ କଥା ମନେ ପଡୁଥାଏ ।

- ମାତ୍ର ଆମେ ଦୁହେଁ ପରସ୍ପର ବିପରୀତ ପଥର ଯାତ୍ରୀ । ମୁଁ ତ ଭାବିଥିଲି ମୋ ଭଳି ଜଣେ ଅଯୋଗ୍ୟ ବନ୍ଧୁ କଥା ତୁମେ ପାସୋରି ପକାଇଛ ।

- ତୁମର ଧାରଣା ଭୁଲ । ମୁଁ ତୁମର ସବୁ ସମ୍ବାଦ ସଂଗ୍ରହ କରୁଥିଲି ।

ମଧୁକର ହସି କହିଲେ, ସେ ସମ୍ବାଦ ନିଶ୍ଚୟ ତୁମର ଆନନ୍ଦ ବର୍ଦ୍ଧନ କରି ନାହିଁ ?

- ବନ୍ଧୁ, ମୁଁ ଶୁଣିଛି ତୁମେ ବହୁ ସରସ, ଭାବଗର୍ଭ ନାଟକ ପ୍ରଣୟନ କରିଛ । ମୁଁ ତୁମର ମୌଳିକ ଚିନ୍ତାର ଆଭାସ ଅନେକ ଦିନରୁ ପାଇଥିଲି, କିନ୍ତୁ ସେତେବେଳେ ନିଜର ଅହମିକା ଯୋଗୁଁ ତାହା ଅବଜ୍ଞା କରିଥିଲି । ବର୍ତ୍ତମାନ ତା'ର ମୂଲ୍ୟ ହୃଦୟଙ୍ଗମ କରୁଛି । ବନ୍ଧୁ, ତୁମର ସେ ମୌଳିକ ଚିନ୍ତାର ଶକ୍ତି ମୋର ନାହିଁ । ମୁଁ ମୋ ଜୀବନରେ ଅନୁଷ୍ଠାନ, ବିଧିନିୟମାଦିର ସଂକୀର୍ଣ୍ଣ ପଥରେ ହିଁ ଚାଲିଛି । ଆଉ ଜଣକର ତୁମ ଭଳି ମୌଳିକ ଚିନ୍ତାଶକ୍ତି ଥିଲା । କିନ୍ତୁ...କିନ୍ତୁ... ମୁଁ ତାକୁ ପ୍ରାଣଦଣ୍ଡ ଦେଇ ତା'ର କଣ୍ଠରୋଧ କରିଛି । ବନ୍ଧୁ ତମ୍ଭର ଚିନ୍ତାଧାରା ଅନେକାଂଶରେ ତା'ର ଚିନ୍ତାଧାରା ସହିତ ସମାନ । ତେଣୁ ଏବେ ତୁମକୁ ମୋର ଅନୁରୋଧ ତୁମେ ତୁମର ନାଟକଗୁଡ଼ିକୁ ଲୋକ ସମକ୍ଷେ ଉପସ୍ଥିତ କର ।

ମଧୁକର ମଧୁର ହସି କହିଲେ, - ବନ୍ଧୁ, ଏ ଗୃହହୀନକୁ ସୁବିସ୍ତୀର୍ଣ୍ଣ ପଥ ଆହ୍ୱାନ ଦେଇଛି ଚିରକାଳ । ସେ ଆହ୍ୱାନ ମୋତେ ବ୍ୟାକୁଳ କରିଛି । ଏ ଜୀବନକୁ ମୁଁ ସବୁ ଦିଗରୁ ଉପଭୋଗ କରିଛି, ବାରମ୍ବାର ସବୁ ଛାଡ଼ି ପୁଣି ପଥ ଉପରକୁ ବାହାରି ପଡ଼ିଛି । କିନ୍ତୁ ମୁଁ ବହୁ ଦୁଃଖ ପାଇଛି, ଇଚ୍ଛା ବା ଅନିଚ୍ଛାରେ ବହୁ ବିପଦର ସମ୍ମୁଖୀନ ହୋଇଛି, ଦେଶ ବିଦେଶରେ ବହୁ ଆଶ୍ଚର୍ଯ୍ୟ ଦେଖିଛି ମଧ । ମୋହର କୌଣସି ଅନୁଶୋଚନା ନାହିଁ, କାରଣ ନିଜର ସୁଖ ଉପଭୋଗ ଲାଗି ଅନ୍ୟକୁ କେବେ ଦୁଃଖ ଦେଇ ନାହିଁ । ମୋର ଅତିଶୟ ଆଶା ମଧ ନାହିଁ । ମୁଁ ଯେତେବେଳେ ମୋ ଗୃହରେ ଏକାକୀ ବସି ମୋର ନାଟକ ପଢ଼େ ବା ଆବୃତ୍ତି କରେ, ସେଇ ମୋର ଚରମ ଆନନ୍ଦ । ସେ ନାଟକ ଆଦୃତ ନହେଲେ ମୋର ଦୁଃଖ ନାହିଁ, ଲୋକ ସମ୍ମୁଖକୁ ଆଣିବାକୁ ମୋର ସ୍ପୃହା ମଧ ନାହିଁ ।

- ସଖା ମଧୁକର , ତୁମର ଏ ବିଶୃଙ୍ଖଳ ଜୀବନର ମୃତ୍ୟୁ ପରେ ତେବେ ଆତ୍ମାର ସଦ୍‌ଗତି କାହିଁ ?

- ଏ କଥା ମୋତେ କିଏ ପଚାରୁଛି ? ମହାଯୋଗୀ ମଗଧ ରାଜଗୁରୁ ମହାକାଞ୍ଚନ ନା ବନ୍ଧୁ ମହାକାଞ୍ଚନ ?

- ତୁମର ବନ୍ଧୁ ।

- ତା' ହେଲେ କୁହେ ବନ୍ଧୁ, ବିଶୃଙ୍ଖଳ ଜୀବନ ତୁମେ କାହାକୁ କୁହ ? ଏଇ ଯେ

'ଚିତ୍ତବୃତ୍ତି ନିରୋଧ' ଏହାର ଅର୍ଥ କ'ଣ ? ତୁମେ କ'ଣ କୁହ ଭଗବାନ ପୃଥିବୀରେ ଏତେ ସୌନ୍ଦର୍ଯ୍ୟ ସୃଷ୍ଟି କରି, ପୁଣି ମନୁଷ୍ୟକୁ ସେ ସୌନ୍ଦର୍ଯ୍ୟକୁ ଉପଭୋଗ କରିବା ପାଇଁ ଉପଯୁକ୍ତ ଦେହ-ମନ ଦେଇ ସୁଦ୍ଧା ଏ ଦୁହିଁଙ୍କର ଯୋଗାଯୋଗ ନ ଘଟାଇବାର ଆଦର୍ଶ ମନୁଷ୍ୟ ସମ୍ମୁଖରେ ଥୋଇ ଅଛନ୍ତି ?

ମହାକାଞ୍ଚନ ନୀରବରେ ଚିନ୍ତା କରିବାକୁ ଲାଗିଲେ । ମଧୁକର ଗୋଟିଏ ଗୈରେୟଖଣ୍ଡ ନେଇ ଭୂମିରେ ଗୋଟାଏ ଡମ୍ବରୁର ଚିତ୍ର ଅଙ୍କନ କରି କହିଲେ, ମୋର ଧାରଣା ଏହି ଡମ୍ବରୁର ଡାହାଣ ଦିଗ ଯଦି ପୃଥିବୀର ଯାବତୀୟ ସୌନ୍ଦର୍ଯ୍ୟ ଓ ସୁଖ ଦୁଃଖର ବସ୍ତୁ ବା ବିଷୟ ହୁଏ ତେବେ ଏହାର ମଧଭାଗ ସେ ସବୁ ଅନୁଭବ କରିବାର ଶକ୍ତି ଏବଂ ବାମ ଦିଗ ଭଗବାନ ବା ଚରମ ଲକ୍ଷ୍ୟ ବା ପରମ ସତ୍ୟ, ଯାହା କୁହ । ଏହାର ମଧ ଭାଗରେ ଦୁଇଟି ସୂତାରେ ଦୁଇଟି ମୃତ୍‌ପିଣ୍ଡ ବନ୍ଧା ହୋଇଛି । ସେ ଦୁଇଟି ବୁଦ୍ଧି ଓ ମନ । ଡମ୍ବରୁର ମଧଭାଗ ସଞ୍ଚାଳନ କଲେ ସେ ଦୁଇଟି ମୃତ୍‌ପିଣ୍ଡ ଡମ୍ବରୁର ଡାହାଣ ଓ ବାମ ଦିଗରେ କ୍ରମାଗତ ଆଘାତ କରି ଯେଉଁ ଶବ୍ଦ ଉତ୍ପନ୍ନ କରେ ତାହା ଆନନ୍ଦ । ମୁଁ ସେହି ଡମ୍ବରୁ ବଜାଇ ସେହି ଆନନ୍ଦ ପାଇବାକୁ ଚେଷ୍ଟାରେ ଜୀବନ ଅତିବାହିତ କରିଛି । ସେଥିରେ ମୋର ଅନେକ ସମୟରେ ସ୍ଖଳନ ହୋଇଛି, ସ୍ୱୀକାର କରୁଛି । କେତେବେଳେ ଅବା ଡମ୍ବରୁ ସଞ୍ଚାଳନର ଶକ୍ତି ମଧ ଯେପରି ହଜାଇ ବସିଛି । କିନ୍ତୁ ମୋର ବିଶ୍ୱାସ, ମୃତ୍ୟୁ ପରେ ପରମେଶ୍ୱରଙ୍କ ସହିତ ଯଦି ସାକ୍ଷାତ ଘଟେ ତେବେ ତାଙ୍କୁ ସବୁ ବୁଝାଇ କହିଲେ ସେ ସବୁ ବୁଝି ପାରିବେ । ସେ ଭଦ୍ରଲୋକ ତ ଅଟନ୍ତି ନିଶ୍ଚୟ !

ମହାକାଞ୍ଚନ ହସିଲେ, କିନ୍ତୁ ଦୀର୍ଘ ନିଃଶ୍ୱାସ ପକାଇ କହିଲେ - ବନ୍ଧୁ, ଭଗବାନ ଏବହୁଁ ବୁଝିଲେଣି; ସେ ତ ଭାବଗ୍ରାହୀ । କିନ୍ତୁ ମୁଁ ପାପୀ, ମୋର ନରକରେ ମଧ ସ୍ଥାନ ନାହିଁ । ଦୁଇ ବିନ୍ଦୁ ଅଶ୍ରୁ ମହାକାଞ୍ଚନଙ୍କ ନୟନରୁ ଗଡ଼ି ପଡ଼ିଲା ।

ମଧୁକର ମହାକାଞ୍ଚନଙ୍କ ହାତ ନିଜ ଦୁଇ ହାତ ମଧରେ ରଖି କହିଲେ, ବନ୍ଧୁ ! ଆକ୍ଷେପ କାହିଁକି ? ତୁମେ ନିଜର ବିଶ୍ୱାସ ମତେ ଦୃଢ଼ଚିତ୍ତରେ କର୍ତ୍ତବ୍ୟ କରିଛ । ସେ ବିଶ୍ୱାସ ଭ୍ରମାତ୍ମକ ହୋଇପାରେ କିନ୍ତୁ କାର୍ଯ୍ୟରେ ତୁମର କୌଣସି ଛଳନା ନାହିଁ । କେହି ପାପୀ ନୁହଁନ୍ତି, କୌଣସି କର୍ମ ପାପ ନୁହେଁ ଯଦି ସେ କର୍ମରେ ବିରାଟକୁ ଉପଲବ୍ଧିର କରିବା ପାଇଁ ଆକୃତି ରହିଥାଏ ।

- ବନ୍ଧୁ, ମୁଁ ସେ କଥା କହିପାରିବି ନାହିଁ । ଦିନେ ସେ ବିଶ୍ୱାସ ମୋର ଥିଲା । କିନ୍ତୁ ବର୍ତ୍ତମାନ ନାହିଁ ।

- ଅବଶ୍ୟ ସାମାଜିକ ସ୍ତରରେ ଭଲ-ମନ୍ଦ ପାପ-ପୁଣ୍ୟ ଅଛି ଏବଂ ରହିବା ଉଚିତ । କିନ୍ତୁ ଯେ ସତ୍ୟସନ୍ଧ ସେ ସେଥିରେ ବାନ୍ଧି ହୋଇଯିବା ଉଚିତ ନୁହେଁ । ରୋଗର ନିଦାନ ଅନୁସନ୍ଧାନ ପାଇଁ ଇନ୍ଦୁର ହତ୍ୟା କରିବା କ'ଣ ପାପ ?

- କେଉଁଠି ଯେ କାହାର ସୀମା, ଅଥବା ସୀମା କିଛି ଅଛି କିନା ମୁଁ କିଛି ବୁଝି ପାରୁ ନାହିଁ, ବନ୍ଧୁ ।

- ସଖା କାଞ୍ଚନ, ଯଦି କିଛି ମନେ ନ କର ତେବେ ଗୋଟାଏ କଥା କହିବି । ଚମ୍ପାକୁ ଆଦେଶ ଦେବାକୁ ଯାଇ ତୁମେ ଭୁଲ କରିଛ । ଏକଥା ମୁଁ ତୁମକୁ ପୂର୍ବରୁ କହି ଥାଆନ୍ତି । କିନ୍ତୁ ତା'ର ସୁଯୋଗ ପାଇଲି ନାହିଁ । ସେତେବେଳେ ସେ କଥା ମୁଁ କହିଥିଲେ ମଧ ତୁମେ ବୋଧହୁଏ କର୍ଣ୍ଣପାତ କରି ନଥାନ୍ତ । ମୋର ମନେ ହୁଏ ତୁମ ତିନି ଭାଇଙ୍କ ମଧରେ କନିଷ୍ଠ ମହାସାର ସବୁଠାରୁ ଧାର୍ମିକ । ସେ ଆଦେଶ ଦେଲେ ଚମ୍ପା ନିଶ୍ଚୟ ତା'ର ପାଦ ଫେରି ପାଇବ ।

ମହାକାଞ୍ଚନ ଅତି ମାତ୍ର ଆଶ୍ଚର୍ଯ୍ୟ ହୋଇ କହିଲେ, ମହାସାର !! ସଖା, ତୁମେ ପରିହାସ କରୁଅଛ ।

- ଆଦୌ ନୁହେଁ । ତୁମେ କହି ପାର ତାହାର ସାଧନା ନାହିଁ କି ଜ୍ଞାନ ନାହିଁ । କିନ୍ତୁ ଭଗବାନ ଯେ ଏ ଦୁଇ ଗୁଣକୁ ସବୁଠାରୁ ବଳି ପ୍ରାଧାନ୍ୟ ଦେଇ ଅଛନ୍ତି ତା'ର ପ୍ରମାଣ ନାହିଁ । ମହାସାର ଜଣେ ପ୍ରକୃତ ଭଦ୍ର ଲୋକ । ସେ ନିଷ୍ଠାପର ଭାବେ ବନ୍ଧୁ, ପୁତ୍ର, ପିତା ଓ ସ୍ୱାମୀ ଭାବରେ ତା'ର କର୍ତ୍ତବ୍ୟ ସୁନ୍ଦର ରୂପେ ପାଳନ କରି ଆସୁଅଛି । ଲୋକମାନଙ୍କର ବିଦ୍ରୂପ ଓ ଘୃଣା ସେ ନୀରବରେ ସହ୍ୟ କରିନାହିଁ କେବଳ, କାହାରି ପ୍ରତି ସାମାନ୍ୟ କ୍ରୋଧ ବା ବିଦ୍ୱେଷ ମଧ ସେ ପୋଷଣ କରେ ନାହିଁ । ସେ ବରଂ ସାଧ ମତେ ଲୋକଙ୍କର ଉପକାର କରେ ଏବଂ ପ୍ରତ୍ୟୁପକାର ପ୍ରତ୍ୟାଶା ରଖେ ନାହିଁ । ପାଇଲେ ଖୁସି ହୁଏ ନ ପାଇଲେ କ୍ରୋଧାନ୍ୱିତ ହୁଏ ନାହିଁ । ସେ ପୁରୋହିତ ବା ଭିକ୍ଷୁମାନଙ୍କ ପରି ଅନ୍ୟର ଶ୍ରମରେ ନିଜକୁ ପ୍ରତିପୋଷଣ ନକରି ନିଜର ଶ୍ରମରେ ସାଧୁ ଉପାୟରେ ଉପାର୍ଜନ କରି ପରିବାର ପୋଷଣ କରେ । ଅନ୍ୟର ଉପାର୍ଜନ ପ୍ରତି ଈର୍ଷା ନାହିଁ କିମ୍ବା ନିଜର ଉପାର୍ଜନ ପ୍ରତି ତା'ର ଅତି ଆସକ୍ତି ନାହିଁ । ଜୀବନରେ ସୁଖ ପାଇଁ ସେ ବିଧାତାଙ୍କ ନିକଟରେ କୃତଜ୍ଞ ଏବଂ ଦୁଃଖରେ ସେ ନିର୍ବିକାର । ସେ ସ୍ୱୟଂ ସଦାନନ୍ଦ ଏବଂ ଯେ କେହି ତା ନିକଟକୁ ଯାଏ ତାକୁ ଆନନ୍ଦ ଦେବାକୁ ଚେଷ୍ଟା କରେ । ସେ ସବୁ କର୍ମ କରେ କିନ୍ତୁ କୌଣସି କର୍ମରେ ତା'ର ଆସକ୍ତି ନାହିଁ । ଅସମ୍ଭବ କ'ଣ ଯେ ଭଗବାନ ଏହି ବ୍ରାହ୍ମଣ କୁଳକଳଙ୍କ ତୁନ୍ନବାୟ ଦ୍ୱାରା ହିଁ କାର୍ଯ୍ୟୋଦ୍ଧାର କରିବାକୁ ନିର୍ଦ୍ଦେଶ ଦେଇଅଛନ୍ତି ।

ମହାକାଞ୍ଚନ କିଛିକ୍ଷଣ ନୀରବ ରହିଲେ । ଦୀର୍ଘ ନିଃଶ୍ୱାସ ପକାଇ ସେ କହିଲେ, - ସଖା ମଧୁକର, ତୁମେ ହିଁ ମୋତେ ସବୁଠୁ ଭଲ ରୂପେ ଜାଣ । ଏ କାର୍ଯ୍ୟରେ ହସ୍ତକ୍ଷେପ କରିବା ପୂର୍ବରୁ ମୁଁ ବହୁ ଚିନ୍ତା କରିଛି । ମୋର ଧାରଣା ଜନ୍ମିଲା ଯେ ବେଦର ମହିମା ପ୍ରଚାର ପାଇଁ ଭଗବାନ ମୋତେ ହିଁ ବୋଧହୁଏ ନିର୍ଦ୍ଦେଶ ଦେଇ ଅଛନ୍ତି । ମୁଁ ବର୍ତ୍ତମାନ ଉପଲବ୍ଧି କରୁଛି ଯେ ମନୁଷ୍ୟ ହିଁ ସବୁରି ଉପରେ ଏବଂ ମାନବିକତା ହିଁ ସବୁଠାରୁ ବଡ଼ ଧର୍ମ । ସେଇ ଯୁବକ ଦିନେ ତୁମରି ଭଳି କହିଥିଲେ, 'ଜୀବନଧାରଣ ଓ ସୃଷ୍ଟି ପାଇଁ ମନୁଷ୍ୟର ଯାହା ଯାହା କର୍ତ୍ତବ୍ୟ, ଦେଶ

ଧର୍ମ ଜ୍ଞାନ ଇତ୍ୟାଦି ଶବ୍ଦ ମୋହରେ ଯେ ତାହା ତ୍ୟାଗ କରେ ସେ ତାମସ ।' କିନ୍ତୁ, ବନ୍ଧୁ, ମହାଶାଳ ଏ କାର୍ଯ୍ୟରେ ବର୍ତ୍ତମାନ ହସ୍ତକ୍ଷେପ କରିବାକୁ ବଦ୍ଧପରିକର ।

- ତାହାର ବୁଦ୍ଧିର ଶକ୍ତି ଅପେକ୍ଷା ଚିରକାଳ ଶରୀରର ଶକ୍ତି ଅଧିକ । ଯେକୌଣସି ପ୍ରକାରେ ତାକୁ ନିବର୍ତ୍ତାଅ ।

- ଏହା ମୋର ସାଧ୍ୟାତୀତ । କହି ମହାକାଞ୍ଚନ ମହାଶାଳଙ୍କ ସମସ୍ତ କୂଟ କାର୍ଯ୍ୟପନ୍ଥା ପ୍ରକାଶ କଲେ ।

ମଧୁକର ଚିନ୍ତିତ ହେଲେ । ଅନେକକ୍ଷଣ ଚିନ୍ତା କରିବା ପରେ ସେ କହିଲେ,- ଯେମିତି ହେଲେ ଚମ୍ପାକୁ ବଞ୍ଚାଇବାକୁ ହେବ । ତୁମେ ମୋତେ କଥା ଦିଅ, ମୋତେ ସାହାଯ୍ୟ କରିବ ।

- ମୁଁ କଥା ଦେଉଛି; ଯେକୌଣସି ଉପାୟରେ ଚମ୍ପାର ଜୀବନ ରକ୍ଷା କର ।

- ଧନ୍ୟ ସଖା । ଆଜି ମୋତେ ବିଦାୟ ଦିଅ - କହି ମଧୁକର ଯିବାକୁ ଉଦ୍ୟତ ହେଲେ ।

ମହାକାଞ୍ଚନ ମଧୁକରଙ୍କର ହାତ ଧରି କହିଲେ, ବନ୍ଧୁ, ମୁଁ ଆଜି ଯେଉଁ ସନ୍ତୋଷ ଲାଭ କରିଛି ତାହା ଅପୂର୍ବ, ତା'ର ତୁଳନା ନାହିଁ ।

ମଧୁକର ଆନନ୍ଦରେ ମହାକାଞ୍ଚନଙ୍କୁ ଆଲିଙ୍ଗନ କରି ବିଦାୟ ଗ୍ରହଣ କଲେ ।

## ୧୭

ସୁଖିପଲ୍ଲୀର ଅଧିବାସୀମାନଙ୍କର ଅଳ୍ପ ସମୟ ମଧ୍ୟରେ ଧାରଣା ଜନ୍ମିଲା ଯେ ମହାଶାଳ ଜଣେ ମହାଧାର୍ମିକ ଏବଂ ବାଳକରୂପୀ ଭଗବାନ ଚମ୍ପା ନିକଟରେ ମହାଶାଳଙ୍କୁ ହିଁ ନିର୍ଦ୍ଦେଶ କରିଥିଲେ । ଉପରନ୍ତୁ ସେମାନେ ଶୁଣିବାକୁ ପାଇଲେ ଯେ ମଗଧରାଜ ପୁଷ୍ୟମିତ୍ର, ଯବନରାଜ ଦତ୍ତମିତ୍ର (ଡିମେଟ୍ରିୟସ୍)ଙ୍କ ସହିତ ମିଳିତ ହୋଇ ପୁଣି କଳିଙ୍ଗ ଆକ୍ରମଣ କରିବାକୁ ଆସୁଅଛନ୍ତି ଏବଂ ବୌଦ୍ଧରାଜ୍ୟର ନିକଟବର୍ତ୍ତୀ ମଧ୍ୟ ହୋଇ ସାରିଲେଣି । ଏ ସମ୍ବାଦ କିଏ ଦେଲା କିମ୍ବା କେଉଁଠାରୁ ଆସିଲା କେହି ଜାଣନ୍ତି ନାହିଁ, କିନ୍ତୁ ସମସ୍ତେ ଭୀତ ଓ ଶଙ୍କିତ । କଳିଙ୍ଗର ମହାସୈନ୍ୟାଧ୍ୟକ୍ଷ ମହାଶାଳ ବର୍ତ୍ତମାନ ସୁଖିପଲ୍ଲୀରେ ଅବସ୍ଥାନ କରୁଛନ୍ତି· ଏହା ହିଁ କେବଳ ସେମାନଙ୍କୁ ଅଭୟ ଓ ଆଶ୍ୱାସ ଦେଲା । ବର୍ତ୍ତମାନ ସେମାନେ ସୁଖିପଲ୍ଲୀରେ ମହାକାଞ୍ଚନଙ୍କ ଉପସ୍ଥିତିକୁ ସନ୍ଦେହ ଚକ୍ଷୁରେ ଦେଖିବାକୁ ଲାଗିବେ । କିନ୍ତୁ କେହି ଭାବିଲେ ନାହିଁ ଏ ଜନରବ ସତ୍ୟ ହୋଇଥିଲେ ମହାଶାଳ ଆଜି ତାଙ୍କ ସେନାଦଳ ଗହଣରେ କଳିଙ୍ଗ ନଗର ଠାରେ ଥାନ୍ତେ, ସୁଖିପଲ୍ଲୀରେ ନୁହେଁ ।

ପଲ୍ଲୀବାସୀମାନଙ୍କ ମଧ୍ୟରୁ କେତେ ଜଣ ପ୍ରଧାନ ବ୍ୟକ୍ତି ଆସି ମହାଶାଳଙ୍କୁ ଅନୁରୋଧ କଲେ ଚମ୍ପାକୁ ଉଦ୍ଧାର କରିବାକୁ । ମହାଶାଳ ବହୁ ବିନୟ ସହ ପ୍ରଥମେ ଏହା

କରିବାକୁ ଅସ୍ୱୀକାର କଲେ। କିନ୍ତୁ ପଲ୍ଲୀବାସୀମାନଙ୍କର ସନିର୍ବନ୍ଧ ଅନୁରୋଧ ଏଡ଼ାଇ ନପାରି ସମ୍ମତି ଦେଲେ। ପଲ୍ଲୀବାସୀମାନେ ସିଦ୍ଧାନ୍ତ କଲେ, ଯେଉଁ ପରିତ୍ୟକ୍ତ ମନ୍ଦିରରେ ଚମ୍ପା ଭଗବାନଙ୍କ ଦର୍ଶନ ଲାଭ କରିଥିଲା ସେହିଠାରେ ତା'ର ଉଦ୍ଧାର ହେବା ବିଧେୟ। ମହାଶାଳଙ୍କ ଇଚ୍ଛା ଥିଲା ବିନୀତାଙ୍କ ସମାଜରେ ହିଁ କରିବାକୁ। କିନ୍ତୁ ତା' କଲେ କେହି କିଛି ଭାବି ପାରନ୍ତି ବୋଲି ସେ ସେହି ଇଚ୍ଛା ପ୍ରକାଶ କଲେ ନାହିଁ। ବିନୀତା ଏ ସବୁ କିଛି ଜାଣି ପାରିଲେ ନାହିଁ।

ପରଦିନ ପ୍ରଭାତରେ ପ୍ରାଚୀନ, ପରିତ୍ୟକ୍ତ ମନ୍ଦିର ପାଙ୍ଗଣଟି ସୁଖିପଲ୍ଲୀ - ଓ ଅନ୍ୟାନ୍ୟ ନିକଟବର୍ତ୍ତୀ ପଲ୍ଲୀବାସୀମାନଙ୍କ ଦ୍ୱାରା ପୂର୍ଣ୍ଣ ହୋଇଗଲା। ମନ୍ଦିର-ଚତ୍ୱର ନିକଟରେ କେତେଗୁଡ଼ିଏ କାଷ୍ଠାସନରେ ପଲ୍ଲୀର ପ୍ରଧାନ ବ୍ୟକ୍ତିମାନେ ବସିଲେ। ପଲ୍ଲୀବାସୀମାନଙ୍କର ସୁବିଧା ନିମନ୍ତେ ସ୍ଥାନେ ସ୍ଥାନେ ପ୍ରକାଣ୍ଡ ପାତ୍ରମାନଙ୍କରେ ପାନୀୟ ରଖାହୋଇଛି ଓ ମନୋରଞ୍ଜନ ପାଇଁ ସ୍ଥାନେ ସ୍ଥାନେ ନୃତ୍ୟ ଗୀତ ହେଉଅଛି, ଯେପରି କେହି ସଭା ଛାଡ଼ି ଚାଲି ନଯାଆନ୍ତି। ଧୂପ ଓ ପୁଷ୍ପର ସୁବାସରେ ସ୍ଥାନଟି ଆମୋଦିତ। ମହାକାଞ୍ଚନ ଓ ମଧୁକର ପ୍ରଚ୍ଛନ୍ନ ଭାବରେ ଜନତାର ସବା ପଛରେ ଛିଡ଼ା ହୋଇଛନ୍ତି।

ଏହି ସମୟରେ ଦୂରରୁ ବାଦ୍ୟ ଶଙ୍ଖ ଓ ଘଣ୍ଟା ଧ୍ୱନି ଶୁଣାଗଲା। ପଲ୍ଲୀବାସୀମାନେ ଚାହିଁ ଦେଖିଲେ, ଦୀର୍ଘ ଶୋଭାଯାତ୍ରାର ମଧ୍ୟସ୍ଥଳରେ ମହାଶାଳ ଯୋଦ୍ଧୃବେଶରେ ଆସୁଅଛନ୍ତି। ଶୋଭାଯାତ୍ରାର ଅଗ୍ରଭାଗରେ ରଥାରୂଢ଼ ହୋଇ ନାନା ରୂପରେ ସଜ୍ଜିତ ହୋଇ ଗୀତ ଗାଇ ଗାଇଏକ ପ୍ରମୋଦନ ଗୋଷ୍ଠୀ ଆସୁ ଅଛନ୍ତି। ସିଂହ, ବ୍ୟାଘ୍ର, ଋଷଭ ଆଦି ପଶୁମାନଙ୍କର ପ୍ରକାଣ୍ଡ ପ୍ରତିମୂର୍ତ୍ତିମାନ ବହନ କରି ସେମାନଙ୍କୁ ନାନା ହାସ୍ୟକର ଭଙ୍ଗୀରେ ନଚାଇ ଥୋକେ ଲୋକ ମଧ୍ୟ ଶୋଭାଯାତ୍ରା ସହ ଆସୁ ଅଛନ୍ତି। ମହାଶାଳ ହାତ ଯୋଡ଼ି ସମସ୍ତଙ୍କୁ ସବିନୟ ନମସ୍କାର କରୁ ଅଛନ୍ତି।

ଶୋଭାଯାତ୍ରା ନିକଟବର୍ତ୍ତୀ ହୁଅନ୍ତେ ସଭାରୁ ପ୍ରଧାନ ବ୍ୟକ୍ତିମାନେ ପୁଷ୍ପହାର ସହ ମହାଶାଳଙ୍କୁ ପାଛୋଟି ଆଣିବାକୁ ଉଠିଗଲେ। ମହାଶାଳ ରଥରୁ ଅବତରଣ କରି ସବିନୟେ ପୁଷ୍ପମାଳ ଗ୍ରହଣ କରି ନମସ୍କାର କରୁ କରୁ ସଭାମଣ୍ଡପକୁ ପ୍ରବେଶ କଲେ ଏବଂ ଚତ୍ୱରସ୍ଥ ଉଚ୍ଚାସନରେ ଉପବେଶନ କଲେ। ସୁଖିପଲ୍ଲୀର ଏବଂ ଅନ୍ୟାନ୍ୟ ନିକଟବର୍ତ୍ତୀ ପଲ୍ଲୀମାନଙ୍କର ନାନା ପ୍ରତିଷ୍ଠାନ ପକ୍ଷରୁ ପୁଷ୍ପମାଳମାନ ଏହାପରେ ମହାଶାଳଙ୍କୁ ଅର୍ପିତ ହେଲା। ମହାଶାଳଙ୍କ ବୃହତ ମୁଖମଣ୍ଡଳ ପୁଷ୍ପମାଳା ତଳେ ପ୍ରାୟ ଲୁପ୍ତ ହେଲା। ବୌଦ୍ଧସଂଘର ସିଦ୍ଧାଚାର୍ଯ୍ୟ ଧର୍ମପାଳଙ୍କ ବ୍ୟତୀତ ସମସ୍ତ ଭିକ୍ଷୁଗଣ ସଭାରେ ଉପସ୍ଥିତ। ଧର୍ମପାଳ ବଜ୍ରଗୁରୁଙ୍କ ଠାରୁ ଏ ପର୍ଯ୍ୟନ୍ତ ପ୍ରତ୍ୟାବର୍ତ୍ତନ କରି ନାହାନ୍ତି। ସିଦ୍ଧାଚାର୍ଯ୍ୟଙ୍କ ଅନୁପସ୍ଥିରେ ସେମାନେ ଏ ସଭାକୁ ଆସିବାକୁ ଅନିଚ୍ଛୁକ ଥିଲେ, କିନ୍ତୁ ମହାଶାଳଙ୍କ ନିଯୁକ୍ତ କେତେକ ଦୁର୍ଦ୍ଦାନ୍ତ ଯୁବକ ସେମାନଙ୍କୁ ଭୀତିପ୍ରଦର୍ଶନ କରିବାକୁ ସେମାନେ ଆସିବାକୁ ବାଧ ହୋଇ ଅଛନ୍ତି।

ପୁଷ୍ପମାଳା ଅର୍ପଣ ଶେଷ ହେବା ପରେ ଭିକ୍ଷୁମାନେ ମହାଶାଳଙ୍କୁ ଆଶୀର୍ବାଦ କଲେ । ମହାଶାଳ ସେମାନଙ୍କୁ ସଭକ୍ତି ପ୍ରଣାମ କରି ପୁଣି ଆସନରେ ବସିଲେ । ଏହାପରେ ଆବାହନ ସଙ୍ଗୀତ ବୋଲାହେଲା । ଅବାହନ ସଙ୍ଗୀତ ପରେ ଗ୍ରାମ ବୃଦ୍ଧ - ପ୍ରଧାନ ମହାରାଜ ଖାରବେଳ ଓ ତାଙ୍କର ମହାସୈନ୍ୟାଧକ୍ଷ ମହାଶାଳଙ୍କର ବହୁ ସ୍ତୁତିଗାନ ପୂର୍ବକ ମହାଶାଳ ଯେ ଜଣେ ପରମ ଧାର୍ମିକ ଏହା ସାବ୍ୟସ୍ତ କରି ଶେଷରେ ମହାଶାଳଙ୍କୁ ଚମ୍ପାର ଉଦ୍ଧାରସ୍ୱରୂପ ମହତ୍ କାର୍ଯ୍ୟରେ ଆହ୍ୱାନ କଲେ ।

ଏହାର ପ୍ରତ୍ୟୁତ୍ତରରେ ମହାଶାଳ ଗ୍ରାମ-ପ୍ରଧାନ ଓ ପଲ୍ଲୀବାସୀମାନଙ୍କୁ ବହୁ କୃତଜ୍ଞତା ଜଣାଇ କହିଲେ ଯେ କେବଳ ଦେଶସେବା ପାଇଁ ସେ ଏହା କରିବାକୁ ପ୍ରସ୍ତୁତ, ନଚେତ୍ ନିଜର ଧାର୍ମିକତା ଏପରି ଭାବରେ ପ୍ରକାଶ କରିବାକୁ ସେ ଘୃଣା କରନ୍ତି ।

ଚମ୍ପା ଚତ୍ୱରର ଗୋଟିଏ ପ୍ରାନ୍ତରେ ଆସାବାଡ଼ି ଧରି ଛିଡ଼ା ହୋଇଛି । ଆଜି ଏତେ ବିରାଟ ଆୟୋଜନ ଦେଖି ସେ ବିମୂଢ଼, ବିହ୍ୱଳ ! ଏହାର କାରଣ ବୁଝି ନପାରି ହତବୁଦ୍ଧି, କିଞ୍ଚିତ ସନ୍ଦିଗ୍ଧଚିତ୍ତ ପୂର୍ବରୁ ଯଥାଯଥ ସମସ୍ତ ଆୟୋଜିତ ହେବାର ଜାଣିଥିଲେ ସୁଦ୍ଧା ମହାଶାଳ ନିଜେ ମଧ୍ୟ ଅଭିଭୂତ ହୋଇ ପଡ଼ିଲେ । ତାଙ୍କର ଦୃଢ଼ ବିଶ୍ୱାସ ଜନ୍ମିଲା, ସେ ସଫଳ ହେବେ । ସେ ଆସନରୁ ଉଠି ବଜ୍ର ନିର୍ଘୋଷ ଭଳି କଣ୍ଠରେ କହିଲେ - ଚମ୍ପା, ମୁଁ ତୁମକୁ ଆଦେଶ ଦେଉଛି ତୁମେ ଆସାବାଡ଼ି ତ୍ୟାଗ କରି ସ୍ୱପାଦରେ ଗମନ କର ।

ଚମ୍ପା ଆସାବାଡ଼ି ଦ୍ୱିଖଣ୍ଡ ଫିଙ୍ଗି ଦେଇ ଗୋଟିଏ ପାଦ ଆଗକୁ ପକାଇବାକୁ ଚେଷ୍ଟା କଲା ଏବଂ ସଙ୍ଗେ ସଙ୍ଗେ ବେଦନାରେ ଚିତ୍‌କାର କରି ତଳେ ପଡ଼ି ବ୍ୟାକୁଳ ଭାବରେ କ୍ରନ୍ଦନ କରିବାକୁ ଲାଗିଲା ।

ପଲ୍ଲୀବାସୀମାନଙ୍କ ମଧ୍ୟରୁ ଥୋକେ ଚିତ୍କାର କରି ଉଠିଲେ,- ମିଥ୍ୟାଚାରିଣୀ ଡାକିନୀ ଏଇ ଚମ୍ପାକୁ ହତ୍ୟା କର ! ତାହାରି ପାଇଁ ଆଜି ଏତେ ବଡ଼ ଧାର୍ମିକ ଅପମାନିତ !

ସମସ୍ତ ଗ୍ରାମବାସୀମାନେ ଏହା ଶୁଣି ଉନ୍ମତ୍ତବତ୍ ଚିତ୍କାର କରି ଉଠିଲେ - ଏ ଡାକିନୀ ହତ୍ୟା କର, ଇଆକୁ ହତ୍ୟା କର ।

ଏହି ସମୟରେ ମହାକାଞ୍ଚନ ଓ ମଧୁକର କ୍ଷିପ୍ର ଗତିରେ ଜନତାର ସମ୍ମୁଖକୁ ଆସି ଚତ୍ୱର ଉପରକୁ ଉଠିଗଲେ । ମହାକାଞ୍ଚନ ଦୃଢ଼, ଉଚ୍ଚକଣ୍ଠରେ କହିଲେ - କ୍ଷାନ୍ତ ହୁଅନ୍ତୁ ଆପଣାମାନେ । ମୋର କଥା ଶ୍ରବଣ କରନ୍ତୁ ।

ଜନତା ମଧ୍ୟରୁ ଜଣେ ଚିତ୍କାର କରି କହିଲା, ଆପଣ ମଗଧର ଗୁପ୍ତଚର । ଆପଣଙ୍କ କଥା ଆମେ ଶୁଣିବାକୁ ଚାହୁଁନା । ଚମ୍ପା ମହାପାପିନୀ । ତା'ର ମୃତ୍ୟୁ ଆମେ ଚାହୁଁ । ସମସ୍ତ ଜନତା ପୁଣି ଥରେ ଚିତ୍କାର କଲେ, ଡାକିନୀକୁ ମାର, ମାରି ପକାଅ ।

ମହାକାଞ୍ଚନ ଉତ୍‌କ୍ଷିପ୍ତ ଜନତାକୁ ହାତ ଯୋଡ଼ି କହିଲେ,- ଶ୍ରବଣ କରନ୍ତୁ । ମୁଁ ଦାମ୍ଭିକ ଓ ମହାଶାଳ ଉଦ୍ଧତ । ଭଗବାନ ଆମ୍ଭ ଦୁଇ ଜଣଙ୍କ ମଧ୍ୟରୁ କାହାରିକୁ ନିର୍ଦ୍ଦେଶ କରି

ନାହାନ୍ତି । ଆମେ ଦୁହେଁ ତେଣୁ ଆମ ଦର୍ପର ଉପଯୁକ୍ତ ଶାସ୍ତି ପାଇଅଛୁ । ଭଗବାନ ଯାହାଙ୍କୁ ନିର୍ଦ୍ଦେଶ କରି ଅଛନ୍ତି ସେ ଆମର କନିଷ୍ଠ ଭ୍ରାତା ମହାସାର ।

ମହାଶାଳ ଆସନରୁ ଉଠି କହିଲେ - ମହାକାଞ୍ଚନ ମୋର ପୂଜନୀୟ ଜ୍ୟେଷ୍ଠ ଭ୍ରାତା ଓ ପ୍ରଣମ୍ୟ । ସେ ମୋତେ ଆକ୍ଷେପ କରି ଯାହା କହିଲେ ତାହା ମୁଁ ଶିରୋଧାର୍ଯ୍ୟ କରୁଛି, କିନ୍ତୁ ତାଙ୍କର ହାସ୍ୟକର ପ୍ରସ୍ତାବରୁ ହିଁ ଆପଣମାନେ ତାଙ୍କର ଆକ୍ଷେପର ଯଥାର୍ଥତା ଅବା ଅଯଥାର୍ଥତା ବୁଝି ପାରୁଥିବେ । ମୁଁ ବିଶେଷ କିଛି କହିବି ନାହିଁ, ଆପଣମାନେ ଫଳରୁ ପରିଚୟ ପାଇବେ ।

ବହୁ ଲୋକ ଯୁଗପଦ୍ ହସି ଉଠି କହିଲେ,- ମହାମୂର୍ଖ ମହାସାର ? ଆମେ ଏ ପ୍ରହସନ ଦେଖିବାକୁ ଚାହୁଁନା । ଆମେ ଚମ୍ପାର ମୃତ୍ୟୁ ଚାହୁଁ !

ମହାକାଞ୍ଚନ କ୍ଷିପ୍ତ ହୋଇ କହିଲେ - ମୂର୍ଖ ଜନତା, ହସ । ମୋର ଓ ମଧୁକରର ପିଣ୍ଡରେ ପ୍ରାଣ ଥିବା ପର୍ଯ୍ୟନ୍ତ ଚମ୍ପାର କେଶାଗ୍ର କେହି ସ୍ପର୍ଶ କରିପାରିବେ ନାହିଁ ।

ମହାକାଞ୍ଚନଙ୍କ ଜ୍ୱଳନ୍ତ ଚକ୍ଷୁ ଓ ତେଜ ଦେଖି ଜନତା ପଛେଇ ଗଲେ । ଜଣେ ଦୁଇଜଣ ଏହାର ପ୍ରତିବାଦ କରିବାକୁ ଚେଷ୍ଟା କଲେ, କିନ୍ତୁ ଅନ୍ୟମାନେ କହିଲେ - କୁହନ୍ତୁ ଶୀଘ୍ର, ଆପଣ କ'ଣ କହିବାକୁ ଚାହାନ୍ତି ।

ମହାକାଞ୍ଚନ କହିଲେ, - ଶୁଣନ୍ତୁ । ଭଗବାନଙ୍କ ନିର୍ଦ୍ଦେଶ ଥିଲା, ସୋମଦତ୍ତଙ୍କ ଯେଉଁ ପୁତ୍ର ସବୁଠାରୁ ଧାର୍ମିକ ତାଙ୍କର ଆଦେଶରେ ଚମ୍ପା ତା'ର ପାଦ ଶକ୍ତି ଫେରି ପାଇବ । ମୁଁ ଓ ମହାଶାଳ ବିଫଳ ହୋଇଛୁ । ମହାସାର ଏଥର ଆଦେଶ ଦେଉ । ସେ ବିଫଳ ହେଲେ ଆପଣମାନେ ଯାହା ଉଚିତ ମନେ କରିବେ କରନ୍ତୁ ।

ଜନତା ଏ ଯୁକ୍ତିର ସମର୍ଥନ କଲେ । ସେମାନେ ମନେ କଲେ ନିଶ୍ଚୟ ଏହା ମହାସାରର ସାଧ୍ୟ ନୁହେଁ । ବୃଦ୍ଧ ପ୍ରଧାନ କହିଲେ - ଆମର ଆପତ୍ତି ନାହିଁ । କିନ୍ତୁ ଏହା ପରେ ଚମ୍ପାର ଶାସ୍ତି ଆବଶ୍ୟକ । ଅତଏବ ଏ ପ୍ରହସନ ପରେ ଆପଣ ନିଶ୍ଚୟ ଚମ୍ପାକୁ ଆମ ହସ୍ତରେ ଅର୍ପଣ କରିବେ ।

ମହାକାଞ୍ଚନ ଡାକିଲେ, - ମହାସାର...

ମହାସାରକୁ ଖୋଜି କେହି ପାଇଲେ ନାହିଁ । ଏ ସବୁ ଶୁଣି ମହାସାର ଭୟରେ ନିକଟସ୍ଥ ଗୋଟିଏ ବୃକ୍ଷ ଉପରେ ଆତ୍ମଗୋପନ କରିଥିଲେ । ଜଣେ ଦେଖିବାକୁ ପାଇ ତାଙ୍କୁ ବୃକ୍ଷ ଉପରୁ ଭିଡ଼ି ଆଣିଲା ।

ମହାସାର ହାତଯୋଡ଼ି କହିଲେ - ନା, ନା, ନା ।

ଜନତା ଚିତ୍କାର କରି କହିଲେ - ମହାସାର ଯଦି ସମ୍ମତ ନ ହେଉଛି ତାକୁ ଓଟାରି ନେଇଆସ । ଶୀଘ୍ର ଏ ପ୍ରହସନ ଶେଷ କର ।

କେତେକ ପଲ୍ଲୀବାସୀ ତାହାର ହାତ ଧରି ତାକୁ ଘୋଷାରିବାକୁ ଲାଗିଲେ ।

ମହାସାର ନାନା ଅନୁନୟ ବିନୟ କରି ମୁକ୍ତ ହେବାକୁ ପ୍ରାଣପଣେ ଚେଷ୍ଟା କଲେ । ପଲ୍ଲୀବାସୀମାନେ ତାଙ୍କୁ ଶୂନ୍ୟରେ ଉତ୍ତୋଳନ କରି ଚତ୍ୱର ଉପରେ ନେଇ ପକାଇ ଦେଲେ ।

ମହାସାର ମହାକାଞ୍ଚନଙ୍କ ପାଦତଳେ ପଡ଼ି କାନ୍ଦି କାନ୍ଦି କହିଲେ - ଭାଇ, କାହିଁକି ଏ ଶାସ୍ତି ତୁମେ ମୋତେ ଦେବାକୁ ଚାହଁ । ମୋ ପ୍ରତି ଯଦି ତୁମର ସାମାନ୍ୟ କରୁଣା ଥାଏ, ତେବେ ମୋତେ ମୁକ୍ତି ଦିଅ । ମୁଁ ଆଉ କିଛି ଚାହେଁନା । ଯାହା ଆପଣ ଓ ମହାଶାଳ ପାରିଲେ ନାହିଁ, ତାହା ସାଧ କରିବାକୁ ଏ ଅକିଞ୍ଚନ କିପରି ସକ୍ଷମ ହେବ ?

ମହାକାଞ୍ଚନ ମହାସାରକୁ ତଳୁ ଉଠାଇ ଆଲିଙ୍ଗନ କରି କହିଲେ - ହେ ବିଧେୟାତ୍ମା, ହେ ପରମଯୋଗୀ, ଦର୍ପିତ ଓ ଦାମ୍ଭିକ ବିନାଶ ପ୍ରାପ୍ତ ହେବେ ଏବଂ ଭଦ୍ର ଓ ବିନୟୀ ପୃଥିବୀକୁ ଶାନ୍ତି ଓ ସାମ୍ୟର ନୂତନ ଆଲୋକ ଦେବେ । ଏହା ହିଁ ଭଗବାନଙ୍କ ସଙ୍କେତ । ଚମ୍ପା, ତୁମେ ଉଠି ଆସ ।

ଚମ୍ପା ଭୟରେ ତଳେ ପଡ଼ିଥିଲା । ସେ କାତର ଭାବରେ କହିଲା - ମୋତେ କ୍ଷମା କରନ୍ତୁ । ମୁଁ ପାପିନୀ । ମୁଁ ମୋର ପାଦ ଫେରି ପାଇବାକୁ ଚାହେଁ ନା । ମୋତେ ଛାଡ଼ି ଦିଅନ୍ତୁ । ମୁଁ ଘରକୁ ଯାଏ ।

ମହାକାଞ୍ଚନ ଚମ୍ପାକୁ ତଳୁ ଉଠାଇ ଛିଡ଼ା କରାଇଲେ ଓ ମହାସାରକୁ କହିଲେ, ତୁମର ହାତ ଚମ୍ପାର ମସ୍ତକ ଉପରେ ରଖ । ମହାସାର କାତର ହୋଇ କହିଲେ - ମୁଁ ପାରିବି ନାହଁ, ମୁଁ ପାରିବି ନାହିଁ ।

ମହାକାଞ୍ଚନ ମହାସାରର ହାତ ବଳ ପୂର୍ବକ ଚମ୍ପାର ମସ୍ତକ ଉପରେ ରଖିଲେ ଏବଂ ସେହିପରି ଧରିରଖି କହିଲେ - ବର୍ତ୍ତମାନ ମୁଁ ଯାହା କହୁଛି କୁହ : 'ମୂକଂ କରୋତି ବାଚାଳଂ'...

ମହାସାର ଲଜ୍ଜିତ ଭାବରେ କହିଲେ - ଭାଇ, ଟିକିଏ ଧୀରେ ଧୀରେ କୁହ,ନୋହିଲେ ମୁଁ ଏ ସଂସ୍କୃତ ଉଚ୍ଚାରଣ କରିପାରିବି ନାହିଁ । ଜନତା ହସି ଉଠିଲେ !

ମହାକାଞ୍ଚନ ଶ୍ଳୋକଟିର ପ୍ରତ୍ୟେକ ଶବ୍ଦ ଗୋଟି ଗୋଟି କରି ଉଚ୍ଚାରଣ କରିବାକୁ ଲାଗିଲେ ଏବଂ ମହାସାର ଭୀତ ଭାବରେ ମହାକାଞ୍ଚନଙ୍କ ମୁହଁକୁ ଚାହିଁ ଚାହିଁ ଶବ୍ଦଗୁଡ଼ିକର ପୁନରାବୃତ୍ତି କଲେ । ତା'ପରେ ମହାକାଞ୍ଚନ କହିଲେ, - ଏଥର କୁହ : 'ମୁଁ ତୁମକୁ ଆଦେଶ ଦେଉଛି, ତୁମେ ଯଷ୍ଟିଦ୍ୱୟ ତ୍ୟାଗ କରି ସ୍ୱପାଦରେ ଗମନ କର ।' ଏ କଥାଗୁଡ଼ିକ ମହାକାଞ୍ଚନ ଉଚ୍ଚ ସ୍ୱରରେ ଦୃଢ଼ତାର ସହିତ କହିଲେ । କିନ୍ତୁ ମହାସାର ଭୟରେ ସେଗୁଡ଼ିକ ଏପରି ଭାବରେ କହିଲେ ଯେ କେହି ଶୁଣି ପାରିଲେ ନାହିଁ ।

ଚମ୍ପା ଆସାବାଡ଼ି ଫିଙ୍ଗିଦେଲା । ସମଗ୍ର ଜନତା ପ୍ରସ୍ତୁତ ହୋଇ ରହିଲେ ଚମ୍ପା ତଳେ ପଡ଼ିଯିବା ମାତ୍ରକେ ତାଙ୍କୁ ଟେକି ନେଇଯିବେ ତା'ର ବିଚାର ପାଇଁ । ମହାଶାଳ ମଧ ଆସନ

ତ୍ୟାଗ କରି ଉତ୍କଣ୍ଠାର ସହିତ ଚାହିଁ ରହିଲେ । ଚମ୍ପା ଗୋଟିଏ ପାଦ ଆଗକୁ ବଢ଼ାଇଲା । ସେ କୌଣସି ବେଦନା ଅନୁଭବ କରି ପାରିଲା ନାହିଁ । କିନ୍ତୁ ସେ ଏହା ବିଶ୍ୱାସ କରି ପାରିଲା ନାହିଁ । କିଛିକ୍ଷଣ ସେହିପରି ଛିଡ଼ା ହୋଇ ରହି ସାହସ କରି ସେ ଅନ୍ୟ ପାଦଟି ଆଗକୁ ବଢ଼ାଇଲା । ଏଥର ମଧ୍ୟ କୌଣସି କଷ୍ଟ ବୋଧ ନାହିଁ ! ଏଥର ଆଉ ତା'ର ସନ୍ଦେହ ରହିଲା ନାହିଁ । ଅସହନୀୟ ଆନନ୍ଦରେ କାନ୍ଦି ସ୍ଥାନ କାଳ ପାତ୍ର ବିସ୍ମୃତ ହୋଇ ସେ ହଠାତ୍ ମା' ମା' ବୋଲି ଚିତ୍କାର କରି ଦୌଡ଼ିଗଲା । ଚମ୍ପାର ମା' ମଧ୍ୟ ଦୌଡ଼ି ଯାଇ ଚମ୍ପାକୁ କୁଣ୍ଢାଇ ପକାଇଲେ । ଚମ୍ପା ମା' ବକ୍ଷରେ ମୁହଁ ଲୁଚାଇ ଅଧୀର ଭାବରେ କାନ୍ଦିବାକୁ ଲାଗିଲା ।

ସମଗ୍ର ଜନତା କେତୋଟି ମୁହୂର୍ତ୍ତ ସ୍ତମିତ ହୋଇ ରହିଲେ । ତା'ପରେ ମହାନନ୍ଦରେ କରତାଳି ଦେଇ ନୃତ୍ୟ କରିବାକୁ ଲାଗିଲେ । ନାରୀମାନେ ଘନ ଘନ ଲୁହ ପୋଛୁ ପୋଛୁ ହୁଳହୁଳୀ ପକାଇବାକୁ ଲାଗିଲେ । ଏହି ଆନନ୍ଦ କୋଳାହଳ ମଧ୍ୟରେ ମହାସାର କେତେବେଳେ ଚତ୍ୱର ଉପରୁ ଓହ୍ଲାଇ ଆସି ଜନତା ମଧ୍ୟରେ ଲୁଚି ଗଲେଣି ! ମହାଶାଳ ଅନନ୍ୟୋପାୟ ହୋଇ ଆନନ୍ଦରେ ଯୋଗ ଦେଲେ । କିନ୍ତୁ ତାଙ୍କର ମୁହଁଟି କଳା ପଡ଼ି ଯାଇଥାଏ । କିଛିକ୍ଷଣ ପରେ ପଲ୍ଲୀବାସୀମାନେ ଆନନ୍ଦକଳରବରୁ କ୍ଷାନ୍ତ ହୋଇ ଚାହିଁ ଦେଖିଲେ ଚତ୍ୱର ଉପରେ ଛିଡ଼ା ହୋଇଛନ୍ତି ମହାକାଞ୍ଚନ ଓ ମଧୁକର । ସମସ୍ତେ ମହାକାଞ୍ଚନଙ୍କୁ ଆଭୂମି ପ୍ରଣାମ କରି କହିଲେ, - ଆପଣ ମହାଧାର୍ମିକ ମହାପୁରୁଷ । ମହାକାଞ୍ଚନ ଅସ୍ଥିର ଓ ବିବ୍ରତ ହୋଇ ମଧୁକରକୁ କହିଲେ - ବନ୍ଧୁ, ଏକି ନୂତନ ବିପଦ ?

ମଧୁକର ନିରୁପାୟ ଭଙ୍ଗିରେ କହିଲେ, - ଏମାନଙ୍କୁ କିଏ ବୁଝାଇବ । ଯୋଗ, ସାଧନା, ସନ୍ୟାସ, ତତ୍ତ୍ୱଜ୍ଞାନ ଏ ସବୁର ସଂସ୍କାର ଏମାନଙ୍କ ମନରେ ଏତେ ବଦ୍ଧମୂଳ ଯେ ଏମାନେ କଦାପି ବିଶ୍ୱାସ କରିବେ ନାହିଁ ଯେ ଅତି ସାଧାରଣ ଲୋକ ତା'ର ଅତି ସାଧାରଣ କର୍ତ୍ତବ୍ୟ ନିଷ୍ଠାର ସହିତ ପାଳନ କରି ଯେଉଁ ମହାପୁଣ୍ୟ ଅର୍ଜନ କରେ ତାହା ଅନେକ ସମୟରେ ଜ୍ଞାନୀ, ଯୋଗୀ, ସନ୍ୟାସୀମାନଙ୍କ ଠାରୁ ଅନେକ ଅଧିକ । କେତେଗୁଡ଼ିଏ ଶବ୍ଦର ମୋହରେ ଲୋକେ ଏତେ ମୋହାବିଷ୍ଟ ଯେ ସାରତତ୍ତ୍ୱ ପ୍ରତି କାହାରି ଲକ୍ଷ ନାହିଁ ।

ତଥାପି ମହାକାଞ୍ଚନ ପ୍ରାୟ ବାଧ ହୋଇ ପଲ୍ଲୀବାସୀମାନଙ୍କୁ କହିଲେ - ଆପଣମାନେ ଏ କ'ଣ କରୁଛନ୍ତି ! ଏ ଅଭିନନ୍ଦନ, ଏ ଭକ୍ତି ମୋର ପ୍ରାପ୍ୟ ନୁହେଁ...

ପଲ୍ଲୀବାସୀମାନେ ଭାବିଲେ ଏହା ମହାକାଞ୍ଚନଙ୍କ ସାଧୁଜନୋଚିତ ବିନୟ । ବିନୟବଶତଃ ସେ ନିଜେ ଚମ୍ପାର ଉଦ୍ଧାର ନକରି ମହାସାର ଦ୍ୱାରା କରାଇଲେ । ନହେଲେ ମୁର୍ଖ ମହାସାରର କି ଶକ୍ତି ଅଛି ଯେ ଅଲୌକିକ କର୍ମ କରିବା ଲାଗି । ମହାକାଞ୍ଚନ ନିଜେ ଯଦି ମହାସାରର ହାତ ଧରି ନଥାନ୍ତେ, ନିଜେ ଯଦି ସେ ଆଦେଶ ମହାସାରକୁ ନକୁହାଇ ଥାନ୍ତେ, ତେବେ ମହାସାର ଦ୍ୱାରା ଏହା କେବେ ହେଁ ସମ୍ଭବ ହୋଇନଥାନ୍ତା । ମହାକାଞ୍ଚନ ବିନୟ କରୁଛନ୍ତି ଭାବି ପଲ୍ଲୀବାସୀମାନେ ଅଧିକ ମୁଗ୍ଧ ହୋଇ ତାଙ୍କର ଜୟଗାନ କରିବାକୁ ଲାଗିଲେ ।

ମହାକାଞ୍ଚନ ଆଉ କିଛି ଉପାୟ ନପାଇ ଅସହାୟ ଭାବରେ ଭଗବାନଙ୍କୁ ଡାକିବାକୁ ଲାଗିଲେ । ମହାକାଞ୍ଚନଙ୍କୁ ଧ୍ୟାନ କରିବାର ଦେଖି ପଲ୍ଲୀବାସୀମାନେ ନୀରବ ହେଲେ ଏବଂ କିଛିକ୍ଷଣ ପରେ ସ୍ୱ ସ୍ୱ ଗୃହକୁ ପ୍ରତ୍ୟାବର୍ତ୍ତନ କଲେ । ସେମାନଙ୍କ ସହିତ ଚମ୍ପା ଓ ଚମ୍ପାର ମା' ମଧ ଘରକୁ ଫେରିଲେ ।

ମହାକାଞ୍ଚନ ପ୍ରାର୍ଥନା ଶେଷ କରି ଉଠି ମଧୁକରଙ୍କ କାନ୍ଧରେ ହାତ ରଖି କହିଲେ - ବନ୍ଧୁ, ମୋ ଜୀବନରେ ଏହା ଚରମ ବ୍ୟର୍ଥତା । ଏହା ଯେପରି ପରର ଧନ ଅପହରଣ କରି ନିଜର ସୁଖ ଅର୍ଜନ କରିବା । କିନ୍ତୁ ଏ ଧନ ଯାହାର ସେ ତ ନିର୍ବିକାର । ମୁଁ ଆଉ ସୁଖିପଲ୍ଲୀରେ ରହିବି ନାହିଁ । ସେଇ ଯୁବକ ମୋତେ ଯେଉଁ ପଥର ସଙ୍କେତ ଦେଇ ଯାଇଅଛନ୍ତି ସେଇ ପଥରେ ଯିବି । କିନ୍ତୁ ଯିବା ପୂର୍ବରୁ... ଥରେ... କେବଳ ଚକ୍ଷୁର ତୃପ୍ତି...

ବିନୀତା ଲାଗି ମହାକାଞ୍ଚନଙ୍କର ଅନୁଚ୍ଚାରିତ ନିଗୂଢ଼ ପ୍ରେମ କଥା ଜାଣିଥିଲେ ମଧୁକର । ସାନ୍ତ୍ୱନାଦାନର ଭଙ୍ଗିରେ ସେ ତାଙ୍କର ହସ୍ତଧାରଣ କରି ତାଙ୍କୁ ସାଙ୍ଗରେ ଧରି ନୀରବରେ ସେ ସ୍ଥାନ ତ୍ୟାଗ କଲେ ।

ସେ ଦିନ ଅନେକ ରାତି ପର୍ଯ୍ୟନ୍ତ ପଲ୍ଲୀବାସୀମାନେ ଆନନ୍ଦରେ ମାତି ରହିଲେ । ସେମାନଙ୍କ ମୁହଁରେ ନାନା ସମ୍ଭବ ଅସମ୍ଭବ ନାନା ଅଲୌକିକ କଥା ପ୍ରକାଶ ପାଇବାକୁ ଲାଗିଲା । କିଏ କହିଲା ସେ ଥରେ ମହାକାଞ୍ଚନଙ୍କୁ ମହାନଦୀର ବନ୍ୟା ବେଳେ ପାଣି ଉପରେ ଚାଲିଯିବାର ସ୍ୱଚକ୍ଷୁରେ ଦେଖି ଅଛନ୍ତି । କିଏ ବା କହିଲା ମହାକାଞ୍ଚନ ଥରେ ସଶରୀରରେ ସ୍ୱର୍ଗକୁ ଯାଇଥିଲେ ।

# ୧୮

ମହାସାର ଏତେକ୍ଷଣ ବୃକ୍ଷାନ୍ତରାଳରେ ଲୁଚିଥିଲେ । କିପରି କ'ଣ ଘଟିଲା ସେ ସମ୍ୟକ୍ ନ ବୁଝି ପାରିଲେ ମଧ ଚମ୍ପା ତା'ର ପାଦ ଫେରି ପାଇବାରେ ସେ ଅତ୍ୟନ୍ତ ଆନନ୍ଦିତ । ବୃକ୍ଷାନ୍ତରାଳରେ ରହି ସେ ସମସ୍ତଙ୍କର ଆନନ୍ଦ ଉପଭୋଗ କରୁଥିଲେ । ସମସ୍ତେ ଚାଲି ଯାଆନ୍ତେ ସେ ଧୀରେ ବାହାରି ଘରକୁ ଫେରି ଯିବାକୁ ବସିଲେ । ଇରା ଏ ଆନନ୍ଦର ଦୃଶ୍ୟ ଦେଖି ପାରିଲା ନାହିଁ ବୋଲି ତାଙ୍କ ମନରେ ଦୁଃଖ ହେଲା । ଆଜି ଯେ ଏପରି ଅଭାବନୀୟ କାଣ୍ଡ ଘଟିବ ତାହା କିଏ ଜାଣିଥିଲା ! ଇରା ତ ସବୁ ଆଶା ତ୍ୟାଗ କରିଥିଲା ଏବଂ ମହାସାରକୁ କେବଳ ପଠାଇଥିଲା ମହାଶାଳ ବିଫଳ ହେଲେ ଚମ୍ପା ଓ ଚମ୍ପାର ମା'କୁ ତତ୍‌କ୍ଷଣାତ୍ ସାଙ୍ଗରେ ଧରି ନିଜ ଘରକୁ ନେଇ ଆସିବାକୁ !

ଏହିପରି ଚିନ୍ତା କରୁ କରୁ ତାଙ୍କର ହଠାତ୍ ସ୍ମରଣ ହେଲା, ଆଜି ଅନେକ ପଲ୍ଲୀର ଲୋକେ ଏଠାକୁ ଆସିଥିଲେ । ଫେରିଯିବା ସମୟରେ ସେମାନଙ୍କ ମଧ୍ୟରୁ ଅନେକ ତାଙ୍କର

ବିପଣିକୁ ଯିବେ ଏବଂ କେହି କିଛି କ୍ରୟ କରିବାକୁ ମଧ ଇଚ୍ଛା କରିପାରନ୍ତି । ସେ ଉପସ୍ଥିତ ନଥିବା ହେତୁ ତାଙ୍କର କ୍ଷତି ହେବ । ସେ ତରତର ହୋଇ ଯିବାକୁ ବାହାରିଲେ । ଯାଉଁ ଯାଉଁ ଚମ୍ପାର ଆସାବାଡ଼ି ଦୁଇଟି ତାଙ୍କର ଦୃଷ୍ଟିରେ ପଡ଼ିଲା । ମହାସାରଙ୍କର ସ୍ୱଭାବ, ଯେତେ ସାମାନ୍ୟ ହେଉନା କାହିଁକି କୌଣସି ପଦାର୍ଥକୁ ସେ ଅବଜ୍ଞା କରନ୍ତି ନାହିଁ । ସାମାନ୍ୟ ସୂତାଖିଏ ସୁଦ୍ଧା ପଡ଼ିଥିବାର ଦେଖିଲେ ସେ ଗୋଟାଇ ନେଇ ସଯତ୍ନରେ ରଖି ଦିଅନ୍ତି । ଭବିଷ୍ୟତରେ ଆବଶ୍ୟକ ହୋଇପାରେ ଭାବି । ସେ ଆସାବାଡ଼ି ଦୁଇଟି ମଧ ଉଠାଇ ନେଇ ଚାଲିଗଲେ ।

ରାସ୍ତାରେ ଯାଉଁ ଯାଉଁ ଧର୍ମପାଳଙ୍କ ସହିତ ସାକ୍ଷାତ୍ ହେଲା । ଧର୍ମପାଳ ଅଳ୍ପକ୍ଷଣ ପୂର୍ବେ ବ୍ରଜଗୁରୁଙ୍କ ଠାରୁ ଆଦେଶ ନେଇ ପ୍ରତ୍ୟାବର୍ତ୍ତନ କରି ଭିକ୍ଷୁମାନଙ୍କ ଠାରୁ ସବୁ ଶୁଣିଛନ୍ତି । ବଜ୍ରଗୁରୁ ତାଙ୍କୁ ନିର୍ଦ୍ଦେଶ ଦେଇଥିଲେ, ସୋମଦତ୍ତର କୌଣସି ପୁତ୍ର ଯେପରି ଚମ୍ପାକୁ ଆଦେଶ ଦେଇ ନପାରନ୍ତି ତାହା ପାଇଁ ଚମ୍ପାକୁ ସଂଘ ମଧରେ ସେ ଆସିବା ପର୍ଯ୍ୟନ୍ତ ଆବଦ୍ଧ ରଖିବାକୁ । ଇତି ମଧରେ ସବୁ ଶେଷ ହୋଇଯାଇଥିବାର ଦେଖି ସେ ଦୁଃଖିତ ହେଲେ । ସେ ଆଶା କରିଥିଲେ, ବଜ୍ରଗୁରୁଙ୍କ କୃପାରୁ ଯଦି ଚମ୍ପା ବିହାର ପ୍ରାଙ୍ଗଣରେ ପାଦ ଫେରି ପାଏ ତେବେ ତାଙ୍କର ସଂଘର ମହିମା ବଢ଼ିବ । ସେଥିରେ ବିଫଳ ହୋଇ ସେ ଚମ୍ପାର ଆସାବାଡ଼ି ଦୁଇଟି ଆଣିବାକୁ ଯାଉଥିଲେ । ଏହି ଆସାବାଡ଼ି ଦୁଇଟି ସେ ସଂଘରେ ରଖି ପ୍ରମାଣ କରିବେ ଯେ ଚମ୍ପା ଯେଉଁ ବାଳକ ମୂର୍ତ୍ତି ଦେଖିଥିଲା ତାହା ତଥାଗତ ବଜ୍ରସତ୍ତ୍ୱଙ୍କର । ଧର୍ମପାଳ ବାଡ଼ି ମାଗିବାରୁ ମହାସାର ଆନନ୍ଦରେ ତାଙ୍କୁ ଦେଇ ଘରକୁ ଗଲେ ।

ଇତିମଧରେ ବିନୀତା ଯଥା ସମୟରେ ସମ୍ବାଦଟି ପାଇଛନ୍ତି । ଏହାର ସମୁଦାୟ ସତ୍ୟାସତ୍ୟ ସମ୍ୟକ୍ ବୁଝି ଆସିବା ପାଇଁ ସେ ଚମ୍ପା ଘରକୁ ଜଣେ ପରିଚାରିକାକୁ ପଠାଇଲେ । ପରିଚାରିକା ଫେରି ଘଟଣାର ବିଶଦ ବିବରଣ ଦେଇ କହିଲା, ଚମ୍ପା ଦୌଡ଼ୁଥିବାର ସେ ସ୍ୱଚକ୍ଷୁରେ ଦେଖିଆସିଛି ।

ସମସ୍ତ ଶୁଣି ବିନୀତା ଭାବିଲେ ମହାକାଞ୍ଚନ ତାଙ୍କ ସହିତ ଛଳନା କଲେ - କାରଣ ସେ ଗୁହ୍ୟସମାଜର ବୃଦ୍ଧି ଇଚ୍ଛା କରନ୍ତି ନାହିଁ । ତେଣୁ ସେ ନିଜେ ବିନୀତାଙ୍କ ସମାଜରେ ଏ ଅଲୌକିକ କର୍ମ ନକରି ଅନ୍ୟତ୍ର ଅନ୍ୟ ଦ୍ୱାରା କରାଇଲେ । ବିନୀତା ବ୍ୟଥିତା ଓ କ୍ରୁଦ୍ଧା ହୋଇ ସଂକଳ୍ପ କଲେ, ଯେକୌଣସି ଉପାୟରେ ତାଙ୍କର ନୂତନ ସମାଜକୁ ପ୍ରତିଷ୍ଠିତ କରାଇବେ । ସେହି ଉଦ୍ଦେଶ୍ୟରେ ସେ ମଧ ଆସାବାଡ଼ି ଦୁଇଟିର ସନ୍ଧାନ ନେଲେ ଏବଂ ଧର୍ମପାଳଙ୍କ ନିକଟରେ ସେ ଦୁଇଟି ଥିବାର ଜାଣିପାରି ତାଙ୍କ ନିକଟକୁ ଗୋଟିଏ ଦୀର୍ଘ ପତ୍ର ପ୍ରେରଣ କଲେ । ବହୁତ ପ୍ରମାଣ ଦେଖାଇ ସେ ଯାହା ପ୍ରତିପନ୍ନ କରିବାକୁ ଚାହିଁଲେ ତା'ଚମ୍ପାକୁ ଯେ କେବଳ ଏହି ଯେ ଦର୍ଶନ ଦେଇଥିଲେ ସେ ସ୍ୱୟଂ ଭଗବାନ ତଥାଗତ

ଗ୍ରାହକ ,କାରଣ ଚମ୍ପା ଓ ଚମ୍ପାର ମା' ତାଙ୍କରି ଅନ୍ନରେ ପ୍ରତିପାଳିତା । ଅତଏବ ସେ ଆସାବାଡ଼ି ଦୁଇଟି ତାଙ୍କର ମନ୍ଦିରରେ ସ୍ଥାନ ପାଇବା ଉଚିତ ।

ଧର୍ମପାଳ ଏହାର ଉତ୍ତରରେ ଗୋଟିଏ ଦୀର୍ଘ ପତ୍ରରେ ଜଣାଇଲେ, ଚମ୍ପା ଓ ଚମ୍ପାର ମା' ତାଙ୍କ ସଂଘର ଆର୍ଯ୍ୟାଣି, ଚମ୍ପାକୁ ଯେଉଁ ମୂର୍ତ୍ତି ଦର୍ଶନ ଦେଇଥିଲେ ସେ ତଥାଗତ ବଜ୍ରସତ୍ତ୍ୱ, ସେ (ଧର୍ମପାଳ) ପ୍ରଥମେ ଘଟଣାଟି ଶୁଣି ବଜ୍ରଗୁରୁଙ୍କୁ ଜଣାଇଥିଲେ ଏବଂ ବଜ୍ରଗୁରୁଙ୍କ କୃପାରୁ ହିଁ ଚମ୍ପା ତା'ର ପାଦ ଫେରି ପାଇଛି । ଅତଏବ ସେ ଯଷ୍ଟି ଦୁଇଟିରେ ତାଙ୍କର ସଂଘର ହିଁ ଅଧିକାର ଅଛି ।

ବିନୀତା ଉତ୍‌କ୍ଷିପ୍ତା ହୋଇ ଉଠିଲେ । ସେ ମନସ୍ଥ କଲେ ଧର୍ମପାଳ ବାଡ଼ି ଦୁଇଟି ନେଇ ସନ୍ତୁଷ୍ଟ ଥାଆନ୍ତୁ, ବିନୀତା ଚମ୍ପାକୁ ନିଜର ସମାଜଭୁକ୍ତା କରିବେ । ଆଶୈଶବ ବିନୀତାଙ୍କ ସ୍ୱଭାବ ଏହିପରି । ତାଙ୍କର ସାମାନ୍ୟ ଇଚ୍ଛା ମଧ୍ୟ ବାଧା ପ୍ରାପ୍ତ ହେଲେ ବହୁ ଗୁଣ ବୃଦ୍ଧି ପାଇଥାଏ । ସେ କିଛିକ୍ଷଣ ଚିନ୍ତା କରି ଜଣେ ପରିଚାରିକା ହସ୍ତରେ କେତୋଟି ସ୍ୱର୍ଣ୍ଣ ମୁଦ୍ରା ଓ ତତ୍‌ସହ ବହୁମୂଲ୍ୟ ବସ୍ତ୍ର ଚମ୍ପାକୁ ଉପହାରସ୍ୱରୂପ ପଠାଇ ଆଶୀର୍ବାଦ ଜଣାଇଲେ ।

## ୧୯

ଚମ୍ପା ଘରକୁ ଫେରିବା ମାତ୍ରକେ ଚମ୍ପା ମୁହଁରୁ ଏ ଅଲୌକିକ ବୃତ୍ତାନ୍ତ ଶୁଣିବାକୁ ପଲ୍ଲୀନାରୀମାନେ ରୁଣ୍ଡ ହେଲେ । ଚମ୍ପା ବହୁ ବାର ଆଦ୍ୟୋପାନ୍ତ ସମସ୍ତ ଘଟଣାଟି କହିଲା ଏବଂ ପ୍ରମାଣ ସ୍ୱରୂପ ଦୌଡ଼ି ଦୌଡ଼ି ତା'ର ପାଦ ଦୁଇଟି ଅବଶ ହୋଇ ପଡ଼ିଲା । ପଲ୍ଲୀନାରୀମାନେ ତାକୁ ମହା ଭାଗ୍ୟବତୀ ବୋଲି ଆଶୀର୍ବାଦ କରି ମହାକାଞ୍ଚନଙ୍କ ଉଦ୍ଦେଶ୍ୟରେ ଭକ୍ତିବିନମ୍ର ପ୍ରଣାମ କରି ଗୋଟି ଗୋଟି ହୋଇ ବିଦାୟ ନେଲେ । ଅନେକ ମଧ୍ୟ ନାନାଦି ଉପହାର ଦେଲେ । ଚମ୍ପା ଏତେ ପଦାର୍ଥ ଜୀବନରେ ଦେଖି ନଥିଲା । ସେ ସବୁ ପାଇ ଆନନ୍ଦରେ ତା'ର ଛାତି ଫୁଲି ଉଠିଲା ।

ସମସ୍ତ ଦିନ ଏହିପରି ଉତ୍ତେଜନା ମଧ୍ୟରେ କଟିଗଲା । କ୍ରମେ ରାତ୍ରି ଆଗତ ହୁଅନ୍ତେ ଚମ୍ପା ଖାଇ ସାରି ତା'ର ମଧୁକକା ପାଖରେ ବସି ନାଟକ ଶୁଣିବାକୁ ଇଚ୍ଛା କଲା । ଚମ୍ପାର ମା' ସେତେବେଳକୁ ଶୋଇ ସାରିଲେଣି । ମଧୁକର ବୁଝିଲେ ଚମ୍ପା ତାଙ୍କର ପ୍ରେମର କବିତା ଦୃଶ୍ୟଗୁଡ଼ିକ ଶୁଣିବାକୁ ଚାହେଁ । ମଧୁକର ତାଙ୍କର କାଞ୍ଚନକୁମାରୀ ନାଟକ ପଢ଼ି ଶୁଣାଇବାକୁ ଲାଗିଲେ । ଚମ୍ପା ମନ ଦେଇ ଶୁଣିବାକୁ ଲାଗିଲା । କିନ୍ତୁ ମଧୁକର ଲକ୍ଷ୍ୟ କଲେ ଦେଖି ପାରନ୍ତେ ଚମ୍ପାର ମନ କାହାର ଆଗମନ ପ୍ରତୀକ୍ଷାରେ ଯେପରି ଚଞ୍ଚଳ । ବିଦେହର ରାଜକୁମାର ଯେତେବେଳେ କାଞ୍ଚନକୁମାରୀକୁ ଗୋପନରେ ସାକ୍ଷାତ କରିବାକୁ ବହୁ ବିପଦ ମଧ୍ୟରେ ଆସୁଛନ୍ତି ସେତେବେଳେ ଚମ୍ପା

ହଠାତ୍ ଉଠି ପଡ଼ି କାନ ଡେରି କ'ଣ ଯେପରି ଶୁଣିବାକୁ ପାଇ ମଧୁକରଙ୍କ କାନରେ କିଛି କହିଲା ।

ମଧୁକର ହସି ଅନ୍ୟତ୍ର ଚାଲିଗଲେ । ଚମ୍ପା ନିଃଶବ୍ଦ ପଦସଞ୍ଚାରେ ଗବାକ୍ଷ ନିକଟକୁ ଆସି ଧୀରେ ଡାକିଲା - ଚନ୍ଦ୍ର...

- ଚମ୍ପା ... ଚନ୍ଦ୍ର ଗଦ୍‌ଗଦ କଣ୍ଠରେ ଡାକିଲା ।

- ପ୍ରିୟତମ...

- ପ୍ରିୟେ...

ମନୁଷ୍ୟ ସୃଷ୍ଟି ହେବା ଦିନରୁ ଯୁବକ-ଯୁବତୀ ମିଳନର ଆନନ୍ଦରେ ଏହିପରି କେତେ ଅନାବଶ୍ୟକ ତଥାପି ଆବଶ୍ୟକ କଥା କହି ପରସ୍ପରର ଆନନ୍ଦବର୍ଦ୍ଧନ କରି ଆସିଅଛନ୍ତି । ସେ ସବୁର ପୁନରାବୃତ୍ତି କରି ଲାଭ ନାହିଁ । ଯେଉଁ ଶକ୍ତି ପଙ୍ଗୁକୁ ଗିରି ଲଙ୍ଘନ କରାଏ ସେ ହୁଏତ ଭଗବାନ, କିନ୍ତୁ ମୂକ ଯୁବକ-ଯୁବତୀଙ୍କୁ ଯେଉଁ ଶକ୍ତି ବାଚାଳ କରାଏ ତାହା ଏହି ଶକ୍ତି -ଯାହା ଆଜି ରାତ୍ରିରେ ଏଇଠି ପ୍ରକାଶିତ ! ଚମ୍ପାର ସ୍ୱପ୍ନ ଆଜି ଭଗବତ୍ କୃପାରୁ ଆଶ୍ଚର୍ଯ୍ୟ ସଫଳ ଓ ଅବିଶ୍ୱାସ୍ୟ ଭାବରେ ସଫଳ ହୋଇଛି । ଆନନ୍ଦରେ ଅଶ୍ରୁ ମାର୍ଜନା କରୁ କରୁ ସେ କେତେ କ'ଣ କହିଗଲା ।

ଚନ୍ଦ୍ର ଗବାକ୍ଷକୁ ଦେଖାଇ କହିଲା - ଚମ୍ପା, ଦେ ଭାଙ୍ଗିଦେ ଏହାକୁ - ଭାଙ୍ଗିପକା !

ଏହି ଉନ୍ମାଦନା ସୃଷ୍ଟିର ନିୟମରେ ପୁରୁଷର ବୀଜ ବପନ ଆଦିକାଳରୁ ହିଁ ବୋଧହୁ ଏହାର ଏକ ମାତ୍ର ଲକ୍ଷ୍ୟ । ଏଇ ଶାରୀର ସୃଷ୍ଟିରେ ପୁରୁଷର ଯେଉଁ ସ୍ଥାନ, ମାନସ ସୃଷ୍ଟିରେ ହେଇ ସ୍ଥାନ ନାରୀର - ଏହିପରି ଚିନ୍ତା କରିଛନ୍ତି ଏ ଯୁଗର କୌଣସି ଶ୍ରେଷ୍ଠ ଚିନ୍ତକ । ଶାରୀର ସୃଷ୍ଟିରେ ଯେପରି ତା'ର ଧାରଣା ଓ ବିକାଶ ନିମିତ୍ତ ନିଜର ଧୈର୍ଯ୍ୟ ଓ ସମାଜର ଶୃଙ୍ଖଳାର ପ୍ରୟୋଜନ, ସେହିପରି ମାନସ ସୃଷ୍ଟିରେ ପୁରୁଷ ଚିତ୍ତରେ ନାରୀର ପ୍ରେରଣାର ବୀଜ ବପନ ନିମିତ୍ତ ମଧ ସେଇ ଶୃଙ୍ଖଳା ଲୋଡ଼ା । ସମସ୍ତଙ୍କ ଅଲକ୍ଷ୍ୟରେ ଚିରକାଳ କୌଣସି ବଡ଼ ଚିନ୍ତା ପଛରେ, ଆବିଷ୍କାର ପଛରେ, ଏପରି କି ବଡ଼ ତ୍ୟାଗ ପଛରେ ରହିଥାଏ କୌଣସି ନାରୀର ପ୍ରେରଣା । ଚମ୍ପା ଏତେ କଥା ଜାଣେନା, ତଥାପି ତା'ର ନାରୀସୁଲଭ ସହଜାତ ବୁଦ୍ଧିରେ ସେ ଜାଣିପାରେ - ଅବା ପ୍ରକୃତି ସ୍ୱୟଂ ତାକୁ କହେ ତା'ର ଅବ୍ୟକ୍ତ ଭାଷାରେ - ପୁରୁଷର ଏ କାମନାକୁ ଶୃଙ୍ଖଳିତ କରିବା ଦ୍ୱାରା ହିଁ ଏହି ଉଭୟମୁଖୀ ବୀଜବପନରେ ଚରମ କଲ୍ୟାଣ ଉଦ୍ଦେଶ୍ୟ ସାଧିତ ହେବ ।

ଚମ୍ପା ବାଧାଦେଇ କହିଲା - ଗବାକ୍ଷ ଭଙ୍ଗର ସମୟ ଆସି ନାହିଁ, ଚନ୍ଦ୍ର, ଆଉ ଟିକିଏ ଧୈର୍ଯ୍ୟଧର ।

- ତା ହେଲେ ତୁମର ହାତ ମୋ ହାତରେ ଦିଅ - ବଡ଼ ଅଧୀର ହୋଇ କହିଲା ଚନ୍ଦ୍ର ।

ଚମ୍ପା ଗବାକ୍ଷ ବାଟେ ଦୁଇଟି ହାତ ବଢ଼ାଇ ଦେଲା । ଚନ୍ଦ୍ର ସେ ସୁନ୍ଦର, ସୁଗୋଲ ସୁଗୌର ହାତ ଦୁଇଟି ଉପରେ ପାଗଳ ଭଳି ଚୁମ୍ବନ ପରେ ଚୁମ୍ବନ ଦେବାକୁ ଲାଗିଲା ।

ଚମ୍ପା ମଧ ପ୍ରାୟ ଧୈର୍ଯ୍ୟ ହରା, ତଥାପି ସେ ଅବଶେଷରେ ନିଜ ହାତକୁ ମୁକ୍ତ କରି ନେଇ ମଧୁର ହସି କହିଲା - ତୁମର ଧୈର୍ଯ୍ୟ ନାହିଁ ।

- ମୋର ସବୁ ଧୈର୍ଯ୍ୟ ତୁମେ କାଢ଼ି ନେଇଛ ...

ଏକଥାରେ ଚମ୍ପା ମୁହଁରେ ହଠାତ୍ ଗୋଟିଏ ଦୁଷ୍ଟାମି ହସ ଫୁଟି ଉଠିଲା । ସେ କହିଲା - ତା'ହେଲେ ତୁମେ ଯାଅ, ତୁମର ସିଏ ଅପେକ୍ଷା କରୁଥିବେ...

- ସେ ମୋର କିଏ ? କେହି ନୁହେଁ - କୁତ୍ସିତ, କଦାକାର । ତାକୁ ମୁଁ କଦାପି ବାହା ହେବି ନାହିଁ ।

ଚମ୍ପା କହିଥାଆନ୍ତା - କିନ୍ତୁ ମୁଁ ଯଦି ଭଲ ହେଇ ନ ଯାଇଥାନ୍ତି ? କିନ୍ତୁ ସେ ଆତ୍ମସଂଯରଣ କରି କହିଲା - ଅନ୍ୟାୟ କହୁଛ, ଚନ୍ଦ୍ର । ତା'ର ଦେହର ରଙ୍ଗ ଅବଶ୍ୟ କଳା, ଦାନ୍ତ ଉଚ୍ଚ ଏବଂ ମୁହଁରେ ବସନ୍ତର ଚିହ୍ନ ଅଛି, କିନ୍ତୁ ସେ କଦାକାର ନୁହେଁ । ତା' ଦେହର ଡଉଲଟି ଭଲ । ତା' ଛଡ଼ା ସେ ଭାରି ଭଲ ଝିଅ । ତାକୁ ମନୋନୀତ କରି ତୁମର ବାପା କିଛି ଭୁଲ କରି ନାହାନ୍ତି ।

- ତା'ହେଲେ ମୋର ବାପା ଯାଇ ତାକୁ...ଚନ୍ଦ୍ର ଗୋଟିଏ ଅସଂଯତ କଥା କହିବାକୁ ଯାଉଥିଲା । ନିଜକୁ ସମ୍ଭାଳି ନେଇ ସେ କରୁଣ ମିନତି କରି କହିଲା, ଚମ୍ପା ତୁମେ ଆଉ ମୋତେ କଷ୍ଟ ଦିଅ ନାହିଁ । ଆଜି ସକାଳେ ମନ୍ଦିରରେ ତୁମକୁ ଛିଡ଼ା ହେବାର ଦେଖିବା ବେଳଠୁ ମୁଁ ସବୁ ଧୈର୍ଯ୍ୟ ହରାଇଛି । ବର୍ତ୍ତମାନ ମୋତେ ପୃଥିବୀରେ କୌଣସି ଶକ୍ତି ବାଧା ଦେଇ ପାରିବ ନାହିଁ ।

ଚମ୍ପାର ସେ କଥା ହଠାତ୍ ଅତିସ୍ପଷ୍ଟ ଭାବେ ମନେ ପଡ଼ିଲା । ସେ କହିଲା - ଆଜି ସକାଳେ ଯେ କେମିତି କ'ଣ ହେଲା ମୁଁ କହିପାରୁ ନାହିଁ । ଦୌଡ଼ି ଦୌଡ଼ି ଯାଇ ମା' କୋଳରେ ଯେତେବେଳେ ପଡ଼ିଗଲି ସେତେବେଳେ ବୁଝିଲି ଯେ ଗୋଡ଼ ଫେରି ପାଇଛି !

- ଓଃ ! ତୁମେ ଯେତେବେଳେ ଦୌଡ଼ୁଥିଲ ସେତେବେଳେ ସ୍ୱର୍ଗ କନ୍ୟା ଭଳି ଦିଶୁଥିଲ ।

ଏହି ସମୟରେ ମଧୁକର ଆସି କହିଲେ - ଚମ୍ପା, ମା' ଡାକୁଛି ।

ଚମ୍ପା ଚନ୍ଦ୍ର ପାଖରୁ ବିଦାୟ ନେଇ ଶଯ୍ୟାକୁ ଯାଇ ଲୁହ ପୋଛୁ ପୋଛୁ ଶୋଇ ପଡ଼ିଲା ।

# ୨୦

ବିନୀତା ଦୁଇ ତିନି ଦିନ ବହୁମୂଲ୍ୟ ଉପହାର ଚମ୍ପା ନିକଟକୁ ପଠାଇବା ପରେ ଦିନେ ଚମ୍ପାକୁ ସମାଜକୁ ଡକାଇଲେ ।

ଚମ୍ପା ପଙ୍ଗୁ ଥିବା ସମୟରେ ବିନୀତା ତାହାକୁ ଥରେ ମାତ୍ର ଦେଖିଥିଲେ, ଗୋଡ଼ ଫେରି ପାଇବା ପରେ ଆଜି ପ୍ରଥମ ଥର ତାହାକୁ ଦେଖିଲେ । ଏହି ଅଳ୍ପ ଦିନ ମଧ୍ୟରେ ଚମ୍ପାର ରୂପ ଯେମିତି ଶହେ ଗୁଣ ବଢ଼ି ଯାଇଛି ! ଚମ୍ପାର ସେ ଭୁବନ ମୋହନ ରୂପ ଦେଖି ବିନୀତା ମୁଗ୍ଧ ହୋଇ ଚାହିଁ ରହିଲେ । କିନ୍ତୁ କ୍ରମେ ତାଙ୍କ ଦୃଷ୍ଟିରେ ଫୁଟି ଉଠିଲା ଏ କେଉଁ ଏକ ଜ୍ୱାଳା ! ସେ ନିଜ କଥା ସ୍ମରଣ କଲେ । ତାଙ୍କର ମଧ୍ୟ ଦିନେ ଏହିପରି ରୂପ ଥିଲା । ସେ ସୌନ୍ଦର୍ଯ୍ୟ ଆଜି ପର୍ଯ୍ୟୁଷିତ ପୁଷ୍ପ ପରି ମ୍ଳାନ । କାହିଁକି ? ସେ ଦିନେ ମନର ଆନନ୍ଦ ଓ ଆବେଗରେ ସେ ଫୁଲକୁ ତୋଳି ଦେଇଥିଲେ ତାଙ୍କର ଅନ୍ତରର ଦେବତାକୁ । କିନ୍ତୁ ସେ ପାଷାଣ ଦେବତା ସେ ଫୁଲ ଗ୍ରହଣ କଲେ ନାହିଁ । ସେ ଫୁଲ ଅନାଦରରେ ମଉଳି ଝଡ଼ି ପଡ଼ିଛି । ଆଜି ସେହିପରି ଆଉ ଗୋଟିଏ ଫୁଲ ଦେଖି ତାକୁ ଦଳି ଦେବାର ଇଚ୍ଛାରେ ସେ ଗୋଟିଏ ବିକୃତ ଆନନ୍ଦ ପାଇଲେ ।

ପ୍ରକାଶ୍ୟରେ ନିଜକୁ ସଂଯତ କରି ବିନୀତା ଚମ୍ପାକୁ ଆଦର କରି ନାନା କଥା ପଚାରିଲେ । ଚମ୍ପା ସାହସ ପାଇ ତା'ର ଜୀବନ ବୃତ୍ତାନ୍ତ କହିବାକୁ ଲାଗିଲା । କହୁ କହୁ ଯେତେବେଳେ ସେ ଚନ୍ଦ୍ର କଥା କହିଲା, ବିନୀତାଙ୍କର ଅଧରରେ ଗୋଟାଏ ମୃଦୁ, ଅତି କ୍ରୂର ହାସ୍ୟ ଦେଖାଗଲା ।

ବିନୀତା ସବୁ ଶୁଣି କହିଲେ - ଚମ୍ପା, ଯେଉଁ ବାଳକ ତୋତେ ଦେଖା ଦେଇଥିଲେ ସେ ତଥାଗତ ଗୁହ୍ୟକ । ତେଣୁ କହୁଥିଲି...

ଚମ୍ପାର ଏ କଥା ବିଶ୍ୱାସ ହେଲା ନାହିଁ । ସେ ସନ୍ଦେହ ଲୁଚାଇବା ପାଇଁ ହଠାତ୍ ତଳକୁ ମୁହଁ ପୋତିଲା । ବୁଦ୍ଧିମତୀ ବିନୀତା ସେ କଥା ବୁଝି ପାରି ତତ୍‌କ୍ଷଣାତ୍ ପ୍ରସଙ୍ଗାନ୍ତର କରି କହିଲେ, ମହାକାଞ୍ଚନ ଯୋଗୀ, କିନ୍ତୁ ସେ ଭୁଲ ମାର୍ଗରେ ଯାଉଅଛି । ତେଣୁ ତାଙ୍କର ମନରେ ପରିବର୍ତ୍ତନ ଆଣିବା ପାଇଁ ତଥାଗତ ଗୁହ୍ୟକ ମହାକାଞ୍ଚନଙ୍କୁ ପ୍ରଥମେ ଏ କାର୍ଯ୍ୟରେ ବିଫଳ କରି ପରେ ମହାସାରଙ୍କ ମଧ୍ୟ ଦେଇ ତାଙ୍କୁ ସଫଳ କରାଇଲେ - ଯେପରି କି ସେ ନିଜର ଭୁଲ ବୁଝି ପାରିବେ । ଏକଥାରେ ଚମ୍ପାର ସରଳ ମନର ସଂଶୟ ଦୂର ହେଲା । ସେ ବିନୀତାଙ୍କ ପଦ ସ୍ପର୍ଶ କରି ପ୍ରଣାମ କଲା ।

ବିନୀତା ତାକୁ ଆଶୀର୍ବାଦ କରି କହିଲେ - ଚମ୍ପା, ଯେଉଁ ତଥାଗତ ଗୁହ୍ୟକଙ୍କ କୃପାରେ ତୁ ଆଜି ତୋର ଗୋଡ଼ ଫେରି ପାଇଛୁ ତାଙ୍କୁ ହିଁ ତୋର ଜୀବନ ଉତ୍ସର୍ଗ କରିବା ଉଚିତ ।

ଚମ୍ପାର ଛାତିରୁ ଅତଡ଼ା ଖସି ପଡ଼ିଲା । ମୁହଁ ତା'ର କଳା ପଡ଼ିଗଲା । ସେ ମିନତି ଭରା କଣ୍ଠରେ କହିଲା - ଦେବୀ, ଚନ୍ଦ୍ର ତା' ହେଲେ ଆତ୍ମହତ୍ୟା କରିବ । ମୁଁ ମଧ ତାକୁ ନଦେଖି ବଞ୍ଚି ପାରିବି ନାହିଁ ।

ବିନୀତା କିଛିକ୍ଷଣ ନୀରବ ରହି ଅଧର ଦଂଶନ କରି କହିଲେ - ମୁଁ ତୋତେ ବାଧ କରୁ ନାହିଁ, ଚମ୍ପା ! ତୋର ଏ ପ୍ରେମ ଯଦି ତଥାଗତ ଗୁହ୍ୟକଙ୍କୁ ସମର୍ପଣ କରୁ ତା'ହେଲେ ତୋର ମଙ୍ଗଳ ହେବ ।

ସେ ଦିନ ବିନୀତା ଚମ୍ପାକୁ ଆଉ ବିଶେଷ କିଛି କହିଲେ ନାହିଁ । ପ୍ରତ୍ୟହ ଏହିପରି କିଛି ସମୟ ପାଇଁ ସେ ଚମ୍ପାକୁ ଡାକି ତା ସହିତ ନାନା କଥାବାର୍ତ୍ତା କରିବାକୁ ଲାଗିଲେ ଏବଂ ତଥାଗତ ଗୁହ୍ୟକଙ୍କ ମହିମା ବର୍ଣ୍ଣନା କରିବାକୁ ଲାଗିଲେ । ଇତି ମଧରେ ସେ ସୁଖପଲ୍ଲୀରେ ପ୍ରଚାର କରାଇଲେ ଚମ୍ପା ତଥାଗତ ଗୁହ୍ୟକଙ୍କ କୃପାରେ ତା'ର ପାଦ ଶକ୍ତି ଫେରି ପାଇଛି ଏବଂ ଚମ୍ପାର ଉଚିତ ତାଙ୍କୁହିଁ ତା'ର ଜୀବନ ସମର୍ପଣ କରିବା । ପଲ୍ଲୀବାସୀମାନେ ଆନନ୍ଦରେ ବିନୀତାଙ୍କର ଏ ମହତ୍ ଉଦ୍ଦେଶ୍ୟ ଅନୁମୋଦନ କଲେ ଏବଂ ଚମ୍ପାକୁ ନାନାପ୍ରକାରେ ବାଧ କରିବାକୁ ଲାଗିଲେ । ବିଶେଷତଃ ପଲ୍ଲୀର ଯୁବକମାନେ ଚମ୍ପାର ମା'କୁ ଏ ବିଷୟରେ ପ୍ରବର୍ତ୍ତାଇବାକୁ ଲାଗିଲେ !

ଇତିମଧରେ ଧର୍ମପାଳ ମଧ ଚମ୍ପାକୁ ଭିକ୍ଷୁଣୀ କରିବା ପାଇଁ ତାକୁ ପ୍ରତ୍ୟହ ସକାଳେ ବହୁ ସମୟ ବଜ୍ରଗୁରୁଙ୍କ ମହିମା ବର୍ଣ୍ଣନା କରିବାକୁ ଲାଗିଲେ । ପ୍ରତ୍ୟହ ଦ୍ୱିପ୍ରହର ସମୟରେ ସୋମଦତ୍ତ ଚମ୍ପାକୁ ନିଜ ଗୃହକୁ ଡକାଇ ବହୁ ଶାସ୍ତ୍ର ପ୍ରମାଣ ଦେଇ ବୁଝାଇବାକୁ ଲାଗିଲେ ଯେ ଚମ୍ପା ଯେଉଁ ବାଳକ ମୂର୍ତ୍ତି ଦେଖିଥିଲା ତାହା ଭଗବାନ ବିଷ୍ଣୁଙ୍କ ମୂର୍ତ୍ତି । ସୋମଦତ୍ତ ଉକ୍ତ ପରିତ୍ୟକ୍ତ ମନ୍ଦିରରେ ଭଗବାନ ବିଷ୍ଣୁଙ୍କ ଗୋଟିଏ ବିଗ୍ରହ ସ୍ଥାପନା କରାଇ ତାଙ୍କର ପୂଜାର୍ଚ୍ଚନାନଦି ପାଇଁ ଅନୁମତି ଓ କିଛି ସମ୍ପତ୍ତି ପାଇଁ ସୁଭଦ୍ରଙ୍କୁ ଗୋଟିଏ ଆବେଦନ ଜଣାଇଲେ । ଚମ୍ପାର ଅଧିକାଂଶ ସମୟ ଏହିପରି ନାନା ଧର୍ମ ଉପଦେଶରେ କଟିଲା । ବିନୀତା ଏ ସମସ୍ତ ଅବଗତ ହେଲେ ।

ଚାରି ପାଞ୍ଚ ଦିନ ପ୍ରତ୍ୟହ ଚମ୍ପା ବିନୀତାଙ୍କ ନିକଟକୁ ଆସିବା ପରେ ବିନୀତା ଦିନେ କହିଲେ - ଚମ୍ପା, ମୋର ଇଚ୍ଛା ତୁ କିଛି ଦିନ ମୋ ସମାଜରେ ରହ । ଅଳ୍ପ ଦିନ ପାଇଁ ଏଠାରେ ରହିଲେ ଚନ୍ଦ୍ର ନିଶ୍ଚୟ ଆପତ୍ତି କରିବ ନାହିଁ ।

ବିନୀତାଙ୍କର ବହୁମୂଲ୍ୟ ଉପହାର ଏବଂ ଆଦରରେ ଚମ୍ପା ଅତ୍ୟନ୍ତ କୃତଜ୍ଞ । ସେ ତେଣୁ ବିନୀତାଙ୍କୁ ମନା କରି ପାରିଲା ନାହିଁ । ବିଶେଷତଃ ଚନ୍ଦ୍ରର ପ୍ରେମକୁ ଅଧିକ ଘନୀଭୂତ କରିବା ପାଇଁ ସେ ଚନ୍ଦ୍ର ଠାରୁ ଅଳ୍ପ ଦିନ ପାଇଁ ଦୂରରେ ରହିବାକୁ ଚାହୁଁଥିଲା ।

ବିନୀତା ଚମ୍ପାକୁ ଅତି ଆଦରରେ ରଖିଲେ । ଏହିପରି କିଛିଦିନ ଗଲା ପରେ ଦିନେ କଥା ପ୍ରସଙ୍ଗରେ ବିନୀତା କହିଲେ - ଚମ୍ପା, ଦେଖ ମୁଁ ମୋର ଜୀବନ ତଥାଗତଙ୍କୁ ସମର୍ପଣ

କରିଛି ତୋହରି ବୟସରୁ । ପୁରୁଷମାନେ ସ୍ୱାର୍ଥପର, ହୃଦୟହୀନ । ବିବାହରେ ତେଣୁ କିଛି ସୁଖ ନାହିଁ । ବିବାହ କଲେ ପରେ ତୁ ଅନୁତାପ କରିବୁ ।

ଚମ୍ପା କହିଲା - ନା ଦେବୀ, ଚନ୍ଦ୍ର ସେପରି ନୁହେଁ । ତା'ଛଡ଼ା ମୁଁ ତାକୁ ପତି ରୂପେ ବରଣ କରି ସାରିଛି ।

ବିନୀତା କହିଲେ - ତଥାଗତ ଗୁହ୍ୟକଙ୍କୁ ତୁ ସ୍ୱାମୀ ରୂପେ ପାଇବୁ । ଚିରକାଳକୁ ତୋର ନା' ରହିବ । ତୁ ତା ଛାଡ଼ି ସାମାନ୍ୟ...

ଚମ୍ପା ବିନୀତାଙ୍କ ଗୋଡ଼ ଧରି ପକାଇ କହିଲା - ଦେବୀ, ମୁଁ ପାରିବି ନାହିଁ । ମୁଁ ସାମାନ୍ୟା ନାରୀ । ମୋର ସେ କ୍ଷମତା ନାହିଁ । ଏ ପାପିନୀ ପାଇଁ ଆପଣ ତାଙ୍କୁ ଜଣାଇବେ । ସେ ନିଶ୍ଚୟ କ୍ଷମା କରିବେ ।

ବିନୀତାଙ୍କ ଆଖି ଜଳି ଉଠିଲା । ସେ ବାରମ୍ବାର ଅଧର ଦଂଶନ କରିବାକୁ ଲାଗିଲେ । ଚମ୍ପା ତାଙ୍କୁ ଚାହିଁ ଭୟରେ ଥରିବାକୁ ଲାଗିଲା । ସେ ଲୁହ ପୋଛୁ ପୋଛୁ କହିଲା - ଦେବୀ, ମୋତେ ଏଠାରୁ ଚାଲିଯିବାକୁ ଅନୁମତି ଦିଅନ୍ତୁ । ମୋର ଏଠାରେ ମନ ଲାଗୁ ନାହିଁ ।

ବିନୀତା କହିଲେ - କେହି ତୋତେ ଏଠି ବାନ୍ଧି ରଖି ନାହିଁ, ଚମ୍ପା । ମୁଁ ତୋର ମଙ୍ଗଳ ପାଇଁ କେବଳ କହୁଥିଲି । ମୋ ଅନ୍ତେ ତୁ ହିଁ ଏ ସମାଜର ଅଧିକାରିଣୀ ହେବୁ । ଏ ସମସ୍ତ ସମ୍ପତ୍ତି ତୋର । ଗୋଟାଏ ଦରିଦ୍ର ନଗଣ୍ୟକୁ ବିବାହ କରି କି ଲାଭ ? ଏ ସବୁ ଚିନ୍ତା କରି ଦେଖ । ତା'ପରେ ତୋର ଯାହା ଇଚ୍ଛା କର ।

ଚମ୍ପା ତଳକୁ ମୁହଁ ପୋତି କିଛିକ୍ଷଣ ଚିନ୍ତା କଲା । ତା'ପରେ ମୁହଁ ଟେକି ସଶଂକିତ ଭାବରେ କହିଲା - ଦେବୀ -

ବିନୀତା ଆଶାନ୍ୱିତା ହୋଇ କହିଲେ - କହ କହ, ତୋର ଇଚ୍ଛା କ'ଣ ।

ଚମ୍ପା ସେହିପରି ନତଜାନୁ ରହି ଆପ୍ରାଣ ସାହସ ଭରି କହିଲା - ଦେବୀ, ମୁଁ ... ମୁଁ... ଘରକୁ ଯିବାକୁ ଚାହେଁ ।

ଥରକୁ ଥର ବ୍ୟର୍ଥ ହୋଇ ବିନୀତା ଉତ୍‌କ୍ଷିପ୍ତା ହୋଇ ଉଠିଲେ । ତାଙ୍କର ସଂକଳ୍ପ ଦୃଢ଼ତର ହେବାକୁ ଲାଗିଲା । ସେ ଉଠିଯାଇ ଅନ୍ୟତ୍ର କିଛିକ୍ଷଣ ଛିଡ଼ା ହୋଇ ଚିନ୍ତା କରିବାକୁ ଲାଗିଲେ । ଅନ୍ୟ ଗୋଟିଏ ଉପାୟ ତାଙ୍କର ମନକୁ ଆସିଲା । ସେ ଫେରି ଆସି ଚମ୍ପାକୁ ଉଠାଇ କହିଲେ - ଯା, ଏଠାକୁ ଆସିବାକୁ କିନ୍ତୁ ଭୁଲିବୁ ନାହିଁ । ଯେତେବେଳେ ଯାହା ଦରକାର ପଡୁଥିବ ମୋତେ ଜଣାଉଥିବୁ ।

ଚମ୍ପା ଆନନ୍ଦରେ ବିଦାୟ ନେଲା । ଚମ୍ପା ଚାଲିଯିବା ପରେ ବିନୀତା ମହାଶାଳଙ୍କୁ ଖଣ୍ଡିଏ ପତ୍ର ଲେଖିବାକୁ ବସିଲେ ।

# ୨୧

ମହାଶାଳ କଳିଙ୍ଗ ସେନାରେ ଯୋଗଦେବା ପୂର୍ବରୁ ସୁଖିପଲ୍ଲୀରେ ରହି ଯେଉଁ ସମୟରେ ଅସ୍ତ୍ର ଶିକ୍ଷା କରୁଥିଲେ ସେତେବେଳେ ସେ ଦିନେ ମହାନଦୀ କୂଳରେ ବିନୀତାଙ୍କୁ ଦେଖି ମୁଗ୍ଧ ହୋଇଥିଲେ । ସେତେବେଳେ ତାଙ୍କର ବୟସ ଥିଲା ମାତ୍ର ଅଠର ଏବଂ ବିନୀତାଙ୍କ ବୟସ ଥିଲା ବାର । ମହାଶାଳ ସେ ସମୟରେ ଜଣେ ଦରିଦ୍ର ବ୍ରାହ୍ମଣର ସନ୍ତାନ ମାତ୍ର । ବିନୀତା ପ୍ରାଦେଶିକଙ୍କ କନ୍ୟା, ରାଜଜେମା । ତଥାପି ଦିନେ ମହାଶାଳ ମହାନଦୀ କୂଳରେ ବିନୀତାଙ୍କ ସାକ୍ଷାତ୍‌କାମୀ ହୋଇ ତାଙ୍କ ସାନ୍ଧ୍ୟ ଭ୍ରମଣ ପଥରେ ତାଙ୍କ ସମ୍ମୁଖୀନ ହେଲେ । ବିନୀତା ତାଙ୍କୁ ଭ୍ରୂକ୍ଷେପ ନକରି ଚାଲିଗଲେ ।

ମହାଶାଳ ସେ ଅପମାନ ଜୀବନରେ ଭୁଲି ନାହାନ୍ତି । ପରେ ଯେତେବେଳେ ସେ ଜାଣିପାରିଲେ ବିନୀତା ମହାକାଞ୍ଚନଙ୍କୁ ପ୍ରେମ ଅର୍ପଣ କରିଛନ୍ତି, ସେତେବେଳେ ସେ ମହାକାଞ୍ଚନଙ୍କ ପ୍ରତି ଈର୍ଷାପରାୟଣ ହେଲେ । ମହାକାଞ୍ଚନ ବିନୀତାଙ୍କ ପ୍ରେମ ପ୍ରତ୍ୟାଖ୍ୟାନ କରି ଯୋଗ ଶିକ୍ଷା ପାଇଁ ଚାଲିଗଲେ । ଫଳରେ ମହାଶାଳ ପୁଣି ବିନୀତାଙ୍କ ପ୍ରତି ଆକୃଷ୍ଟ ହୋଇ ପଡ଼ିଲେ । ତାଙ୍କର ଲକ୍ଷ୍ୟ ହେଲା ନିଜ ବାହୁବଳରେ ସେ ନିଜର ଗୌରବ ବୃଦ୍ଧି କରି ବିନୀତାଙ୍କ ପ୍ରେମପ୍ରାର୍ଥୀ ହେବେ । ବିଗତ ବାର ବର୍ଷ ମଧ୍ୟରେ ଅନେକ ଘଟଣା ଘଟିଯାଇଛି । ମହାଶାଳ ଏତେ ଦିନ ବିନୀତାଙ୍କର କୌଣସି ସଂବାଦ ପାଇ ନଥିଲେ । ସୁଖିପଲ୍ଲୀ ଆସି ସେ ଯେତେବେଳେ ଦେଖିଲେ ଯେ ବିନୀତା ଭିକ୍ଷୁଣୀ ବ୍ରତ ଗ୍ରହଣ କରି ଅଛନ୍ତି ସେ ପୂର୍ବର ସମସ୍ତ ଆଶା ତ୍ୟାଗ କରିଥିଲେ । ଏହି ସମୟରେ ସେ ଚମ୍ପାର ଭଗବଦ୍ଦର୍ଶନ କଥା ଶୁଣିବାକୁ ପାଇଲେ । ଚମ୍ପାକୁ ଆଦେଶ ଦାନରେ ମହାକାଞ୍ଚନଙ୍କ ବ୍ୟର୍ଥତା ପରେ ତାଙ୍କର ପୁଣି ଆଶାର ସଞ୍ଚାର ହେଲା । ମହାଶାଳ ଭାବିଲେ ସେ ଯଦି ଚମ୍ପାକୁ ଆଦେଶ ଦିଅନ୍ତି ଏବଂ ଚମ୍ପା ଯଦି ତାଙ୍କର ଆଦେଶରେ ଗୋଡ଼ ଫେରି ପାଏ ତେବେ ବିନୀତା ତାଙ୍କ ପ୍ରତି ନିଶ୍ଚୟ ଆକୃଷ୍ଟ ହେବେ । କିନ୍ତୁ ସେ ଆଶା ମଧ୍ୟ ଅତି ହାସ୍ୟାସ୍ପଦ ଭାବେ ବିଫଳ ହେଲା । ମହାଶାଳ ତେଣୁ ସେହିଦିନ ରାଜଧାନୀ ସୁଖିପଲ୍ଲୀ ତ୍ୟାଗ କରି କଳିଙ୍ଗନଗର ଫେରିଯିବା ପାଇଁ ଆୟୋଜନ କରୁଥିଲେ । ଏହି ସମୟରେ ବିନୀତାଙ୍କ ପତ୍ର ପାଇ ତାଙ୍କର ଭଗ୍ନ ଆଶା ପୁଣି ଅଙ୍କୁରିତ ହେଲା ।

ମହାଶାଳ ଆସି ସମାନ ମନ୍ଦିରରେ ପ୍ରବେଶ କରନ୍ତେ ବିନୀତା ତାଙ୍କୁ ବହୁମୂଲ୍ୟ ଆସନରେ ବସାଇ କହିଲେ -ସୁଭଦ୍ର, ମୁଁ ଆପଣଙ୍କ କୀର୍ତ୍ତି କାହାଣୀ ଶୁଣିଛି । ଯେଉଁ ବୀର ନିଜ ବାହୁ ବଳରେ ଏତେ ଉଚ୍ଚପଦାରୂଢ଼ ହୋଇଛନ୍ତି ଓ ମହାରାଜଙ୍କ ପ୍ରିୟପାତ୍ର

ହୋଇଅଛନ୍ତି ତାଙ୍କୁ ସ୍ୱଚକ୍ଷୁରେ ଦେଖିବାକୁ ମୋର ଭାରି ଇଚ୍ଛା ଥିଲା । କିନ୍ତୁ ସାହସ କରି ଆପଣଙ୍କୁ ଏ ଇଚ୍ଛା ଜଣାଇ ପାରିନାହିଁ । ଆପଣ ଚାଲି ଯାଉଥିବାର ଜାଣି ମୋର ଅନ୍ତରର ଶ୍ରଦ୍ଧା ନିବେଦନ କରିବା ପାଇଁ ଆପଣଙ୍କୁ ଏଇଠି ଆହ୍ୱାନ କରିଛି, ମୋତେ କ୍ଷମା କରିବେ ।

ମହାଶାଳ ଅତ୍ୟନ୍ତ ଆହ୍ଲାଦିତ ହୋଇ ଗୋରଧଗିରି ଯୁଦ୍ଧ, ରାଜା ସାତକର୍ଣ୍ଣିଙ୍କ ସହିତ ଯୁଦ୍ଧ ଆଦିରେ ନିଜର ବୀରତ୍ୱ କଥା ସାଳଂକାରରେ କହିବାକୁ ଲାଗିଲେ ଏବଂ ଶେଷରେ କହିଲେ, ଦେବୀ ବିନୀତା, ମୁଁ ନିଜେ ତମ ନିକଟକୁ ଆସି ଥାଆନ୍ତି, କିନ୍ତୁ ...କିନ୍ତୁ...

ବିନୀତା ବୁଝି ପାରିଲେ ମହାଶାଳ କ'ଣ କହିବାକୁ ଚାହାନ୍ତି । ସେ ପ୍ରସଙ୍ଗ ଅନ୍ୟଦିଗରେ ଚାଳିତ କରିବା ପାଇଁ କହିଲେ, - ମୋର ଆଜି ମନେ ପଡ଼େ ଯୁବକ ମହାଶାଳଙ୍କ କଥା । ବିଶାଳ ଧନୁଃଶର ହାତରେ ସେ ଯେତେବେଳେ ସୁଖିପଲ୍ଲୀର ବନେ ବନାନ୍ତରେ ଭ୍ରମଣ କରୁଥିଲେ...

ମହାଶାଳ ଏଥର ସାହସ କରି କହିଲେ - କିନ୍ତୁ ସେଇଦିନୁ ମୁଁ ନିଃସଙ୍ଗ, ବିନୀତା ।

ବିନୀତା ଈଷଦ୍ ହସି କହିଲେ - ଏଥର ହୁଏତ ଆପଣ ନିଃସଙ୍ଗତା ଦୂର ହୋଇପାରେ ।

ମହାଶାଳ ବିନୀତାଙ୍କ ହାତଧରି କହିଲେ - ଦେବୀ... ବିନୀତା...

ବିନୀତା ମହାଶାଳଙ୍କ ବଜ୍ରମୁଷ୍ଟିରୁ ନିଜର ହାତ ମୁକୁଳାଇ ଟିକିଏ ଦୂରକୁ ଯାଇ କହିଲେ - ମୁଁ କହୁଥିଲି, ଆପଣଙ୍କ ପଦମର୍ଯ୍ୟାଦା, ଯଶଃ ଦେଖି କେଉଁ ନାରୀ ଆପଣଙ୍କୁ ପତି ରୂପେ ପାଇବାକୁ ଇଚ୍ଛା ନକରିବ । କିନ୍ତୁ ସେକଥା ପରେ । ଆପଣ ମୋର ଗୋଟିଏ ଉପକାର କରି ପାରିବେ ?

- ଆଦେଶ କର, ବିନୀତା ।

- ଆପଣ ସୁଖିପଲ୍ଲୀର ଶିବିର ପୁତ୍ର ଚନ୍ଦ୍ରକୁ ବୋଧହୁଏ ଜାଣନ୍ତି ?

- ହଁ, ଜାଣିଛି ।

- ସବଳ ସୁସ୍ଥ ଯୁବକ, କିନ୍ତୁ ଅତି ଦରିଦ୍ର । ତାକୁ ଆପଣ କଳିଙ୍ଗର ସେନାଦଳ ଭୁକ୍ତ କରି ନେବାରେ କିଛି ଆପତ୍ତି ଅଛି କି ?

- ନା, ଏତ ଅତି ସାମାନ୍ୟ କଥା । କିନ୍ତୁ ସେଥିରେ ଆପଣଙ୍କର ଲାଭ ?

- କିଛି ନାହିଁ । ତା'ର ପିତା ମୋତେ ଅନେକ ଥର ଅନୁରୋଧ କରିଛି । ଯଦି ମୋର ଦ୍ୱାରା କିଛି ଉପକାର ହୁଏ କ୍ଷତି କ'ଣ ?

ମହାଶାଳ କିଛିକ୍ଷଣ ଚିନ୍ତା କରି କହିଲେ - ବିନୀତା କ୍ଷମା କରିବ । ଏହା ମୋର ବିଶ୍ୱାସ ହେଉନାହିଁ । ସାମାନ୍ୟ କୃଷକ ରାଜ ଜେମାଙ୍କର ସାକ୍ଷାତ ପାଇବା ସମ୍ଭବ ନୁହେଁ । ଯଦି ବା ସାକ୍ଷାତ ପାଏ, ଏ ଅନୁରୋଧ କରିବା ପାଇଁ ତା'ର ସାହସ ହେବନାହିଁ । ସେ

ଯାହାହେଉ, ମୁଁ ଶୁଣିଛି ଚମ୍ପା ସହିତ ଚନ୍ଦ୍ରର ବିବାହ ଶୀଘ୍ର ହେବ । ଅତଏବ...

ବିନୀତା ବୁଝିଲେ ତାଙ୍କର ଇଚ୍ଛା ଲୁଚାଇ ଆଉ ଲାଭ ନାହିଁ । ସେ ହସି କହିଲେ, ଆପଣ ସମସ୍ତ ବିଷୟ ଜାଣନ୍ତି ନାହିଁ । ଚମ୍ପାର ତାହାକୁ ବିବାହ କରିବାର ଇଚ୍ଛା ଥିଲା, କିନ୍ତୁ ବର୍ତ୍ତମାନ ନାହିଁ । ଚମ୍ପା ବୁଝି ପାରିଛି, ତଥାଗତ ଗୁହ୍ୟକଙ୍କ କୃପାରୁ ସେ ତା'ର ପାଦ ଫେରି ପାଇଛି । ସେ କୃତଜ୍ଞତା ସ୍ୱରୂପ ତା'ର ଜୀବନ ତଥାଗତଙ୍କୁ ହିଁ ସମର୍ପଣ କରିବାକୁ ଚାହେଁ । ମୁଁ ମଧ୍ୟ ଚମ୍ପାକୁ ଏ ସମାଜର ଅଧିକାରିଣୀ କରି ନିଜେ ବିବାହ କରିବାକୁ ଚାହେଁ । କିନ୍ତୁ ଚନ୍ଦ୍ର ହିଁ ଆମ ଦୁଇଜଣଙ୍କ ପଥରେ କଣ୍ଟକ ହୋଇ ଠିଆ ହୋଇଛି । ତେଣୁ...

ମହାଶାଳ ହସି କହିଲେ - ବିନୀତା, ଏଇ ସାମାନ୍ୟ କଥା ପାଇଁ ଚିନ୍ତା କରନା । ମୁଁ ଚନ୍ଦ୍ରକୁ ଜଗତରୁ ନିଶ୍ଚିହ୍ନ କରିଦେବି । ଚନ୍ଦ୍ର ଜୀବିତ ଥିବା ଯାଏ ଚମ୍ପାର ମନ ପରିବର୍ତ୍ତନ ହେବ ନାହିଁ । ତୁମର ମହତ୍ ଉଦ୍ଦେଶ୍ୟରେ ସେ ଯଦି ଅନ୍ତରାୟ ହୁଏ ତେବେ ସେ ବଞ୍ଚି ରହି ପାରିବ ନାହିଁ ।

ବିନୀତା ଶଙ୍କିତା ହୋଇ କହିଲେ,- ନା, ନା, ମୁଁ ତାହା ଚାହେଁ ନା । ଆପଣ ତାକୁ ଏଠାରୁ ଦୂରକୁ ନେଇଗଲେ ହିଁ ମୋର ଉଦ୍ଦେଶ୍ୟ ପୂରଣ ହେବ । ଚନ୍ଦ୍ରର ପିତା ଭାରି କୃପଣ । ଚନ୍ଦ୍ର କିଛି ଉପାର୍ଜନ କରେ ନା । ତା'ର ପିତାକୁ ଯଦି ଏ ପ୍ରସ୍ତାବ ଦିଆଯାଏ, ତେବେ ସେ ଆନନ୍ଦରେ ରାଜି ହୋଇଯିବ । ଚନ୍ଦ୍ର ନିଜେ ହୁଏତ ଏଥିରେ ରାଜି ହୋଇ ନପାରେ । ସେଥିପାଇଁ ତାକୁ ବୁଝେଇବାକୁ ହେବ । ପ୍ରଲୋଭନ ଦେଖାଇବାକୁ ହେବ ।

ତୁମେ ନିଶ୍ଚିନ୍ତ ରୁହ ବିନୀତା । ଏ ଅତି ସାମାନ୍ୟ କଥା ।

ମହାଶାଳ ଗୃହକୁ ଫେରି ଶିବିଙ୍କୁ ଡକାଇଲେ । ଶିବି ମହାଶାଳଙ୍କ ପ୍ରସ୍ତାବରେ ଅତିଶୟ ଆନନ୍ଦିତ ହୋଇ ତତ୍କ୍ଷଣାତ ସମ୍ମତି ଦେଲା । ଚନ୍ଦ୍ର ଯେ ଏତେ ଗୌରବ ଓ ଧନ ଅର୍ଜନ କରିବାକୁ ଉପଯୁକ୍ତ , ଏହା ସେ ଆଶା କରି ନଥିଲା । ମହାଶାଳ ତା'ପରେ ଚନ୍ଦ୍ରକୁ ଡକାଇଲେ ଓ ନାନା ପ୍ରଲୋଭନ ଦେଖାଇଲେ, କିନ୍ତୁ ଚନ୍ଦ୍ର ଆଦୌ ସମ୍ମତ ହେଲାନାହିଁ । ମହାଶାଳ ଚନ୍ଦ୍ରକୁ ଭୟ ଦେଖାଇଲେ, ସେଥିରେ ମଧ୍ୟ ଚନ୍ଦ୍ର ଭୀତ ହେଲା ନାହିଁ ।

ମହାଶାଳ ବିନୀତାଙ୍କୁ ସମସ୍ତ ବିଷୟ ଜଣାଇବା ପାଇଁ ପରଦିନ ଆସିଲେ । ବିନୀତା ସମସ୍ତ ଶୁଣି ବିରକ୍ତ ହୋଇ କହିଲେ - ଆପଣ ବିଫଳ ହୋଇଅଛନ୍ତି । ଆପଣଙ୍କ ସହିତ ମୋର କୌଣସି ସମ୍ପର୍କ ନାହିଁ । ମୋର ଆଶା ମଧ୍ୟ ବିଫଳ ହୋଇଛି । ଭାବିଥିଲି...

ମହାଶାଳ ଦେଖିଲେ ଏଇ ସାମାନ୍ୟ କାରଣରୁ ତାଙ୍କର ବହୁ ଦିନର ଆଶା ବିଫଳ ହେବାକୁ ଯାଉଛି । ସେ ଉତ୍କ୍ଷିପ୍ତ ହୋଇ ଉଠିଲେ । ବିନୀତାକୁ ଚାହିଁ ସେ କହିଲେ - ବିନୀତା, ଯେକୌଣସି ଉପାୟରେ ତୁମର ଉଦ୍ଦେଶ୍ୟ ମୁଁ ପୂରଣ କରିବି ।

ମହାଶାଳ ଗୋଟିଏ କ୍ରୂର ସଂକଳ୍ପ ନେଇ ଫେରିଲେ । ବିନୀତା ସବୁ ବୁଝି ପାରିଥିଲେ ମଧ୍ୟ ବାଧା ଦେଲେ ନାହିଁ ।

# ୨୨

ସେହିଦିନ ସନ୍ଧ୍ୟା ସମୟରେ ଚମ୍ପା ବିନୀତାଙ୍କ ନିକଟକୁ ଆସିଲା । ତା'ର ମଳିନ ମୁଖ ଓ ଛଳଛଳ ଆଖି ଦେଖି ବିନୀତା ପଚାରିଲେ, କ'ଣ ହୋଇଛି ଚମ୍ପା ?

ଚମ୍ପା କାନ୍ଦି ପକାଇ କହିଲା - ଦେବୀ ! ଆପଣ କହିଥିଲେ, ଆବଶ୍ୟକ ହେଲେ ଆପଣଙ୍କର ସାହାଯ୍ୟ ଭିକ୍ଷା କରିବାକୁ । ମୋର ଆଜି ଚରମ ବିପଦ ଉପସ୍ଥିତ ।

ବିନୀତା ତାକୁ ସାନ୍ତ୍ୱନା ଦେଇ ତା'ର ଅଧୀରତାର କାରଣ ପଚାରିଲେ । ଚମ୍ପା ଲୁହ ପୋଛୁ ପୋଛୁ କହିଲା - ଚନ୍ଦ୍ରର ପିତା ଚନ୍ଦ୍ରକୁ ସୈନିକ ହେବା ପାଇଁ ବାଧ କରୁଛି । ଆପଣ ଦୟାକରି ଏହାର ପ୍ରତିକାର କରନ୍ତୁ ।

ବିନୀତାଙ୍କ ଭ୍ରୂଯୁଗଳ କୁଞ୍ଚିତ ହେଲା । ସେ କହିଲେ ଚନ୍ଦ୍ରର ଏ ତ ପରମ ସୌଭାଗ୍ୟ ! ଏଥିରେ ମୁଁ ତା'ର ମଙ୍ଗଳ ହିଁ ଦେଖୁଛି । ତା'ଛଡ଼ା ଚନ୍ଦ୍ର ସେଇ ଧନୀ କନ୍ୟାକୁ ବିବାହ କରିବା ଇଚ୍ଛାରେ ତୋତେ ଯେ ମିଥ୍ୟା କହୁନାହିଁ ତା ତୁ କିପରି ଜାଣିଲୁ ? ଏହିପରି ଛଳନା କରି ସେ ତୋତେ ତ୍ୟାଗ କରିବାକୁ ଚାହେଁ । ସବୁ ପୁରୁଷ ଏହିପରି ।

- ନା ନା, ଦେବୀ ! ମୁଁ ଜାଣେ ସେ ମିଛ କହୁ ନାହିଁ । ମୋର ଅନ୍ତର କହୁଛି ସେ ମତେ ଭଲ ପାଏ । ଦେବୀ, ଆପଣ ମୋ ହୃଦୟ କଥା ଜାଣିବେ କିପରି ? ଚନ୍ଦ୍ର ବିନା ମୁଁ ବଞ୍ଚିପାରିବି ନାହିଁ ।

ବିନୀତାଙ୍କ ଆଖି ଦିଓଟି ଜଳି ଉଠିଲା । ସେ କହିଲେ, ପ୍ରେମ ପାଇଁ କେହି କେବେ ହେଁ ମରିନାହିଁ, ଚମ୍ପା ।

ଚମ୍ପା ବିନୀତାଙ୍କ ପାଦତଳେ ପଡ଼ିଯାଇ କହିଲା, ଦେବୀ ! ଆମକୁ ରକ୍ଷା କରନ୍ତୁ । ମୋର ଏ ଜଗତରେ ଆଉ କେହି ନାହାନ୍ତି । ଆପଣ ଯଦି ଜାଣନ୍ତେ ଚନ୍ଦ୍ରଠାରୁ ଏ କଥା ଶୁଣିବା ବେଳୁ ମୁଁ  କି ଯନ୍ତ୍ରଣା ପାଉଛି...ଚନ୍ଦ୍ର ଯଦି ଚାଲିଯିବ, ତେବେ ତଥାଗତ ଗୁହ୍ୟକ ମୋତେ ଗୋଡ଼ ଫେରାଇ ଦେଲେ କାହିଁକି ?

ବିନୀତା ନିଜର ଗୋଡ଼ ଛଡ଼ାଇ ନେଇ କହିଲେ,- ନିର୍ବୋଧ, ଚନ୍ଦ୍ର ଅପେକ୍ଷା ବହୁଗୁଣରେ ଭଲ ସ୍ୱାମୀ ତୁ ପାଇବୁ ।

- ଦେବୀ ! ମୁଁ ଚନ୍ଦ୍ର ଛଡ଼ା ଆଉ କାହାକୁ ଚାହେଁନା । ସେ ଯେତେବେଳେ ମୋ' ହାତ ଦୁଇଟି ଧରି ହସି ହସି କଥା କୁହେ, ମୋ ନିକଟରେ ସ୍ୱର୍ଗସୁଖ ତୁଚ୍ଛ ହୋଇଯାଏ । ମୁଁ ଚାହେଁ ଯୁଗ ଯଗ ଧରି ସେ ଏହିପରି ମୋର ହାତ ଧରି ଥାଉ, ଯୁଗ ଯୁଗ ଧରି ମୁଁ ତା'ର ଚରଣରେ ସ୍ଥାନ ପାଏ ।

ଚମ୍ପା ଆଉ କହି ପାରିଲା ନାହିଁ, ତୁହାଇ ତୁହାଇ କାନ୍ଦିବାକୁ ଲାଗିଲା ।

ଚମ୍ପାର ଏ ମର୍ମସ୍ପର୍ଶୀ ଆବେଦନ ବିନୀତାଙ୍କ ସର୍ବ ଶରୀରରେ ଗୋଟାଏ ଶିହରଣ ଖେଳାଇ ଦେଲା । ଏହା ନାରୀର ସେଇ ଚିରନ୍ତନ ଆବେଦନ । ତାଙ୍କର ନିଜର ଏ ଆବେଦନ ବ୍ୟର୍ଥ ହୋଇଛି । ଏ ଆବେଦନ କ'ଣ କେବଳ ହୃଦୟର ଆବେଗ ଆଉ ଦେହକାମନାର ପ୍ରତୀକ ନା ସୃଷ୍ଟିର ଏକ ଦୁର୍ବାର ଆହ୍ୱାନ ? ନା ସବୁ ମିଶି ଗୋଟାଏ ଦୁର୍ଦ୍ଦମନୀୟ ଶକ୍ତିର ବହିଃପ୍ରକାଶ ?

ବିନୀତାଙ୍କ ଆଖିରୁ ଅଶ୍ରୁ ଝରିପଡ଼ିଲା । ସେ ଚମ୍ପାକୁ ତଳୁ ଉଠାଇ କୋଳକୁ ନେଇ କହିଲେ, ଚମ୍ପା ମୋତେ କ୍ଷମା କର । ମୁଁ ପାପିନୀ । ମୋର ବ୍ୟର୍ଥ ନାରୀତ୍ୱ ତୋ ଉପରେ ତା'ର ପ୍ରତିହିଂସା ସାଧୁଥିଲା !

ବିନୀତା ଆଉ କହି ପାରିଲେ ନାହିଁ । ତଳେ ବସି ପଡ଼ି ସେ ଦୁଇ ହାତରେ ମୁହଁ ଢାଙ୍କି କାନ୍ଦିବାକୁ ଲାଗିଲେ । ଅନେକକ୍ଷଣ ପରେ ସେ ମୁହଁ ଟେକି ଚମ୍ପାକୁ କହିଲେ,- ଚମ୍ପା, ତୁ ଭୟ କରନା । ଚନ୍ଦ୍ରକୁ ହିଁ ତୁ ବିବାହ କରିବୁ । ମୋତେ ଟିକିଏ ଭାବିବାକୁ ସମୟ ଦେ ।

ବିନୀତା ଭାବିଲେ ବର୍ତ୍ତମାନ ଉପାୟ କ'ଣ ? ଚମ୍ପାକୁ ନିଜ ସମାଜକୁ ଆଣିବା ପାଇଁ ଯେଉଁ ଜାଲ ସେ ବିସ୍ତାର କରି ଅଛନ୍ତି ତାକୁ ଗୋଟାଇ ଆଣିବେ କିପରି ? ମହାଶାଳଙ୍କୁ ହୁଏତ ଏ ନିଷ୍ଠୁର କର୍ମରୁ ସେ ନିବର୍ତ୍ତାଇ ପାରନ୍ତି, କିନ୍ତୁ ପଲ୍ଲୀବାସୀମାନେ ତାଙ୍କରି ପ୍ରରୋଚନାରେ ବର୍ତ୍ତମାନ ଚମ୍ପାକୁ ଭଗବାନଙ୍କ ଉଦ୍ଦେଶ୍ୟରେ ଉତ୍ସର୍ଗ କରିବାକୁ ବଦ୍ଧପରିକର । ସେ ଯଦି ନିଜ ସମାଜରେ ସ୍ଥାନ ନ ଦିଅନ୍ତି ତେବେ ସେମାନେ ଚମ୍ପାକୁ ଧର୍ମପାଳଙ୍କ ସଂଘରେ ଅର୍ପଣ କରିବେ । ଲୋକଙ୍କର ଅନ୍ଧ ବିଶ୍ୱାସ ଥରେ ଜାଗରିତ ହେଲେ ତାହା ଦିନକୁ ଦିନ କ୍ରୂର ଆକାର ଧାରଣ କରେ । ବିନୀତା ଏହା ଜାଣନ୍ତି । ସେ ନିଜେ ମଧ୍ୟ ପୂର୍ବରୁ କହି ବର୍ତ୍ତମାନ ବାରଣ କଲେ ଲୋକେ ନାନା ସନ୍ଦେହ କରିବେ ଏବଂ ସୋମଦତ୍ତ ଏକଥା ମହାଶାଳଙ୍କ ଦ୍ୱାରା ସମ୍ରାଟ ଖାରବେଳଙ୍କୁ ମଧ୍ୟ ଜଣାଇ ପାରନ୍ତି । ମହାଶାଳ ମଧ୍ୟ ବିଫଳ ହୋଇ ନାନା ଜଟିଳତା ସୃଷ୍ଟି କରିପାରନ୍ତି । ଚମ୍ପା ଯଦି କିଛି ବାଧା ନମାନି ଚନ୍ଦ୍ରକୁ ବିବାହ କରେ ତେବେ ଲୋକେ କ୍ଷିପ୍ତ ହୋଇ ସେମାନଙ୍କ ଉପରେ ନାନା ଅତ୍ୟାଚାର କରି ପାରନ୍ତି । ଏ ଜଟିଳ ପରିସ୍ଥିତିରୁ ଉଦ୍ଧାର ପାଇବା ପାଇଁ ତାଙ୍କୁ ଗୋଟିଏ ମାତ୍ର ଉପାୟ ଦିଶିଲା ।

ସେ ଦୀର୍ଘ ନିଃଶ୍ୱାସ ପକାଇ ପଚାରିଲେ,- ଚମ୍ପା, ଚନ୍ଦ୍ର ଘୋଡ଼ା ଚଢ଼ି ଜାଣେ ?

- ହଁ ।

- ତେବେ ତୁ ଯା, ତୋର ମଧୁକକାଙ୍କୁ ଏହିକ୍ଷଣି ଡାକି ଆଣ ।

ଚମ୍ପା ଯାଇ ସଙ୍ଗେ ସଙ୍ଗେ ମଧୁକକାକୁ ଡାକି ଆଣିଲା । ବିନୀତା ଓ ମଧୁକର

ବହୁକ୍ଷଣ ଧରି ଗୁପ୍ତ ପରାମର୍ଶ କଲେ । ବିନୀତା କହିଲେ, ଚନ୍ଦ୍ର ଓ ଚମ୍ପାକୁ ବହୁ ଦୂରକୁ ପଠାଇବାକୁ ହେବ । ସମଗ୍ର କଳିଙ୍ଗ ମଧ ସେମାନଙ୍କ ପକ୍ଷରେ ନିରାପଦ ନୁହଁ, କାରଣ ମହାଶାଳ ଭୀଷଣ କ୍ରୂରକର୍ମା । ତା'ର ଏ ବ୍ୟର୍ଥତାର ପ୍ରତିଶୋଧ ସେ ଚନ୍ଦ୍ର ଉପରେ ନେବ ।

ମଧୁକର ଚିନ୍ତିତ ହେଲେ । ସେ କିଛି ଉପାୟ ପାଇଲେ ନାହିଁ । କଳିଙ୍ଗ ବାହାରେ ଯିବା ଅର୍ଥ ଭାରତ ବାହାରକୁ ଯିବା । କାରଣ କଳିଙ୍ଗରାଜ ଖାରବେଳଙ୍କ ସାମାଜ୍ୟ ସୁଦୂର ବିସ୍ତୃତ । ସେତେବେଳେ ବନ୍ଧୁ ପେରିପ୍ଲସଙ୍କ କଥା ମଧୁକରଙ୍କର ମନେ ପଡ଼ିଲା : ପେରିପ୍ଲସ କଳିଙ୍ଗର ଦକ୍ଷିଣ ସମୁଦ୍ରରେ ପାଲୁର ନାମକ ପୋତାଶ୍ରରେ ଥିବେ । ସେ ଅଳ୍ପଦିନ ପରେ କମ୍ବୁଦ୍ୱୀପ ଯାତ୍ରାକରିବା କଥା ମଧୁକରଙ୍କୁ ଜଣାଇ ଅଛନ୍ତି ଏବଂ ମଧୁକରଙ୍କର ଆଗମନ ପର୍ଯ୍ୟନ୍ତ ପାଲୁର ବନ୍ଦରରେ ଅପେକ୍ଷା କରି ଅଛନ୍ତି । ବହୁ ଆଲୋଚନା ପରେ ଉଭୟ ମଧୁକର ଓ ବିନୀତା ନିଷ୍ପତ୍ତି କଲେ ଯେ ଚନ୍ଦ୍ର ଓ ଚମ୍ପା ମଧ ମଧୁକର ସହିତ କମ୍ବୁଦ୍ୱୀପ ଯିବେ ।

ମଧୁକର ଚମ୍ପାକୁ ଡାକି ସମସ୍ତ ବିଷୟ ଜଣାଇ କହିଲେ,- ମା', ଜେମା ଓ ମୋ ମତରେ ବର୍ତ୍ତମାନ ତୁମ ଦୁହିଁଙ୍କର କଳିଙ୍ଗ ରାଜ୍ୟ ମଧରେ କେଉଁଠି ରହିବା ନିରାପଦ ନୁହଁ । ମୋର ବନ୍ଧୁ ପେରିପ୍ଲସ କଥା ତୋତେ ଅନେକ ଥର କହିଛି । ସେ ବର୍ତ୍ତମାନ ପାଲୁର ପୋତାଶ୍ରୟରେ ଅଛି ଏବଂ ମୁଁ ଗଲେ କମ୍ବୁଦ୍ୱୀପ ଯାତ୍ରା କରିବ ବୋଲି ମନସ୍ଥ କରିଅଛି । ମୋର ଇଚ୍ଛା ତୁମେ ଦୁହେଁ ମୋ ସହିତ କମ୍ବୁଦ୍ୱୀପ ଯାଇ ସେଠାରେ ସୁଖରେ ବସବାସ କର । ଏଠାରୁ ପାଲୁର ବହୁଦୂର । ରାସ୍ତାରେ ଘନ ଅରଣ୍ୟ । ତୋର ସାହାସ ହେଉଛି ତ ମା' ?

ଚମ୍ପା ଉତ୍ସାହର ସହିତ କହିଲା,- ମଧୁକକା, ସେ ସୁନ୍ଦର ଦେଶ କଥା ମୁଁ ତୁମଠାରୁ ଅନେକ ଥର ଶୁଣିଛି । ଚନ୍ଦ୍ର ମୋ ସାଥିରେ ଥିଲେ ମୁଁ କେଉଁଠାକୁ ହେଲେ ଯିବାକୁ ଭୟ କରିବି ନାହିଁ । କିନ୍ତୁ ମା'କୁ ଛାଡ଼ି ଯିବି କିପରି ? ତୁମେ ମା'କୁ ମଧ ସାଙ୍ଗରେ ନେବ ତ ?

ମଧୁକର ହସି କହିଲେ, ତାହା ହିଁ ହେବ ମା' । କିନ୍ତୁ ଚନ୍ଦ୍ର ସମ୍ମତ ହେବ ତ ?

ଚମ୍ପା ସଲଜ୍ଜ ହୋଇ କହିଲା, ଚନ୍ଦ୍ର ମୋତେ ଛାଡ଼ି ବଞ୍ଚି ପାରିବ ନାହିଁ ।

ବିନୀତା ଅଭିଭୂତା ପରି ଚମ୍ପାକୁ ଦେଖୁଥିଲେ । ଚମ୍ପାକୁ କୋଳକୁ ଟାଣି ଆଣି ସେ କହିଲେ, ତେବେ ଯାଇ ପ୍ରସ୍ତୁତ ହୁଅ ତୁମେମାନେ । ତୁ ଆଜି ମୋର ଏଇଠି ରହିବୁ । ଆଜି ରାତ୍ରିରେ ତୁମେମାନେ ଯାତ୍ରା କରିବ । ମୁଁ ପିତାଙ୍କ ଅଶ୍ୱଶାଳରୁ ଦୁଇଟି ଉତ୍ତମ ଅଶ୍ୱ ଅଣାଇ ରଖିଥିବି । ମଧୁକର ଓ ଚନ୍ଦ୍ର ତୋର ମା' ଆଉ ତୋତେ ନେଇ ମଧରାତ୍ରରେ ଯାତ୍ରା କରିବେ । ମଧୁକର, ଭଦ୍ର ଆପଣ ଯାଆନ୍ତୁ । ଚମ୍ପାର ମା' ଓ ଚନ୍ଦ୍ରକୁ ପ୍ରସ୍ତୁତ କରାଇ ଯଥା ସମୟରେ ଆସିବା ପାଇଁ ପ୍ରସ୍ତୁତ ହୁଅନ୍ତୁ ।

ମଧୁକର ବିଦାୟ ନେଲେ । ଉତ୍ତେଜନାର ଆତିଶଯ୍ୟରେ ଚମ୍ପାର ଆଉ ନିଦ୍ରା ହେଲା

ନାହିଁ । ସେ ଅବିରତ ଭଗବାନ ତଥାଗତଙ୍କୁ ଡାକିବାକୁ ଲାଗିଲା । ଦୁର୍ଲକ୍ଷ୍ୟ ଅନିଶ୍ଚୟତା ମଝିକୁ ସେ ଝାମ୍ପ ଦେବାକୁ ଯାଉଛି, ଅଜଣା ଭୟରେ ତା'ର ଛାତି ଥରିବାକୁ ଲାଗିଲା ।

ସମୟ ଆଗତ ହୁଅନ୍ତେ ବିନୀତା ଚମ୍ପାକୁ ଡାକି କହିଲେ, - ଚମ୍ପା, ସମୟ ଉପସ୍ଥିତ । ଏଥର ପ୍ରସ୍ତୁତ ହୁଅ । ଭଗବାନ ତଥାଗତ ତୋର ମଙ୍ଗଳ କରିବେ । ମୋର ଗୋଟାଏ ଉପଦେଶ ମନେ ରଖିବୁ । ଯୁବକ ଯୁବତୀ ଅବିବାହିତ ଅବସ୍ଥାରେ ଏକାଠି ବେଶି ଦିନ ରହିବା ଉଚିତ ନୁହଁ । ପ୍ରଥମେ ଯେଉଁଠି ସୁଯୋଗ ପାଇବ ସେଇଠି ବିବାହ କରିବ । କହୁ କହୁ ଉଦ୍‌ଗତ ଅଶ୍ରୁରେ ବିନୀତାଙ୍କ କଣ୍ଠରୋଧ ହୋଇ ଆସିଲା । ସେ ଲୁହ ପୋଛି କହିଲେ, ଏହି ଥଳୀରେ କିଛି ସ୍ୱର୍ଣ୍ଣମୁଦ୍ରା ଅଛି, ସାବଧାନରେ ରଖିବୁ । ଆଉ ଏହି ପେଟକରେ କିଛି ଖାଦ୍ୟ ଅଛି । ଏଇ ଅଙ୍ଗୁରୀ... ନା...ଥାଉ । ଏ ମୋର ଦେବତାର... !

ଚମ୍ପା ବିନୀତାଙ୍କୁ ପ୍ରଣାମ କରି କାନ୍ଦିବାକୁ ଲାଗିଲା । ଏତେକ୍ଷଣ ପର୍ଯ୍ୟନ୍ତ ତା'ର ସାହସ ଥିଲା । କିନ୍ତୁ ସମୟ ଉପସ୍ଥିତ ହୁଅନ୍ତେ ଭୟରେ ତା'ଣ ଗୋଡ଼ ଥରିବାକୁ ଲାଗିଲା । ବିନୀତା ବୁଝିପାରି କହିଲେ, ତୋର କିଛି ଭୟନାହିଁ । ତୋର ପ୍ରେମ ତୋର ରକ୍ଷା କବଚ, ଯା ।

ଚମ୍ପା ବିନୀତାଙ୍କୁ ପୁଣି ଥରେ ପ୍ରଣାମ କରି ବାହାରିଲା । ବିନୀତା ଦୀପ ହସ୍ତେ ଚମ୍ପାକୁ ଉଦ୍ୟାନରେ ପ୍ରବେଶ ମୁଖ ପର୍ଯ୍ୟନ୍ତ ନେଇଗଲେ । ସେଠାରେ ମଧୁକର, ଚନ୍ଦ୍ର ଓ ଚମ୍ପାର ମା ସହିତ ଅପେକ୍ଷା କରୁଥିଲେ । ବିନୀତା ସଙ୍କେତ ଦେବା ମାତ୍ରକେ ଜଣେ ଭୃତ୍ୟ ଦୁଇଟି ଅଶ୍ୱ ଆଣି ଦେଇ ଚାଲିଗଲା । ଚନ୍ଦ୍ର ଗୋଟିଏ ଘୋଡ଼ାରେ ଚଢ଼ି ଚମ୍ପାର ହାତଧରି ଉଠାଇ ନେଲା । ମଧୁକର ଅନ୍ୟ ଗୋଟିଏ ଘୋଡ଼ାରେ ବସି ଚମ୍ପାର ମା'କୁ ଉଠାଇ ନେଲେ । ବିନୀତାଙ୍କ ଠାରୁ ସମସ୍ତେ ଥରେ ଶେଷ ବିଦାୟ ନେଇ ଯାତ୍ରା ଆରମ୍ଭ କଲେ । ମୁହୂର୍ତ୍ତକ ମଧ୍ୟେ ରାତ୍ରିର ନିବିଡ଼ ଅନ୍ଧକାରରେ ସେମାନେ ଅଦୃଶ୍ୟ ହୋଇଗଲେ । ବିନୀତା ଦୀର୍ଘ ନିଃଶ୍ୱାସ ପକାଇ ଫେରିଲେ ।

X X X

ଏହା ପରେ ବହୁ ବାଧା, ବିଘ୍ନ ଓ ବିପଦ ଅତିକ୍ରମ କରି ସେମାନେ କିପରି ପାଲୁର ବନ୍ଦରରେ ପହଞ୍ଚିଲେ, ସେଠାରୁ ପେରିପ୍ଲସଙ୍କ ପୋତରେ ଅନ୍ୟ ଚାରୋଟି କଳିଙ୍ଗ ପୋତ ସହ କିପରି କମ୍ବୁଦ୍ୱୀପରେ ଉପନୀତ ହୋଇ ସେଠାରେ ବସବାସ କଲେ ଏବଂ କାଳକ୍ରମେ କିପରି ଚମ୍ପା ନଗରୀ ସ୍ଥାପିତ ହେଲା ଏ ସେ ସକଳ କଥା ଆଖ୍ୟାୟିକାର ବିଷୟୀଭୂତ ନୁହେଁ ।

X X X

ବିନୀତା ସେମାନଙ୍କୁ ବିଦାୟ ଦେଇ ଲୁହ ପୋଛି ଫେରି ଦେଖିଲେ ଉଦ୍ୟାନରେ ଗୋଟିଏ ବୃକ୍ଷ ତଳର ଅନ୍ଧକାର ମଧ୍ୟରେ ଯେପରି ଗୋଟିଏ ଛାୟା ମୂର୍ତ୍ତିର ଆଭାସ !

ବିନୀତାଙ୍କର ଭୟ ହେଲା । କିଏ ମହାଶାଳ କି ? ସେ ଦୀପ ଲିଭାଇ ଅନ୍ୟ ରାସ୍ତାରେ ଫେରିବାକୁ ବସିଲେ ।

ବିନୀତା ! - ଛାୟାମୂର୍ତ୍ତି ଡାକିଲା ।

ବିନୀତା କମ୍ପିତ ବକ୍ଷରେ ଛିଡ଼ା ହେଲେ । ଏ ସ୍ୱର ଯେ ତାଙ୍କର ସୁପରିଚିତ । ତାଙ୍କର ହୃଦ୍‌ସ୍ପନ୍ଦନ ଯେପରି ଥମକି ଗଲା ।

ଛାୟାମୂର୍ତ୍ତି ପୁଣି ଡାକିଲା,- ବିନୀତା !

ସମସ୍ତ ଜୀବନର ଶୁଦ୍ଧ ଅଭିମାନ ତାଙ୍କର ପ୍ରବଳ ହୋଇ ଉଠିଲା । ବିନୀତା ମୁହଁ ଫେରାଇ ନେଇ ଚାଲିବାକୁ ଲାଗିଲେ । ଛାୟାମୂର୍ତ୍ତି ଆସି ତାଙ୍କର ହାତ ଧରିଲା । ବିନୀତାଙ୍କ ସମସ୍ତ ଅଭିମାନ ମୁହୂର୍ତ୍ତକେ ମିଳେଇ ଗଲା । ସେ ଅଧୀର ଭାବରେ କାନ୍ଦି ପକାଇଲେ । ଛାୟା ମୂର୍ତ୍ତି କହିଲା, - ପ୍ରିୟେ, ମୋତେ କ୍ଷମା କର, ମୋର ଭ୍ରମ ମୁଁ ବୁଝି ପାରିଛି !

ବିନୀତା ଛାୟାମୂର୍ତ୍ତି ବକ୍ଷରେ ପଡ଼ି କହିଲେ, - ପ୍ରିୟତମ !

ଅନେକକ୍ଷଣ ଛାୟାମୂର୍ତ୍ତିର ବକ୍ଷରେ ମୁହଁ ଲୁଚାଇ କାନ୍ଦି ବିନୀତା ମୁହଁ ଟେକି କହିଲେ - ପ୍ରିୟତମ ! ଆଜି ମୋର ଶୁଭ ଲଗ୍ନ ଉପସ୍ଥିତ । ଏହା କହି ବିନୀତା ନିଜ ଅଙ୍ଗୁଳିରୁ ସେ ଅଙ୍ଗୁରୀୟଟି ବାହାର କରି ଛାୟାମୂର୍ତ୍ତିର ଅଙ୍ଗୁଳିରେ ପିନ୍ଧାଇ ଦେଇ ତାକୁ ପ୍ରଣାମ କଲେ ।

ଏହି ସମୟରେ ଅକାଳ ଝଟିକା ପରି ଅଶ୍ୱପୃଷ୍ଠରେ ମହାଶାଳ ମଶାଲ ହସ୍ତେ ପ୍ରବେଶ କରି ବିନୀତା ଓ ମହାକାଞ୍ଚନଙ୍କୁ ଦେଖି ଚମକି ପଡ଼ିଲେ । ଦୁଇ ଜ୍ୱଳନ୍ତ ଚକ୍ଷୁରେ ସେ ବିନୀତାଙ୍କୁ କିୟଦ୍‌କ୍ଷଣ ଚାହିଁ କହିଲେ, - ବିନୀତା, ମୁଁ ସନ୍ଧାନ ପାଇଲି ଚନ୍ଦ୍ର ଏହିଠାକୁ ଆସିଅଛି । ସେ କେଉଁଠି ଅଛି କୁହ, ମୁଁ ତାକୁ...

ବିନୀତା ହସି କହିଲେ, - ତା'ର ଆଉ ବର୍ତ୍ତମାନ ପ୍ରୟୋଜନ ନାହିଁ, ମହାଶାଳ ।

-ତେବେ, ତୁମର ପ୍ରତିଜ୍ଞା ତୁମେ ପୂରଣ କରିବାକୁ ପ୍ରସ୍ତୁତ ଅଛ ?

- କୌଣସି ପ୍ରତିଜ୍ଞା ମୁଁ କରିନାହିଁ, ମହାଶାଳ ! ସେ ତୁମର ଭ୍ରମ । ମୋର ଦେବତାକୁ ମୁଁ ପାଇଛି । ତୁମେ ଯାଇପାର । ନଚେତ୍...

ମହାଶାଳ କ୍ରୋଧରେ ଗର୍ଜ୍ଜନ କରି ବିନୀତାର ହାତ ଧରି ଉଠାଇ ଅଶ୍ୱପୃଷ୍ଠରେ ବସାଇବାକୁ ଚେଷ୍ଟା କଲେ । ବିନୀତା ନିଜକୁ ମୁକ୍ତ କରି ଦୁଇବାର କରତାଳି ଦେଲେ । ତଦ୍‌କ୍ଷଣାତ୍ ପ୍ରାସାଦ - ରକ୍ଷୀମାନେ ଦୌଡ଼ି ଆସିଲେ । ମହାଶାଳ କ୍ଷିପ୍ତପ୍ରାୟ ହୋଇ ନିଜର ତୀକ୍ଷ୍ଣ ଛୁରିକାରେ ନିମେଷକେ ମହାକାଞ୍ଚନ ଓ ବିନୀତାକୁ ହତ୍ୟାକରି ଅଟ୍ଟହାସ୍ୟ କରି ଉଠିଲେ ।

ପ୍ରାସାଦ - ରକ୍ଷୀମାନେ ମହାଶାଳଙ୍କୁ ବନ୍ଦୀ କଲେ । ସୁଭଦ୍ର ଦେବ ସମସ୍ତ ଶୁଣି ଶୋକରେ ମୁହ୍ୟମାନ ହୋଇ ପଡ଼ିଲେ । ବିନୀତାଙ୍କ ଜନନୀ ଶୋକରେ ମୂର୍ଚ୍ଛିତା ହେଲେ ।

ପରଦିନ ପ୍ରଭାତରେ ବନ୍ଦୀ ମହାଶାଳଙ୍କୁ ନେଇ ସୁଭଦ୍ର ଖାରବେଳଙ୍କ ନିକଟକୁ

ଯାତ୍ରା କଲେ । ଖାରବେଳ ସମସ୍ତ ଶୁଣି ମହାଶାଳଙ୍କର ପ୍ରାଣଦଣ୍ଡ ଆଜ୍ଞା ଦେଲେ । ଏହାର ଦୁଇଦିନ ପରେ ମହାଶାଳଙ୍କର ମସ୍ତକ ଘାତକର ଖଡ଼୍ଗରେ ଭୂପାତିତ ହେଲା ।

X X X

ସୋମଦତ୍ତ ଓ କାତ୍ୟାୟନୀ ଦୁଇ ପ୍ରିୟ ପୁତ୍ରର ଶୋଚନୀୟ ମୃତ୍ୟୁରେକି ପରିମାଣ ଅଧୀର ମର୍ମାହତ ହୋଇ ପଡ଼ିଲେ ତାହା କେବଳ ଅନୁମେୟ । କାତାୟନୀ ସେ ସମ୍ବାଦ ପାଇବା ଦିନ ଠାରୁ ଶଯ୍ୟାଶାୟିନୀ ହେଲେ ଆଉ ଉଠିଲେ ନାହିଁ । ମହାସାର ଓ ଇରା ପିତାମାତାଙ୍କର ପ୍ରାଣପଣ ସେବା-ଶୁଶ୍ରୂଷା କରି ମଧ ମୃତ୍ୟୁର କବଳରୁ ସେମାନଙ୍କୁ ରକ୍ଷା କରି ପାରିଲେ ନାହିଁ । କାତ୍ୟାୟନୀ ପ୍ରାଣତ୍ୟାଗ କରିବାର ଦୁଇଦିନ ପରେ ସୋମଦତ୍ତ ମହାସାରଙ୍କ କ୍ରୋଡ଼ରେ ମସ୍ତକ ରଖି ଶେଷ ନିଃଶ୍ୱାସ ତ୍ୟାଗ କଲେ ।

ଉପର୍ଯ୍ୟୁପରି ଅନେକଗୁଡ଼ିଏ ଶୋକରେ ମହାସାର ମଧ ଭାଙ୍ଗି ପଡ଼ିଥିଲେ । ଇରାର ଐକାନ୍ତିକ ସେବା-ଯତ୍ନ ସତ୍ତ୍ୱେ ତାଙ୍କର ହୃତଶକ୍ତି ସମ୍ପୂର୍ଣ୍ଣ ଫେରି ପାଇବାକୁ ବହୁଦିନ ଲାଗିଲା ।

## ୨୩

ବିନୀତାଙ୍କ ବିଗତପ୍ରାଣ ଦେହ ବୃନ୍ତଚ୍ୟୁତ ପୁଷ୍ପ ପରି ସେହିଠାରେ କିଛିକ୍ଷଣ ପଡ଼ି ରହିବା ପରେ ସୁଭଦ୍ର ଦେବ ତାକୁ ପ୍ରାସାଦକୁ ନେଇଗଲେ ଅନ୍ତିମ ସତ୍କାର ପାଇଁ ।

ମହାକାଞ୍ଚନଙ୍କ ଶରୀର ସେହିଠାରେ ପଡ଼ି ରହିଲା । ନିବିଡ଼ ଅନ୍ଧକାର ମଧ୍ୟରେ ବନାନୀ ନିସ୍ତବ୍ଧ, ନିଶ୍ଚଳ । କିଛିକ୍ଷଣ ପରେ ସେ ନିସ୍ତବ୍ଧତା ଭେଦ କରି କାହାର ଧୀର ପାଦୁକା ଶବ୍ଦ ଶୁଭିଲା । ଗୋଟିଏ ଛାୟାମୂର୍ତ୍ତି ଆସି ମହାକାଞ୍ଚନ ନିକଟକୁ ଆସି ରାତ୍ରିଶେଷର ସେଇ ତରଳ ଅନ୍ଧକାରେ କିଛିକ୍ଷଣ ସେ ଦେହ ପରୀକ୍ଷା କରି କମଣ୍ଡଳୁରୁ ପାଣି ନେଇ ମହାକାଞ୍ଚନଙ୍କ ଉପରେ ସିଞ୍ଚନ କରିବା ପରେ ପୁଣି ଅନ୍ଧକାରରେ ମିଳାଇ ଗଲା । ଏହାର କିଛିକ୍ଷଣ ପରେ ପୁଣି ସେହି ଛାୟାମୂର୍ତ୍ତି ଆସି କେତେ ଗୁଡ଼ାଏ ପତ୍ରରୁ ରସ ନିଷ୍କାଶନ କରି ମହାକାଞ୍ଚନଙ୍କ କ୍ଷତରେ ଲଗାଇ ଦେଲା ଏବଂ ଅନ୍ୟ କେତେ ଗୁଡ଼ିଏ ପତ୍ର ମହାକାଞ୍ଚନଙ୍କ ନାସିକା ନିକଟରେ ଧରି ବସି ରହିଲା ।

ଏହାର ଅଳ୍ପ ସମୟ ପରେ ମହାକାଞ୍ଚନ ଧୀରେ ଧୀରେ ନିଃଶ୍ୱାସ ନେବାକୁ ଲାଗିଲେ ଏବଂ ଆଖି ଖୋଲି ଚାରିଆଡ଼କୁ ଚାହିଁଲେ । ବହୁ ରକ୍ତପାତରେ ଦୁର୍ବଳ ମହାକାଞ୍ଚଳନ ପ୍ରତ୍ୟୁଷର ସେହି କ୍ଷୀଣ ଆଲୋକରେ କାହାକୁ ଦେଖିବାକୁ ପାଇଲେ ନାହିଁ କିମ୍ବା ସେ କେଉଁଠି କାହିଁକି ଅଛନ୍ତି କିଛି ବୁଝି ପାରିଲେ ନାହିଁ । କେବଳ କ୍ଷୀଣ କଣ୍ଠରେ ସେ ପଚାରିଲେ - ମୁଁ କେଉଁଠି ?

ଛାୟାମୂର୍ତ୍ତି ତାହାଙ୍କୁ ଧୀରେ ଉତ୍ତୋଳନ କରି ଅନ୍ଧକାର ମଧ୍ୟରେ ଅଦୃଶ୍ୟ ହୋଇଗଲେ । ପଥରେ ମହାକାଞ୍ଚନ ପୁଣି ଜ୍ଞାନ ହରାଇଲେ ।

ପରଦିନ ପ୍ରଭାତରେ ମହାକାଞ୍ଚନ ସୁସ୍ଥ ବୋଧ କରି ଯେତେବେଳେ ଚାହିଁଲେ ଦେଖିଲେ ସେ ଘୋର ଅରଣ୍ୟ ମଧ୍ୟରେ ଗୋଟିଏ ପର୍ଣ୍ଣ କୁଟୀରରେ ଶାୟିତ । ଗାତ୍ରୋତ୍‌ଥାନ କରି ସେ ପଛକୁ ଚାହିଁ ଦେଖିଲେ ତାଙ୍କ ଆଡ଼କୁ ଚାହିଁ ସ୍ମିତ ହାସ୍ୟ କରୁଅଛନ୍ତି - ଚାର୍ବାକ !

ମହାକାଞ୍ଚନ ବିସ୍ମୟରେ କିଛିକ୍ଷଣ ନିର୍ବାକ ଭାବରେ ଚାହିଁ ରହି ଚାର୍ବାକଙ୍କ ପଦପ୍ରାନ୍ତେ ପଡ଼ି ଅଧୀର ଭାବରେ କ୍ରନ୍ଦନ କରିବାକୁ ଲାଗିଲେ ।

ଚାର୍ବାକ ତାଙ୍କୁ ଉଠାଇ ପାଖରେ ବସାଇ କହିଲେ, - ବନ୍ଧୁ, କୌଣସି କ୍ଷେତ୍ରରେ ଅଧୀର ହେବା ଉଚିତ ନୁହେଁ, ଅଧୀରତା ବୁଦ୍ଧି ନାଶକ । ତୁମର ଅନୁତାପ କରିବାର ମଧ୍ୟ କୌଣସି କାରଣ ନାହିଁ । ସେତେବେଳେ ଯାହା ତୁମ୍ଭେ କର୍ତ୍ତବ୍ୟ ମନେ କରିଥିଲ ତାହା କରିଥିଲ । ବର୍ତ୍ତମାନ ଯଦି ତୁମ୍ଭର ମୂଲ୍ୟବୋଧ ଭିନ୍ନ ପ୍ରକାର ହୋଇଥାଏ ତେବେ ଯେପରି ଉଚିତ ମନେ କର ସେହିପରି କରିବ । କର୍ତ୍ତବ୍ୟବୋଧ ସହିତ ନିଜର ଅହମିକା ଜଡ଼ିତ ହେଲେ ମନୁଷ୍ୟ ସଫଳକାମ ହେଲେ ଗର୍ବିତ ଆନନ୍ଦ ଉପଭୋଗ କରେ ଏବଂ ବିଫଳ ହେଲେ ଓ ଅନୁଶୋଚନାରେ ଦୁଃଖ କାତର ହୁଏ । ବିନୀତା ପାଇଁ ତୁମ୍ଭେ ପରିତାପ କରନା, ତୁମ୍ଭର ପ୍ରେମ ବ୍ୟାପ୍ତ ହେଉ । ତାହା ସୃଷ୍ଟିର ରହସ୍ୟଭେଦ କରିବାରେ ବିନିଯୁକ୍ତ ହେଉ ।

ମହାକାଞ୍ଚନ ଅଭିଭୂତ ପରି କହିଲେ - ଗୁରୁଦେବ...

ବାଧା ଦେଇ ଚାର୍ବାକ କହିଲେ,- ବନ୍ଧୁ, ମୋତେ ଆଉ ଯାହା ବୋଲି ସମ୍ବୋଧନ କର 'ଗୁରୁଦେବ' ବୋଲି କୁହନା । ବରଂ ବନ୍ଧୁ କହିପାର ।

- ନାଁ । ମୁଁ ଆପଣଙ୍କ ମତ ପ୍ରଚାର କରିବି, ଏକ ମହତ୍ ଅନୁଷ୍ଠାନ ଗଠିତ ହେବ ଆପଣଙ୍କ ମତ ପ୍ରଚାର ଉଦ୍ଦେଶ୍ୟରେ...ମୁଁ...

ଚାର୍ବାକ ହତାଶ ଭାବରେ ପୁଣି ବାଧାଦେଇ କହିଲେ - ବନ୍ଧୁ ! ଏହାଠୁ ବଳି ମୂର୍ଖତା ଆଉ କିଛି ନାହିଁ । ବରଂ ଲୋକ ସମାଜର ଅର୍ଥନୈତିକ ଉନ୍ନତି ବା ସ୍ୱାସ୍ଥ୍ୟୋନ୍ନତି ଆଦି ଦିଗରେ ଅନୁଷ୍ଠାନ ଗଢ଼ାଯିବା ଉଚିତ । ଏ ଦିଗରେ ରାଜାନୁଶାସନ ଦ୍ୱାରା କୌଣସି ଏକ ଅନୁଷ୍ଠାନକୁ ସମସ୍ତ ଅଧିକାର ଦେବା ମଧ୍ୟ ଅନୁଚିତ ହେବ ନାହିଁ ବୋଲି ମୁଁ ଭାବେ । କିନ୍ତୁ ଯେଉଁ ବିଷୟ ମନୁଷ୍ୟର ମୁକ୍ତ ଚିନ୍ତା ଉପରେ ନିର୍ଭର କରେ, ସେ ବିଷୟରେ ଅନୁଷ୍ଠାନ ଗଢ଼ିବାର ଫଳ ହେବ ଏକ ବଦ୍ଧ ଜଳାଶୟ । ଅଳ୍ପଦିନ ମଧ୍ୟରେ ସେ ଅନୁଷ୍ଠାନ ହୋଇ ଉଠିବ ଦୂଷିତ, ସେଥିରେ ଯେ ଅବଗାହନ କରିବେ ସେ ପୀଡ଼ିତ ହେବେ । ପୁଣି କହେ ମୁଁ ତୁମ୍ଭର ବନ୍ଧୁ, ଗୁରୁଦେବ ନୁହଁ ।

- ଉତ୍ତମ । ତେବେ ବନ୍ଧୁ, ପ୍ରଥମେ କୁହ ତୁମ୍ଭେ ଜୀବିତ ହେଲ କିପରି ? ତୁମ ଉପରେ ପଲାଲପୀଠକ ଦଣ୍ଡର ଆଦେଶ କ'ଣ ପାଳିତ ହୋଇ ନାହିଁ ?

- ନା । ତୁମ୍ଭର ଆଦେଶ ଲଙ୍ଘନ କରି ସେମାନେ ମୋତେ ପ୍ରହାର କରି ହତଚେତନ ଅବସ୍ଥାରେ ମୋତେ ବହନ କରି ଅନ୍ୟ ଏକ ଦେଶର ଅରଣ୍ୟରେ ପକାଇ ଦେଇଗଲେ । କିନ୍ତୁ ସେ କଥା ଥାଉ । ଭବିଷ୍ୟତର କାର୍ଯ୍ୟ ପନ୍ଥା ବର୍ତ୍ତମାନ ନିରୂପଣ କରାଯାଉ । ତୁମ୍ଭର ଅଭିମତ କ'ଣ ବନ୍ଧୁ ? ପ୍ରଥମେ କେତେ ଗୁଡ଼ିଏ ମୌଳିକ ପ୍ରଶ୍ନ ବାଛି ନିଆଯାଉ ଯଥା - ପ୍ରଥମ ପ୍ରଶ୍ନ : ଯାବତ୍ ଚରାଚର କୌଣସି ଶକ୍ତି ବା ନିୟମ ଦ୍ୱାରା ସୃଷ୍ଟ କି ନା । ଅଥବା କ'ଣ ମୂଳରୁ ଧରି ନିଆଯାଇ ପାରେ ସେ ଚରାଚର ଗୋଟିଏ ଶକ୍ତି ବା ନିୟମ ଦ୍ୱାରା ସୃଷ୍ଟ ?

-କାହିଁକି ? ଧରି ନେବା କେମିତି ? ମହାକାଞ୍ଚନ ପଚାରିଲେ ।

ଚାର୍ବାକ ମୁଗ୍ଧ ଭାବରେ କିଛିକ୍ଷଣ ମହାକାଞ୍ଚନ ଆଡ଼େ ଚାହିଁ ରହି କହିଲେ - ବନ୍ଧୁ ! ଚମତ୍କାର ! ମୁଁ ପ୍ରଥମ ଥର ତୁମ୍ଭର ଏପରି ମୌଳିକ 'କାହିଁକି' ପଚାରିବାର ଶୁଣିଲି । ତୁମ୍ଭର ପୂର୍ବ ସଂସ୍କାର ଦୂର ହୋଇ ଯାଇଛି । ଏଥର ତୁମ୍ଭେ ନିର୍ଭୟରେ ଜ୍ଞାନାଲୋକ ପାଇବା ପାଇଁ ଅଗ୍ରସର ହୁଅ । ଆଛା, ତୁମ୍ଭର ପ୍ରଶ୍ନର ଉତ୍ତର ମୁଁ ଏହିପରି ଦେଉଛି । ପୁରୁଷ ଓ ସ୍ତ୍ରୀ ଦୁଇଟି ବିଭିନ୍ନ ଦିଗରେ ବିକାଶ ଲାଭ କରୁଥିଲେ ମଧ୍ୟ ସେମାନଙ୍କ ସୃଷ୍ଟିର ବା ଜନ୍ମ ଲାଭର ନିୟମ ଗୋଟିଏ, ଏକଥା ଅବଶ୍ୟ ସ୍ୱୀକାର କରିବ ?

-ହଁ ।

- ବର୍ତ୍ତମାନ, ମନୁଷ୍ୟ ଓ ପଶୁ ସୃଷ୍ଟି ମଧ୍ୟରେ ଗୋଟିଏ ନିୟମ ସ୍ୱୀକାର କରିବ ?

- ହଁ ।

- ଏହିପରି ଜୀବ ଓ ଜଡ଼ ମଧ୍ୟରେ ଗୋଟିଏ ନିୟମ ଅଛି ?

- ନିଶ୍ଚୟ ।

- ଏହିପରି ସମସ୍ତ ବିଶ୍ୱରେ ଗୋଟିଏ ନିୟମ ନିଶ୍ଚୟ ଅଛି - ଯାହାଦ୍ୱାରା ଗ୍ରହ, ଉପଗ୍ରହ, ସୂର୍ଯ୍ୟ, ଚନ୍ଦ୍ର, ତାରାଠାରୁ ଆରମ୍ଭ କରି ଜୀବାଣୁ, ଜଡ଼ ପର୍ଯ୍ୟନ୍ତ ସୃଷ୍ଟ ଏବଂ ଏକ ପର୍ଯ୍ୟାୟ ଭୁକ୍ତ ।

- ତତଃ କିମ୍ ?

- ବର୍ତ୍ତମାନ ଦେଖାଯାଉ, ଏହି ନିୟମ ଦ୍ୱାରା ବା ଶକ୍ତିଦ୍ୱାରା ମନୁଷ୍ୟ ସୃଷ୍ଟି ହେବାପରେ, ସେ ତାହାର ନିଜର ଇଛା ପ୍ରାପ୍ତ ହୋଇଛି ନା ତା'ର ପ୍ରତ୍ୟେକ କର୍ମ, ପ୍ରତ୍ୟେକ ଭାବନା, ଯେତେ ସାମାନ୍ୟ ହେଉନା କାହିଁକି, ସବୁ ସେହି ଶକ୍ତି ଦ୍ୱାରା ଚାଳିତ ? ଯଦି ଦ୍ୱିତୀୟଟି ସତ୍ୟ ହୁଏ ତେବେ ମନୁଷ୍ୟର ବିକାଶ ପାଇଁ ମନୁଷ୍ୟର ଆଉ କୌଣସି ଦାୟିତ୍ୱ ଥାଇ ନପାରେ । କାରଣ ସେହି ଅଦୃଶ୍ୟ ଶକ୍ତି ହିଁ ମନୁଷ୍ୟକୁ କେଉଁ ଅଜଣା ଉଦ୍ଦେଶ୍ୟ ସାଧନ ଦିଗରେ ଚାଳିତ କରୁଛି । ସେ ଉଦ୍ଦେଶ୍ୟ କ'ଣ ଆମେ ଜାଣି ପାରିବୁ ନାହିଁ - ଯଦି ସେହି ଅଦୃଶ୍ୟ ଶକ୍ତିର ନିଜକୁ ଜଣାଇବାର ଉଦ୍ଦେଶ୍ୟ ନଥାଏ । ଅତଏବ ଦ୍ୱିତୀୟଟି ସତ୍ୟ ହେଲେ ଦୁର୍ଭାବନାର କାରଣ ନାହିଁ । ପୃଥିବୀର ଯେତେ ଯୁଦ୍ଧ

ଯେତେ ରକ୍ତପାତ, ଯେତେ ହିଂସା ଥାଉ ନା କାହିଁକି ଆମର ତା' ଲାଗି କିଛି କରିବାର ନାହିଁ । କିନ୍ତୁ ପ୍ରଥମଟି ସତ୍ୟ ହେଲେ ନିଜର ବିକାଶ ପାଇଁ ସମ୍ପୂର୍ଣ୍ଣ ଦାୟିତ୍ୱ ନିଜ ଉପରେ । ଯଦି ନିଜ ଉପରେ ଏ ଦାୟିତ୍ୱ ରହିଲା, ତେବେ ଆମକୁ ଜୀବନର ଚରମ ବିକାଶ କ'ଣ ହେବା ଉଚିତ ତାହା ସର୍ବାଦୌ ସ୍ଥିର କରିବାକୁ ହେବ ତା'ପରେ ଆମର ମୌଳିକ ସ୍ୱଭାବ, ଆବେଷ୍ଟନୀ ଆଦି ଦୃଷ୍ଟେ ସେ ଲକ୍ଷ୍ୟ ସ୍ଥଳରେ ଆମେ କିପରି ଉପସ୍ଥିତ ହେବୁ ତାହାର କାର୍ଯ୍ୟପନ୍ଥା ନିରୂପଣ କରିବାକୁ ହେବ । ଯଦି ଶାସନ ଏଥିପାଇଁ ଆବଶ୍ୟକ ହୁଏ, ତେବେ ସେ ଶାସନ କିପରି ହେବା ଉଚିତ ତାହା ସ୍ଥିରୀକୃତ ହେବା ମଧ୍ୟ ଆବଶ୍ୟକ । ଆମର ଅର୍ଥନୈତିକ ଯୋଜନା, ଶିକ୍ଷା ଯୋଜନା, କୃଷି ଯୋଜନା, ଦଣ୍ଡନୀତି ଆଦି ସବୁ ଯେପରି ସେହି ଲକ୍ଷ୍ୟ ଅଭିମୁଖୀ ହୁଏ ତାହା ମଧ୍ୟ ଦେଖିବାକୁ ହେବ, କାରଣ ତା' ନହେଲେ ଆମର ନୀତି ସବୁ ପରସ୍ପର ବିରୋଧୀ ହୋଇଯାଇ ପାରେ । ଉଦାହରଣ ସ୍ୱରୂପ ଯଦି ଆଧ୍ୟାତ୍ମିକ ଉନ୍ନତି ଜୀବନର ଲକ୍ଷ୍ୟ ହୁଏ ତେବେ ଆମର ଅର୍ଥନୀତି ଏପରି ହେବା ଉଚିତ ଯେପରି ବୈଷୟିକ ବ୍ୟବସ୍ଥାଗୁଡ଼ିକ ସେଥିରେ ବାଧା ନ ଜନ୍ମାଏ । ହୁଏତ ସେଥିଲାଗି ଏପରି ନିୟମ ହେବା ଉଚିତ ଯେ ମନୁଷ୍ୟର ନିଜସ୍ୱ ଧନ-ସମ୍ପତ୍ତି କିଛି ରହିବ ନାହିଁ । ମୋର ମନେ ହୁଏ ଯେ ମନୁଷ୍ୟ ବୋଧହୁଏ ସେହି ଆଡ଼କୁ ଗତି କରୁଛି । ସେ ଯାହାହେଉ ଶାସନ କରିବା ପୂର୍ବରୁ ଏହିପରି କେତେ ଗୁଡ଼ିଏ ମୌଳିକ ପ୍ରଶ୍ନର ସମାଧାନ ଆବଶ୍ୟକ ।

ମହାକାଞ୍ଚନ କିଛିକ୍ଷଣ ନୀରବ ରହି ପ୍ରଶ୍ନ କଲେ,- ବନ୍ଧୁ, ଆଉ ଗୋଟିଏ ପ୍ରଶ୍ନ ମୋ ମନକୁ ଆସୁଛି । ମନୁଷ୍ୟର ବିକାଶ ସମାଜ ବା ଗୋଷ୍ଠୀ, ଦେଶ ବା ଜାତି ମାଧ୍ୟମରେ ହେବା ବିଧେୟ ନା ଏ ସବୁର ବିଲୋପ କରି ବ୍ୟକ୍ତି ମାଧ୍ୟମରେ ହେବା ଉଚିତ ?

ଚାର୍ବାକ ପୁଣି କିଛିକ୍ଷଣ ମୁଗ୍ଧ ଭାବରେ ଚାହିଁ ରହି କହିଲେ - ବନ୍ଧୁ ! ଅତ୍ୟନ୍ତ ଜଟିଳ ଏବଂ ଅତ୍ୟନ୍ତ ମୌଳିକ ପ୍ରଶ୍ନ ପଚାରିଲ । ହୁଏତ ଏ ପ୍ରଶ୍ନର ସମାଧାନ ଉପରେ ନିର୍ଭର କରୁଛି ଭବିଷ୍ୟତର ଶାନ୍ତି ଓ ସୁଖ । ଏ ବିଷୟରେ ଚିନ୍ତା କରିବାକୁ ହେବ । ତେବେ ମନେ ହୁଏ, ସମାଜ ଯଦି ବ୍ୟକ୍ତିକୁ ସମ୍ପୂର୍ଣ୍ଣ ଭାବେ କବଳିତ କରେ ତା' ହେଲେ ଯେଉଁ ଭ୍ରଷ୍ଟାଚାର ଦେଖା ଦେବ, ବ୍ୟକ୍ତି ଯଦି ସମାଜକୁ କବଳିତ କରେ ତା' ଫଳରେ ମଧ୍ୟ ସେଇ ଭ୍ରଷ୍ଟାଚାର ଦେଖା ଦେବ ।

ଏହିପରି କଥାବାର୍ତ୍ତା ହେଉ ହେଉ ଦୁଇବନ୍ଧୁ ଅଗ୍ରସର ହୋଇ ଘନ ଅରଣ୍ୟରେ ଅଦୃଶ୍ୟ ହୋଇଗଲେ ।

ପୂର୍ବ ଦିଗ୍‌ବଳୟରେ ସୂର୍ଯ୍ୟ ସେତେବେଳେ ଉଇଁ ଆସୁଥାଏ ।

* * *

# ଉନ୍ମୋଚନ !

**ଉନ୍ମୋଚନ** - ଏହି ଖବରର, ଯେ ସୁଖ୍ୟାତ ଲେଖକ ଓ ଚିନ୍ତକ ବାମାଚରଣ ପ୍ରଥମେ କ୍ଷୁଦ୍ର ଗଳ୍ପ ଲେଖକ ରୂପେ ଆତ୍ମପ୍ରକାଶ କରିବା ପୂର୍ବରୁ ବି ଲେଖିଥିଲେ କେତୋଟି ଡିଟେକ୍‌ଟିଭ ଗଳ୍ପ - ଯେଉଁଥିରେ ଡିଟେକ୍‌ଟିଭ ଗୋବର୍ଦ୍ଧନ ମିଶ୍ର ତାଙ୍କର ବାଉଳାଙ୍କ ଭଳିଆ ଶୂନ୍ୟ ଦୃଷ୍ଟି ଓ ଉଦାସୀନ ଚେହେରା ସତ୍ତ୍ୱେ ଉନ୍ମୋଚନ କରିଥିଲେ ବହୁ ଅଦ୍ଭୁତ ରହସ୍ୟର ଜଟିଳ ଗ୍ରନ୍ଥି !

ଲେଖକ ହିସାବରେ ସେତେବେଳେ ବାମାଚରଣଙ୍କୁ କେହି ଚିହ୍ନି ନ ଥିବାରୁ ଏବଂ 'କୀର୍ତ୍ତିର୍ଯସ୍ୟ' ଓ 'ନରଛଞ୍ଚାଣ' ବୋଲି ତାଙ୍କର ଡିଟେକ୍‌ଟିଭ ଗଳ୍ପ ବହି ଦି'ଖଣ୍ଡ ଥରେ ମାତ୍ର ଛପା ହେଇ ସୁଦୀର୍ଘକାଳ ପାଇଁ ଆତ୍ମଗୋପନ କରିଥିବାରୁ ଆଜିର ଏ ତଥ୍ୟ ତାଙ୍କର ପାଠକପାଠିକାଙ୍କୁ ଏକପ୍ରକାର ରହସ୍ୟ ଉନ୍ମୋଚନ ଭଳିଆ ହିଁ ଲାଗିବା କଥା ।

ବିଶ୍ୱବିଶ୍ରୁତ 'କଥା-ଡିଟେକ୍‌ଟିଭ' ଶାର୍ଲକ୍ ହୋମ୍‌ସ୍ (ଯାହାଙ୍କ ସ୍ରଷ୍ଟା କନ୍ୟାନ୍ ଡଏଲ୍ ନିଜେ ତାଙ୍କ ସୃଷ୍ଟିର ଆଢୁଆଳରେ ପଡ଼ି ଯାଇଛନ୍ତି !) - ଗଳ୍ପର ଅନୁବାଦ ତ ସାଧାରଣ କଥା, ତା'ର ଅନୁକରଣରେ ମଧ ବହୁ ବିଭିନ୍ନ ଭାଷାରେ ଡିଟେକ୍‌ଟିଭ ଗଳ୍ପମାନ ଲେଖା ହୋଇଛି । କେହି କେହି ଲେଖକ ସେଥିରେ ବି ସନ୍ତୁଷ୍ଟ ନ ହୋଇ ପୂରା ଶାର୍ଲକ୍ ହୋମ୍‌ସ୍ ଚରିତ୍ରଟିକୁ ହିଁ 'ହାଇଜେକ୍' କରି ନେଇ ଯାଇ ନିଜ ନିଜ ଭାଷାରେ ତାଙ୍କୁ ଧରି ନୂଆ ନୂଆ ଡିଟେକ୍‌ଟିଭ୍ ଗଳ୍ପ ଲେଖିଛନ୍ତି ! ବଙ୍ଗଳାରେ 'ପରଶୁରାମ' (୰ରାଜଶେଖର ବସୁ) ଶାର୍ଲକ୍‌ଙ୍କୁ ନେଇ 'ନୀଲ୍‌ତାରା' ନାମକ ଗୋଟିଏ ଅତି ମୂଲ୍ୟବାନ୍ ରତ୍ନର ପୁନରୁଦ୍ଧାର ଓ ତା'ର ପ୍ରକୃତ ଦାବିଦାର ନିର୍ଣ୍ଣୟ କରିବା କାର୍ଯ୍ୟରେ ନିଯୁକ୍ତ କରିଛନ୍ତି । ତିବ୍ବତୀୟ ଲେଖକ ଜାମ୍‌ୟାଙ୍ଗ ନର୍‌ବୁ 'ଶାର୍ଲକ୍'ଙ୍କୁ ତିବ୍ବତକୁ ନେଇ ଯାଇ ତାଙ୍କର ଇଂରାଜୀ ଗଳ୍ପଗ୍ରନ୍ଥ The *Mandala of Sherlock Holmes* (Harper Collins Publishers India) - ରେ ବିଚିତ୍ର କୀର୍ତ୍ତିମାନ କରାଇଛନ୍ତି, ସେଥିରେ ପୁଣି ଶାର୍ଲକ୍‌ଙ୍କ ଚିରଶତ୍ରୁ 'ଗଣିତ-ଖ୍ୟାତିସମ୍ପନ୍ନ' ପ୍ରଃ ମରିଆର୍ଟିଙ୍କ ଦ୍ୱାରା ତାଙ୍କ ଉପରେ ତିବ୍ବତୀୟ 'ବୀର' ମଧ ପେଷାଇଛନ୍ତି !

ବାମାଚରଣ ଅବଶ୍ୟ ଅନୁକରଣରେ ହିଁ ସନ୍ତୁଷ୍ଟ ରହିଛନ୍ତି । ତଥାପି ତାଙ୍କର ଡିଟେକ୍‌ଟିଭ ଗୋବର୍ଦ୍ଧନ ବାବୁ ସାହିତ୍ୟ କ୍ଷେତ୍ରରେ ଏକ ସାର୍ଥକ ଓ ଅଦ୍ୱିତୀୟ ସୃଷ୍ଟି । ତାଙ୍କର ସୃଷ୍ଟ ରହସ୍ୟଗୁଡ଼ିକ କିନ୍ତୁ ଆଦୌ ଅନୁକରଣ ନୁହେଁ, ସମ୍ପୂର୍ଣ୍ଣ ନୂତନ ଓ ଭାରତୀୟ ତଥା ଓଡ଼ିଆ ସମାଜ ଓ ପରିମଣ୍ଡଳକୁ ଅନାଇ ସ୍ୱାଭାବିକ । ପ୍ରକୃତ ପକ୍ଷେ ଗୋବର୍ଦ୍ଧନ ବାବୁଙ୍କ ଚରିତ୍ର ମଧ କେତେକ ଦିଗରୁ ଶାର୍ଲକ ହୋମ୍‌ସ୍‌ର ଓଲଟା । ଶାର୍ଲକ୍ ହୋମ୍‌ସ୍ କହୁଥିଲେ,

ଯାହା ତାଙ୍କର ଡିଟେକ୍‌ଟିଭ କାର୍ଯ୍ୟରେ କାମକୁ ଆସିବ ନାହିଁ ସେପରି ତଥ୍ୟ ଦ୍ୱାରା ସେ ତାଙ୍କ ମସ୍ତିଷ୍କକୁ ଅଯଥା ଭାରାକ୍ରାନ୍ତ କରନ୍ତି ନାହିଁ । ଏପରିକି ପୃଥିବୀ ସୂର୍ଯ୍ୟ ଚାରିପଟେ ନ ଘୂରି ଚନ୍ଦ୍ର ଚାରିପଟେ ଘୂରିଲେ ବି ତାଙ୍କର କିଛି ମାତ୍ର ଯାଏ ଆସେ ନାହିଁ । ଏଣେ ଅବଶ୍ୟ ସେ ବିଭିନ୍ନ ବିଷଧର ଉଦ୍ଭିଦ, ବିଭିନ୍ନ ସ୍ଥାନର ମାଟି-କାଦୁଅ ଓ ଆଇନ ବିଷୟରେ ବହୁତ କଥା ଜାଣନ୍ତି । ଆଉ ରସାୟନ ଶାସ୍ତ୍ରରେ ତ ତାଙ୍କର ଅଗାଧ ଜ୍ଞାନ । ଅପରପକ୍ଷେ ଗୋବର୍ଦ୍ଧନ ବାବୁ ସେହିପରି ରସାୟନରେ ସୁପଣ୍ଡିତ ହୋଇ ମଧ୍ୟ ସାହିତ୍ୟରେ ବହୁ ଖବର ଅନ୍ତର ରଖନ୍ତି ଏବଂ ୰ବୈଷ୍ଣବ ପାଣିଙ୍କ ଗୀତିନାଟ୍ୟର ସେ ଏକ ପ୍ରକାର ଭକ୍ତ । ଏଣେ ମନୋବିଶ୍ଳେଷଣ ପଦ୍ଧତିର ଉଦ୍ଭାବକ ସିଗ୍‌ମୁଣ୍ଡ ଫ୍ରଏଡ୍‌ଙ୍କର 'ମାନସିକ ଅବଦମନର ଫଳ ଯୌନ ଆଚରଣରେ ବିକୃତି' ଏଇ ତତ୍ତ୍ୱରେ ସେ ବିଶ୍ୱାସୀ । ତେଣେ ପୁଣି ଉପନିଷଦ୍‌ରୁ ମନ୍ତ୍ର ଉଦ୍ଧାର କରି କହନ୍ତି ।

ଗୋବର୍ଦ୍ଧନ ମିଶ୍ର ଯାହା ହୋଇଥାନ୍ତୁ, ଗଳ୍ପଗୁଡ଼ିକ ଅତିଶୟ ଚିତ୍ତାକର୍ଷକ । ଆଶ୍ଚର୍ଯ୍ୟର କଥା ଏ ବହି ଦୁଇଖଣ୍ଡର ପୁନର୍ମୁଦ୍ରଣ ହୋଇ ନାହିଁ । ସେଇ ସମୟରେ (୧୯୫୦-୫୧) ଅନ୍ୟ କେହି କେହି ମଧ୍ୟ ଡିଟେକ୍‌ଟିଭ ଗଳ୍ପ ବା 'ଅପରାଧ କାହାଣୀ' ନେଇ 'କୀର୍ତ୍ତିର୍ଯସ୍ୟ' ବା 'ନରଛଞ୍ଚାଣ' ପରି ଛୋଟ ଛୋଟ ବହି ଲେଖିଥିଲେ, ଯଦିଚ ସେଗୁଡ଼ିକରେ ଗୋବର୍ଦ୍ଧନ ବାବୁଙ୍କ ଭଳିଆ ବୁଦ୍ଧିର ଖେଳ ଦେଖାଇ ଅପରାଧରହସ୍ୟ ଭେଦର ଦୃଷ୍ଟାନ୍ତ ନ ଥିଲା । ଯେତେଦୂର ଜଣାଯାଏ କାହାରି ପୁନର୍ମୁଦ୍ରଣ ହୋଇ ନ ଥିଲା ।

'ଗୋବର୍ଦ୍ଧନ ବାବୁ'ଙ୍କ ସ୍ରଷ୍ଟା ତାଙ୍କର ମାନସ ସନ୍ତାନଙ୍କ ପାଇଁ ବିଶେଷ ଏକପ୍ରକାର ସ୍ନେହ-ଗର୍ବ ଅନୁଭବ କରିବା ପରି ମନେ ହୁଏ । ତାଙ୍କର 'କୀର୍ତ୍ତିର୍ଯସ୍ୟ' ସଙ୍କଳନରେ 'ନୂଆ ନିବାସ'-ଶୀର୍ଷକ ଗଳ୍ପରେ ଅଛି ଯେ, ନାନା ଅଦ୍ଭୁତ ରହସ୍ୟ ଭେଦରେ ସାଫଲ୍ୟ ଲାଭ ଛଡ଼ା ''ଗୋବର୍ଦ୍ଧନ ବାବୁ 'ମନର ବିଭିନ୍ନ ଅବସ୍ଥାରେ ଶରୀରର ରାସାୟନିକ ପରିବର୍ତ୍ତନ' ବିଷୟରେ ଗୋଟିଏ ମୌଳିକ ପ୍ରବନ୍ଧ ଲେଖିଥିବାରୁ ଉତ୍କଳ ବିଶ୍ୱବିଦ୍ୟାଳୟ ତାଙ୍କୁ 'ଡକ୍ଟର' ଉପାଧି ଦେବାକୁ ପ୍ରସ୍ତାବ କରିଛନ୍ତି ।'' (ପୃ ୧୭୯) ବହି ବାହାରିବାର ବହୁ ବର୍ଷ ପରେ ଲେଖକ ଦିନେ ଆସି ମୋ ପାଖରେ ଥିବା କପିରେ ଉଲ୍ଲିଖିତ ଲାଇନଗୁଡ଼ିକ ତଳେ ସ୍ୱହସ୍ତେ ନାଲିରେ ଅଣ୍ଡରଲାଇନ୍ କରି ଦେଲେ ଏବଂ ସେ ପୃଷ୍ଠାର ତଳ ମାର୍ଜିନରେ ଲେଖିଲେ - "Dr. Hargovind Khurana got Nobel prize on this in 1968."

ଜ୍ୟୋତିରିନ୍ଦ୍ରମୋହନ ଜୋଆର୍ଦ୍ଦାର

## କୀର୍ତ୍ତିର୍ଯସ୍ୟ

# ପରିଚୟ

ସେ ଦିନଟି ମୋର ସ୍ପଷ୍ଟ ମନେ ଅଛି । ୧୯୩୭ ମସିହା ଜୁଲାଇ ୧୫ ତାରିଖ ସନ୍ଧ୍ୟା ଛ'ଟା । ଆକାଶରେ ମେଘ ଭୀଷଣ ଭାବରେ ଘୋଟିଥାଏ । ମନଟା ସେଦିନ ଭଲ ନ ଥାଏ । ମୁଁ ଟିକିଏ ନଈକୂଳରେ ବସିବାକୁ ବାହାରିଥିଲି । ଟୋପାଏ ଦି'ଟୋପା ବର୍ଷା ପଡ଼ିବାରୁ କିଛିକ୍ଷଣ ଅପେକ୍ଷା କରିବା ପାଇଁ ମୁଁ ଜଣକ ପିଣ୍ଡାରେ ଛିଡ଼ା ହୋଇଗଲି । ଚାଳ ଘର । ସରୁ ବାରନ୍ଦାଟିଏ ଠିକ୍ ରାସ୍ତା ଉପରକୁ । ବାରନ୍ଦା ଉପରକୁ ସାନ ଝରକାଟିଏ । ଭିତରକୁ ଅନାଇ ଦେଖିଲି, ଜଣେ ଭଦ୍ରଲୋକ - ବୟସ ପ୍ରାୟ ୩୬/୩୭ ହେବ - ଇଲେକ୍‌ଟ୍ରିକ ଆଲୁଅ ତଳେ ନିବିଷ୍ଟ ମନରେ କ'ଣ ଲେଖୁଛନ୍ତି । କିଛିକ୍ଷଣ ଅପେକ୍ଷା କରିଚି, ଏହି ସମୟରେ ଖୁବ୍ ଜୋର୍‌ରେ ଝଡ଼ ଓ ବର୍ଷା ଆରମ୍ଭ ହେଲା । ସାଙ୍ଗେ ସାଙ୍ଗେ ରାସ୍ତାର ଓ ଘରର ଆଲୁଅ ସବୁ ଲିଭିଗଲା । କଅଣ କରିବି ଭାବୁଚି, ଏହି ସମୟରେ ଘର ଭିତରୁ ଭଦ୍ର ଲୋକ ଡାକିଲେ, ''ଭିତରକୁ ଆସନ୍ତୁ । ବାହାରେ ଭିଜି ଯିବେ ।'' ପ୍ରଥମେ ଟିକିଏ ଦ୍ୱିଧା ବୋଧ କଲି, କିନ୍ତୁ ଉପାୟ ନାହିଁ ଭାବି ଭିତରକୁ ଯିବାକୁ ବାହାରିଲି । ଭୀଷଣ ଅନ୍ଧକାରରେ ମୁହଁକୁ ମୁହଁ ଦିଶୁ ନ ଥାଏ । ଭଦ୍ରଲୋକ ତାଙ୍କ ଜାଗାରେ ବସି ମୋତେ ବାଟ ବତାଉଥାନ୍ତି - ''ସେଠି ଡାହାଣ ପାଖକୁ ଟେବୁଲ ଚେୟାର ପଡ଼ିଚି - ଟିକିଏ ବାଁକୁ ମାଡ଼ି - ଏଥର ପୁଣି ବାଁକୁ - ସେଠି ପିଣ୍ଡା ମାଡ଼ି ଗୋଟିଏ ଖଟ ପଡ଼ିଚି - ମୋର ଗ୍ରୀଷ୍ମାବାସ - ବାରନ୍ଦାରୁ ଟିକିଏ ଓହ୍ଲାଇ ପଡ଼ନ୍ତୁ - ସେଠି ଟିକିଏ ମୁଣ୍ଡ ନୁଆନ୍ତୁ - ଚାଳରୁ ଗୋଟାଏ ବାଉଁଶ ବାହାରିଚି - ବର୍ତ୍ତମାନ ଆପଣ ଦୁଆର ମୁହଁ ପାଖରେ - ଗୋଡ଼ଟା ଟିକିଏ ଉଠାଇ ପକାନ୍ତୁ - ଦୁଆର ବନ୍ଧଟା ଟିକିଏ ଅସ୍ୱାଭାବିକ ଉଚ୍ଚ - ଆପଣ ବର୍ତ୍ତମାନ ମୋ ଖଟ ପାଖରେ - ମୁଁ ଖଟର ଏ ପାଖରେ ବସିଚି - ଆପଣ ସେଇଠି ବସନ୍ତୁ ।'' ଘର ଭିତରେ ଏଡ଼େ ଅନ୍ଧାର ଯେ, ମୁଁ କିଛି ଦେଖି ପାରୁ ନ ଥାଏ । ନିରୀକ୍ଷଣ କରି ଦେଖିଲି ଏବଂ ଅନୁମାନରେ ବୁଝିଲି ଯେ, ଭଦ୍ରଲୋକ ପୂର୍ବପରି ଲେଖି ଚାଲିଛନ୍ତି । ପ୍ରଥମରେ ମୋତେ ଟିକିଏ ଆଶ୍ଚର୍ଯ୍ୟ ଲାଗିଲା ଯେ, ଭଦ୍ରଲୋକ ବାଟ ବତାଇଲା ବେଳେ ମୁଁ ଠିକ୍ କେଉଁଠି ଅଛି କିପରି ଜାଣି ପାରୁଥିଲେ । ବର୍ତ୍ତମାନ ଅଧିକ ଆଶ୍ଚର୍ଯ୍ୟ ଲାଗିଲା ଅନ୍ଧାରରେ ଲେଖିବାର ଦେଖି । କିଛି କ୍ଷଣ ପରେ ଭଦ୍ରଲୋକ କହିଲେ, ''ତା'ପରେ ? ଡାକ୍ତରୀ ପରୀକ୍ଷାରେ କିପରି କଲେ ? ଭଲ ହୋଇ ନାହିଁ ମନେ ହେଉଛି । ଏଟା ଶେଷ ପରୀକ୍ଷା ଦେଲେ ନା ? ଆଜି ତ ଆପଣଙ୍କ ପ୍ରାକ୍‌ଟିକାଲ ପରୀକ୍ଷା ଥିଲା ।'' ଭାବିଲି, ଭଦ୍ରଲୋକ ମୋତେ ନିଶ୍ଚୟ ଚିହ୍ନନ୍ତି । କିନ୍ତୁ ଶତ ଚେଷ୍ଟା କରି

ମଧ୍ୟ ମୁଁ ଭଦ୍ରଲୋକଙ୍କୁ ଚିହ୍ନି ପାରିଲି ନାହିଁ । ସେ ମୋ ମନ କଥା ବୁଝିପାରି କହିଲେ, ''ନା, ସୁଧୀର ବାବୁ, ଆପଣ ମୋତେ ଚିହ୍ନନ୍ତି ନାହିଁ । ଆପଣଙ୍କୁ ମଧ୍ୟ ମୁଁ ଚିହ୍ନେ ନାହିଁ । ଏ ଅନ୍ଧାରରେ ଆପଣଙ୍କୁ ଏ ପର୍ଯ୍ୟନ୍ତ ଦେଖି ମଧ୍ୟ ପାରି ନାହିଁ । ଏ ଇଲେକ୍‌ଟ୍ରିକ୍ କଳ ଯୁଗରେ ଏଇ ଗୋଟାଏ ମସ୍ତ ବଡ଼ ଅସୁବିଧା ଏବଂ ଏହାରି ସକାଶେ ଯେତେ ଗଣ୍ଡଗୋଳ । ଯେତେବେଳ ପର୍ଯ୍ୟନ୍ତ କଳ ଠିକ୍ ଅଛି, ସେତେବେଳ ପର୍ଯ୍ୟନ୍ତ ଅନାବଶ୍ୟକ ପ୍ରାଚୁର୍ଯ୍ୟ, ଯେତେବେଳେ କଳ ବିଗିଡ଼ିଲା, ସେତେବେଳେ ନିର୍ଲଜ୍ଜ ଦାରିଦ୍ର୍ୟ ।'' ମୁଁ ଏ ଟିପ୍‌ପଣୀରେ କର୍ଣ୍ଣପାତ ନ କରି ପଚାରିଲି, ''ଆପଣ ତେବେ କିପରି ଜାଣିଲେ ଯେ ମୁଁ ଡାକ୍ତରୀ ପରୀକ୍ଷା ଦେଇଛି - ଶେଷ ପରୀକ୍ଷା ଦେଇଛି - ପରୀକ୍ଷାରେ ଭଲ କରି ନାହିଁ । ନାଁଟି ମଧ୍ୟ ଆପଣ ପ୍ରାୟ ଠିକ୍ କହିଲେ । ମୋ ନାଁ ଅବଶ୍ୟ ସୁବୋଧ - ସୁବୋଧ ଚନ୍ଦ୍ର ମହାନ୍ତି ।''

''ଏସବୁ କହିବାରେ ବିଶେଷ ବାହାଦୁରି ନାହିଁ । ସମସ୍ତେ ନିଜ ନିଜ ପରିଚୟ ସାଙ୍ଗରେ ନେଇ ବୁଲନ୍ତି । ଠିକ୍ ଠିକ୍ ଅନୁମାନ କରିଧରି ପାରିଲେ ହେଲା । ଆପଣ ପିଲାବେଳେ ପଢ଼ି ନାହାନ୍ତି ମରୁଭୂମିରେ ହଜି ଯାଇଥିବା ସେଇ ଓଟ କଥା ? ଆପଣ ଯେମିତି ଘର ଭିତରକୁ ଆସିଲେ, ମୁଁ ଲାଇସଲ ଓ କାରବୋଲିକ୍ ଏସିଡ୍‌ର ଗନ୍ଧ ପାଇଲି । ଅତଏବ ଧରି ନେଲି ଆପଣ ଡାକ୍ତରୀ ସହିତ ସମ୍ପୃକ୍ତ । ଆପଣ ତେବେ ଡାକ୍ତର କିମ୍ବା ଡାକ୍ତରୀ ଛାତ୍ର, କିମ୍ବା କମ୍ପାଉଣ୍ଡର । ଏପରି ହୋଇପାରେ, ଆପଣ ଏ ତିନିରୁ କିଛି ନ ହୋଇ ଜଣେ ସାଧାରଣ ଲୋକ - କୌଣସି ରୋଗୀର ପରିଚର୍ଯ୍ୟା କରିବାକୁ ଯାଇ ଡାକ୍ତରଙ୍କ ନିର୍ଦ୍ଦେଶ ମତେ ଏସବୁ ବ୍ୟବହାର କରିଛନ୍ତି । ପ୍ରଥମେ ଧରା ଯାଉ ଆପଣ ଜଣେ ସାଧାରଣ ଲୋକ । ଏ ସିଦ୍ଧାନ୍ତ ମୁଁ ମୂଳରୁ ବାଦ ଦେଲି । କାରଣ ଯଦି ଆପଣ କୌଣସି ରୋଗୀର ପରିଚର୍ଯ୍ୟା କରୁଥାଆନ୍ତେ ତା' ହେଲେ ଏ ବର୍ଷା ଦେଖି ଘରୁ ବାହାରନ୍ତେ ନାହିଁ । ନାହିଁ ବା ଯଦି ବାହାରନ୍ତେ, ତା'ହେଲେ ବର୍ଷା ପଡ଼ିବା ଆଗରୁ ଘରକୁ ଫେରି ଯିବାକୁ ବ୍ୟସ୍ତ ହୁଅନ୍ତେ - ନଈକୂଳରେ ବସିବାକୁ ବ୍ୟସ୍ତ ହୁଅନ୍ତେ ନାହିଁ । ଆପଣ ପିଣ୍ଡାରେ ଛିଡ଼ା ହେଲାବେଳେ ବ୍ୟସ୍ତ ହୋଇ ମଣିଷ ଟିକିଏ ନଈକୂଳେ ବସି ବି ପାରିବ ନାହିଁ, କହିବାର ଶୁଣିଛି । ଆପଣ କମ୍ପାଉଣ୍ଡର କି ନା ? ଏ ଅନୁମାନ ମଧ୍ୟ ବାଦ ଦେଲି । ପ୍ରତ୍ୟେକ ବ୍ୟବସାୟର ଗୋଟିଏ ନା ଗୋଟିଏ ବିଶିଷ୍ଟତା ଅଛି, ଯାହାକି ମନୁଷ୍ୟର କଥାବାର୍ତ୍ତା, ଭାବଭଙ୍ଗୀ ଓ ଚାଲିଚଳନରେ ପ୍ରକାଶ ପାଏ । ଆପଣଙ୍କ ଗାମ୍ଭୀର୍ଯ୍ୟ ଏବଂ କମ ବୟସ କମ୍ପାଉଣ୍ଡର ଉପଯୋଗୀ ନୁହେଁ । ଯଦିବା ଧରାଯାଏ ଆପଣ କମ୍ପାଉଣ୍ଡର, ତେବେ ଆପଣ ରୋଗୀ ଘରୁ ନିଜ ଘରକୁ ଲାଇସଲ୍ ଓ କାର୍‌ବୋଲିକର ଗନ୍ଧ ଏପର୍ଯ୍ୟନ୍ତ ଲାଗି ରହିଚି । ଏ ଅବସ୍ଥାରେ ଆପଣ ଘରକୁ ଫେରି ଯିବାକୁ ବ୍ୟସ୍ତ ହୁଅନ୍ତେ । ଆପଣ ଡାକ୍ତର ମଧ୍ୟ ନୁହଁନ୍ତି । ଚଟି ଘୋଷାଡ଼ି ଚାଲିବା, ପୋଷାକ ପରିଚ୍ଛଦ ଏବଂ ବୟସ ଜଣେ ଛାତ୍ରର ପରିଚୟ ଦିଏ । ଡାକ୍ତର ହୋଇଥିଲେ ଆପଣ ଘରକୁ ଫେରିଯିବାକୁ ବ୍ୟସ୍ତ ହୁଅନ୍ତେ ନାହିଁକି ? ଅତଏବ ରହିଲା ଆପଣ ଜଣେ

ଡାକ୍ତରୀ ଛାତ୍ର । ମୁଁ ମଧ ଜାଣେ । ଆଜି ୫ମ ଓ ୬ଷ୍ଠ ବାର୍ଷିକ ପ୍ରାକ୍ଟିକାଲ୍ ପରୀକ୍ଷା ।''

ଭାବିଲି - ସତେ ତ, ଜାଣିବା ତ ଏପରି କିଛି କଷ୍ଟ ନୁହେଁ । କିନ୍ତୁ ଏ ସବୁ ସିନା ବାହ୍ୟ ଲକ୍ଷଣରୁ ଧରା ପଡ଼ିଗଲା, କିନ୍ତୁ ପରୀକ୍ଷାରେ ଯେ ଭଲ କରି ନାହିଁ, ଏହା କିପରି ପ୍ରକାଶ ପାଉଚି । ଏ କଥା ପଚାରିଲି ।

''ଗୋଟିଏ ଖିଅ ଧରିଲେ ତେଣିକି ଅଗ୍ରସର ହେବା ବିଶେଷ କିଛି କଷ୍ଟ ନୁହେଁ । ପରୀକ୍ଷାରେ ଭଲ କରିଥିଲେ ଆପଣ କଅଣ କରନ୍ତେ ? ପରୀକ୍ଷାରୁ ଘରକୁ ଫେରି ଗାଧୋଇ ପାଧୋଇ ସଜବାଜ ହୋଇ ସାଙ୍ଗ ସାଥୀ ମେଳରେ ଥିଏଟର ବା ସିନେମା ଦେଖିବାକୁ ଯାଆନ୍ତେ । କିନ୍ତୁ ଆପଣ ବାହାରିଚନ୍ତି ନଈକୂଳରେ ଏକା ବସିବାକୁ । ଏଥିରୁ ମନ ଭାରି ଖରାପ ଜଣା ପଡୁଚି । ପରୀକ୍ଷା ଦେଇ ଜଣେ ଛାତ୍ରର ମନ ଆଉ କେଉଁଥି ପାଇଁ ଖରାପ ହୋଇପାରେ ?''

''ହେଲା । କିନ୍ତୁ ୬ଷ୍ଠ ବାର୍ଷିକ ପରୀକ୍ଷା ଦେଲି, ଆପର କିପରି ଜାଣିଲେ ? ମୋର ଏଟା ୫ମ ବର୍ଷ । ଅବଶ୍ୟ ମୋର ୬ଷ୍ଠ ବର୍ଷ ହେବାର କଥା । ବାପା ମରିଯିବାରୁ ଏବଂ ସେଇଥି ଯୋଗୁଁ ନାନା ଅସୁବିଧାରୁ ମୁଁ ୫ମ ବର୍ଷରେ ବର୍ଷେ ରହିଗଲି । କିନ୍ତୁ ଆପଣ ପ୍ରାୟ ଠିକ୍ କହିଛନ୍ତି । କିନ୍ତୁ ଏଟା ଅନ୍ଦାଜ ।''

''ଏକଦମ୍ ଅନ୍ଦାଜ ନୁହେଁ । ମୋର ଦୃଢ଼ ଧାରଣା ଯେ, ଗଳାର ସ୍ୱରରୁ ଏବଂ କଥା କହିବାର ଭଙ୍ଗୀରୁ ଯେକୌଣସି ଲୋକର ବୟସ, ବ୍ୟବସାୟ, ବୁଦ୍ଧି ଆଦି ସବୁ ଅନୁମାନ କରିହେବ । ପାରିପାର୍ଶ୍ୱିକ ଅବସ୍ଥା, ବ୍ୟବସାୟ, ବୁଦ୍ଧି ଓ ଶିକ୍ଷା କିପରି ମନୁଷ୍ୟର ସ୍ୱରକୁ ତଥା କଥା କହିବାର ଭଙ୍ଗୀକୁ ଭିନ୍ନ ଭିନ୍ନ ପ୍ରକାର କରେ, ଏ ବିଷୟରେ ଗୋଟିଏ ପ୍ରବନ୍ଧ ଏ ପର୍ଯ୍ୟନ୍ତ ବସି ଲେଖୁଥିଲି । ଆପଣଙ୍କ ଗଳାର ସ୍ୱର ଏବଂ କଥା କହିବାର ଭଙ୍ଗୀରୁ ବୁଝିଲି ଯେ, ଆପଣଙ୍କ ବୟସ ୨୨/୨୩ ହେବ ଏବଂ ଆପଣଙ୍କ ବୁଦ୍ଧି ସାଧାରଣ ଲୋକ ଅପେକ୍ଷା ବେଶୀ । ପ୍ରଥମେ ବୁଝିଲି, ଆପଣ ଡାକ୍ତରୀ ଛାତ୍ର । ଆପଣଙ୍କ ବୟସ ବୁଝିଲି୨୨/୨୩ ଏବଂ ଆପଣଙ୍କ ବୁଦ୍ଧିରୁ ଅନୁମାନ କଲି ଆପଣ କେଉଁଠି ଫେଲ୍ ହୋଇ ନାହାନ୍ତି । ଅତଏବ ହିସାବରେ ପଡ଼ିଲା, ଆପଣଙ୍କର ଏଟା ୬ଷ୍ଠ ବର୍ଷ । ତେବେ ଆପଣଙ୍କ ଅତ୍ୟଧିକ ମନ ଖରାପରୁ ମୋର ବୁଝିବା ଉଚିତ ଥିଲା ଯେ, ଟିକିଏ କେଉଁଠି ଗୋଳମାଳ ଅଛି ।''

''ସେ ଯାହା ହେଉ, ନାଁ ଟା ତ ଆପଣ ପ୍ରାୟ ଠିକ୍ କହିଲେ !'' ମୋ କଥାରେ ଭଦ୍ର ଲୋକ ଖୁବ୍ ହସି କହିଲେ, ''ଏଇଟା ଏକଦମ୍ ଅନ୍ଦାଜ । ଅବଶ୍ୟ ଏ ବିଷୟରେ ଯେ ଗୋଟାଏ ଯୁକ୍ତି ମୋର ନାହିଁ, ତା' ନୁହେଁ । କିନ୍ତୁ ମୋର ଏଯୁକ୍ତିରେ ଦୃଢ଼ ଧାରଣା ଜନ୍ମି ନାହିଁ । ମୁଁ ଏପର୍ଯ୍ୟନ୍ତ ଅଚିହ୍ନା ଲୋକଙ୍କ ନାଁ କହି ପରୀକ୍ଷା କରୁଛି । ପ୍ରାୟ ଶତକରା ତିରିଶ ଠିକ୍ ହେଉଛି । ଯୁକ୍ତିଟା ହେଉଚି ଯେ, ବାପା ମା' ଯେତେବେଳେ ସନ୍ତାନର ନାଁ ରଖନ୍ତି, ସେତେବେଳେ ତାଙ୍କ ଅଜ୍ଞାତରେ ସନ୍ତାନର ଯେଉଁ ଗୁଣଟିର ଅଭାବ, ସେ ଅଭାବଟି ନାଁରେ

ପୂରଣ କରି ଦିଅନ୍ତି । ଭଲ ନାଁ ବିଷୟରେ ଏପରି ହୁଏ । ଡାକ ନାଁ ବେଳେ ଯେଉଁ ଦୋଷଟି -ଶାରୀରିକ ବା ମାନସିକ - ଅଧିକ, ସେପରି ଗୋଟିଏ ନାଁ ରଖନ୍ତି । ଆପଣ ସାଧାରଣ ଅପେକ୍ଷା ଟିକିଏ ବେଶୀ ଅସ୍ଥିର । ଭାବିଲି, ଆପଣଙ୍କ ନାଁ ସୁଧୀର ହୋଇଥିବ ।''

ଏପରି ଅଦ୍ଭୁତ ଯୁକ୍ତିରେ ମୁଁ ମଧ୍ୟ ହସି ପକାଇଲି । ଭଦ୍ରଲୋକ ହଠାତ୍ ଖୁବ୍ ଗମ୍ଭୀର ଭାବରେ - ବୋଧହୁଏ ଟିକିଏ ବିରକ୍ତ ହୋଇ କହିଲେ, ''ଏଥିପାଇଁ ହସିବାର କିଛି ନାହିଁ । ମୋର ଧାରଣା, ପ୍ରକୃତି ସବୁବେଳେ ସମତା ରଖିବାକୁ ଚାହେଁ । ପ୍ରକୃତିର ଏହି ନିୟମ ଅନୁସାରେ - ଆପଣ ଅନୁସନ୍ଧାନ କରି ଦେଖିବେ - ଯେଉଁ ଲୋକଠାରେ ରାଗ ଦ୍ୱେଷ କୋମଳତା ଆଦି କୌଣସି ଗୋଟିକର ଆଧିକ୍ୟ ଥାଏ, ସେହି ଲୋକର ପ୍ରିୟ ଖାଦ୍ୟ ନିଶ୍ଚୟ ସେହିଖାଦ୍ୟ, ଯାହାକି ସେହି ଗୁଣ ବା ଦୋଷର ଓଲଟା ଫଳ ଦିଏ । ସେ ଲୋକ କଅଣ ଜାଣି ଶୁଣି ସେ ଖାଦ୍ୟକୁ ଭଲ ପାଏ ? ସେହିପରି ବାପ ମା' ଯେଉଁ ନାଁ ଦିଅନ୍ତି, ସେମାନେ ଜାଣି ପାରନ୍ତି ନାହିଁ ଯେ ପୁଅର ସେ ଗୁଣଟିର ଅଭାବ ହେବ । ସେମାନେ ଅଜ୍ଞାତରେ ନାଁ ଜରିଆରେ ଆମ ଆଗରେ ଗୋଟିଏ ଆଦର୍ଶ ରଖି ଦିଅନ୍ତି ।''

ମୋର ମନେ ହେଲା, ଏ ଯୁକ୍ତି ଶୁଣିବାକୁ ଚମକପ୍ରଦ ହେଲେ ହେଁ ଭ୍ରାନ୍ତ । ଏହି ସମୟରେ ଆଲୁଅ ଜଳି ଉଠିଲା । ଅନାଇ ଦେଖିଲି, ଘରଟି ଖୁବ୍ ସାନ, ଘର ମଝିକୁ ଗୋଟିଏ ଖଟ, ବିଛଣା ସାମାନ୍ୟ କିନ୍ତୁ ପରିଷ୍କୃତ ପରିଚ୍ଛନ୍ନ । ଘରର ଆୟତନକୁ ଚାହିଁ ଘରେ ଅନେକ ବେଶି ଜିନିଷ ଅଛି, କିନ୍ତୁ ପ୍ରତ୍ୟେକଟି ଏପରି ସୁନ୍ଦର ଭାବରେ ରହିଛି ଯେ, ଦେଖିଲେ ମନେ ହେବ ନାହିଁ, ଏ ଘରେ ଏତେ ଜିନିଷ ଅଛି । ଚାରିଆଡ଼ ମଧ୍ୟ ପରିଷ୍କାର ପରିଚ୍ଛନ୍ନ । ଖଟର ମୁଣ୍ଡଆଡ଼େ ଦୁଇ ପାଖରେ ଦୁଇଟି ଟେବୁଲ । ଗୋଟାକ ଉପରେ ନାନାପ୍ରକାର ବହି, କାଗଜ, ଖାତା, ଚିଠି ଇତ୍ୟାଦି ଅଲଗା ଅଲଗା ସଜା ହୋଇ ରହିଛି । ମନେହୁଏ, ଏ ସଜା ହେବାର ନିୟମଟି ଯିଏ ଜାଣେ, ସେ ଅନ୍ଧାରରେ ମଧ୍ୟ ଯେକୌଣସି ଜିନିଷ ଇଚ୍ଛା କରିବ ବାହାର କରି ପାରିବ । ଆର ଟେବୁଲଟିରେ ନାନା ପ୍ରକାରର ବୋତଲରେ ବୋଧହୁଏ ନାନା ପ୍ରକାର ଏସିଡ୍ କେମିକାଲ ରହିଛି । ଗୋଟିଏ ମୂଲ୍ୟବାନ ସାନ ତରାଜୁ (କେମିକାଲ ବାଲାନ୍ସ) ଟେଷ୍ଟ ଟିଉବ୍, ଅଣୁବୀକ୍ଷଣ ଯନ୍ତ୍ର ମଧ୍ୟ ଅଛି । ଭଦ୍ରଲୋକ ବୋଧହୁଏ ରସାୟନ ବିଜ୍ଞାନପ୍ରିୟ । ତାଙ୍କ ଖାତା ଆଡ଼କୁ ଅନାଇ ଦେଖିଲି । ଲେଖାର ଧାଡ଼ି ବା ଅକ୍ଷରରୁ ବୁଝିବାର ଉପାୟ ନାହିଁ, ସେ ଅନ୍ଧାରରେ କେଉଁଠୁ ଲେଖିବାକୁ ଆରମ୍ଭ କରିଛନ୍ତି । କୌତୁହଳ ଚାପି ନପାରି ପଚାରିଲି, ''ଆପଣ ଅନ୍ଧାରରେ କିପରି ଲେଖି ପାରିଲେ ?''

''ଯେ କେହି ଲେଖି ପାରିବେ । ଲେଖି ନ ପାରିବା ଆଖିରେ ନ ଦେଖି ପାରିବା ସକାଶେ ନୁହେଁ । ମାନସିକ ପ୍ରସ୍ତୁତି ଅଭାବ ଯୋଗୁଁ ଆମେ ଅନ୍ଧାରରେ ଲେଖି ପାରୁନା । ଆପଣ ମୋ ଅବସ୍ଥାରେ ପଡ଼ିଥିଲେ ନିଶ୍ଚୟ ପାଟି ତୁଣ୍ଡ କରି ଚାକରକୁ ଡାକି ଆଲୁଅ

ଲଗାଇବା ପାଇଁ ଅସ୍ଥିର କାଣ୍ଡ କରନ୍ତେ । କିନ୍ତୁ ଆଲୁଅ ଲିଭିବା ମାତ୍ରକେ ମୁଁ ଅବସ୍ଥାକୁ ସଙ୍ଗେ ସଙ୍ଗେ ମାନି ନେଲି ଏବଂ ଅବିଚଳିତ ଭାବରେ କିପରି କାମ କରିବାକୁ ହେବ ଭାବି ନେଲି ।'' କିଛିକ୍ଷଣ ପରେ ସେ କହିଲେ, ''ସାତଟା ବାଜିଲା, ଜଣେ ମୋ ପାଇଁ ଅପେକ୍ଷା କରୁଛନ୍ତି, ମୁଁ ଯାଉଛି । ଆଶା କରେ ସାଢ଼େ ଆଠଟାବେଳେ ଫେରିବି । ବର୍ଷା ଓ ଝଡ଼ ଯେପରି ହେଉଛି, ଆପଣଙ୍କ ଯିବା ଅସମ୍ଭବ । ଏଇଠି ଆଜି ରାତିଟା ରହିଯାଆନ୍ତୁ ।''

''ଆପଣ ଏ ଝଡ଼ରେ ନ ଗଲେ ହୁଅନ୍ତା ନାହିଁ ? ମୋତେ ତ ରହିବାକୁ ହେବ ।''

''ଆପଣ ନିଶ୍ଚିନ୍ତରେ ରହି ପାରନ୍ତି । ଆପଣଙ୍କ ମେସ୍ କେଉଁଠି କୁହନ୍ତୁ, ମୁଁ ଖବର ଦେବି ।''

ଭଦ୍ରଲୋକଙ୍କ କଥାରେ ଏପରି ଭୁଲି ଯାଇଥିଲି ଯେ, ତାଙ୍କ ପରିଚୟ ଏ ପର୍ଯ୍ୟନ୍ତ ମଚାରି ପାରି ନାହିଁ । ଟିକିଏ ଦ୍ୱିଧା ଭାବରେ କହିଲି, ''ଆପଣଙ୍କ ପରିଚୟ... ।''

''ମୋ ନାଁ ଗୋବର୍ଦ୍ଧନ ମିଶ୍ର । ମୁଁ ଯାଉଛି ।'' ତା'ପରେ ଚାକରକୁ ଡାକି କହିଲେ, ''ରାମା, ବାବୁଙ୍କ ପାଇଁ ରାନ୍ଧିବୁ ।''

ଖଣ୍ଡିଏ ଛତା ନେଇ ଗୋବର୍ଦ୍ଧନ ବାବୁ ବାହାରି ଗଲେ । ଝଡ଼ ଓ ବର୍ଷା ଆହୁରି ଅଧିକ ଜୋର୍‌ରେ ହେଉଥାଏ । ଗଲାବେଳେ ଗୋବର୍ଦ୍ଧନ ବାବୁ ମୋତେ ଖଣ୍ଡେ ବହି ପଢ଼ିବାକୁ ଦେଇଗଲେ ଏବଂ ଅନୁରୋଧ କରିଗଲେ କୌଣସି ଜିନିଷରେ ହାତ ନ ଦେବାକୁ । ବହିରେ ନାଁ ଲେଖା ଅଛି -ଗୋବର୍ଦ୍ଧନ ମିଶ୍ର, ଏମ୍.ଏସ୍-ସି., ବି.ଏଲ୍. । ବହିଟିର ମୁଖବନ୍ଧରୁ ଦେଖିଲି ଯେ, ସାର୍ ଆରଥର କୋନାନ୍ ଡୟେଲ୍‌ଙ୍କ ଶାର୍ଲକ୍ ହୋମସ୍ କ୍ଷୁଦ୍ର ଗଳ୍ପ । କେତେ ଗୁଡ଼ିଏ ଡିଟେକ୍‌ଟିଭ୍ ଗଳ୍ପ । ଏ ବହି ପଢ଼ିବାକୁ ମନ ଲାଗିଲା ନାହିଁ । ଗୋବର୍ଦ୍ଧନ ବାବୁଙ୍କ କଥା ବସି ଭାବିଲି । କିପରି ଅଦ୍ଭୁତ ଲାଗୁଥାଏ । ଉଚ୍ଚାରେ ବୋଧହୁଏ ପାଞ୍ଚ ଫୁଟ୍‌ରୁ ସାମନ୍ୟ ବେଶୀ । ଦେଖିଲେ ଖୁବ୍ ବାଙ୍ଗର ମନେ ହୁଏ । ଦେହର ରଙ୍ଗ ଖୁବ୍ କଳା, ମୁଣ୍ଡର ବଡ଼ ବଡ଼ ବାଳଗୁଡ଼ିକ ଖୁବ୍ ସୁନ୍ଦର ଭାବରେ ପଛକୁ ଭଙ୍ଗା ହୋଇଛି । ଶରୀରଟି ବେଶ୍ ସୁପୁଷ୍ଟ- ଯଥେଷ୍ଟ ଶକ୍ତି ଥିଲା ପରି ମନେ ହୁଏ । ଲୋକେ କୁହନ୍ତି ଯେ, ଆଖି ମନର ଦର୍ପଣ । କିନ୍ତୁ ଗୋବର୍ଦ୍ଧନ ବାବୁଙ୍କ ଆଖିରେ ତାଙ୍କର ଏତେ ତୀକ୍ଷ୍ଣ ବୁଦ୍ଧିର କୌଣସି ଲକ୍ଷଣ ନାହିଁ । ସବୁବେଳେ ସେ ବୋକା ଭଳି ଚାହିଁ ରହିଛନ୍ତି । ପ୍ରତ୍ୟେକ ମନୁଷ୍ୟକୁ ଚିହ୍ନିବାର ଅତ୍ୟଧିକ ଔତ୍ସୁକ୍ୟ ଓ ଚିହ୍ନିପାରି ବିସ୍ମୟ ବୋଧହୁଏ ଆଖିରେ ବୋକାମି ଭଳିଆ ଫୁଟି ଉଠେ । ତାଙ୍କର ମସ୍ତିଷ୍କ ସହିତ ପରିଚିତ ହେଲେ ତାଙ୍କ ଅସାଧାରଣତ୍ୱ ହୃଦୟଙ୍ଗମ କରି ହୁଏ । ସାଧାରଣ ଲୋକଙ୍କ ସେନ୍‌ସରି (ସମ୍ବେଦ) ନର୍ଭ ଯେଉଁ ସମ୍ବାଦ ତାଙ୍କର ମସ୍ତିଷ୍କକୁ ଯୋଗାଏ, ତାହା ସେମାନଙ୍କର ମସ୍ତିଷ୍କ 'କେବଳ ଗୋଚରାର୍ଥେ' ଭଳି ଗ୍ରହଣ କରି ସାଙ୍ଗେ ସାଙ୍ଗେ ଫୋପାଡ଼ି ଦିଅନ୍ତି । କିନ୍ତୁ ଗୋବର୍ଦ୍ଧନ ବାବୁଙ୍କ ସମ୍ବେଦ ନର୍ଭ ଯେଉଁ ସମ୍ବାଦ ତାଙ୍କ ମସ୍ତିଷ୍କକୁ ଦିଏ, ତାହା ଯେତେ ନଗଣ୍ୟ ହେଉ ନା କାହିଁକି, ତାଙ୍କର ମସ୍ତିଷ୍କ ତାକୁ ଗ୍ରହଣ କରି ଟିକିନିଖି ବିଶ୍ଳେଷଣ

କରି ପୁଣି ତାକୁ ସଂଶ୍ଳେଷଣ କରି ଶେଷ ସିଦ୍ଧାନ୍ତଟି ମୋଟର(ଚେଷ୍ଟୀୟ) ନର୍ଭ ବାଟେ ଛାଡ଼ିଦିଏ ।

ଗୋବର୍ଦ୍ଧନ ବାବୁ ଘରେ ଗୋଟିଏ ଲାଇବ୍ରେରି ରଖିଛନ୍ତି କହିଲେ ଚଳେ । ଗଣିତ, ବିଜ୍ଞାନ, ଦର୍ଶନ, ଚିକିତ୍ସା, ସଙ୍ଗୀତ, ସାହିତ୍ୟ, ଇତିହାସ, ଭୂତତ୍ତ୍ୱ, ଭୂଗୋଳ, ଆଇନ ଇତ୍ୟାଦି ସବୁ ବିଷୟରେ ବହି ଅଛି । ତାଙ୍କ ପ୍ରକୃତିରୁ ମୁଁ ଯେତେଦୂର ବୁଝିଚି, ମନେହୁଏ ନାହଁ ଯେ, ଏ ଗୁଡ଼ିକ ଲୋକ ଦେଖାଣିଆ ପାଇଁ ସେ ରଖିଛନ୍ତି । ପ୍ରତ୍ୟେକ ବିଷୟରୁ ଖଣ୍ଡେ ଖଣ୍ଡେ ବହି କାଢ଼ି ମୁଁ ଦେଖିଲି । ବହି କଡ଼ରେ ତାଙ୍କର ଟିପ୍‌ପଣୀ ଲେଖା ଅଛି । କିନ୍ତୁ ରସାୟନ ବିଜ୍ଞାନରେ ତାଙ୍କର ସବୁଠୁଁ ଅଧିକ ପ୍ରବେଶ ଥିଲା ପରି ମନେ ହେଲା । ନିଜ ଘରେ ସେ ଗୋଟିଏ ସାନ ରସାୟନ ପରୀକ୍ଷାଗାର ମଧ୍ୟ ରଖିଛନ୍ତି କହିଲେ ଚଳେ । ଅନ୍ୟ କିଛି ନ ପାଇ ମୁଁ ତାଙ୍କୁ ଦେଇଥିବା ବହିଖଣ୍ଡ ପଢ଼ିବାକୁ ଆରମ୍ଭ କଲି । କିଛି ଦୂର ପଢ଼ିବା ପରେ ମୋର ମନେ ହେଲା ଯେ, ଡିଟେକ୍‌ଟିଭ ଗଳ୍ପ ବୋଲି ଅବଜ୍ଞା କରିବା ଉଚିତ ହୋଇନାହିଁ । ଲେଖକଙ୍କର ଲେଖାର ଭଙ୍ଗୀ, ମନୁଷ୍ୟ ମନର ନିଗୂଢ଼ ସ୍ତର ସହିତ ପରିଚୟ ଓ ଚରିତ୍ର ଚିତ୍ରଣ ଦେଖି ମୋତେ ଆଶ୍ଚର୍ଯ୍ୟ ଲାଗିଲା । ଦୁଇଟି ଗଳ୍ପ ଶେଷ କରି ତୃତୀୟ ଗଳ୍ପଟି ପଢ଼ିବାକୁ ଆରମ୍ଭ କରିଚି, ହଠାତ୍ ଚମକି ପଡ଼ିଲି ଗୋବର୍ଦ୍ଧନ ବାବୁଙ୍କ କଥାରେ । ଘଡ଼ିକୁ ଅନାଇ ଦେଖିଲି ଠିକ୍ ସାଢ଼େ ଆଠଟା । ସେ କହିଲେ, ‘‘ଆପଣଙ୍କ ଏକମନରେ ପଢ଼ିବାରୁ ଜଣା ପଡୁଛି, ଗଳ୍ପଗୁଡ଼ିକ ଆପଣଙ୍କୁ ଖୁବ୍ ଭଲ ଲାଗିଛି । କିନ୍ତୁ ଆପଣ ଯେପରି ଅସ୍ଥିର ପ୍ରକୃତିର ଲୋକ । ଏ ସମୟ ଭିତରେ ଅନ୍ତତଃ ଚାରୋଟି ଗଳ୍ପ ପଢ଼ି ପାରିଥାନ୍ତେ । ମନେ ହେଉଛି, ପ୍ରଥମେ ଡିଟେକ୍‌ଟିଭ୍ ଗଳ୍ପ ଭାବି ଅବଜ୍ଞାରେ ପଢ଼ିବାକୁ ଇଚ୍ଛା କରି ନାହାନ୍ତି ।’’

ଏହିପରି ନାନା କଥାରେ ସାଢ଼େ ନ’ଟା ବାଜିବାରୁ ଆମେ ଖାଇବାକୁ ଗଲୁ । ସେଠି ମଧ୍ୟ ନାନା ବିଷୟରେ କଥା ପଡ଼ିଲା । ଦେଖିଲି, ସବୁଚିନ୍ତା ଧାରା ସହିତ ଗୋବର୍ଦ୍ଧନ ବାବୁଙ୍କର ଭଲ ପରିଚୟ ଅଛି ଏବଂ ପ୍ରତ୍ୟେକ ବିଷୟରେ ତାଙ୍କର ଗୋଟିଏ ନିଜସ୍ୱ ମତ ଅଛି । କଥାରେ କଥାରେ ଭିଟାମିନ ବିଷୟରେ କଥା ପଡ଼ିଲା । ସେ କହିଲେ, ‘‘ଡାକ୍ତରମାନେ ଉପଦେଶ ଦିଅନ୍ତି ଭିଟାମିନ୍ ପିଲ୍ ଖାଇବାକୁ । ମୋର ବିଶ୍ୱାସ, ଯେକୌଣସି ଖାଦ୍ୟ ପଦାର୍ଥରୁ କେବଳ ଭଲ ଗୁଣ ଗୁଡ଼ିକ କାଢ଼ିନେଇ ଖାଦ୍ୟ ବା ଔଷଧ ପ୍ରସ୍ତୁତ କଲେ ତାହା ନିଶ୍ଚୟ ଖୁବ୍ ଶୀଘ୍ର ଫଳ ଦେବ; କିନ୍ତୁ ତା’ର ପ୍ରତିଫଳ ମଧ୍ୟ ଖୁବ୍ ଶୀଘ୍ର ହେବ । ଏଇଥିପାଇଁ ଆୟୁ କମିଯିବ । ସଂସାରରେ ଏପରି କୌଣସି ଖାଦ୍ୟ ନାହିଁ, ଯାହାର ଭଲ ଗୁଣ ଓ ଖରାପ ଗୁଣ ସମାନ ଭାବରେ ନାହିଁ । ଯେକୌଣସି ଖାଦ୍ୟ ଗୋଟାଏ ଦିଗରେ ଶକ୍ତି ବୃଦ୍ଧି କଲେ ଅନ୍ୟ ଦିଗରେ ଶକ୍ତି ହ୍ରାସ କରାଏ । ପ୍ରକୃତିର ଏହି ସମତାକୁ ଭାଙ୍ଗି କେବଳ ଶକ୍ତିବୃଦ୍ଧି କରିବାର କ୍ଷମତା ଟିକକ ନେଇ ଯେଉଁ ଖାଦ୍ୟ ବା ଔଷଧ ପ୍ରସ୍ତୁତ ହେବ, ତା’ର ଫଳ ଯେତେ ଶୀଘ୍ର ଫଳିବ ପ୍ରତଫଳ ମଧ୍ୟ ସେତେ ଶୀଘ୍ର ମିଳିବ ।

ରାତି ସାଢ଼େ ଦଶଟା ବେଳେ ଆମେ ଶୋଇବାକୁ ଗଲୁ । ଶୋଇବା ଆଗରୁ ଗୋବର୍ଦ୍ଧନ ବାବୁ ତାଙ୍କ କାମ କରିବାକୁ ବସିଲେ । ଝଡ଼ ଓ ବର୍ଷା ପୂର୍ବଠୁ ଅଧିକ ଜୋର୍‌ରେ ହେଉଥାଏ । ପରଦିନ ମୁଁ ଟିକିଏ ଡେରିରେ ଉଠିଲି । ଝଡ଼ ଓ ବର୍ଷା ଆଦୌ ନାହିଁ କହିଲେ ଚଳେ । ଉଠି ଦେଖିଲି ଯେ, ଗୋବର୍ଦ୍ଧନ ବାବୁ ତାଙ୍କ ନିତ୍ୟକର୍ମ ସାରି କେଉଁଠିକି ଯିବାକୁ ପ୍ରସ୍ତୁତ ହେଉଛନ୍ତି । ମୋତେ ଦେଖି କହିଲେ, ''ସୁବୋଧ ବାବୁ, ଆପଣଙ୍କ ପରୀକ୍ଷା ତ ସରିଛି । ଯଦି ଇଚ୍ଛା ହୁଏ ଆସନ୍ତୁ ଗୋଟିଏ ମୃତ୍ୟୁ ବିଷୟରେ ଅନୁସନ୍ଧାନ କରି ଆସିବା । ଆପଣ ଜିତେନ୍ଦ୍ରିୟ ବାବୁଙ୍କୁ ବୋଧହୁଏ ଜାଣନ୍ତି - ଜିତେନ୍ଦ୍ରିୟ ପଟ୍ଟନାୟକ । ସେ ମୋ ବଡ଼ ଭାଇଙ୍କ ସହପାଠୀ ଥିଲେ । ଆଜି ସକାଳେ ସେ ଖବର ପଠାଇଛନ୍ତି ଯେ, ତାଙ୍କ ସ୍ତ୍ରୀ ହଠାତ୍ ଆତ୍ମହତ୍ୟା କରିଛନ୍ତି ।''

ମୁଁ ରାଜି ହୋଇଗଲି ଏବଂ ଅଳ୍ପ ସମୟ ଭିତରେ ପ୍ରସ୍ତୁତ ହୋଇପଡ଼ିଲି । ଜଳଖିଆ ଖାଇ ଆମେ ବାହାରି ପଡ଼ିଲୁ । ଏଇଠି ଜିତେନ୍ଦ୍ରିୟ ବାବୁଙ୍କ ଟିକିଏ ପରିଚୟ ଦିଏ । ସେ ଜଣେ ଉଚ୍ଚପଦସ୍ଥ ସରକାରୀ କର୍ମଚାରୀ; ଖୁବ୍ ଧନୀ ଓ ମାନୀ ଲୋକ । ଚତୁର୍ଥ ବାର ବିବାହ କରିବା ଯୋଗୁଁ ସମାଜରେ ତାଙ୍କର ଟିକିଏ ବଦନାମ ହୋଇଛି । ଅବଶ୍ୟ ଗୋପନରେ । ତାଙ୍କର ଆଗ ସ୍ତ୍ରୀଙ୍କର ପିଲାପିଲି ଅଛନ୍ତି । ତାଙ୍କର ବଡ଼ ପୁଅଙ୍କର ନାମ ଜୀବନ ବାବୁ । ସେ ରସାୟନ ବିଜ୍ଞାନରେ ଏମ୍.ଏସ୍-ସି. ପାସ୍ କରି ବର୍ତ୍ତମାନ କଲେଜରେ ସହକାରୀ ଅଧ୍ୟାପକ । ଜିତେନ୍ଦ୍ରିୟ ବାବୁଙ୍କ ବୟସ ପଚାଶ ହେବ । ତାଙ୍କର ଚତୁର୍ଥ ସ୍ତ୍ରୀଙ୍କ ନାମ ସାବିତ୍ରୀ ଦେବୀ । ତାଙ୍କରି ମୃତ୍ୟୁ ସମ୍ବାଦ ପାଇ ଆମେ ଯାଉଛୁ ।

ପ୍ରାୟ ଆଠଟା ବେଳେ ଆମେ ଜିତେନ୍ଦ୍ରିୟ ବାବୁଙ୍କ ଘରେ ପହଞ୍ଚିଲୁ । ପ୍ରକାଣ୍ଡ ବଡ଼ ଘର । ଘରର ଚାରି ପାଖରେ ପ୍ରଶସ୍ତ ଜମି । ଘର ସାମନାରେ ବଡ଼ ଫୁଲ ବଗିଚାରେ ନାନା ଜାତିର ସୁନ୍ଦର ସୁନ୍ଦର ଫୁଲ ଗଛ ଲାଗିଛି । ଝଡ଼ରେ ଫୁଲ ସବୁ ଏଣେତେଣେ ବିଛି ହୋଇପଡ଼ିଛି । ଜିତେନ୍ଦ୍ରିୟ ବାବୁ ବାରନ୍ଦାରେ ଡେକ ଚୌକିରେ ବସିଥିଲେ । ମୁହଁରେ ତାଙ୍କର ଗଭୀର ବିଷାଦର ଛାୟା ସୁସ୍ପଷ୍ଟ । ଆମକୁ ଦେଖି ଯେଉଁ ଘରେ ତାଙ୍କ ସ୍ତ୍ରୀଙ୍କର ମୃତ୍ୟୁ ହୋଇଛି, ସେ ଘର ହାତ ଠାରି ଦେଖାଇ ଦେଲେ । ଘରଟି ବେଶ୍ ବଡ଼ । ମେଜିଆରେ ବଡ଼ ସତରଞ୍ଜି ପଡ଼ିଛି । ଘରର ଗୋଟିଏ କଣରେ ଗୋଟିଏ ଟେବୁଲ ହାରମନିୟମ୍ ରହିଛି । ତା'ର ବିପରୀତ କଣରେ ଗୋଟିଏ ବଡ଼ ଡ୍ରେସିଂ ଟେବୁଲ । ଦୁଆର ସାମନାକୁ କାନ୍ଥକୁ ଲାଗି ଗୋଟିଏ ବଡ଼ ପଲଙ୍କରେ ସୁନ୍ଦର ବିଛଣାରେ ସାବିତ୍ରୀ ଦେବୀଙ୍କ ମୃତ ଦେହ ରହିଛି । ଦେଖିଲେ ମନେହୁଏ, ସେ ନିଦରେ ଶୋଇଛନ୍ତି । ଖଟ ତଳକୁ ଗୋଟିଏ ବୟସ୍କା ସ୍ତ୍ରୀ ଲୋକ ବସି ନୀରବରେ କାନ୍ଦୁଛି । ଖବର ନେଇ ଜାଣି ପାରିଲୁ ଯେ, ସେ ସାବିତ୍ରୀ ଦେବୀଙ୍କ ଧାଈମା' । ବାହା ପରେ ସେ ସାବିତ୍ରୀ ଦେବୀଙ୍କ ସଙ୍ଗେ ଆସିଛନ୍ତି । ସାବିତ୍ରୀ ଦେବୀଙ୍କ ବୟସ ୨୬/୨୭ ହେବ । ସେ ଗୋଟିଏ ଖୁବ୍ ମୂଲ୍ୟବାନ୍ ଶାଢ଼ୀ ଓ ଅନେକ ଗହଣା

ପିନ୍ଧିଛନ୍ତି । ଗୋବର୍ଦ୍ଧନ ବାବୁ ପଚାରି ବୁଝିଲେ ଯେ, ଏ ଘରର କୌଣସି ଜିନିଷରେ କେହି ହାତ ଦେଇ ନାହାନ୍ତି ଏବଂ ସାବିତ୍ରୀ ଦେବୀ କାଲି ରାତିରେ ଯେଉଁ ଲୁଗା ଆଦି ପିନ୍ଧି ଶୋଇଥିଲେ ସେସବୁ ଏପର୍ଯ୍ୟନ୍ତ ବଦଳା ହୋଇ ନାହିଁ । ଗୋବର୍ଦ୍ଧନ ବାବୁ ଖଟ ନିକଟକୁ ଯାଇ ଶବଟିକୁ କିଛିକ୍ଷଣ ନିରୀକ୍ଷଣ କରି ଦେଖିଲେ । ସାବିତ୍ରୀ ଦେବୀଙ୍କ ମୁହଁରେ ଏପର୍ଯ୍ୟନ୍ତ ହସ ଲାଗି ରହିଛି । ଗୋବର୍ଦ୍ଧନ ବାବୁ ଶବର ଗୋଟିଏ ହାତ ଟେକିଲେ । ସାମାନ୍ୟ କାଠିନ୍ୟ ଦେଖା ଦେଇଛି - ମନେହୁଏ ୪/୫ ଘଣ୍ଟା ପୂର୍ବରୁ ମୃତ୍ୟୁ ହୋଇଛି । ଗୋବର୍ଦ୍ଧନ ବାବୁ ଧାଇମା'କୁ ପଚାରିଲେ, ''କାଲି କେତୁଟାବେଳେ ସେ ଶୋଇବାକୁ ଆସିଲେ ?''

''ରାତି ପ୍ରାୟ ୧୧ଟା ବେଳେ ।''

''କେତୁଟା ବେଳେ ଖାଇ ସାରିଥିଲେ ?''

''ପ୍ରାୟ ୯ଟାବେଳେ ।''

ଗୋବର୍ଦ୍ଧନ ବାବୁ ପକେଟରୁ ମେଗ୍ନିଫାଇଙ୍ଗ୍ କାଚ ବାହାର କରି ସତରଞ୍ଚିର ଚାରିଆଡ଼େ ନଇଁ ପଡ଼ି ବୁଲି ଦେଖିଲେ । ଟିକିଏ ନାଲି ମାଟିର କାଦୁଅ ଉଠାଇ ନେଇ ସେ କିଛିକ୍ଷଣ ଦେଖିଲେ । ଡ୍ରେସିଂ ଟେବୁଲ ପାଖକୁ ଆସି ଗୋଟିଏ କାଚ ଗିଲାସ ଉଠାଇ ନେଇ କିଛିକ୍ଷଣ ପରୀକ୍ଷା କଲେ । ତା'ପରେ ଟେବୁଲ ଉପରେ ଯେଉଁଠି କାଚ ଗିଲାସ ଥିଲା, ସେ ଜାଗାଟି କାଚରେ ପରୀକ୍ଷା କରି ଧାଇମା'କୁ ପଚାରିଲେ -

''ତୁମ ପୋଷା ବିଲେଇଟି କାହିଁ ?''

''କେଜାଣି - କେଉଁଠି ବୁଲୁଥିବ । ଘରବୁଡ଼ି ତ ପାଣି ଆଣ୍ଠିଏ ହେଲାଣି ।''

''ନା, ବୁଲୁ ନ ଥିବ । ତୁମେ ଯାଇ ତାକୁ ଖୋଜି ବାହାର କର ।''

ଧାଇମା' ବିରକ୍ତ ହୋଇ ଚାକରକୁ ଡାକି ବିଲେଇକୁ ଖୋଜିବାକୁ କହିଲା । ଚାକର ଅନେକକ୍ଷଣ ଖୋଜି ଆସି କହିଲା, ''ଆମ୍ବ ଗଛତଳେ ମରି ପଡ଼ିଛି । ବୋଧହୁଏ କାଲି ରାତିରେ ବାହାରିଥିଲା, ଥଣ୍ଡାରେ ମରି ଯାଇଛି ।'' ଗୋବର୍ଦ୍ଧନ ବାବୁ ଗୋଟିଏ କ୍ଷୁଦ୍ର 'ହୁଁ' ମାରି ଟେବୁଲର ସବୁ ଦରଜା ବାହାର କରି କଅଣ ଖୋଜିଲେ । ତା'ପରେ ପଲଙ୍କ ଉପରେ ପଡ଼ିଥିବା ସବୁ ବାଲିଶ ତକିଆ ଟେକି କଅଣ ଖୋଜିଲେ । ନିରାଶ ହୋଇ ଗଦି ତଳ ଟେକି ମଧ୍ୟ ଖୋଜିଲେ ଏବଂ ଗୋଟିଏ ନେଳି ରଙ୍ଗର କ୍ଷୁଦ୍ର ଲଫାପା ପାଇଲେ । ଲଫାପା ଭିତରୁ ଗୋଟିଏ କ୍ଷୁଦ୍ର ଚିଠା ବାହାରିଲା, ମୋତେ ତାହା ଦେଖାଇଲେ । ଟାଇପ୍‌ମେଶିନ୍‌ରେ ଇଂରାଜୀରେ ଲେଖା ହୋଇଛି ''ରାତି ଗୋଟାକ ବେଳେ ଯିବି ।'' ଲକ୍ଷ କଲି ଗୋବର୍ଦ୍ଧନ ବାବୁଙ୍କ ମୁହଁ କଠିନ ଓ ଆଖି ଯୋଡ଼ିକ ଖୁବ୍ ସାନସାନ ହୋଇଗଲା । ଚିଠିଟି ପକେଟରେ ରଖି ସେ ଦୁଆର ମୁହଁ ପାଖକୁ ଆସି କହିଲେ, ''ସୁବୋଧ ବାବୁ, ଆପଣଙ୍କୁ କଷ୍ଟ କରି କେତେଗୁଡ଼ିଏ ମାପ କରିବାକୁ ହେବ ।'' ପକେଟରୁ ଗୋଟିଏ ମାପିବା ଫିତା ମୋତେ ଦେଲେ ।

''ପ୍ରଥମେ ମାପନ୍ତୁ ବାରନ୍ଦା ଶେଷରୁ ଖିଲାଣ ପର୍ଯ୍ୟନ୍ତ କେତେ ଉଚ୍ଚ''। ମୁଁ ଗୋଟିଏ ଟୁଲ୍ ଆଣି ମାପି କହିଲି - ଦଶ ଫୁଟ।''

''ବାରନ୍ଦାର ଚଉଡ଼ା ?''

''ଆଠ ଫୁଟ।''

''କବାଟଟି ଯେଉଁ ପର୍ଯ୍ୟନ୍ତ ଭିଜିଛି ମାପିଲେ।''

''ତିନିଫୁଟ।''

''ଦୁଆର ବନ୍ଧରୁ ସତରଞ୍ଜି କେତେ ଛଡ଼ା ?''

''ଫୁଟେ।''

''ଏଥର ସତରଞ୍ଜିଟି କେତେ ଦୂର ଭିଜିଛି ଦେଖିଲେ।''

''ଦୁଇଫୁଟ।''

ଗୋବର୍ଦ୍ଧନ ବାବୁ ଗୋଟିଏ କାଗଜରେ ଚକ୍ର କାଟି କଅଣ ଅଙ୍କ କଷିଲେ। କିଛିକ୍ଷଣ ଭାବି ସେ ପ୍ରାୟ ମନେ ମନେ କହିଲେ ''ରାତି ତିନିଟା ବେଳେ ଦୁଆର କିଛିକ୍ଷଣ ପାଇଁ ଖୋଲା ଥିଲା।'' ଏହାର ଅର୍ଥ ମୁଁ କିଛି ବୁଝି ପାରିଲି ନାହିଁ। ମୋର ମନେ ପଡ଼ିଲା ବିଖ୍ୟାତ ଚାର୍ଲି ଚାପ୍ଲିନ୍ ତାଙ୍କର ଗୋଟିଏ ସିନେମାରେ କେଲେଣ୍ଡର ଦେଖି ଘଡ଼ି ମିଳାଇବା କଥା ! ମୁହଁ ବୁଲାଇ ଟିକିଏ ହସିଲି। ଗୋବର୍ଦ୍ଧନ ବାବୁ ଘରଟିର ନାନା ସ୍ଥାନ ପରୀକ୍ଷା କରି ବୁଲୁ ବୁଲୁ ଟେବୁଲ ହାରମନିୟମ୍ ପାଖକୁ ଗଲେ। ଟେବୁଲ ହାରମନିୟମଟି ପୁରୁଣା। ତା' ଉପରେ ଚୀନା ମାଟିର ଗୋଟିଏ ବଡ଼ ଫୁଲଦାନି ଅଛି। ସେଥିରେ କିନ୍ତୁ ଫୁଲ ସଜା ହୋଇ ନାହିଁ। ଟେବୁଲ ହାରମନିୟମ୍‌ରେ ନାଁ ଲେଖା ଅଛି। 'ଶ୍ରୀମତୀ ସାବିତ୍ରୀ ମହାନ୍ତି।' ନିଶ୍ଚୟ ତାଙ୍କର ପିଲାବେଳର ହାରମନିୟମ - ବାହା ପରେ ସାଙ୍ଗରେ ଆଣିଛନ୍ତି। ଫୁଲଦାନି ପାଖରେ ପଡ଼ିଛି ଗେଣ୍ଡୁ ଫୁଲର ଗୋଟିଏ ତୋଡ଼ା। ଗୋବର୍ଦ୍ଧନ ବାବୁ ସେଇଟି ଉଠାଇ ନେଇ ତାଙ୍କ କାଚରେ ପରୀକ୍ଷା କଲେ। ତା' ପରେ ଗୋବର୍ଦ୍ଧନ ବାବୁ ଯାହା କଲେ, ଲଜ୍ଜାରେ ମୋର ମୁଣ୍ଡ ପୋତି ହୋଇ ପଡ଼ିଲା। ଗୋବର୍ଦ୍ଧନ ବାବୁ ସଙ୍ଗୀତ ଚର୍ଚ୍ଚା କରନ୍ତି। ତାଙ୍କ ବସାରେ ବେହେଲା ଓ ସିତାର ଥିବାର ମୁଁ ଦେଖିଛି। କିନ୍ତୁ ସ୍ଥାନ, କାଳ ପାତ୍ର ନ ମାନି ଯେ ସେ ଗୁଣର ପରିଚୟ ଦେବେ। ତା' କିଏ ମନେ କରିପାରେ ? ସେ ଢାଙ୍କୁଣିଟି କାଢ଼ି ଅତି ଦ୍ରୁତଗତିରେ ହାରମନିୟମଟି ମୂଳରୁ ଶେଷ ଯାଏ ବଜାଇ ଗଲେ। ଶୁଣିଛି ସଙ୍ଗୀତ ମନକୁ ଉଚ୍ଚସ୍ତରକୁ ନେଇଯାଏ, କିନ୍ତୁ ଏ ସଙ୍ଗୀତ ମୋତେ ମାଟିରେ ମିଶାଇ ଦେବାର ପ୍ରେରଣା ଦେଲା। ଜିତେନ୍ଦ୍ରିୟ ବାବୁ ଓ ଅନ୍ୟ ସମସ୍ତେ ଘର ଭିତରକୁ ଦୌଡ଼ି ଆସିଲେ। ମୁଁ ଏ ଲଜ୍ଜାକର କାଣ୍ଡ କରିଛି ଭାବି ଜିତେନ୍ଦ୍ରିୟ ବାବୁ ତୀବ୍ର ଭର୍ତ୍ସନା କରି କହିଲେ, ''ଆପଣ କିଏ ? ଯେ ହୁଅନ୍ତୁ ଶୀଘ୍ର ଏଠୁ ଚାଲି ଯାଆନ୍ତୁ।'' ଲଜ୍ଜା ଓ ରାଗରେ ମୁଁ ଏହାର ପ୍ରତିବାଦ କରିବାକୁ ଯାଉଥିଲି, କିନ୍ତୁ ଗୋବର୍ଦ୍ଧନ ବାବୁ କହିଲେ, ''ସୁବୋଧ ବାବୁ, ଆପଣ ଯାଆନ୍ତୁ। ମୋର ବସାରେ

ଅପେକ୍ଷା କରିଥିବେ ।'' ମୁଁ ରାଗରେ କିଛି କହି ନ ପାରି ଶୀଘ୍ର ଫେରି ଆସିଲି ।

ଗୋବର୍ଦ୍ଧନ ବାବୁଙ୍କ ବସାକୁ ଫେରି ଆସି ମୁଁ ଚାକରକୁ କହିଲି, ''ଗୋବର୍ଦ୍ଧନ ବାବୁ ଆସିଲେ କହିବୁ ମୁଁ ମେସ୍‌ରେ ଅଛି ।'' ମେସକୁ ଆସି ଖାଇସାରି ମୁଁ କ୍ଷୋଭରେ ଶୋଇ ପଡ଼ିଲି । କିଛିକ୍ଷଣ ପରେ ମୋର ନିଦ ଭାଙ୍ଗି ଗଲା ଗୋବର୍ଦ୍ଧନ ବାବୁଙ୍କ କଥାରେ । ତାଙ୍କର ମୁହଁରେ ହସ ଦେଖି ମୋର ପିତ୍ତ ଜଳିଗଲା । ବର୍ତ୍ତମାନ କିନ୍ତୁ ଭାବୁଛି ଯେ ଭାଗ୍ୟେ ଏ ଘଟଣାଟି ଘଟିଥିଲା - ତା' ନ ହେଲେ ମୁଁ ତାଙ୍କର ସାନ୍ନିଧ ପାଇ ନ ଥାନ୍ତି । ଗୋବର୍ଦ୍ଧନ ବାବୁ କହିଲେ, ''ଆପଣଙ୍କୁ ବିଶେଷ ଲଜ୍ଜାରେ ପକାଇଛି । ମୋତେ କ୍ଷମା କରିବେ । ମୋ ବସାକୁ ଆସନ୍ତୁ, ସବୁ କହିବି । ଆପଣ ଆଜିଠୁଁ ମେସ୍‌ରେ ନ ରହି ମୋ ବସାରେ ରହନ୍ତୁ । ଶୀଘ୍ର ପ୍ରସ୍ତୁତ ହୁଅନ୍ତୁ, ମୁଁ ଗାଡ଼ି ଡାକି ଆଣୁଛି ।''

ତାଙ୍କ କଥାରେ ଏପରି ଆନ୍ତରିକତା ପ୍ରକାଶ ପାଇଲା ଯେ, ମୁଁ ସବୁ ଭୁଲିଗଲି । ଶୀଘ୍ର ପ୍ରସ୍ତୁତ ହୋଇପଡ଼ିଲି । ଅଳ୍ପ ସମୟ ପରେ ଆମେ ବସାରେ ପହଞ୍ଚିଲୁ । ଗୋଟିଏ ଘରେ ମୋର ସବୁ ଜିନିଷ ସଜାଡ଼ି ରଖିଲି । ଗୋବର୍ଦ୍ଧନ ବାବୁ କହିଲେ, 'ଦେଖନ୍ତୁ, ଆପଣଙ୍କ ଉପରେ ଦୋଷଟି ଲଦି ନ ଥିଲେ ମୋତେ ମଧ ବାହାରି ଆସିବାକୁ ପଡ଼ିଥାନ୍ତା । ଆମ ଇତିହାସରେ ସାମାଜିକ ବା ରାଜନୈତିକ ଜୀବନର ବଡ଼ ବଡ଼ ଘଟଣା ଗୁଡ଼ିକର ଉଲ୍ଲେଖ ଅଛି । କିନ୍ତୁ ଏମାନଙ୍କର ମୂଳ କାରଣ ଯେ ମନୁଷ୍ୟର ଦୈନନ୍ଦିନ ଜୀବନର କ୍ଷୁଦ୍ର କ୍ଷୁଦ୍ର ଘଟଣା ଗୁଡ଼ିକ, ସେ ସବୁର ଉଲ୍ଲେଖ ନାହିଁ । ବଡ଼ ବଡ଼ ଘଟଣା ଗୁଡ଼ିକ କେବଳ ଆମ ଆଖିରେ ପଡ଼େ । ଏହି ହାରମନିୟମରୁ ମୁଁ ବୁଝି ପାରିଲି, ଜିତେନ୍ଦ୍ରିୟ ବାବୁ ଓ ତାଙ୍କ ସ୍ତ୍ରୀଙ୍କ ମଧରେ ସମ୍ପର୍କ କିପରି ଥିଲା । ଅବଶ୍ୟ ଜିତେନ୍ଦ୍ରିୟ ବାବୁଙ୍କୁ ପଚାରିଥିଲେ ହୁଏତ ବୁଝିପାରି ଥାଆନ୍ତି । କିନ୍ତୁ ଏ ସବୁ ବିଷୟରେ କେହି କେବେହେଁ ଖୋଲି କିଛି କୁହନ୍ତି ନାହିଁ । ତା'ପରେ ତାଙ୍କର ଯେପରି ମନର ଅବସ୍ଥା, ଏ ବିଷୟରେ ପ୍ରଶ୍ନ ତାଙ୍କୁ କେବଳ ମନଃ ପୀଡ଼ା ଦେବ । ତେଣୁ ମୁଁ ମୋର ପନ୍ଥା ଧରିଲି । ହାରମନିୟମଟି ବଜାଇ ଦେଖିଲି ଯେ, ସେଥିରୁ ଠିକ୍ ସୁର୍ ବାହାରୁ ନାହିଁ । ଚାରୋଟି ଚାବିରୁ ଆଦୌ ସୁର୍ ବାହାରୁ ନାହିଁ । ସାବିତ୍ରୀ ଦେବୀ ଆଧୁନିକା । ପିଲାବେଳୁ ସେ ସଙ୍ଗୀତ ଚର୍ଚ୍ଚା କରିଛନ୍ତି । ତାଙ୍କର ବୟସ ମଧ ବେଶୀ ନୁହେଁ । ଧନୀ ଓ ଆଧୁନିକ ଘରେ ସେ ବିବାହ ମଧ କରିଛନ୍ତି । କିନ୍ତୁ ସେ ସଙ୍ଗୀତ ଚର୍ଚ୍ଚା ଛାଡ଼ିଦେଲେ କାହିଁକି ? ଏତେ ସୁନ୍ଦର ଫୁଲଦାନି ଥାଉ ଥାଉ ସେଥିରେ ଫୁଲ ସଜାଇ ରଖୁ ନାହାନ୍ତି କାହିଁକି ? ନିଶ୍ଚୟ ତାଙ୍କ ମନରେ ସୁଖ ନାହିଁ । ବୃଦ୍ଧଙ୍କୁ ବିବାହ କରି ସେ ସୁଖୀ ହୋଇ ନାହାନ୍ତି । ସାବିତ୍ରୀ ଦେବୀଙ୍କ ଅବସ୍ଥାରେ ପଡ଼ିଲେ ଯେ କେହି ନାରୀ ଗୋଟିଏ ସନ୍ତାନ ପାଇଁ ବ୍ୟଗ୍ର ହୁଅନ୍ତା । କିନ୍ତୁ ବର୍ଷେ ହେଲା ବାହା ହେଲେ ମଧ ସାବିତ୍ରୀ ଦେବୀଙ୍କ ସନ୍ତାନ ନାହିଁ । ଆପଣ ଜାଣିଥିବେ ଯେ, ସ୍ୱାମୀ ଉପରେ ସମ୍ପୂର୍ଣ୍ଣ ବିଶ୍ୱାସ ଓ ପ୍ରେମ ନ ହେବା ପର୍ଯ୍ୟନ୍ତ ସ୍ତ୍ରୀ ସେ ସ୍ୱାମୀଠାରୁ ସନ୍ତାନ କାମନା କରେ ନାହିଁ । ଏହା ପ୍ରକୃତିର ନିୟମ ବୋଲି ମୋର

ଧାରଣା । ପତିବ୍ରତା ହେବା ଆଦର୍ଶ ପୁରୁଷ ସ୍ତ୍ରୀ ଆଗରେ ରଖିଛି । ପ୍ରକୃତିର ନିୟମ କିନ୍ତୁ ନାରୀ ସନ୍ତାନବ୍ରତା ହେବ । ଏହି ସନ୍ତାନର ଜନ୍ମ ଓ ତା'ର ପ୍ରତିପାଳନ ପାଇଁ ସ୍ତ୍ରୀ ସ୍ୱାମୀକୁ ଭଲ ପାଏ । ଅତଏବ ବିଶ୍ୱାସ ଓ ପ୍ରେମ ନ ଜନ୍ମିଲେ ସ୍ତ୍ରୀ ପୁରୁଷଠାରୁ ସନ୍ତାନ କାମନା କରିବ କିପରି ? ଯେଉଁଠି ସନ୍ତାନ ହୁଏ, ତାହା ନିହାତି ବାଧବାଧକତାରେ । କିନ୍ତୁ ମୋର ଧାରଣା, ଏପରି ସନ୍ତାନଗୁଡ଼ିକ ଶାରୀରିକ ଓ ମାନସିକ ଦୁର୍ବଳତା ନେଇ ଜନ୍ମ ହୁଅନ୍ତି ।''

ପଚାରିଲି, ''କିନ୍ତୁ ଜିତେନ୍ଦ୍ରିୟ ବାବୁ ତ କହୁଛନ୍ତି ଏ ଆତ୍ମହତ୍ୟା । ଆପଣ ଆଉ କ'ଣ ସନ୍ଦେହ କରୁଛନ୍ତି ?''

''ନା, ସୁବୋଧ ବାବୁ, ଏ ଆତ୍ମହତ୍ୟା କଦାପି ନୁହେଁ । ଏ ହତ୍ୟା । ଆଶା କରେ କାଲି ସକାଳେ ନିଶ୍ଚିତ ଭାବରେ ମୁଁ କହିପାରିବି । ତେବେ କେତେଗୁଡ଼ିଏ ସମ୍ବାଦ ଆଜି ମୁଁ ସଂଗ୍ରହ କରି ପାରିଛି । ସାବିତ୍ରୀ ଦେବୀ ରୋଜ ରାତିରେ ଦୁଧ ଖାଆନ୍ତି । ନିତି ତାଙ୍କ ଦୁଧ ଏଗାରଟାବେଳେ ସେଇ କାଚ ଗିଲାସରେ ଟେବୁଲ ଉପରେ ରୁହେ । ସେ ଯେତେବେଳେ ଇଚ୍ଛା ଖାଆନ୍ତି । ବାହା ହେବାର ପ୍ରାୟ ମାସକ ପରଠୁଁ ସାବିତ୍ରୀ ଦେବୀ ଓ ଜିତେନ୍ଦ୍ରିୟ ବାବୁ ଅଲଗା ଅଲଗା ଘରେ ଶୁଅନ୍ତି । ଜିତେନ୍ଦ୍ରିୟ ବାବୁଙ୍କ ବଡ଼ ପୁଅ ଜୀବନ ବାବୁ ଖୁବ୍ ସକାଳୁ ବାହାରିକୁ କିଛି ନ କହି ପୁରୀ ପଳେଇ ଯାଇଛନ୍ତି । ସେ ସେଠାରୁ ଫୋନ୍ କରିଛନ୍ତି ଯେ, ଆଜି ତିନିଟା ବେଳକୁ ଫେରିବେ । ତାଙ୍କ ଶୋଇବା ଘରେ ସେ ରସାୟନ ବିଜ୍ଞାନ ପରୀକ୍ଷା କରନ୍ତି ଓ ସେଥିସକାଶେ ସେ ଅନେକ ପ୍ରକାରର ତୀବ୍ର ବିଷ ରଖିଛନ୍ତି । କାଲି ରାତି ଏଗାରଟା ବେଳେ ଧର୍ମଦାସ ବାବୁଙ୍କ ସ୍ତ୍ରୀ ମୋହିନୀ ଦେବୀ ଜିତେନ୍ଦ୍ରିୟ ବାବୁଙ୍କ ଘରକୁ ଝଡ଼ ଓ ବର୍ଷାରେ ଆସିଥିଲେ କଅଣ ନେବାକୁ । ଧର୍ମଦାସ ବାବୁ ଜିତେନ୍ଦ୍ରିୟ ବାବୁଙ୍କ ପଡ଼ୋସୀ ଜଣେ ଯୁବକ ଓକିଲ । ତାଙ୍କ ସ୍ତ୍ରୀ ଭାରୀ ପତିବ୍ରତା, କଷ୍ଟସହିଷ୍ଣୁ ଓ ଭାରି ଚପା ପ୍ରକୃତିର । ଧର୍ମଦାସ ବାବୁ ତାଙ୍କ ସ୍ତ୍ରୀଙ୍କ ପ୍ରତି ଅକଥନୀୟ ଅତ୍ୟାଚାର କରନ୍ତି । ଆଉ ବିଶେଷ କଥା ଧର୍ମଦାସ ବାବୁଙ୍କ ବଗିଚାରେ ଅନେକ ପ୍ରକାରର ଗେଣ୍ଡୁ ଫୁଲ ଫୁଟିଛି ।

ଏସବୁ ସମ୍ବାଦ ଏ ମୃତ୍ୟୁ ବିଷୟକ ଅନୁସନ୍ଧାନକୁ ଯେ କିପରି ସାହାଯ୍ୟ କରୁଛି, ମୁଁ ବୁଝିପାରିଲି ନାହିଁ । ଗୋବର୍ଦ୍ଧନ ବାବୁ ପୁଣି ବାହାରକୁ ଗଲେ, ମୁଁ ଶୋଇବାକୁ ଗଲି । ଉଠିଲା ବେଳକୁ ପ୍ରାୟ ସନ୍ଧ୍ୟା ହୋଇ ଗଲାଣି । ଉଠି ଦେଖିଲି ଯେ, ଜଣେ ମଫସଲି ଲୋକ ପିଣ୍ଡା ଖଟରେ ବସିଛନ୍ତି ବୋଧହୁଏ ଗୋବର୍ଦ୍ଧନ ବାବୁଙ୍କୁ ଅପେକ୍ଷା କରି । ଲୋକଟିର ବୟସ ପ୍ରାୟ ପଚାଶ ହେବ । ବାଳ ପ୍ରାୟ ସବୁ ପାଚି ଯାଇଛି । ମୁହଁଟି ପତଳା, ଗାଲ ଦିଓଟି ପଶି ଯାଇଛି । ଆଖି ଦିଓଟି ଅଫିମିଆଙ୍କ ଭଳି ଢୁଳୁ ଢୁଳୁ । ପିନ୍ଧିଛି ଖଣ୍ଡିଏ ମଇଳା ଲୁଗା ଓ ତା' ଉପରେ ଖଣ୍ଡେ ଲୋଚା କୋଚା ସଫା କମିଜ । ପାଖରେ ଖଣ୍ଡିଏ ତେଲ ଚିକିଟା କନାରେ ବନ୍ଧା ହୋଇ ଗୋଟିଏ କାଗଜ ବଣ୍ଡିଲ ରହିଛି । ପଚାରିଲି, ''ଗୋବର୍ଦ୍ଧନ ବାବୁଙ୍କୁ ଅପେକ୍ଷା କରିଛନ୍ତି ? ସେ ତ ବାହାରକୁ ଯାଇଛନ୍ତି ।'' ସେ ହସି ହସି କହିଲେ, ''ନା, ମୁଁ ଆପଣଙ୍କୁ

ଅପେକ୍ଷା କରୁଛି । ମୁଁ ଯାଉଛି । କାଲି ସକାଳେ ଫେରିବି ।'' ଗଳାର ସ୍ୱରଟି ଚିହ୍ନା ଚିହ୍ନା ମନେ ହେଲା । ଅନେକକ୍ଷଣ ନିରୀକ୍ଷଣ କରି ଚିହ୍ନିପାରି ମୁଁ ଆଶ୍ଚର୍ଯ୍ୟ ହୋଇଗଲି । ଗୋବର୍ଦ୍ଧନ ବାବୁଙ୍କ ଏ ଗୁଣ ମଧ୍ୟ ଅଛି ! ସେ ଯେ କେବଳ ବାହ୍ୟ ବେଶ ପରିବର୍ତ୍ତନ କରି ପାରିଛନ୍ତି, ତା ନୁହେଁ । ବେଶ ସାଙ୍ଗରେ ତାଙ୍କର ମନଟି ମଧ୍ୟ ଅନୁରୂପ ବଦଳି ଯାଇଛି । ତେଣୁ କରି ଚିହ୍ନିବାକୁ ଏତେ କ୍ଷଣ ଲାଗିଲା । ଗୋବର୍ଦ୍ଧନ ବାବୁ କହିଲେ, ''ମୁଁ ଶେଷ ପ୍ରମାଣ ଯୋଗାଡ଼ କରିବାକୁ ଯାଉଛି । ଆଶା କରେ ସଫଳ ହେବି ।'' କାଗଜ ପୁଟୁଳାଟି କାଖରେ ଜାକି ସେ ନଇଁ ନଇଁ ବାହାରି ଗଲେ । ମୁଁ ଭକ୍ତିଭରେ ତାଙ୍କୁ ଚାହିଁ ରହିଲି ।

ପରଦିନ ସକାଳେ ଉଠିଲା ବେଳକୁ ଗୋବର୍ଦ୍ଧନ ବାବୁ ଫେରି ଆସିଛନ୍ତି । ତାଙ୍କର ଆଉ ସେ ବେଶ ନାହିଁ । ମୁହଁରେ ଗୋଟିଏ କରୁଣ ଭାବ ସୁସ୍ପଷ୍ଟ । ପଚାରିଲି, ''ଆପଣ ପ୍ରମାଣ ପାଇଲେ ?'' ଗୋବର୍ଦ୍ଧନ ବାବୁ ତଳକୁ ମୁହଁ ପୋତି ଅନେକ କ୍ଷଣ ନୀରବ ରହିଲେ । ତା'ପରେ ଧୀରେ ଧୀରେ କହିଲେ, ''ହଁ, ହତ୍ୟା କିଏ କରିଛି, ମୁଁ ପ୍ରମାଣ ପାଇଛି । ମୁଁ ଯାହା ଅନୁମାନ କରିଥିଲି, ତାହାହିଁ ଠିକ୍ । ଡାକ୍ତର ମଧ୍ୟ ରିପୋର୍ଟ ଦେଇଛି ଯେ, ତୀବ୍ର ବିଷପାନରୁ ମୃତ୍ୟୁ ଘଟିଛି । ପୁଲିସର ଶେଷ ରିପୋର୍ଟ ହେଉଛି ଆତ୍ମହତ୍ୟା - କାରଣ ଜଣା ନାହିଁ । ଅବଶ୍ୟ ପୁଲିସ୍ ବିଶେଷ ସନ୍ଦେହ କରିଛନ୍ତି ଜୀବନ ବାବୁଙ୍କୁ । କିନ୍ତୁ ଜିତେନ୍ଦ୍ରିୟ ବାବୁଙ୍କ ପୁଅ ବୋଲି ସେ କଥା ତାଙ୍କ ରିପୋର୍ଟରେ ଆଦୌ ଉଲ୍ଲେଖ କରିନାହାନ୍ତି । ମୁଁ ଯାହା ବୁଝିଛି, ତାହା ପ୍ରକାଶ କରିବା ଅସମ୍ଭବ । ଆପଣଙ୍କୁ କହିବି କି ନା ଭାବୁଥିଲି । ଆପଣ ଯଦି କଥା ଦିଅନ୍ତି ଯେ, ମୁଁ ନ କହିଲା ପର୍ଯ୍ୟନ୍ତ ପ୍ରକାଶ କରିବେ ନାହିଁ, ତା'ହେଲେ ମୁଁ କହିବି । ଏ କଥା ପ୍ରକାଶ ପାଇଲେ ଅଧିକ ବିଭ୍ରାଟ ଉପୁଜିବ ।''

''ମୁଁ କଥା ଦେଉଛି, ଆପଣ ଅନୁମତି ନ ଦେବା ପର୍ଯ୍ୟନ୍ତ ଏହା ପ୍ରକାଶ କରିବି ନାହିଁ ।'' ଗୋବର୍ଦ୍ଧନ ବାବୁ ଟିକିଏ ଭାବି କହିଲେ, ''ମୁଁ ଆପଣଙ୍କ କଥାରେ ବିଶ୍ୱାସ କଲି । ତେବେ ଆପଣ ମୂଳରୁ ଶୁଣନ୍ତୁ । ସାବିତ୍ରୀ ଦେବୀଙ୍କ ଶବ ଦେଖି ମୋର ସନ୍ଦେହ ରହିଲା ନାହିଁ ଯେ, ତୀବ୍ର ବିଷ ପାନରୁ ମୃତ୍ୟୁ ହୋଇଛି, କାରଣ ତାଙ୍କ ଶରୀରରେ ମୃତ୍ୟୁର ଅନ୍ୟ କାରଣର ଚିହ୍ନ ବର୍ଣ୍ଣ ନାହିଁ । ତାଙ୍କ ମୁହଁରୁ ବୁଝି ପାରିଲି ଯେ, ସେ ମୃତ୍ୟୁ ଯନ୍ତ୍ରଣା ବୋଧହୁଏ ସେକେଣ୍ଡକ ପାଇଁ ପାଇଛନ୍ତି କି ନା ସନ୍ଦେହ । ଏ ବିଷ ସେ କାଗଜ ପୁଡ଼ିଆରୁ ଖାଇଛନ୍ତି, ନା ଭାତ ସାଙ୍ଗରେ ଖାଇଛନ୍ତି, ନା ଦୁଧ କିମ୍ବା ପାଣି ସାଙ୍ଗରେ ଖାଇଛନ୍ତି ? ଭାତ ସାଙ୍ଗରେ ଖାଇ ନାହାନ୍ତି, ଏ କଥା ନିଃସନ୍ଦେହ । କାଗଜ ପୁଡ଼ିଆରୁ ଖାଇ ନାହାନ୍ତି, କାରଣ ତା' ହୋଇଥିଲେ ସେ ସେଇ ଘରେ ଖାଇ ଥାଆନ୍ତେ । ଘରେ ତା'ହେଲେ କାଗଜ ପୁଡ଼ିଆ ପଡ଼ି ଥାଆନ୍ତା । କିନ୍ତୁ ଏପରି କିଛି ନ ପାଇ ବୁଝିଲି ଯେ, ସେ ଦୁଧ କିମ୍ବା ପାଣି ସାଙ୍ଗରେ ଖାଇଛନ୍ତି । ଅନୁସନ୍ଧାନ କରି ଦେଖିଲି ଯେ, ଟେବୁଲ ଉପରେ ଯେଉଁ କାଚ ଗିଲାସଟି ଥିଲା, ସେଇଟି ଦୁଧ ଗିଲାସ - ଗନ୍ଧରୁ ଜଣା ପଡ଼ିଲା । ଆପଣଙ୍କ ମନେଥିବ, ଗିଲାସଟି ଟେବୁଲ

ଉପରେ କଡ଼େଇ ହୋଇ ପଡ଼ିଥିଲା । ଭାବିଲି, କାହିଁକି ? ନିଶ୍ଚୟ ସେ ଖାଇସାରିଲା ପରେ ବିଲେଇ କି ମୂଷା ସେଥିରୁ ଦୁଧ ଖାଇଛନ୍ତି । ଟେବୁଲ ଉପରେ ଦେଖି ପାରିଲି ଯେ, ଯେଉଁ ଦୁଧ ଟିକକ ପଡ଼ିଥିଲା, ତାହା କିଏ ଚାଟି ଖାଇଛି । ପରୀକ୍ଷା କରି ଦେଖିଲି ବିଲେଇ ଗୁମ୍ଫ ସେଠି ପଡ଼ିଛି । ବର୍ତ୍ତମାନ ସେ ବିଲେଇ ଯଦି ମରିଥାଏ ତା'ହେଲେ ପ୍ରମାଣିତ ହେବ, ଏହି ଦୁଧ ଖାଇ ସାବିତ୍ରୀ ଦେବୀ ମରିଛନ୍ତି । ଏହା ମଧ ପ୍ରମାଣିତ ହେବାର ଆପଣ ଜାଣନ୍ତି ।''

ପଚାରିଲି, ''ଆପଣ ପୋଷା ବିଲେଇ ବୋଲି ଜାଣିଲେ କିପରି ?''

ଗୋବର୍ଦ୍ଧନ ବାବୁ ଟିକିଏ ବିରକ୍ତ ହୋଇ କହିଲେ, ''ସୁବୋଧ ବାବୁ, ଆଶ୍ଚର୍ଯ୍ୟ, ଆପଣ ଏଇ ସାମାନ୍ୟ କଥା ବୁଝିପାରୁ ନାହାନ୍ତି । ଘରର ବିଲେଇ ନ ହେଲେ ଏ ଝଡ଼ରେ କଅଣ ବାହାରର ବିଲେଇ ଆସିବା ସମ୍ଭବ ? ବର୍ତ୍ତମାନ ପ୍ରଶ୍ନ ଉଠୁଛି - ଏ ଆତ୍ମହତ୍ୟା ନା ହତ୍ୟା । ଆତ୍ମହତ୍ୟା ଯେ ନୁହେଁ, ତାହା ମୁଁ ବୁଝିଲି । କର ଗଣି କହିଲେ:-

''୧. ଆତ୍ମହତ୍ୟା କରିବା ଆଗରୁ ଲୋକେ ଚିଠି ପତ୍ର ଲେଖି ରଖି ଯାଆନ୍ତି । ସେପରି ଗୋଟିଏ ଚିଠି ଅଛି କି ନା ଖୋଜିଲି । ପାଇଲି ସେଇ ସଙ୍କେତର କ୍ଷୁଦ୍ର ଚିଠିଟି ।

''୨. ଯଦି ବା ଧରି ନିଆଯାଏ କୌଣସି କାରଣରୁ ସେ ଚିଠି ଲେଖି ନାହାନ୍ତି, ତେବେ ସେ ଆତ୍ମହତ୍ୟା କରିବାକୁ ରାତି ନଅଟା ବେଳକୁ ଦୁଧ କାହିଁକି ଖାଆନ୍ତେ ? ଆପଣ ଡାକ୍ତରୀ ଛାତ୍ର । ବୁଝିପାରିଥିବେ, ସାବିତ୍ରୀ ଦେବୀ ପ୍ରାୟ ରାତି ତିନିଟା ବେଳେ ପ୍ରାଣତ୍ୟାଗ କରିଥିଲେ ।

''୩. ଯେଉଁ ଦିନ ରାତିରେ ତାଙ୍କର ଗୁପ୍ତ ମିଳନ ହେବାର କଥା, ସେହି ରାତିରେ ବା ସେ ବିଷ ଖାଆନ୍ତେ କାହିଁକି ?

''୪. ତାଙ୍କ ଚେହେରାରୁ ମନେ ହେଲା ଯେ, ମରିବାର ଠିକ୍ ଆଗ ମୁହୂର୍ତ୍ତ ପର୍ଯ୍ୟନ୍ତ ସେ ଜାଣି ପାରି ନ ଥିଲେ ଯେ, ସେ ପର ମୁହୂର୍ତ୍ତରେ ମରିବେ । ସେ ଖୁବ୍ ଖୁସି ହୋଇ ଶୋଇବାକୁ ଯିବାର ମନେହୁଏ ।

''ଏହିପରି ଆଉ କେତେକ କାରଣରୁ ମୋର ମନେହେଲା - ଏହା ଆତ୍ମହତ୍ୟା ନୁହେଁ; ଯେବେ ହତ୍ୟା ହୁଏ, ତା'ହେଲେ କିଏ କରିବ ? ଉଦ୍ଦେଶ୍ୟ କଅଣ ? ଜୀବନ ବାବୁଙ୍କ ଆଚରଣରୁ ସାଧାରଣତଃ ସମସ୍ତଙ୍କର ସନ୍ଦେହ ହେବ, କିନ୍ତୁ ମୋର ବିଶ୍ୱାସ ହେଲା ନାହିଁ । କାରଣ ତାଙ୍କର ଏଥିରେ କି ଉଦ୍ଦେଶ୍ୟ ସାଧିତ ହେବ ? ତଥାପି ଏ ଅନୁମାନ ଆଦ୍ୟରୁ ବାଦ ନ ଦେଇ ଅନୁସନ୍ଧାନ କଲି । ସେ ପୁରୀ ପଳାଇଗଲେ କାହିଁକି ? ଯଦି ହତ୍ୟା ଦିନ ସେ ଅନ୍ୟ ଜାଗାରେ ଥିଲେ ବୋଲି ପ୍ରମାଣ କରିବାକୁ ବ୍ୟଗ୍ର ହୁଅନ୍ତେ, ତା'ହେଲେ ରାତିରେ ଦୁଧ ସାଙ୍ଗେ ବିଷ ଦେଇ ପୁରୀ କିମ୍ବା କଲିକତା ଆଡ଼େ ଚାଲି ଯାଇପାରନ୍ତେ । ଜୀବନ ବାବୁ ଫେରି ଆସିଲା ପରେ ମୁଁ ତାଙ୍କ ସହିତ ସାକ୍ଷାତ କରିଛି । ଦେଖିଲି, ତାଙ୍କ ପକ୍ଷରେ ହତ୍ୟା କରିବା ଅସମ୍ଭବ । ପଳାଇ ଯିବାର କାରଣ ନ ଦର୍ଶାଇଲେ ଏ ସନ୍ଦେହରୁ ତାଙ୍କୁ ମୁକ୍ତ

କରିହେବ ନାହିଁ। ସକାଳୁ ଉଠି ଯେତେବେଳେ ସେ ବିମାତାଙ୍କ ମୃତ୍ୟୁ ଦେଖିଲେ, ତାଙ୍କର ସନ୍ଦେହ ରହିଲା ନାହିଁ ଯେ, ତାଙ୍କରି ଗୋଟିଏ ତୀବ୍ର ବିଷରୁ ମୃତ୍ୟୁ ଘଟିଛି। ବିମାତାଙ୍କ ସହିତ ତାଙ୍କ ସମ୍ପର୍କ ଆଦୌ ଭଲ ନୁହେଁ, ସେକଥା ଭାବି ସେ ଭୟ କଲେ ଯେ ସନ୍ଦେହ ତାଙ୍କରି ଉପରେ ପଡ଼ିବ। ଅତ୍ୟଧିକ ଭୟରେ ଅନଭିଜ୍ଞ ଲୋକ ପକ୍ଷରେ ଭୟସ୍ଥାନରୁ ପଳାଇଯିବା ଖୁବ୍ ସ୍ୱାଭାବିକ।''

''ଦ୍ୱିତୀୟତଃ ସନ୍ଦେହ ପଡ଼େ ତାଙ୍କ ଉପରେ ଯେ, ଗୁପ୍ତ ଚିଠି ଦେଇଥିଲେ। ମୃତ୍ୟୁ ସହିତ ଏ ଗୁପ୍ତ ମିଳନର କୌଣସି ସମ୍ବନ୍ଧ ନାହିଁ। କାରଣ ଏ ହତ୍ୟାରେ ତାଙ୍କର କି ଉଦ୍ଦେଶ୍ୟ ସାଧିତ ହେବ ? ଏ ଗୁପ୍ତ ସମ୍ପର୍କ ବହୁତ ଦିନରୁ ଥିଲା, ତାହା ସେହି କ୍ଷୁଦ୍ର ସଙ୍କେତରୁ ଜଣାଯାଏ। ମରିବା ରାତି ପର୍ଯ୍ୟନ୍ତ ଜଣଙ୍କ ଭିତରେ କୌଣସି ମନୋମାଳିନ୍ୟ ହୋଇନାହିଁ, କାରଣ ସାବିତ୍ରୀ ଦେବୀ ମିଳନ ପାଇଁ ସଜବାଜ ହୋଇଥିଲେ। କଥା ପ୍ରକାଶ ପାଇଯିବା ଭୟରେ ନାରୀ ନିଜେ ଆତ୍ମହତ୍ୟା କରିପାରେ, ଅଥବା ପୁରୁଷକୁ ବିଷ ଦେଇ ମାରିପାରେ। କିନ୍ତୁ ପୁରୁଷ କାହିଁକି ନାରୀକି ହତ୍ୟା କରିବ, ଯଦି ଧନ ସମ୍ପତ୍ତି କରାୟତ୍ତ କରିବାର ଉଦ୍ଦେଶ୍ୟ ନ ଥାଏ ? ଏପରି ଉଦ୍ଦେଶ୍ୟ ଏ କ୍ଷେତ୍ରରେ ନାହିଁ, ଏହା ସୁସ୍ପଷ୍ଟ। କିନ୍ତୁ ଗୁପ୍ତ ମିଳନଟି ଅବାନ୍ତର ବୋଧ ହେଲେ ହେଁ କେତେକ ତଥ୍ୟ ଏଥିରୁ ପ୍ରକାଶ ପାଇ ପାରେ ଭାବି ଅନୁସନ୍ଧାନ କଲି। ଚିଠିଟି କେଉଁଠୁ କିପରି ଆସିଛି। ଆପଣଙ୍କ ସେହି ସାନ ଗେଣ୍ଡୁଫୁଲ ତୋଡ଼ାଟି କଥା ମନେ ଥିବ। ଘରର ସମସ୍ତ ସାଜସଜ୍ଜା ଦେଖି ସେଇ ଗେଣ୍ଡୁଫୁଲ ତୋଡ଼ାଟି ଅବାନ୍ତର ମନେ ହେଲା। ଏତେ ସୁନ୍ଦର ବଡ଼ ଫୁଲଦାନିରେ ଫୁଲ ସଜାହୁଏ ନାହିଁ- ସାବିତ୍ରୀ ଦେବୀଙ୍କର ଫୁଲ ପ୍ରତି ସେତେ ସ୍ପୃହା ନାହିଁ। ଯଦିବା ସଜାଇବା ସକାଶେ ଫୁଲ ଆଣନ୍ତେ, ତା'ହେଲେ ନିଜ ବଗିଚାରେ ଏତେ ସୁନ୍ଦର ସୁନ୍ଦର ଫୁଲ ଥାଉ ଥାଉ ଗେଣ୍ଡୁ ଫୁଲ ସାନ ତୋଡ଼ାଟି କାହିଁକି ସେ ପସନ୍ଦ କଲେ ? ପୁଣି ଜିତେନ୍ଦ୍ରିୟ ବାବୁଙ୍କ ବଗିଚାରେ ଗେଣ୍ଡୁଫୁଲ ଗଛ ନାହିଁ। ସନ୍ଦେହ ହେଲା, ତୋଡ଼ାଟି ବାହାରୁ ଆସିଛି, କାହିଁକି ? ବର୍ତ୍ତମାନ ଏ ଚିଠିଟି ଦେଖନ୍ତୁ, କିପରି ଅନେକ ବାର ମୋଡ଼ା ହୋଇଛି। କାହିଁକି ? ଏଇ ମୋଡ଼ା ଅନୁସାରେ ମୋଡ଼ି ଦେଖନ୍ତୁ ଚିଠିଟି କେତେ ସାନ ହୋଇଯାଇଛି। ଏପରି କାହିଁକି କରା ହୋଇଛି ? ଟିକିଏ ଚିନ୍ତା କଲେ ଜାଣି ପାରିବେ ଯେ, ଏହି ଚିଠିଟି ସେଇ ଗେଣ୍ଡୁ ଫୁଲ ତୋଡ଼ା ଭିତରେ ଆସିଥିଲା। ଏପରି ଭାବରେ ଚିଠି ଅନ୍ୟ କାହାରି ହାତରେ ନିଶ୍ଚୟ ଆସେ ନାହିଁ। କାରଣ ଥରକୁ ଥର ଏପରି ଆସିଲେ ସନ୍ଦେହ ନିଶ୍ଚୟ ହେବ। ଅନ୍ୟ କାହାରିକୁ ବିଶ୍ୱାସ କରି ଏପରି ଚିଠି ଦେବା ମଧ୍ୟ ଅସମ୍ଭବ। ଅତଏବ ସାବିତ୍ରୀ ଦେବୀ ନିଜେ ଯାଇ କାହାରି ଘରୁ ସଙ୍କେତ ଆଣନ୍ତି। କିନ୍ତୁ ସେ ଏ ଘରକୁ ଯାଇ ସଙ୍କେତ ଆଣିବା ଦରକାର କ'ଣ ? କଥାରେ ତ ସବୁ ଠିକ୍ ହୋଇ ପାରନ୍ତା। ନିଶ୍ଚୟ ଏପରି ବାଧା ବା ଭୟ ସେଠି ଅଛି, ଯାହା ସମ୍ମୁଖରେ ଏମାନେ ନିଜ ଭିତରେ କୌଣସି ବିଷୟରେ କଥାବାର୍ତ୍ତା କରନ୍ତି ନାହିଁ। ଏପରି ଭୟର

କାରଣ ସେ ପୁରୁଷର ନିଜର ସ୍ତ୍ରୀ ନିଶ୍ଚୟ । ଭାବିଲି, ସେ ପୁରୁଷ ନିଶ୍ଚୟ ସାବିତ୍ରୀ ଦେବୀଙ୍କ ପଡ଼ୋଶୀ । ଜିତେନ୍ଦ୍ରିୟ ବାବୁଙ୍କ ଘରର ପାଖାପାଖି ସବୁ ଘର ଦେଖିଲି । ଧର୍ମଦାସ ବାବୁଙ୍କ ବଗିଚାରେ ଅନେକ ଗେଣ୍ଡୁ ଫୁଲ ଫୁଟିଥିବାର ଦେଖି ସନ୍ଦେହ ହେଲା, ସେ ଏ ଚିଠି ଲେଖିଛନ୍ତି । ତାଙ୍କ ବିଷୟରେ ଜିତେନ୍ଦ୍ରିୟ ବାବୁଙ୍କୁ ସବୁ ପଚାରି ବୁଝିଲି । ସବୁ ଶୁଣି ମୋର ଦୃଢ଼ ଧାରଣା ହେଲା, ଏ ହତ୍ୟା ମୋହିନୀ ଦେବୀ କରିଛନ୍ତି । ଅବାନ୍ତର ହେଲେ ହେଁ ଦେଖାଯାଉ - ଧର୍ମଦାସ ବାବୁ ସଙ୍କେତ ମତେ ରାତି ଗୋଟାକ ବେଳେ ଆସିଥିଲେ କି ନା । ରାତି ଗୋଟାକବେଳେ ଝଡ଼ ଓ ବର୍ଷା ଖୁବ୍ ଜୋର୍‌ରେ ହେଉଥିଲା । ସେତେବେଳେ ମିନିଟକ ପାଇଁ ସାବିତ୍ରୀ ଦେବୀଙ୍କ ଦୁଆର ଖୋଲା ହୋଇଥିଲେ ସତରଞ୍ଜି ଅନ୍ତତଃ ପାଞ୍ଚଫୁଟ ଭିଜି ଥାଆନ୍ତା । କାରଣ କବାଟଟି ତିନିଫୁଟ ଉଚ୍ଚ ପର୍ଯ୍ୟନ୍ତ ଭିଜିଛି । ସତରଞ୍ଜିଟି ଭିଜିଛି ପ୍ରାୟ ୨ଫୁଟ-ଫୁଟେ ଦୁଆର ପାଖରେ ସିମେଣ୍ଟ ବାଦଦେଇ । ଅତଏବ ଝଡ଼ର ବେଗ ଟିକିଏ କମିବା ମାତ୍ରକେ ଧର୍ମଦାସ ବାବୁ ଆସିଥିଲେ । ଝଡ଼ର ବେଗ ଟିକିଏ କମିଥିଲା ପ୍ରାୟ ରାତି ତିନିଟା ବେଳକୁ । ଏହି ସମୟରେ ଧର୍ମଦାସ ବାବୁ ଆସିଥିଲେ ଏବଂ କବାଟ କିଛି ସମୟ ପାଇଁ ଖୋଲାଥିଲା । ସତରଞ୍ଜି ଉପରେ ନାଲି କାଦୁଅ ମଧ୍ୟ ଏହାର ପ୍ରମାଣ ଦିଏ । ଧର୍ମଦାସ ବାବୁ କିଛି ସମୟ ଥିଲେ । ସେ ଚାଲିଯିବା ପରେ ସାବିତ୍ରୀ ଦେବୀ ଦୁଧ ଖାଇଛନ୍ତି । ଧର୍ମଦାସ ବାବୁ ଯେ ଏ ହତ୍ୟା କରି ନାହାନ୍ତି, ତାହାର ପ୍ରମାଣ ମିଳେ ଆହୁରି ଗୋଟିଏ କାରଣରୁ - ସେ ବିଷ ମିଶାଇବାକୁ ସୁବିଧା ପାଇବା ଅସମ୍ଭବ ।

''ମୋହିନୀ ଦେବୀଙ୍କ ଆଡ଼େ ନଜର ରଖି ବର୍ତ୍ତମାନ ମୁଁ ଅନୁସନ୍ଧାନ ଆରମ୍ଭ କଲି । ବିଭିନ୍ନ ସୂତ୍ରରୁ ଜାଣିଲି ଯେ, ସେହି ଦିନ ଖରାବେଳେ ସେ ଜୀବନ ବାବୁଙ୍କ ଘରକୁ ଆସି ତାଙ୍କର ରସାୟନ ଆଗ୍ରହ ସହକାରେ ଦେଖୁଥିଲେ । ଜାଣିଲି ତାଙ୍କର ଏପରି ଇଚ୍ଛା ହେବା ଗୋଟାଏ ବାହାନା । ରାତି ଏଗାରଟା ପରେ ମଧ୍ୟ ସେ ବାହାନାରେ ଆସି ଦୁଧ ସାଙ୍ଗରେ ବିଷ ଗୁପ୍ତରେ ମିଶାଇଛନ୍ତି । ବର୍ତ୍ତମାନ ଏ ହତ୍ୟାର ଉଦ୍ଦେଶ୍ୟ କ'ଣ ? ଧର୍ମଦାସ ବାବୁ ତାଙ୍କ ସ୍ତ୍ରୀକୁ କାହିଁକି ପୀଡ଼ା ଦିଅନ୍ତି ? ମୋହିନୀ ଦେବୀ ବୋଧହୁଏ ଏ ଗୁପ୍ତ ସମ୍ପର୍କ ସନ୍ଦେହ କରନ୍ତି । ତା' ଯଦି ହୁଏ, ତା'ହେଲେ ଯେକୌଣସି ନାରୀ ପକ୍ଷରେ ସବୁ ଦୁଃଖର କାରଣକୁ ପୃଥିବୀରୁ ବିଦାୟ ନେବା ପାଇଁ ଏପରି କରିବା ଅସମ୍ଭବ ନୁହେଁ । ମୋହିନୀ ଦେବୀ ପତିପରାୟଣା ଥିବାରୁ ମୋର ଏ ସନ୍ଦେହ ଦୃଢ଼ ହେଲା । ସନ୍ଦେହର ଶେଷ ପ୍ରମାଣ ପାଇଁ ମୁଁ ମହକିଲ ସାଜି କାଲି ଧର୍ମଦାସ ବାବୁଙ୍କ ଘରକୁ ଯାଇଥିଲି । ଅନ୍ୟ କେଉଁଠି ରହିବାକୁ ସ୍ଥାନ ନାହିଁ ବୋଲି କହି, ତାଙ୍କ ବାହାର ଘରେ ଶୋଇବାର ଅନୁମତି ନେଇ ମୁଁ ରାତିରେ ଉଠି ସେମାନଙ୍କର କଥାବାର୍ତ୍ତା ଶୁଣିଲି । ମୋହିନୀ ଦେବୀଙ୍କ କହିବା ଢଙ୍ଗିରୁ ମୁଁ ବୁଝିଲି, ସେ ଏ କାଣ୍ଡ କରିଛନ୍ତି । ଅନେକ ଥର ସେ ଧର୍ମଦାସ ବାବୁଙ୍କ ଆଗରେ ଏ କଥା ପ୍ରକାଶ କରିବାକୁ ପର୍ଯ୍ୟନ୍ତ ଯାଇଛନ୍ତି, କିନ୍ତୁ ପାରିନାହାନ୍ତି । ମାତ୍ର ତାଙ୍କ ଭଳି ନାରୀ ଏ କଥା ବେଶି ଦିନ

ଲୁଚାଇ ରଖି ପାରିବେ ନାହିଁ । ସେ ହୁଏତ ଚାପି ରଖିବାକୁ ଯାଇ ପାଗଳ ହେବେ, ଅଥବା ଆତ୍ମହତ୍ୟା କରିବେ ।''

''ବର୍ତ୍ତମାନ ପ୍ରଶ୍ନ ଉଠେ- ମୁଁ ନିଜ ଚେଷ୍ଟାରେ ଯାହା ଜାଣିଛି, ତାହା ଜଣେ ଦାୟିତ୍ୱଜ୍ଞାନ-ସମ୍ପନ୍ନ ନାଗରିକ ପକ୍ଷରେ ପୁଲିସ ଆଗରେ କହିବା ଉଚିତ କି ନା ! ତା' ଆଗରୁ କହି ରଖେ ଯେ, ଆମର ଦଣ୍ଡ ବିଧାନ ଆଇନ Objective ଚିନ୍ତାଧାରା ଉପରେ ପ୍ରତିଷ୍ଠିତ - subjective ଚିନ୍ତାଧାରା ଉପରେ ନୁହେଁ । ପୁଲିସ ବା ବିଚାରକ ଅନୁଭବ କରିବ ନାହିଁ ମୋହିନୀ ଦେବୀଙ୍କ ଦାରୁଣ ମନର ଜ୍ୱାଳା - ଅନୁଭବ କରିବ ନାହିଁ କି ମର୍ମନ୍ତୁଦ ମାନସିକ ଯନ୍ତ୍ରଣାରେ ସେ ଏହା କରିଛନ୍ତି । ପ୍ରମାଣ ପାଇଲେ ବିଚାରକ ଫାଶି ଦଣ୍ଡ ଦେବାକୁ ବାଧ୍ୟ । ପୁଲିସ ଯାହାକୁ ଦୋଷୀ ବୋଲି ସାବ୍ୟସ୍ତ କରିଛି, ସେ ଦଣ୍ଡ ନ ପାଇଲେ ବଦନାମ ହେବ ବୋଲି ସେ ଏ ଦୋଷକୁ ଅଧିକ ଭୟାବହ ଭାବରେ ଦେଖାଇବ । Objective ଚିନ୍ତାଧାରା ଟିକିନିଖି ଆଲୋଚନା କରି ସୁବିଚାର ଦେଇପାରେ, କିନ୍ତୁ ତଦ୍ୱାରା ସମାଜର କିଛି ଲାଭ ନାହିଁ । କାରଣ, ଦୋଷଟି ସମାଜରେ ରହିଯିବ ମୂଳ କାରଣଟିକୁ ନ ଧରି ପାରିଲେ । ସେଥିପାଇଁ ଦରକାର subjective ଚିନ୍ତା । ଏ ହତ୍ୟା ପାଇଁ ମୂଳତଃ ଦାୟୀ କିଏ ? ପ୍ରଥମେ ଦେଖନ୍ତୁ, ଜିତେନ୍ଦ୍ରିୟ ବାବୁ । ସେ ୫୦ବର୍ଷରେ ୪ର୍ଥ ବାର କାହିଁକି ବିବାହ କଲେ ଜଣେ ଯୁବତୀକୁ ? ଦଣ୍ଡ ବିଧାନ ଆଇନରେ ଏହାର ପ୍ରତିକାର ଅଛି କି ? ଦ୍ୱିତୀୟରେ ଦେଖନ୍ତୁ, ଧର୍ମଦାସ ବାବୁଙ୍କ ଆଚରଣ । ପ୍ରଥମେ ଘଟଣାରୁ ଉପୁଜିଲା ସାବିତ୍ରୀ ଦେବୀଙ୍କ ଗୁପ୍ତ ପ୍ରଣୟ । କିନ୍ତୁ ଏଥିପାଇଁ ଦାୟୀ ଧର୍ମଦାସ ବାବୁ । କାରଣ, ମୋ ମତରେ ବିବାହ ପରେ ସଂଯମ ଏକାନ୍ତ ଆବଶ୍ୟକ । ବିବାହକୁ ସମସ୍ତେ ମନେ କରନ୍ତି ନିଜର ସୁଖ ପାଇଁ । କିନ୍ତୁ ଏଥିରେ ଯେ ଗୋଟାଏ ବୃହତ୍ତର ଉଦ୍ଦେଶ୍ୟ ରହିଛି, ତାହା ଜାଣିଲେ ମଧ୍ୟ କେହି ଅନୁରୂପ ଆଚରଣ ଦେଖାନ୍ତି ନାହିଁ । ଏ ଗୁପ୍ତ ପ୍ରଣୟରୁ ଉପୁଜିଲା ମୋହିନୀ ଦେବୀଙ୍କ ହିଂସା - ଯାହା ଖୁବ୍ ସ୍ୱାଭାବିକ୍ ଓ ପ୍ରାକୃତିକ ମଧ୍ୟ । ମୋ ବିଚାରରେ ଏ ହତ୍ୟାରେ ମୋହିନୀ ଦେବୀଙ୍କ ଦୋଷ ସବୁଠୁ କମ୍ ।''

ଏ ଯୁକ୍ତି ଅକାଟ୍ୟ ହୋଇପାରେ । କିନ୍ତୁ ଦୋଷୀ ଦଣ୍ଡ ପାଇବ ନାହିଁ, ଏହା ମୋ ମନକୁ ମାନିଲା ନାହିଁ । ମନର ଅବସ୍ଥା ବୁଝି ଦଣ୍ଡ ଦେଲେ ତ ଅଧିକାଂଶ ଛାଡ଼ ପାଇବେ - ପୁଣି ଅଧିକାଂଶ ତ ସେହି ମନର 'ଅବସ୍ଥା' କାରଣ ଦେଖାଇବେ, ଯାହା କଟାଇବା ଅନ୍ୟ ପକ୍ଷରେ ଅସମ୍ଭବ । ମୋ ମନରେ ଗୁରୁତର ସମସ୍ୟା ଉଠିଲା । ଭାବିଲି ପ୍ରତିବାଦ କରି କିଛି ଲାଭ ନାହିଁ ।

ପଚାରିଲି, ''ଆପଣ ଜିତେନ୍ଦ୍ରିୟ ବାବୁଙ୍କୁ କ'ଣ କହିଲେ ?''

''କହିଲି, ପୁଲିସ ରିପୋର୍ଟ ହିଁ ଠିକ୍ ।''

''ଆପଣ ତେବେ ମିଛ କହିଲେ ?''

"ସତ୍ୟ କହିବାର ଆଦର୍ଶ ପ୍ରତି ମୋର ଅଯଥା ଅନୁରାଗ ନାହିଁ।"

ଏ ବିଷୟରେ ଆମ ଦୁହିଁଙ୍କର ବା ଅନ୍ୟର ମତାମତ ଯାହା ଥାଉ ନା କାହିଁକି, ଗୋବର୍ଦ୍ଧନ ବାବୁଙ୍କ ତୀକ୍ଷ୍ଣ ବୁଦ୍ଧିର ପରିଚୟ ପାଇ ମୁଁ ମୁଗ୍ଧ ହୋଇଛି ।

ଏ ଘଟଣାର ପ୍ରାୟ ଦୁଇ ବର୍ଷ ପରେ ଶୁଣିଲି, ମୋହିନୀ ଦେବୀ ବିଷ ଖାଇ ଆତ୍ମହତ୍ୟା କରିଛନ୍ତି । ଏ ମହିଳାଙ୍କ ଜୀବନଟି ଭାବି ମୋର ଆଖିକୁ ପାଣି ଆସିଲା । ଭାବିଲି ବୋଧହୁଏ ଗୋବର୍ଦ୍ଧନ ବାବୁଙ୍କ ମତ ହିଁ ଠିକ୍ । *

* * *

---

* ପାଠକ ପାଠିକାଙ୍କ ମନେ ଥିବ, ମୁଁ ଗୋବର୍ଦ୍ଧନ ବାବୁଙ୍କ ନିକଟରେ ପ୍ରତିଜ୍ଞାବଦ୍ଧ ଥିଲି ସେ ମୋତେ ଅନୁମତି ନ ଦେବା ପର୍ଯ୍ୟନ୍ତ ଏ ବ୍ୟାପାରର ପ୍ରକୃତ ତଥ୍ୟ ପ୍ରକାଶ କରିବି ନାହିଁ । ମାତ୍ର, ଏବେ ଏ ଘଟଣା ପରେ ୧୩ ବର୍ଷ ବିତିଯାଇଛି । ଏଥିରେ ଉଲ୍ଲେଖିତ ବ୍ୟକ୍ତିମାନେ ଆଉ କେହି ଜୀବିତ ନ ଥିବାରୁ ଗୋବର୍ଦ୍ଧନ ବାବୁ ମୋତେ ସେ ଅନୁମତି ଦେଇଛନ୍ତି । ତେଣୁ ପ୍ରକାଶ କଲି, ତଥାପି ସ୍ଥାନଗୁଡ଼ିକର ନାମ ଅନୁକ୍ତ ରଖିଲି ।

-ଲେଖକ

# ବୈଜ୍ଞାନିକର ଅନ୍ଦାଜ

ଗୋବର୍ଦ୍ଧନ ବାବୁଙ୍କ ବସାରେ ରହିବାର ପ୍ରାୟ ପନ୍ଦର ଦିନ ହୋଇଗଲାଣି । ମୋର ପରୀକ୍ଷା ଫଳ ଏପର୍ଯ୍ୟନ୍ତ ବାହାରି ନାହିଁ । ଦିନ ଅଳସ ଭାବେ କଟୁଛି । କେତେବେଳେ କେମିତି ଗୋବର୍ଦ୍ଧନ ବାବୁଙ୍କ ବହିରୁ ଖଣ୍ଡେ ଆଣି ପଢ଼େ ମନ ଲାଗେ ନାହିଁ ।

ଗୋବର୍ଦ୍ଧନ ବାବୁଙ୍କ ଅନ୍ତରଙ୍ଗ ବନ୍ଧୁ କେହି ନାହିଁ କହିଲେ ଚଳେ । ତାଙ୍କର ଅନେକ ପରିଚିତ ଅଛନ୍ତି, କିନ୍ତୁ ବନ୍ଧୁ କହିଲେ ଯାହା ବୁଝାଏ ସେପରି କାହାକୁ ଦେଖିଲି ନାହିଁ । ତାଙ୍କର ପରିଚିତ ଲୋକେ କହିବାର ଶୁଣିଛି ଯେ, ଗୋବର୍ଦ୍ଧନ ବାବୁ ଟିକିଏ ଗର୍ବୀ, କିନ୍ତୁ ମୁଁ ଜାଣେ ସେ କେଡ଼େ ବିନୟୀ ! ତାଙ୍କର ନିଜର ଧାରଣା ଅବଶ୍ୟ, ସେ ସାଧାରଣ ଲୋକଙ୍କ ଠାରୁ ଢେର ବେଶୀ ବୁଦ୍ଧିମାନ୍ । କିନ୍ତୁ ଏହି ଧାରଣା ପାଇଁ ତାଙ୍କୁ କେବେହେଁ ଗର୍ବ କରିବାର ମୁଁ ଦେଖି ନାହିଁ, କିମ୍ବା ଲୋକଙ୍କୁ ଅବଜ୍ଞା କରିବାର ଦେଖି ନାହିଁ । ନିଜର ମନକୁ ଚାହିଁ ଲୋକ ପାଇଲେ ସେ ମନ ଖୋଲି କଥା କହନ୍ତି । ମୁଁ ଟିକିଏ ଗର୍ବ ଅନୁଭବ କରେ ଯେ, ଏହି ଅଳ୍ପ ଦିନ ଭିତରେ ସେ ମୋତେ ଟିକିଏ ବେଶୀ ନିକଟକୁ ନେଇଛନ୍ତି । ମୁଁ ଲକ୍ଷ୍ୟ କରିଛି ଯେ, ସେ ନିର୍ଜନ ସ୍ଥାନରେ ରହି ପାରନ୍ତି ନାହିଁ । ଲୋକ ଗହଳ ତାଙ୍କୁ ଭଲ ଲାଗେ-ତାଙ୍କର ଧ୍ୟାନ ଲୋକ ଗହଣି ମଝିରେ । ନାନା ଜାତିର ଲୋକଙ୍କର ନାନା ପ୍ରକାର ଭାବନା ଓ କାର୍ଯ୍ୟକଳାପ ତାଙ୍କ ମନରେ ନାନା ଭାବ ଜାତ କରାଏ । ସେ ଆଶ୍ଚର୍ଯ୍ୟ ହୋଇ କହିବାର ମୁଁ ଶୁଣିଚି, ‘‘ଲୋକେ କିପରି ବଣରେ ତପସ୍ୟା କରନ୍ତି, ଏପରି କି ନଇକୂଳେ କିପରି ଏକା ଏକା ଅନେକ ସମୟ ବସି ପାରନ୍ତି ?’’ ନିର୍ଜନ ସ୍ଥାନରେ ତାଙ୍କର ମସ୍ତିଷ୍କ ଆଦୌ କାର୍ଯ୍ୟ କରିପାରେ ନାହିଁ । କିନ୍ତୁ ଲୋକ ଗହଣି ଭିତରେ ସେ ଥାଆନ୍ତି ଏକାକୀ ଦାର୍ଶନିକ ଭଳି । ଏହି ଦାର୍ଶନିକ ମନୋବୃତ୍ତି ଯୋଗୁଁ ଏବଂ ମାନବ ଚରିତ୍ର ସହିତ ଘନିଷ୍ଠ ପରିଚୟ ଯୋଗୁଁ ଚୋର ତସ୍କର ଠାରୁ ଆରମ୍ଭ କରି ବିଦ୍ୱାନ୍ ପର୍ଯ୍ୟନ୍ତ ସମସ୍ତଙ୍କ ପ୍ରତି ତାଙ୍କର ଆନ୍ତରିକ ସହାନୁଭୂତି ଅଛି - କାହାରି ପ୍ରତି ଘୃଣା ବା ବିଦ୍ୱେଷ ନାହିଁ । କିନ୍ତୁ କାହାରି ପ୍ରତି ମୋହ ବା ମମତା ମଧ୍ୟ ନାହିଁ ।

ସକାଳେ ଓ ସନ୍ଧ୍ୟାରେ ସେ ଟିଉସନ୍ କରନ୍ତି । ତାଙ୍କର ଅର୍ଥ ଉପାର୍ଜ୍ଜନର ଏହି ଏକମାତ୍ର ପନ୍ଥା । ତାଙ୍କର ଆବଶ୍ୟକତା ଖୁବ୍ ସାମାନ୍ୟ । ବଦ ଖର୍ଚ୍ଚ (?) ଭିତରେ ବହି କିଣା ଓ ରାସାୟନିକ ପରୀକ୍ଷା ପାଇଁ ନାନା ଯନ୍ତ୍ର ଆଦି କିଣା । ଖରାବେଳ ଯାକ ତାଙ୍କର ଯାଏ ପଢ଼ାପଢ଼ି ଓ ଲେଖାଲେଖିରେ; ସନ୍ଧ୍ୟାବେଳେ ପ୍ରାୟ ଘଣ୍ଟାଏ ଆମେ ବୁଲିବାକୁ ଯାଉ । ତା’ପରେ ସେ ଯାଆନ୍ତି ପଢ଼ାଇବାକୁ, ଫେରନ୍ତି ନଅଟା ବେଳକୁ । କିଛିକ୍ଷଣ କାମ କରି ସେ

ଠିକ ନିୟମିତ ଭାବରେ ସାଢ଼େ ଦଶଟାବେଳେ ଖାଇବାକୁ ଯାଆନ୍ତି ଓ ଖାଇସାରି ବାରଟା ପର୍ଯ୍ୟନ୍ତ କାମ କରି ଶୁଅନ୍ତି । ସୂର୍ଯ୍ୟ ଉଠିବାର ଢେର ଆଗରୁ ସେ ବୁଲି ଆସି କାମରେ ବସନ୍ତି । ଘଣ୍ଟାଏ ପର୍ଯ୍ୟନ୍ତ କାମ କରି ସେ ପଢ଼ାଇବାକୁ ଯାଆନ୍ତି । ତାଙ୍କର କାମ କରିବାରୁ ଅଦ୍ଭୁତ ଶକ୍ତି ଦେଖି ମୋତେ ଆଶ୍ଚର୍ଯ୍ୟ ଲାଗେ । ଶାରୀରିକ ପରିଶ୍ରମ ଭିତରେ କେବଳ ଦୁଇ ବେଳା ଭ୍ରମଣ ଦୌଡ଼ିବା କହିଲେ ଚଳେ । ବ୍ୟାୟାମ ପାଇଁ ଯେ ସେ ଏତେ ଜୋର୍‌ରେ ଚାଲନ୍ତି ତା' ନୁହେଁ । ଏହାହିଁ ତାଙ୍କର ସାଧାରଣ ଚାଲି ।

ଦିନେ ସକାଳେ ଜଳଖିଆ ଖାଇବା ସମୟରେ ଗୋବର୍ଦ୍ଧନ ବାବୁ ହଠାତ୍ କହିଲେ,''ଡାକ୍ତର, (ଆଜିକାଲି ସେ ମୋତେ କେତେବେଳେ 'ଡାକ୍ତର ସାହେବ' କେତେବେଳେ ଅବା 'ଡାକ୍ତର' ବୋଲି ଡାକନ୍ତି ଏବଂ ମୋର ଏକାନ୍ତ ଅନୁରୋଧରେ ମୋତେ 'ଆପଣ' ବୋଲି ସମ୍ବୋଧନ କରିବା ଛାଡ଼ିଛନ୍ତି) ଚାଲ, ଟିକିଏ ପୁରୀ ବୁଲି ଆସିବା । ପରୀକ୍ଷା ଫଳ ସକାଶେ ତୁମର ଦିନ ଉତ୍କଣ୍ଠାରେ କଟୁଛି । ତୁମର ସ୍ଥାନ ପରିବର୍ତ୍ତନ ଦରକାର ହୋଇ ପଡ଼ିଛି । ସେ ଯେକୌଣସି ବିଷୟରେ ଯୁକ୍ତି କରିବା ସମୟରେ ସେ ତାଙ୍କର ଭାବଗୁଡ଼ିକ ଉପରେ ଡେଇଁ ଡେଇଁ ଚାଲନ୍ତି; ତେଣୁ ତାଙ୍କର ଯୁକ୍ତି ବୁଝିବା ଅନେକ ସମୟରେ କଷ୍ଟକର ହୁଏ । କିନ୍ତୁ ବୁଝି ନ ପାରିଲେ ସେ ବିରକ୍ତ ହୁଅନ୍ତି । ତାଙ୍କର ଶରୀର ଓ ମନ ଖୁବ କ୍ଷିପ୍ରତାର ସହିତ କାମ କରେ । ତାଙ୍କର ପ୍ରସ୍ତାବ ବିଷୟରେ ଟିକିଏ ଭାବି-ବେଶୀ ଭାବିବାକୁ ସାହସ ହେଲା ନାହିଁ - କହିଲି, 'ହଉ' । ସାଙ୍ଗେ ସାଙ୍ଗେ ସେଇ ଦିନ ଦିନ ଗାଡ଼ିରେ ଯିବାର ସବୁ ଠିକ୍ ହୋଇଗଲା ।

ପୁରୀରେ ପହଞ୍ଚି ଆମେ ଫ୍ଲାଗ୍ ଷ୍ଟାଫ୍ ପାଖରେ ଗୋଟିଏ ଘରେ ରହିଲୁ । ତାଙ୍କର ଦୈନନ୍ଦିନ କାର୍ଯ୍ୟ ନିର୍ଘଣ୍ଟରେ କୌଣସି ପରିବର୍ତ୍ତନ ନାହିଁ- କେବଳ ସକାଳେ ଟିକିଏ ବେଶୀ ସମୟ ବୁଲିବା ଓ ଯେଉଁ ସମୟରେ ସେ ଟିଉସନ୍ କରୁଥିଲେ ସେହି ସମୟରେ ନିଜ କାମ କରିବା ଛଡ଼ା । ସାଙ୍ଗରେ ସେ ଆଣିଥାନ୍ତି ସାମାନ୍ୟ କେତେକ ଖଣ୍ଡ ଲୁଗା, କମିଜ ଓ ଅନେକ ଗୁଡ଼ିଏ ବହି । କୌଣସି ବିଷୟରେ ସେ ଗବେଷଣାମୂଳକ ପ୍ରବନ୍ଧ ଲେଖୁଥାଆନ୍ତି । ଅନ୍ୟ କେହି ତାଙ୍କ କାର୍ଯ୍ୟ ବିଷୟରେ ଉତ୍ସୁକ ହେବାକୁ ସେ ବିରକ୍ତ ହୁଅନ୍ତି । ତେଣୁ ତାଙ୍କ ପ୍ରବନ୍ଧ ବିଷୟରେ ଜାଣିବାକୁ ମୁଁ ଚେଷ୍ଟା କରି ନାହିଁ । ସକାଳେ ଓ ସନ୍ଧ୍ୟାରେ ଆମେ ପ୍ରାୟ ୨/୩ ମାଇଲ ବୁଲିବାକୁ ଯାଉ । ପ୍ରତ୍ୟହ ବସାରୁ ବାହାରି ସ୍ୱର୍ଗ ଦ୍ୱାର ଆଡ଼େ କିଛି ଦୂର ଯାଇ ସେଠୁ ଫେରି ଚକ୍ରତୀର୍ଥ ପର୍ଯ୍ୟନ୍ତ ଯାଇ ବସାକୁ ଫେରୁ । ଆଜିକି ପୁରୀରେ ରହିବାର ପ୍ରାୟ ଆଠ ଦିନ ହୋଇଗଲା - ଦିନେ ଏହି ନିୟମର ବ୍ୟତିକ୍ରମ ଦେଖି ନାହିଁ । ସେ ତଳକୁ ମୁହଁ ପୋତି ଭାବି ଭାବି ଚାଲିଥାଆନ୍ତି ଓ ମୁଁ ନୀରବରେ ତାଙ୍କ ସାଙ୍ଗେ ଦୌଡୁଥାଏ । ଏହି ଭ୍ରମଣ ବେଳେ ସେ କେବଳ ଦୁଇ ଥର କଥା କହିବାର ମୋର ମନେ ଅଛି । ମୁଁ ଯେଉଁ ଘଟଣା ବିଷୟରେ ଲେଖିବାକୁ ଯାଉଛି, ତା' ସହିତ କୌଣସି ସମ୍ବନ୍ଧ ନଥିଲେ ହେଁ ତାଙ୍କର ଚିନ୍ତାଧାରାର କିଞ୍ଚିତ୍

ପରିଚୟ ଦେବା ପାଇଁ ମୁଁ ତାହା ଉଲ୍ଲେଖ କରୁଛି । ପୁରୀରେ ପହଞ୍ଚିବାର ୨/୩ଦିନ ପରେ ସାନ୍ଧ୍ୟାଭ୍ରମଣ ବେଳେ ସେ ହଠାତ୍ କହିଲେ, ''ଈଶୋପନିଷଦ୍‌ରେ ଗୋଟିଏ ଶ୍ଳୋକ ଅଛି 'ଯୋଽସାବାସୋ ପୁରୁଷଃ ସୋଽହମସ୍ମି' । ଏହାର ଅର୍ଥ ଆଦିତ୍ୟ ମଣ୍ଡଳରେ ଯେଉଁ ଶକ୍ତି ଅଛି ତା' ମୋଠାରେ ମଧ ଅଛି, ଡାର୍‌ଉଇନ୍ ତାଙ୍କ 'କ୍ରମବିକାଶ' ତତ୍ତ୍ୱ ବୁଝାଇବାକୁ ଯାଇ କହିଛନ୍ତି, 'ଜଳବାୟୁ ଓ ଅନ୍ୟାନ୍ୟ ପାର୍ଥିବ ପାରିପାର୍ଶ୍ୱିକ କାରଣରୁ ହିଁ କୀଟଠାରୁ ମନୁଷ୍ୟ ପର୍ଯ୍ୟନ୍ତ କ୍ରମବିକାଶ ହୋଇଛି ।' ଲାମାର୍କ କହନ୍ତି । 'ଏ କ୍ରମବିକାଶର ମୂଳରେ ଅଛି ମନ ।' ମୋର ମଧ ଧାରଣା ଯେ ମନହିଁ ମୂଳ- 'ମନର ମୂଳେ ଏ ଜଗତ' । ଆଜିକାଲି ଆମେ ଉପନିଷଦର ସେ ପ୍ରେରଣା ହରାଇଛୁ । ଆମର ଶକ୍ତି ବର୍ତ୍ତମାନ ଧନ ଜନ ସମ୍ପତ୍ତି ଆଦି ପାର୍ଥିବ ବସ୍ତୁରେ ନିହିତ । ସେସବୁ ଯେତେ ବଢୁଛି, ମନଟି ସେତେ ସଙ୍କୁଚିତ ହୋଇ ଲୋପ ପାଇବାକୁ ବସିଲାଣି । ପୁରାକାଳରେ ପ୍ରାୟ ମସ୍ତିଷ୍କ ବିହୀନ ଅତିକାୟ ଜୀବଜନ୍ତୁ ଦୈତ୍ୟଙ୍କ ପରି ମନୁଷ୍ୟ ଆଜିକାଲି ଏକ ନୂଆ ଦୈତ୍ୟ ପାଲଟିଛି ଧନର ଶକ୍ତିରେ । ଥରେ ଯଦି ଆମ ମନରେ ଦୃଢ଼ ଧାରଣା ଜନ୍ମେ ଯେ, ଆମେ ଅମର - ଭଗବାନଙ୍କ ଶକ୍ତି ଆମଠାରେ ଅଛି । ତା'ହେଲେ ଆମେ ଅମର ହୋଇପାରିବୁ । ବାହ୍ୟଶକ୍ତି ଆଣି ଦେବ ଲୋଭ ହିଂସା ଆଦି ବିନାଶକାରକ ଦୋଷ । ମନର ଶକ୍ତି ଦେବ ପ୍ରେମ ଓ ସ୍ନେହ । ବାହ୍ୟଶକ୍ତିକୁ ରୋଧ କରିବା ପାଇଁ ଶତ୍ରୁ ତା'ର ସେ ଶକ୍ତି ବଢ଼ାଇବ ଏବଂ ଶେଷରେ ଆମେ ପ୍ରତ୍ୟେକ ପ୍ରତ୍ୟେକକୁ ବିନାଶ କରିବୁ ଆମର ଲୋଭ ଓ ହିଂସାରେ । କିନ୍ତୁ ମନର ଶକ୍ତିକୁ କେହି ରୋଧ କରିପାରିବ ନାହିଁ ।''

ଆଉ ଥରେ ସେ କହିଥିଲେ ଆଜି ସକାଳେ । ସ୍ୱର୍ଗଦ୍ୱାରର ଟିକିଏ ଆଗକୁ ଯାଇ ଆମେ ଫେରୁଛୁ, ଗୋବର୍ଦ୍ଧନ ବାବୁ ହଠାତ୍ କହିଲେ, ''ସମସ୍ତେ କୁହନ୍ତି ମନୁଷ୍ୟ ଯୂଥଚାରୀ । ମୋର କିନ୍ତୁ ମନେହୁଏ ଏହା ଭୁଲ ଧାରଣା । ମନୁଷ୍ୟ ଭଳି ଏକା ରହିବାର ଇଚ୍ଛା ବୋଧହୁଏ ଅନ୍ୟ କୌଣସି ଜୀବର ନାହିଁ । ଏକାଠି ଏକ ସମାଜରେ ଏକାସ୍ଥାନରେ ରହି ମଧ ଜଣେ ଅନ୍ୟଠାରୁ ସବୁ ବିଷୟରେ ଅଧିକା ପାଇବାକୁ ଚାହେଁ । ଏହାର କାରଣ, ମନୁଷ୍ୟ ପାଇଛି ମନ । ସମୟ ଥିଲା ଯେତେବେଳେ ନାନା ଅଜଣା ବିପଦ ଓ ପାରିପାର୍ଶ୍ୱିକ ଅବସ୍ଥା ଦୃଷ୍ଟିରୁ ମନୁଷ୍ୟ ସମାଜ ଗଢ଼ିବାକୁ ବାଧ ହୋଇଥିଲା । କିନ୍ତୁ ସେ ବିପଦ ସବୁ ଆଜିକାଲି ନାହିଁ- ମନୁଷ୍ୟ ଆଉ ଅଜଣା ଭୟରେ କମ୍ପିତ ହୁଏ ନାହିଁ । ତେଣୁ ପ୍ରତିପତ୍ତି ପାଇବାର ଇଚ୍ଛା ତୀବ୍ର ତର ଭାବରେ ପ୍ରକାଶ ପାଉଛି । ଧନ ହେଉ, ମନ ହେଉ ବା ପ୍ରେମ ଭକ୍ତି ଏପରିକି କି ସୁନ୍ଦରୀ ଭାର୍ଯ୍ୟା ହେଉ ନା କାହିଁକି ପ୍ରୟୋଜନ ନଥିଲେ ମଧ ଏସବୁ ପାଇଁ ଜଣେ ଅନ୍ୟ ଜଣକୁ ହତ୍ୟା କରୁଛି । ଏ ଇଚ୍ଛା କାହିଁକି ? କ୍ରମ ବିକାଶ ସହିତ ଏହାର ସମ୍ପର୍କ କ 'ଣ ? ଏ ଇଚ୍ଛା କୀଟରୁ ମନୁଷ୍ୟ କରାଇଛି, ମନୁଷ୍ୟକୁ ପୁଣି କ'ଣ କରିବ ? Communism ଏହାକୁ କେତେଦୂର ଭଲ ଆଡ଼କୁ ନେବାକୁ କ୍ଷମ ହେବ ? ପୁଞ୍ଜିବାଦ ପୃଥିବୀରୁ ତଡ଼ିଦେଲେ ଏ ଇଚ୍ଛା କ'ଣ ଲୋପ ପାଇବ ? 'କ୍ରମବିକାଶ' ସହିତ ଯଦି ଏହାର ଗୂଢ଼ ସମ୍ପର୍କ ଅଛି, ତେବେ ଏଇ

ଇଚ୍ଛାକୁ କିପରି ଭାବରେ ଚାଳିତ କଲେ ସମୂହ କଲ୍ୟାଣ ହେବ ?'' ଏହିପରି କହୁଁ କହୁଁ ଆମେ ପ୍ରାୟ ଫ୍ଲାଗ୍‌ଷ୍ଟାଫ ପର୍ଯ୍ୟନ୍ତ ଆସିଲୁ । ଅଳ୍ପ ଦୂରରେ କେତେଗୁଡ଼ିଏ ଲୋକ ଜମା ହୋଇ କ'ଣ ଦେଖୁଛନ୍ତି । ଆମେ ଭିଡ଼ ଠେଲି ଭିତରକୁ ଯାଇ ଦେଖିଲୁ ଯେ, ଗୋଟିଏ ଲୋକ ମରି ପଡ଼ିଛି, ବୟସ ପ୍ରାୟ ୨୬/୨୭ ହେବ, ମୁଣ୍ଡଟି ନଣ୍ଡା-ଗୋଟିଏ ଚୁରକି ଅଛି । ସମସ୍ତ ଶରୀରଟି ଫୁଲି ଯାଇଛି । ତେବେ ବିଶେଷ ନୁହଁ । ଖଣ୍ଡେ ଲୁଗା ଭିଡ଼ି ଭାଡ଼ି ହୋଇ ପିନ୍ଧିଛି- ସମୁଦ୍ରକୁ ଗାଧୋଇ ଯିବା ଆଗରୁ ଯେପରି ପିନ୍ଧନ୍ତି । ସମସ୍ତ ଶରୀରଟି ଫୁଲି ଯାଇଥିଲେ ମଧ୍ୟ ହାତ ଗଣ୍ଠି ଓ ଗୋଡ଼ର ଚଉଡ଼ା ହାଡ଼ରୁ ମନେ ହୁଏ, ଲୋକଟି ବଳିଷ୍ଠ ଥିଲା । ଗୋବର୍ଦ୍ଧନ ବାବୁ ତାହାର ଗୋଟିଏ ହାତ ଟେକିଲେ । କଟି ପାଖରେ ଇଂରାଜୀରେ ଚିତା କୁଟାହୋଇଛି ଜେ.ବି. । ପୁଲିସ ଇନ୍‌ସ୍‌ପେକ୍ଟର ପ୍ରାଣବଲ୍ଲଭ ବାବୁ ସେଠି ଛିଡ଼ା ହୋଇ ରିପୋର୍ଟ ଲେଖୁଛନ୍ତି । ଗୋବର୍ଦ୍ଧନ ବାବୁଙ୍କୁ ସେ ଚିହ୍ନନ୍ତି । ତାଙ୍କ ଆଡ଼କୁ ଅନାଇ ସେ କହିଲେ, ''ବୁଡ଼ି ମରିଛି । ଲୋକଟି ସେତେ ଭଲ ପହଁରା ଜାଣେ ନାହିଁ ବୋଧହୁଏ । ଟିକିଏ ବେଶୀ ଭିତରକୁ ଯାଇ ସମ୍ଭାଳି ନ ପାରି ବୁଡ଼ିଯାଇଛି ।'' ଗୋବର୍ଦ୍ଧନ ବାବୁ ପଚାରିଲେ, ''ଆପଣମାନଙ୍କ ଭିତରୁ କିଏ କେତେବେଳେ ଏହାକୁ ଦେଖିଲେ ?'' ଗୋଟିଏ ଲୋକ କହିଲା, ''ମୁଁ ପ୍ରଥମେ ଦେଖିଲି ପ୍ରାୟ ପନ୍ଦର ମିନିଟ ଆଗେ । ଏଇଠୁଁ ଲହଡ଼ି ସେ ପାଖେ ଲୋକଟି ଚିତ୍ ହୋଇ ଭାସୁଥିଲା । ଭାବିଲି ବୋଧହୁଏ ପହଁରୁଛି । କିନ୍ତୁ କୂଳକୁ ଆସିବାରୁ ଦେଖିଲି ସେଇଟା ମୁର୍ଦ୍ଦାର ।''

''ଏହାକୁ କେହି ଚିହ୍ନିଲେଣି ?''

''ନା, କେହି ଚିହ୍ନି ପାରୁ ନାହାନ୍ତି ।''

''ଆପଣ କ'ଣ ମନେ କରନ୍ତି ଲୋକଟି ବୁଡ଼ି ମରିଛି ?''

''ତା'ଛଡ଼ା ଆଉ କ'ଣ ? ସକାଳେ କିଏ ହତ୍ୟା କରିବ ?''

''ହୋଇ ପାରେ'' କହି ଗୋବର୍ଦ୍ଧନ ବାବୁ ନିଜ ହାତ ଘଡ଼ିକୁ ଅନାଇଲେ । କିଛିକ୍ଷଣ ଭାବି କହିଲେ ''ଡାକ୍ତର, ଚାଲ ସ୍ୱର୍ଗଦ୍ୱାର ଆଡ଼େ ପୁଣି ଟିକିଏ ବୁଲିଆସିବା ।'' ସମୁଦ୍ର କୂଳେକୂଳେ ସ୍ୱର୍ଗଦ୍ୱାର ଆଡ଼େ ପ୍ରାୟ ଦୁଇ ମାଇଲ୍ ଗଲା ପରେ ଗୋଟିଏ ଅପେକ୍ଷାକୃତ ଜନବିରଳ ସ୍ଥାନରେ ଗୋବର୍ଦ୍ଧନ ବାବୁ ରାସ୍ତା ଉପରକୁ ଉଠିଲେ ଓ କେତେଗୁଡ଼ିଏ ଘରର ମଝିଆମଝି ଛିଡ଼ା ହୋଇ ପାଟି କରି ଡାକିଲେ, ''ବୋସ୍‌ବାବୁ, ବୋସ୍ ବାବୁ'' । ଗୋଟିଏ ଛୋଟ ବହୁତ ପୁରୁଣା ଏକ ମହଲା କୋଠାଘରୁ ଜଣେ ପ୍ରୌଢ଼ ଲୋକ ବାହାରି ଆସିଲେ । ଦେଖିଲେ ମନେ ହୁଏ ଚାକର । ଲୋକଟି ବଙ୍ଗଳାରେ କହିଲା, ''ଯତୀନ ବାବୁ ଖୁବ୍ ସକାଲୁ ବୁଲି ଯାଇଛନ୍ତି ।'' ଗୋବର୍ଦ୍ଧନ ବାବୁ ପରିଷ୍କାର ବଙ୍ଗଳାରେ କହିଲେ, ''ମୁଁ ଜାଣେ । ସେ ମୋତେ କହିଲେ ତାଙ୍କ ପହଁରିବା ପୋଷାକ ଆଣିବାକୁ, ସେ ଗାଧୋଇବେ ।'' ଲୋକଟି କହିଲା,''ନେଇ ଯାଆନ୍ତୁ ।'' ଆମେ ଘର ଭିତରକୁ ଗଲୁ । ଗୋବର୍ଦ୍ଧନ ବାବୁ ଘରର ଚାରିପଟ ବୁଲି ଦେଖିଲେ । ଘରଠୁଁ ଅଳ୍ପ ଦୂରରେ ପାଇଖାନା ପାଖରେ ଗୋଟିଏ ବୁଦା ଅଛି । ଗୋବର୍ଦ୍ଧନ

ବାବୁ ତା'ର ଚାରିପଟେ ବୁଲି ଦେଖିଲେ । ଅନେକ ଗୁଡ଼ିଏ ଦରପୋଡ଼ା ବିଡ଼ି ପାଇ ସେ ସେଥିରୁ ଦୁଇଟି ବାଛି ଶୁଙ୍ଘି ପକେଟରେ ରଖିଲେ । ତା'ପରେ ତାଙ୍କର କାଚରେ ସେ ଜାଗାଟି ପରୀକ୍ଷା କଲେ । ସେହିପରି କାଚ ଦ୍ୱାରା ଦେଖି ସେ ଘରର ଗୋଟିଏ ଝରକା ପର୍ଯ୍ୟନ୍ତ ଆସିଲେ । ଝରକା ପାଖରେ ଗୋଟିଏ ବାଉଁଶ ପଡ଼ିଥିଲା । ସେଇଟି ଉଠାଇ ନେଇ ସେ ଝରକା ଭିତରେ ଦେଇ ଘର ଭିତରେ ଶୋଇବା ଖଟ ପର୍ଯ୍ୟନ୍ତ ବଢ଼ାଇ କ'ଣ ଭାବିଲେ । ଦେଖିଲି, ଗୋବର୍ଦ୍ଧନ ବାବୁ ସବୁ କାମ ଖୁବ୍ ଶୀଘ୍ର ଶୀଘ୍ର କରୁ ଥାଆନ୍ତି । ଚାକରଟି ପାଟି କରି ଡାକିଲା, ''ବାବୁ, କୁଆଡ଼େ ଗଲ, ପହଁରା ପୋଷାକ ନିଅ ।'' ''ମୁଁ ଏଇଠି, ଘର ବୁଲି ଦେଖୁଛି । ଏହି ଘରଟା ଟିକିଏ ଫିଟାଅ । ଯତୀନ ବାବୁ କହିଛନ୍ତି ଲୁଗା କମିଜ ମଧ୍ୟ ନେବାକୁ ।'' ଚାକର ପହଁରା ପୋଷାକ ଦେଇ ଘର ଫିଟାଇଲା । ଗୋବର୍ଦ୍ଧନ ବାବୁ ଅଳ୍ପ ସମୟ ପାଇଁ ପୋଷାକଟି ଦେଖି ରଖି ଦେଲେ । ଏ ଘରର ଦୁଇଟି ଦୁଆର-ଗୋଟିଏ ବାହାରକୁ ଅନ୍ୟଟି ଆଉ ଗୋଟିଏ ଘର ଭିତରକୁ । ବାହାର କବାଟଟି ଭିତରୁ ବନ୍ଦ ଥିଲା । ଚାକର ଅନ୍ୟ ଦୁଆର ବାଟେ ଆସି ବାହାର ଦୁଆରଟି ଖୋଲି ଦେଲା । ସେ ଦୁଆରର ହଁସକଲଟି ଗୋବର୍ଦ୍ଧନ ବାବୁ ତାଙ୍କର କାଚରେ ପରୀକ୍ଷା କଲେ । ଖଟ ତଳୁ ଗୋଟିଏ ରୁମାଲ ପାଇ ଉଠାଇ ନେଇ କିଛିକ୍ଷଣ ଦେଖିଲେ । ଶସ୍ତା ସିଲ୍କ ରୁମାଲଟି ନାନା ରଙ୍ଗରେ ଚିତ୍ରିତ । ଗୋଟିଏ ଉଲଗ୍ନ ନାରୀର ଚିତ୍ର ମଧ୍ୟ ରୁମାଲରେ ଅଙ୍କା ହୋଇଛି । ରୁମାଲଟି ପକେଟରେ ରଖି ଗୋବର୍ଦ୍ଧନ ବାବୁ କହିଲେ, ''ଡାକ୍ତର, ଶୀଘ୍ର ଆସ । ସମୟ ଖୁବ୍ ଅଳ୍ପ ଅଛି ।'' ଅଳ୍ପ ସମୟ ଭିତରେ ଆମେ ପୁଲିସ ଷ୍ଟେଶନରେ ପହଞ୍ଚିଲୁ । ପ୍ରାଣବଲ୍ଲଭ ବାବୁ କାମରେ ବ୍ୟସ୍ତ ଥିଲେ । ଗୋବର୍ଦ୍ଧନ ବାବୁ କହିଲେ, ''ପ୍ରାଣବଲ୍ଲଭ ବାବୁ, ସକାଳେ ଯେଉଁ ଶବଟି ଦେଖି ଆପଣ ବୁଢ଼ି ମରିଛି ବୋଲି ଭାବିଥିଲେ, ତାହା ପ୍ରକୃତରେ ହତ୍ୟା । ଆପଣ ଶୀଘ୍ର ଗୋଟିଏ ଓ୍ୱାରେଣ୍ଟ ତିଆରି କରି ମୋ ସାଙ୍ଗରେ ଆସନ୍ତୁ । ଆଶା କରେ, ହତ୍ୟାକାରୀ ଦୁଇ ଜଣଙ୍କୁ ଧରି ପାରିବି ।'' ଅଳ୍ପ ସମୟ ଭିତରେ ପ୍ରାଣବଲ୍ଲଭ ବାବୁ ସବୁ କାମ ସାରି ଦେଲେ ଓ ୪/୫ ଜଣ ପୁଲିସ ସହିତ ଗୋଟିଏ ପୁଲିସ ମଟରରେ ଆମ ସଙ୍ଗେ ବାହାରି ପଡ଼ିଲେ । ରାସ୍ତାରେ ଗୋବର୍ଦ୍ଧନ ବାବୁ କହିଲେ, ''ଆପଣମାନେ ଅଳ୍ପ ଦୂରରେ ଅପେକ୍ଷା କରି ରହିବେ । ମୁଁ ଯେଉଁ ଲୋକ ପାଖରେ ଛିଡ଼ା ହୋଇ ହାତ ଟେକିବି, ଆପଣ ଶୀଘ୍ର ଯାଇ ତାକୁ ଗିରଫ କରିବେ ।'' ରେଳ ଷ୍ଟେଶନରେ ପହଞ୍ଚିବାକୁ ବେଶୀ ସମୟ ଲାଗିଲା ନାହିଁ । କଲିକତାକୁ ଗାଡ଼ି ଛାଡ଼ିବାକୁ ପନ୍ଦର ମିନିଟ ଥାଏ । ଆମେ ଟିକିଏ ଦୂରରେ ଛିଡ଼ା ହେଲୁ । ଗୋବର୍ଦ୍ଧନ ବାବୁ ଗାଡ଼ି ପାଖେ ପାଖେ ପ୍ରତ୍ୟେକ ଡବା ଦେଖି ଦେଖି ଯାଉଥାଆନ୍ତି । ଅଳ୍ପ ଦୂରରେ ଦୁଇ ଜଣ ଲୋକ ପାଣି କଳ ପାଖରେ ଛିଡ଼ା ହୋଇ ବିଡ଼ି ଟାଣୁ ଥିଲେ । ଦୁଇଜଣ ଯାକ ଖୁବ୍ ଲମ୍ବା ଓ ବଳିଷ୍ଠ । ଶସ୍ତା ସିଲ୍କର ଲୁଙ୍ଗି ଓ ନାନାରଙ୍ଗର କମିଜ ପିନ୍ଧି ଥାଆନ୍ତି । ଦୂରରୁ ତାଙ୍କୁ ଦେଖି ଗୋବର୍ଦ୍ଧନ ବାବୁ ପାଟିକରି ଅଦ୍ଭୁତ ବଙ୍ଗଳାରେ କହିଲେ, ''ଆପଣଙ୍କ ରୁମାଲ ରାସ୍ତାରେ ଖସି ପଡ଼ିଥିଲା । ମୁଁ ପାଇଛି

ନିଅନ୍ତୁ ।'' ସେମାନଙ୍କ ଭିତରୁ ଜଣେ ଆଗ୍ରହର ସହିତ ହାତ ବଢ଼ାଇଲା । ଗୋବର୍ଦ୍ଧନ ବାବୁ ରୁମାଲଟି ଦେଲେ । ରୁମାଲଟି ଦେଇ ଗୋବର୍ଦ୍ଧନ ବାବୁ ବୋଧହୁଏ ଗୋଟିଏ ବିଡ଼ି ମାଗିଲେ; କାରଣ ଗୋଟିଏ ଲୋକ ବିଡ଼ି ଓ ଡିଆସିଲି ଦେଲା । ଗୋବର୍ଦ୍ଧନ ବାବୁ ହାତ ଟେକି ଦେବାର ଦେଖି ଆମେ ସମସ୍ତେ ଦୌଡ଼ି ଗଲୁ । ପୁଲିସ ଆସିବାର ଦେଖି ସନ୍ଦେହ କରି ସେଥିଭିତରୁ ଜଣେ ଅଣ୍ଟାରୁ ଗୋଟିଏ ବଡ଼ ଛୁରୀ ବାହାର କରି ଗୋବର୍ଦ୍ଧନ ବାବୁଙ୍କୁ ମାରିବାକୁ ଉଠାଇଲା । ଭୟରେ ମୋର ଆଖି ବୁଜି ହୋଇଗଲା । କିନ୍ତୁ ପରମୁହୂର୍ତ୍ତରେ ଦେଖିଲି, ଦୁଇଜଣଯାକ ତଳେ ପଡ଼ିଛନ୍ତି ଓ ଗୋବର୍ଦ୍ଧନ ବାବୁ ଛିଡ଼ା ହୋଇ ହସୁଛନ୍ତି । ପୁଲିସ ଦୁଇଜଣଙ୍କୁ ଗିରଫ୍ କରି ନେଇଗଲେ ।

ଶବଟି ଦେଖିଲା ପରଠୁଁ ଏପର୍ଯ୍ୟନ୍ତ ଏଡ଼େ ଶୀଘ୍ର ଏତେ ଘଟଣା ଘଟିଗଲା ଯେ, କାହାରି ସହିତ କାହାରି ସମ୍ବନ୍ଧ ମୁଁ ଧରିପାରିଲି ନାହିଁ । ଯେତେ ଚେଷ୍ଟା କଲି - ସବୁକୁ ଯୋଡ଼ି ଗୋଟିଏ କଥା କରିବାକୁ, ପାରିଲି ନାହିଁ । ଗୋବର୍ଦ୍ଧନ ବାବୁଙ୍କୁ ଅନାଇ ଦେଖିଲି ସେ ତାଙ୍କ ପ୍ରବନ୍ଧ ନିବିଷ୍ଟ ଚିତ୍ତରେ ଲେଖୁଚନ୍ତି - ଯେପରି କିଛି ଘଟି ନାହିଁ । ମୁଁ ନିରାଶ ହୋଇ ଶୋଇ ପଡ଼ିଲି । ଉଠିଲା ବେଳକୁ ସନ୍ଧ୍ୟା ହୋଇଗଲା । ଦେଖିଲି, ପ୍ରାଣବଲ୍ଲଭ ବାବୁ ଆସିଛନ୍ତି । ମୋ ସହିତ ସେ ଗୋବର୍ଦ୍ଧନ ବାବୁଙ୍କ ପାଖକୁ ଯାଇ କହିଲେ, ''ଆପଣଙ୍କ ଅନୁମାନ ହିଁ ଠିକ୍ । ସେ ଲୋକ ଦିଓଟି ସବୁ ମାନିଛନ୍ତି - ଅବଶ୍ୟ ଟିକିଏ ପରିଶ୍ରମ କରିବାକୁ ପଡ଼ିଲା । ମୃତ ବ୍ୟକ୍ତିର ନାମ ଯତୀନ ବୋସ; କଲିକତାରେ ଘର; ଖୁବ୍ ବଡ଼ ଜମିଦାରର ଏକମାତ୍ର ପୁତ୍ର । ପ୍ରାୟ ଦେଢ଼ ମାସ ତଳେ ତାଙ୍କ ମା'ଙ୍କର ମୃତ୍ୟୁ ହୋଇଛି । ପିତା ଅନେକ ଦିନ ଆଗରୁ ମରିଛନ୍ତି । ସେ ବିବାହ କରି ନାହାନ୍ତି । ତାଙ୍କର ଗୋଟିଏ ଜେଠା ପୁଅ ଭାଇ ଛଡ଼ା ଆଉ କେହି ନାହାନ୍ତି । ଜେଠାପୁଅ ଭାଇ ମଧ ଜମିଦାରଙ୍କ ଏକମାତ୍ର ପୁତ୍ର । ପନ୍ଦର ଦିନ ତଳେ ଯତୀନ ବାବୁ ମା'ଙ୍କ ଶ୍ରାଦ୍ଧ ସାରି ପୁରୀ ବୁଲିବାକୁ ଆସିଥିଲେ । ତାଙ୍କର ଜେଠାପୁଅ ଭାଇ ସମ୍ପତ୍ତି ଲୋଭରେ ଦୁଇଟି ଗୁଣ୍ଡା ଲଗାଇଲେ ଏହାଙ୍କୁ ହତ୍ୟା କରିବାକୁ । ଏଗୁଣ୍ଡା ଦିଓଟି କାଲି ସନ୍ଧ୍ୟାସାତଟା ବେଳେ ପହଞ୍ଚି ଯତୀନ ବାବୁଙ୍କ ଘର ଖୋଜି ବାହାର କଲେ । ପୁରୀରେ ଯତୀନ ବାବୁ ତାଙ୍କ ପୈତୃକ ଘରେ ରହନ୍ତି - ଏ ଠିକଣା ସେ ଗୁଣ୍ଡା ଦୁଇଟି ତାଙ୍କ ଜେଠାପୁଅ ଭାଇଙ୍କଠୁଁ ଆଣିଥିଲେ । ରାତି ପ୍ରାୟ ବାରଟା ବେଳକୁ ଏମାନେ ଯତୀନ ବାବୁଙ୍କ ଘରକୁ ଗଲେ । ଯତୀନ ବାବୁ ସେଦିନ ପ୍ରାୟ ରାତି ଗୋଟାଏ ବେଳକୁ ଶୋଇବାକୁ ଗଲେ । ଏମାନେ ପ୍ରାୟ ରାତି ତିନିଟା ବେଳକୁ କ୍ଲୋରୋଫରମ୍ ଗୋଟିଏ ରୁମାଲରେ ଢାଳି ତାକୁ ଗୋଟିଏ ବାଉଁଶ ଅଗରେ ଧରି ଝରକା ବାଟେ ତାଙ୍କ ନାକ ପାଖରେ କିଛିକ୍ଷଣ ରଖିଲେ । ତା'ପରେ ସେ ସମ୍ପୂର୍ଣ୍ଣ ଅଜ୍ଞାନ ହେବାର ଜାଣି, ତାଙ୍କ ବେକ ଚିପି ମାରି ସମୁଦ୍ରର ଟିକିଏ ଭିତରେ ଫୋପାଡ଼ି ଦେଇ ଆସିଲେ । କିନ୍ତୁ ଆପଣ ତ ଜାଣନ୍ତି ଯେ, ପୁଲିସ ଆଗରେ ଦୋଷ ମାନି ଯଦି ବିଚାରକ ଆଗରେ ନ ମାନନ୍ତି, ତେବେ ବିଚାରକ ଆଇନତଃ ପୁଲିସ କଥା ବିଶ୍ୱାସ

କରିବାକୁ ବାଧ ନୁହନ୍ତି । ଅଥଚ ଦୋଷୀ ବୋଲି ପ୍ରମାଣ କରିବାର ଏପର୍ଯ୍ୟନ୍ତ ମୁଁ କିଛି ଉପାୟ ପାଇ ନାହିଁ । ଦୟା କରି ଯଦି ଆପଣ ଏମାନଙ୍କୁ କିପରି ସନ୍ଦେହ କଲେ କୁହନ୍ତେ, ତେବେ କୃତଜ୍ଞ ହୁଅନ୍ତି ।''

ଗୋବର୍ଦ୍ଧନ ବାବୁ ପ୍ରାଣବଲ୍ଲଭ ବାବୁଙ୍କ ଉଦ୍ଦେଶ୍ୟ ବୁଝିପାରି ଟିକିଏ ହସି କହିଲେ, ''ଆଜ୍ଞା, ମୁଁ କହୁଛି, ଆପଣ ନୋଟ୍ କରି ନିଅନ୍ତୁ । ଶବଟି ଦେଖିବା ମାତ୍ରକେ ମୁଁ ବୁଝିଲି ଯେ, ଲୋକଟି ବୁଡ଼ିମରି ନାହିଁ । ଆପଣ ବୋଧହୁଏ ଲକ୍ଷ୍ୟ କରି ନାହାନ୍ତି ଅଥବା ଲକ୍ଷ୍ୟ କଲେ ବି ଚିନ୍ତା କରି ନାହାନ୍ତି ଯେ, ଶବର ଶରୀରରେ ପହଁରା ପୋଷାକର ଚିହ୍ନ ସ୍ପଷ୍ଟ ରହିଛି । ଭଦ୍ରଲୋକ ଖୁବ୍ ଗୋରା, କିନ୍ତୁ ସମୁଦ୍ରରେ ଅନେକ ଦିନ ଗାଧୋଇବା ଯୋଗୁ ତାଙ୍କର ଶରୀର କାଳିଆ ପଡ଼ି ଯାଇଥିଲା - କେବଳ ପହଁରା ପୋଷାକର ଅଂଶତକ ବାଦ ଦେଇ । ଶରୀରର ଅସ୍ୱାଭାବିକ କାଳିଆ ରଙ୍ଗରୁ ବୁଝିଲି ଯେ, ଭଦ୍ରଲୋକ ପ୍ରାୟ ପନ୍ଦର ଦିନ ହେବ ସମୁଦ୍ରରେ ଗାଧୋଉଛନ୍ତି ଏବଂ ନିତି ଅନେକ କ୍ଷଣ ଧରି ଗାଧାନ୍ତି । ଗାଧୋଇଲା ବେଳେ ସେ ପ୍ରତ୍ୟହ ଦାମୀ ପଶମର ପହଁରା ପୋଷାକ ବ୍ୟବହାର କରନ୍ତି । କାରଣ ତା' ନହେଲେ ଏତେ ସ୍ପଷ୍ଟ ଚିହ୍ନ ଶରୀରରେ ରୁହନ୍ତା ନାହିଁ । ସେ ପିନ୍ଧିଥିଲେ ଖଣ୍ଡେ ଦାମୀ ଶାନ୍ତିପୁରୀ ଧୁତି । ଏଥିରୁ ସେ ଧନୀ ବୋଲି ପରିଚୟ ଅବଶ୍ୟ ମିଳେ । କିନ୍ତୁ ଯେତେ ଧନୀ ହୁଅନ୍ତୁ ନା କାହିଁକି, କେହି ସମୁଦ୍ରରେ ଗାଧୋଇବା ବେଳେ ଦାମୀ ଧୁତି ବ୍ୟବହାର କରିବେ ନାହିଁ । ସେ ରୋଜ ପହଁରା ପୋଷାକ ପିନ୍ଧି ଗାଧାନ୍ତି, ସେ ଆଜି ଲୁଗା କାହିଁକି ବ୍ୟବହାର କରିବେ ? ସେ ଏକାକୀ ସମୁଦ୍ରରେ ଗାଧାନ୍ତି - କୌଣସି ନୋଳିଆର ସାହାଯ୍ୟ ନିଅନ୍ତି ନାହିଁ । ଶବ ପାଖରେ ଯେତେ ନୋଳିଆ ଛିଡ଼ା ହୋଇଥିଲେ, କେହି ତାଙ୍କୁ ଚିହ୍ନି ପାରିଲେ ନାହିଁ । ଏଥିରୁ ବୁଝାଯିବ, ସେ ଭଲ ପହଁରା ଜାଣନ୍ତି - ଅତଏବ ବୁଡ଼ି ମରିବା ସମ୍ଭବ ନୁହେଁ । ଭଦ୍ରଲୋକ ହୋଟେଲ, ମେସ ବା ଆଉ କାହା ଘରେ ରହନ୍ତି ନାହିଁ । ତା' ହୋଇଥିଲେ ଜମା ହୋଇଥିବା ଏତେ ଲୋକଙ୍କ ଭିତରୁ ତାଙ୍କୁ କେହି ଜଣେ ଚିହ୍ନି ପାରନ୍ତେ । ମୁହଁର ଗଠନରୁ ବୁଝିଲି, ସେ ବଙ୍ଗାଳୀ । ହାତରେ ଦେଖିଲି ଲେଖା ହୋଇଛି ଜେ.ବି. । ଭଦ୍ରଲୋକ ହିନ୍ଦୁ, କାରଣ ମୁଣ୍ଡରେ ଚୁରକି ଅଛି । କୌଣସି ନିକଟ ଆତ୍ମୀୟର ମୃତ୍ୟୁରେ ବୋଧହୁଏ ନଣ୍ଡା ହୋଇଛନ୍ତି । ଅତଏବ ଅନ୍ଦାଜ କଲି ବୋସ, ବଳ, ଭୌମିକ ବା ବରାଟ ଏହିପରି କିଛି ହେବେ । ବ୍ରାହ୍ମଣ ବା ବୈଦ୍ୟ ନୁହଁନ୍ତି, କାରଣ ଚୁରକି ଥିଲେ ମଧ ପଇତା ନଥିଲା । ଅତଏବ ଭାବିଲି ବୋସ ହେବେ । ଶବଟି ପ୍ରଥମେ ଜଣେ ୭ଟା ବେଳେ ଦେଖିଥିଲେ । ଫୁଲାରୁ ମନେହେଲା, ଶବଟି ପ୍ରାୟ ୩ଘଣ୍ଟା ପାଣିରେ ଥିଲା । ସେଥିଭିତରୁ ପାଣିତଳୁ ଉପରକୁ ଭାସିବା ପାଇଁ ପ୍ରାୟ ଘଣ୍ଟାଏ ବାଦ ଦେଲେ ଜଣାଯାଏ, ଶବଟି ପାଣି ଉପରେ ପ୍ରାୟ ଦୁଇ ଘଣ୍ଟା ଭାସି ଭାସି ଆସିଛି । ସମୁଦ୍ରରେ କୂଳର ସ୍ରୋତ ସ୍ୱର୍ଗଦ୍ୱାର ଆଡୁ ଚକ୍ରତୀର୍ଥ ଆଡ଼କୁ ବହେ । ଏହାର ଗତି ପ୍ରାୟ ଘଣ୍ଟାକେ ମାଇଲେ । ତେଣୁ ଅନ୍ଦାଜ କଲି ଶବଟି ଦୁଇ ମାଇଲି ଆଗରୁ ଭାସି ଆସିଛି । ତେଣୁ

ସ୍ୱର୍ଗଦ୍ୱାର ଆଡ଼କୁ ଦୁଇ ମାଇଲ ଯାଇ ଅନ୍ଦାଜରେ କେତେଗୁଡ଼ିଏ ଘର ସାମନାରେ ''ବୋସ ବାବୁ'' ବୋଲି ପାଟିକରି ଡାକିଲି । ଭାଗ୍ୟକୁ ଉତ୍ତର ପାଇଲି । ସେଠି ବିଫଳ ହୋଇଥିଲେ ପାଖାପାଖି ଅନ୍ୟ ଜାଗାରେ ମୁଁ ପରୀକ୍ଷା କରିଥାନ୍ତି । ମୋ ଅନୁମାନ ଠିକ୍ କି ନା ପରୀକ୍ଷା କରିବାକୁ ଚାକରକୁ ପହଁରା ପୋଷାକ ଆଣିବାକୁ କହିଲି ଏବଂ ଦେଖିଲି, ମୋ ଅନୁମାନ ଠିକ୍ । ହତ୍ୟା ଯେ ପ୍ରାୟ ରାତି ତିନିଟା ବେଳେ ହୋଇଥିଲା ତା' ମଧ୍ୟ ହିସାବ କଲେ ଜଣାଯିବ । ଦିନ ୭ଟା ବେଳେ ଶବଟି ପ୍ରଥମେ ଦେଖାଯାଏ । ପାଣିରେ ଥିବା ତିନି ଘଣ୍ଟା ବାଦ ଦେଲେ ଜଣାଯାଏ, ଶବଟି ପ୍ରାୟ ରାତି ଚାରିଟା ବେଳେ ସମୁଦ୍ରକୁ ଫୋପଡ଼ା ହୋଇଥିଲା । ଅତଏବ ହତ୍ୟା ପ୍ରାୟ ରାତି ତିନିଟା ବେଳେ ହୋଇଥିବା ଖୁବ୍ ସମ୍ଭବ । କିନ୍ତୁ ରାତି ୩ଟା ହତ୍ୟା କରିବାର ଉପଯୁକ୍ତ ସମୟ ନୁହେଁ । ରାତିରେ ହତ୍ୟା ସାଧାରଣତଃ ରାତି ବାରଟାରୁ ଦୁଇଟା ଭିତରେ ହୁଏ । ହତ୍ୟାକାରୀମାନେ ପ୍ରାୟ ରାତି ବାରଟା ବେଳେ ଆସିଥିବେ, ମୁଁ ଅନୁମାନ କଲି । କୌଣସି କାରଣରୁ ଯତୀନ ବାବୁଙ୍କ ଶୋଇବା ଡେରି ହେବାରୁ ସେମାନେ ରାତି ତିନିଟା ବେଳକୁ ହତ୍ୟା କରିଛନ୍ତି । ଏ ଅନୁମାନ ଯଦି ଠିକ୍ ହୁଏ, ତା'ହେଲେ ସେମାନେ ରାତି ବାରଟାରୁ ରାତି ତିନିଟା ପର୍ଯ୍ୟନ୍ତ ନିଶ୍ଚୟ କେଉଁଠି ନିକଟରେ-ଖୁବ୍ ସମ୍ଭବ ଘରର ହତା ଭିତରେ ଅପେକ୍ଷା କରିଥିବେ । ଲୁଚି ରହିବାର ସବୁ ସୁବିଧା ଜାଗାଗୁଡ଼ିକ ମୁଁ ଖୋଜିଲି । ଗୋଟିଏ ବୁଦା ପଛରୁ ଏହି ବିଡ଼ିଗୁଡ଼ିକ ପାଇଲି । ଏ ବିଡ଼ିଗୁଡ଼ିକ ଦେଖନ୍ତୁ ଦୁଇଟି ବିଭିନ୍ନ ପ୍ରକାର ବିଡ଼ି ସେଠି ପଡ଼ିଥିଲା । ସେହି ଜାଗାରେ ଅନେକକ୍ଷଣ ଅପେକ୍ଷା କରିଥିବାରୁ ସେ ସ୍ଥାନରେ ତାଙ୍କର ଗୋଡ଼ର ଚିହ୍ନ ସ୍ପଷ୍ଟ ଭାବରେ ରହିଛି ଦେଖିଲି । ତାଙ୍କର ଗୋଡ଼ର ମାପରୁ ବୁଝିଲି ଯେ, ଲୋକ ଦିଓଟିର ଉଚ୍ଚତା ୬ଫୁଟରୁ କମ୍ ନୁହେଁ ଓ ସେମାନେ ଖୁବ୍ ବଳିଷ୍ଠ । ସେହି ଗୋଡ଼ର ଚିହ୍ନ ଅନୁସରଣ କରି ମୁଁ ଘରର ଝରକା ପର୍ଯ୍ୟନ୍ତ ଆସିଲି । ଝରକା ପାଖରେ ଗୋଟିଏ ବାଉଁଶ ପଡ଼ିଥିବାର ଦେଖି ମୁଁ ବୁଝିପାରିଲି ହତ୍ୟାକାରୀମାନେ ଏହାକୁ ବ୍ୟବହାର କରିଥିଲେ । କେଉଁଥି ପାଇଁ ବ୍ୟବହାର କରିଥିଲେ, ତାହା ମଧ୍ୟ ବୁଝିବାକୁ କଷ୍ଟ ହେଲା ନାହିଁ । ଭାବିଲି ଯେଉଁ କନା ବା ରୁମାଲରେ ସେମାନେ କ୍ଳୋରୋଫରମ୍ ଢାଳିଥିଲେ, ତାହା ମିଳିଲେ ଅନେକ ସୁବିଧା ହେବ । ଭାଗ୍ୟକୁ ଏହି ରୁମାଲଟି ମିଳିଲା । ମୋର ମନେ ହୁଏ, ତରତରରେ ସେମାନେ ଏହାକୁ ପକାଇ ଦେଇ ଯାଇଛନ୍ତି, ଅଥବା ଏ କର୍ମରେ ଏ ଦୁଇଜଣ ଏ ପର୍ଯ୍ୟନ୍ତ ସିଦ୍ଧହସ୍ତ ହୋଇନାହାନ୍ତି । ଲୋକ ଦୁଇଟିର ଉଚ୍ଚତା ଓ ଶକ୍ତି କଥା ଆଗରୁ ଜାଣିପାରିଛି । ବର୍ତ୍ତମାନ ଏହି ରୁମାଲରୁ ଲୋକ ଦିଓଟିର ଚରିତ୍ର ବୁଝି ପାରିଲି । ଏ ଦୁଇଟି ଯୋଗ କରି ମୁଁ ଲୋକ ଦିଓଟିଙ୍କୁ ଆଖି ସାମନାରେ ଦେଖି ପାରିଲି । ତା'ପରେ ଯାହା ହେଲା ଆପଣ ଜାଣନ୍ତି ।''

ପ୍ରାଣବଲ୍ଲଭ ବାବୁ ଅତିଶୟ ଅଭିଭୂତ ହୋଇ କହିଲେ, ''ଆପଣଙ୍କ ଯଦି ଆପତ୍ତି ନଥାଏ, ତା'ହେଲେ ମୁଁ...''

''ନା, ନା, ମୋର କିଛି ଆପତ୍ତି ନାହିଁ, କିନ୍ତୁ ଏ ସବୁ ତ ମୋର ଅନ୍ଦାଜ।''

''ହଁ, କିନ୍ତୁ ବୈଜ୍ଞାନିକର ଅନ୍ଦାଜ।''

ପ୍ରାଣବଲ୍ଲଭ ବାବୁ ନମସ୍କାର କରି ଆନନ୍ଦରେ ଚାଲିଗଲେ। ମୋର ଭାରୀ ରାଗ ହେଲା। କହିଲି, ''ଆପଣ କାହିଁକି ପୁଲିସକୁ ସବୁ କହି ଦେଲେ ?''

''ସେହିମାନେ ତ ଆମର ଶାନ୍ତିରକ୍ଷକ। ଆମର ଯେତେଦୂର ସମ୍ଭବ ସେମାନଙ୍କୁ ସାହାଯ୍ୟ କରିବା ଉଚିତ। ତା'ଛଡ଼ା ମୋର କେତେ ଜଣ ଘନିଷ୍ଠ ବନ୍ଧୁ ଯଦି ଜାଣନ୍ତି ଯେ ମୁଁ ବୋକା ନୁହଁ, ତା'ହେଲେ ଯଥେଷ୍ଟ। ବହୁ ଲୋକର ପ୍ରଶଂସା ମୋତେ ଭଲ ଲାଗେ ନାହିଁ।

ଦୁଇଟି ବିଷୟରେ ମୋର ସନ୍ଦେହ ଥିଲା। ପଚାରିଲି, ''ଯତୀନ ବାବୁ ଯେଉଁ ଘରେ ଶୁଅନ୍ତି, ସେ ଘରର ବାହାର ଦୁଆର ତ ଆମେ ଦେଖିଲେ ଭିତରୁ ବନ୍ଦ ଥିଲା। ଗୁଣ୍ଡାମାନେ ତେବେ ଘର ଭିତରକୁ ଗଲେ କିପରି ? ପୁଣି ଆପଣ କିପରି ଜାଣିଲେ ଯେ, ଗୁଣ୍ଡାମାନଙ୍କୁ ଷ୍ଟେଶନରେ ପାଇବେ ?'' ଗୋବର୍ଦ୍ଧନ ବାବୁ ମୋ ପିଠିରେ ହାତ ମାରି କହିଲେ, ''ଚମତ୍କାର ଡାକ୍ତର ! ତୁମେ ଖୁବ୍ ଭଲ ଡାକ୍ତର ହେବ। ଠିକ୍ ଗଣ୍ଠି ଜାଗାରେ ସନ୍ଦେହ କରିବା ବୈଜ୍ଞାନିକ ମନୋବୃତ୍ତିର ପ୍ରଧାନ ଲକ୍ଷଣ, ପ୍ରାଣବଲ୍ଲଭ ବାବୁ ଏ ସନ୍ଦେହ କରି ନାହାନ୍ତି। ତେବେ ଲକ୍ଷ୍ୟ କରିବାର ଶକ୍ତି ତୁମକୁ ଯଥେଷ୍ଟ ବଢ଼ାଇବାକୁ ହେବ। ଠିକ୍ ରୂପେ ଲକ୍ଷ୍ୟ କରି ନ ପାରିଲେ ସନ୍ଦେହ ମଧ ଠିକ୍ ଜାଗାରେ ପଡ଼ିବ ନାହିଁ। ସନ୍ଦେହ ଠିକ୍ ଜାଗାରେ ନ ପଡ଼ିଲେ ସିଦ୍ଧାନ୍ତ ଓଲଟି ଯିବ। ତୁମେ ଲକ୍ଷ୍ୟ କରିବାକୁ ଭୁଲି ଯାଇଛ ଯେ ଦୁଆର ବନ୍ଧ ସହିତ କବାଟର ସଂଯୋଗ ହଂସକଳଦ୍ୱାରା। ଏହାକୁ ଟେକି କବାଟ ଖୋଲିବା କିଛି କଷ୍ଟ ନୁହଁ। ଏହିପରି ଭାବରେ ସେମାନେ ଘର ଭିତରକୁ ଯାଇ ଶବଟି ବାହାର କରି ପୁଣି ସେହିପରି ଲଗାଇ ଦେଇଛନ୍ତି। ହତ୍ୟା କରିବା ପରେ ହତ୍ୟାକାରୀମାନେ ଯେତେ ଶୀଘ୍ର ସମ୍ଭବ ପୁରୀ ଛାଡ଼ି ପଳାଇବାକୁ ଇଚ୍ଛା କରିବେ, ଏହା ନିଶ୍ଚୟ। ହତ୍ୟା ପରଠୁଁ ପ୍ରଥମ ଗାଡ଼ି ସାଢ଼େ ଆଠଟାବେଳେ। ତେଣୁ ଷ୍ଟେଶନରେ ଯେ ପାଇବି ଏଥିରେ ମୋର ସନ୍ଦେହ ରହିଲା ନାହିଁ।''

ଏ ଘଟଣାର ବିସ୍ତୃତ ବିବରଣୀ ପ୍ରାଣବଲ୍ଲଭ ବାବୁଙ୍କ ବହୁ ପ୍ରଶଂସା ସହ ଖବର କାଗଜରେ ବାହାରିଲା। ଏହାର ଅନେକ ଦିନ ପରେ ଦିନେ ଖବର କାଗଜ ପଢୁ ପଢୁ ଦେଖିଲି, ପ୍ରାଣବଲ୍ଲଭ ବାବୁ ଏହି ଘଟଣାଟି ପାଇଁ ସରକାରଙ୍କ ପାଖରୁ ପୁରସ୍କାର ପାଇଛନ୍ତି। ଗୋବର୍ଦ୍ଧନ ବାବୁଙ୍କୁ ଅନାଇ ଦେଖିଲି ସେ ଧ୍ୟାନମଗ୍ନ-କୌଣସି ସମସ୍ୟା ବିଷୟରେ ସେ ନିବିଷ୍ଟ ମନରେ ଭାବୁଛନ୍ତି।

* * *

# ମନର ହତ୍ୟା

ପୁରୀକୁ  ଦଶ ଦିନ ପାଇଁ ଆସି ଆଜିକି ପ୍ରାୟ ପନ୍ଦର ଦିନ ହୋଇଗଲା । ଖବର ପାଇଲି ଯେ କ'ଣ ଗୋଳାମାଳ ପାଇଁ ପରୀକ୍ଷା ଫଳ ବାହାରିବାକୁ ଟିକିଏ ଡେରି ହେବ । ପରୀକ୍ଷାରେ ଭଲକରି ନ ଥିବାରୁ ମନ ଖରାପ ଥାଏ । ଏ ଖବର ପାଇ ଉଦ୍‌ବେଗ ବଢ଼ିଲା । ମନ ସବୁବେଳେ କଟକରେ ରହିଲା । ଗୋବର୍ଦ୍ଧନ ବାବୁଙ୍କ ଦୁଇଟି କେସ୍ ସହିତ ଘନିଷ୍ଠ ଭାବରେ ଜଡ଼ିତ ହୋଇ ଲୋକଙ୍କ ପ୍ରତି ଭୀଷଣ ଘୃଣା ଓ ସେଥିପାଇଁ ମନରେ ଗୋଟିଏ ବୈରାଗ୍ୟ ମଧ୍ୟ ଆସୁଥାଏ । ମୁଁ ଡାକ୍ତରୀ ଛାତ୍ର । ମନୁଷ୍ୟ ଶରୀରର ଶିରା ପ୍ରଶିରାର କାର୍ଯ୍ୟ ଲକ୍ଷ୍ୟ କରିବାର ସୁବିଧା ପାଇଛି । ଏ ଅଦ୍ଭୁତ ଜୀବନ୍ତ କଳଟିର କାର୍ଯ୍ୟ ଦେଖି ବିସ୍ମିତ ହୋଇଛି ଓ ଏହାର ସ୍ରଷ୍ଟା ପ୍ରତି ଭକ୍ତିରେ ମୁଁ ମୁଣ୍ଡ ନୁଆଁଇଚି । ଭାବିଛି, ସତେ ମନୁଷ୍ୟ ଭଗବାନଙ୍କ ସୃଷ୍ଟି । କିନ୍ତୁ ହଠାତ୍ ମନୁଷ୍ୟ ମନର ପରିଚୟ ପାଇ ଭାବିଲି, କିଏ ଜାଣେ, ଯେଉଁ ଶରୀର ଦେଖି ତା'ର ସ୍ରଷ୍ଟା ପ୍ରତି ଭକ୍ତିରେ ମୁଁ ମୁଣ୍ଡ ନୁଆଁଇଛି, ସେ ଜୀବିତ ଥିବାବେଳେ ଗୋଟିଏ ଘୃଣ୍ୟ ମନ ନେଇ ସମାଜରେ ବୁଲୁ ନଥିଲା । ମୋର ମନ ଏକ ଦିଗରେ ଆଶା ଓ ଅନ୍ୟ ଦିଗରେ ବୈରାଗ୍ୟ ଭିତରେ ଏପାଖ ସେପାଖ ହେଉଥାଏ । ବୈରାଗ୍ୟ ବେଳେ ଭାବେ, କ'ଣ ହେବ ବଡ଼ ଡାକ୍ତର ହୋଇ ବା ବହୁତ ରୋଜଗାର କରି । ବଞ୍ଚିବି ତ ୬୦/୭୦ ବର୍ଷ । ତା' ଭିତରୁ ୩୦ ବର୍ଷ ଯିବ ଜୀବନର ମୂଳଦୁଆ ପକାଇବାକୁ ବାକି ୩୦ ବର୍ଷ ଯିବ ନାନା ଘୃଣ୍ୟ କୋଳାହଳରେ । ଏହାଠୁଁ ସନ୍ନ୍ୟାସୀ ହୋଇଯିବା ଭଲ । ପୁଣି ଯେତେବେଳେ ପରୀକ୍ଷା କଥା ଭାବେ, ସେତେବେଳେ ନାନା ଆଶା ଉଚ୍ଚାଭିଳାଷ ଓ ପ୍ରତିପତ୍ତି ପାଇବାର ଇଚ୍ଛା ଓ ସୁଖସ୍ୱପ୍ନ ମନ ଭିତରେ ଖେଳିଯାଏ । ମନୁଷ୍ୟ ଭିତରେ ଗୋଟାଏ କି ପ୍ରେରଣା ଅଛି, ଯାହା କି ଅନ୍ୟମାନଙ୍କର ଚିନ୍ତାକୁ ଠେଲି ନିଜର ସୁଖଶାନ୍ତିକୁ ବଡ଼ କରି ଦେଖାଏ ଓ ମନୁଷ୍ୟକୁ ନାନା କର୍ମରେ ଲିପ୍ତ କରାଏ । ମନ ବୁଝିବାର କ୍ଷମତା ଗୋବର୍ଦ୍ଧନ ବାବୁଙ୍କର ଅସୀମ । ମୋର ମନର ଗତି ବୁଝିପାରି ସେ କହିଲେ, ''ଡାକ୍ତର, ଛାତ୍ରର କଳ୍ପନା ଜଗତରୁ ଦୁନିଆର ଏଇ ଦିଗ ସହିତ ହଠାତ୍ ପରିଚୟ କରାଇ ଦେବା  ବୋଧହୁଏ ମୋର ଭୁଲ ହୋଇଛି । ଅନ୍ୟ ଦିଗ ବି ଅଛି । ହତାଶ ହୁଅ ନାହିଁ । ବୁଦ୍ଧଙ୍କର ତପସ୍ୟା ସହିତ ହତ୍ୟାକାରୀର ହତ୍ୟାକୁ ଯୋଡ଼ି କରି ଦେଖ, ଦୁଇଟିକୁ ଅଲଗା ଅଲଗା ଦେଖ ନାହିଁ । ଏ ଦୁଇଟି ପାଇଁ ପ୍ରକୃତିର ନିୟମ ଗୋଟିଏ । ଏ ନିୟମ ଯେ ଜାଣି ପାରିଛି, ସେ ଦାର୍ଶନିକ - ସେ କେବେହେଁ ହତାଶ ହୁଏ ନାହିଁ ।''

ଆଜିକି ପ୍ରାୟ ଦୁଇ ଦିନ ହେଲା ମୁଁ ଦେଖୁଛି, ଗୋବର୍ଦ୍ଧନ ବାବୁ ସବୁବେଳେ ଆରାମ ଚେୟାର ଉପରେ ପଡ଼ିଛନ୍ତି । ତାଙ୍କର ମନର ଗତି ବୁଝିବା କଷ୍ଟକର । ତେବେ ଏତିକି ବୁଝିପାରିଛି, ସେ ଶରୀର ଓ ମନକୁ ସମ୍ପୂର୍ଣ୍ଣ ବିଶ୍ରାମ ଦେଉଛନ୍ତି । ଏତେ ଶୀଘ୍ର ସେ ମନକୁ କୌଣସି କାମରେ ଲଗାଇ ପାରନ୍ତି ଓ ଏତେ ଶୀଘ୍ର ପୁଣି ମନକୁ ସବୁକାମରୁ ଅଲଗା କରି ପାରନ୍ତି ଯେ, ଦେଖିଲେ ଆଶ୍ଚର୍ଯ୍ୟ ଲାଗେ । ଇଲେକ୍‌ଟ୍ରିକ୍ ସୁଇଚ୍ ଭଳିଆ ତାଙ୍କ ମନ । କାମରେ ମନ ଲଗାଇଲା ବେଳେ ସେ ଶରୀର ଓ ମନକୁ ଗୋଟେଇ ଆଣି ଯେପରି ଗୋଟିଏ ବିନ୍ଦୁରେ ପରିଣତ କରିଦିଅନ୍ତି । ଖଟ ଉପରେ ମାଂସ ପିଣ୍ଡୁଳାଟି ପରି ଯାକି ଜୁକି ହୋଇ ବସି ସେ ଦିନ ପରେ ଦିନ କାମ କରିଯାଆନ୍ତି - ଏ ତାଙ୍କର ଦୁର୍ଭେଦ୍ୟ ଅବସ୍ଥା । ବିଶ୍ରାମ ବେଳେ ଶରୀର ଓ ମନ ପୁଣି ବଢ଼ିଯାଏ । ଗୋଡ଼ ହାତ ଲମ୍ବେଇ ଆଖି ଦିଓଟି ବୁଜି କରି ସେ ଘଣ୍ଟା ଘଣ୍ଟା ଧରି ଆରାମ ଚେୟାରରେ ପଡ଼ିଥାଆନ୍ତି ।

ଆଜି ଖରାବେଳେ ଏହିପରି ଅବସ୍ଥାରେ ଗୋବର୍ଦ୍ଧନ ବାବୁଙ୍କୁ ପାଇ ମୋତେ ଟିକିଏ ସୁସ୍ଥ ଲାଗିଲା, ତାଙ୍କ ସହିତ ନାନା କଥାରେ ମଧ ମନଟା ହାଲୁକା ହୋଇଥାଏ । ମୁଁ ଖବର କାଗଜ ପଢ଼ି ତାଙ୍କୁ ଶୁଣାଉଥାଏ । ଏହିପରି ସମୟରେ ଜଣେ ପ୍ରୌଢ଼ ଭଦ୍ର ଲୋକ ଏଣେ ତେଣେ ଚାହୁଁ ଚାହୁଁ ଆମର ଫାଟକ ବାଟେ ପ୍ରବେଶ କଲେ । ମୁଁ ବାହାରକୁ ଆସିବାରୁ ସେ ପଚାରିଲେ, ‘‘ସୁବୋଧ ବାବୁ ଏଠି ଥାଆନ୍ତି ? ସୁବୋଧ ଚନ୍ଦ୍ର ମହାନ୍ତି । ଡାକ୍ତରୀ ପଢ଼ନ୍ତି ।’’

‘‘ଆଜ୍ଞା, ମୁଁ ସୁବୋଧ ।’

ଭଦ୍ରଲୋକ ଗୋଟିଏ ସ୍ୱସ୍ତିର ନିଃଶ୍ୱାସ ପକାଇ ନମସ୍କାର କଲେ । ମୁଁ ପ୍ରତିନମସ୍କାର କରି ଭଦ୍ରଲୋକଙ୍କୁ ଭିତରକୁ ଆସିବାକୁ ଅନୁରୋଧ କଲି । କୁଲିକୁ ପଇସା ଦେଇ ସେ ଗୋଟିଏ ବଡ଼ ଚମଡ଼ା ସୁଟ୍‌କେସ୍ ଓ ଗୋଟିଏ ବିଛଣା ନେଇ ଭିତରକୁ ଆସିଲେ । ବେଶ ସୁପୁରୁଷ । ପିନ୍ଧିଛନ୍ତି ଖଣ୍ଡେ ଦାମୀ ଧୋତି, ସିଲ୍‌କର ପଞ୍ଜାବୀ ଓ ଦାମୀ ଜୋତା; କାନ୍ଧରେ ପଡ଼ିଛି ସିଲ୍‌କର ଚାଦର । ମୁଁ ଟିକିଏ ଆଶ୍ଚର୍ଯ୍ୟ ହୋଇ ଗୋବର୍ଦ୍ଧନ ବାବୁଙ୍କ ଆଡ଼କୁ ଚାହିଁଲି । ସେ ବୁଝିପାରି କହିଲେ,‘‘ନା, ବିଶେଷ କିଛି ଜାଣି ପାରୁନାହିଁ । ଭଦ୍ରଲୋକ ଜାତିରେ କରଣ, ଘର ମେଦିନୀପୁର, ଜମିଦାର, କଟକରେ ପ୍ରାୟ ଦୁଇ ଦିନ ରହି ପୁରୀ ଆସିଛନ୍ତି । କଟକରେ ତାଙ୍କ ବାଁ ଗୋଡ଼ରେ ସାମାନ୍ୟ ଆଘାତ ଲାଗିଛି । ଭଦ୍ରଲୋକଙ୍କର କୌଣସି ନିକଟ ଆତ୍ମୀୟ ବିପଦରେ ପଡ଼ିଛନ୍ତି । ସେଥିପାଇଁ ସେ ଆପଣଙ୍କର ସାହାଯ୍ୟ ଲୋଡ଼ିବାକୁ ଆସିଛନ୍ତି । ଆପଣ ବୋଧହୁଏ ସେ ଆତ୍ମୀୟଙ୍କର ଘନିଷ୍ଠ ବନ୍ଧୁ ।’’

ଭଦ୍ରଲୋକ ଚମକି ପଡ଼ି ଗୋବର୍ଦ୍ଧନ ବାବୁଙ୍କ ଆଡ଼କୁ ଅନାଇ କହିଲେ, ‘‘ମୋ ନାଁ ବିଜୟକେତନ ମହାନ୍ତି । ଆପଣ କ’ଣ ମୋତେ ଚିହ୍ନନ୍ତି ? ଆପଣଙ୍କୁ ତ ମୁଁ ଚିହ୍ନିପାରୁ ନାହିଁ ।’’

‘‘ମୁଁ ସୁବୋଧର ବନ୍ଧୁ- ଗୋବର୍ଦ୍ଧନ ମିଶ୍ର । ଏହା ଆଗରୁ ଆପଣଙ୍କୁ ଜାଣିବାର ମୋର ସୌଭାଗ୍ୟ ହୋଇ ନାହିଁ ।’’

''ଆପଣ ତେବେ ମୋ ବିଷୟରେ ଏତେ କଥା ଜାଣିଲେ କିପରି ?

''ସେ କିଛି ନୁହେଁ, ଆପଣ ଲୁଗାପଟା ଛାଡ଼ି ଗାଧୁଆ ପାଧୁଆ କରି ସୁସ୍ଥ ହୁଅନ୍ତୁ ।''

''ନା, ମୁଁ ଆଗେ ମୋ କଥା କୁହେ । ସୁବୋଧ ବାବୁ, ମୁଁ ଟିକିଏ ବିପଦରେ ପଡ଼ି ଆପଣଙ୍କ ପାଖକୁ ଆସିଛି, ଠିକ୍ ମୋର ନିଜର କିଛି ବିପଦ ନୁହେଁ । ମୋର ଭଣଜା ଆପଣଙ୍କ ଘନିଷ୍ଠ ବନ୍ଧୁ ଶୁଣି ତାହାରି ବିଷୟ ଆପଣଙ୍କୁ କହିବାକୁ ଆସିଛି । ଆଶା କରେ, ଆପଣ ତା'ର ବିପଦରେ ନିଶ୍ଚୟ ସାହାଯ୍ୟ କରିବେ । ଆପଣ କଥା ଦେଲେ ମୁଁ ଏଠି ବିଶ୍ରାମ କରିବି, ନଚେତ୍ ଫେରିଯିବି ।''

ପ୍ରତାପ-ପ୍ରତାପଚନ୍ଦ୍ର ଦାସ- ମୋର ପିଲା ବେଳର ବନ୍ଧୁ । ପ୍ରଥମ ଶ୍ରେଣୀଠୁଁ ଆରମ୍ଭ କରି ଆଇ.ଏସ୍-ସି. ପର୍ଯ୍ୟନ୍ତ ଏକତ୍ର ପଢ଼ିଛୁ । ଆଇ.ଏସ୍-ସି. ପାସ୍ କରି ମୁଁ ଡାକ୍ତରି ପଢ଼ିଲି, ସେ ଏମ୍.ଏ.ପାସ୍ କରି ବର୍ତ୍ତମାନ ନିଜ ଗାଁରେ ଅଛି । ମଝିରେ ମଝିରେ ତାଠୁଁ ଚିଠି ପାଉଥିଲି । ବର୍ଷେ ହେବ ତା'ର କୌଣସି ଖବର ମୁଁ ପାଇନାହିଁ । ଖୁବ୍ ବଡ଼ ଜମିଦାର ଘର ପୁଅ ସେ । ଏଡ଼େ ସତ୍ୟବାଦୀ, ଧାର୍ମିକ, ନିଷ୍ପାପର ଓ ନିର୍ଭୀକ ପିଲା ମୁଁ କମ୍ ଦେଖିଛି । ତା'ର ଅତ୍ୟଧିକ ନିଷ୍ଠା ପ୍ରତି ଆମେ ଅନେକ ବାର ବିଦ୍ରୂପ କରି କହିଚୁ, ''ପ୍ରତାପ, ତୋ ପ୍ରାଣରେ ଟିକିଏ ବି ରସ ନାହିଁ ।'' ତା'ର ବିପଦ କଥା ଶୁଣି ମୋର ଟିକିଏ ଭୟ ହେଲା, କହିଲି, ''ଆପଣ ଆଶ୍ୱସ୍ତ ହୁଅନ୍ତୁ । ତାହା ଲାଗି ଯାହା କରିବାକୁ କହିବେ କରିବି ।'' ବିଜୟ ବାବୁ ଆଶ୍ୱସ୍ତ ହୋଇ ଗାଧୁଆ ପାଧୁଆ କରିବାକୁ ଗଲେ । ମୁଁ ଜଳଖିଆ ମଗାଇ ରଖିଲି । ଗୋବର୍ଦ୍ଧନ ବାବୁଙ୍କୁ ଏକା ପାଇ ମୁଁ କହିଲି, ''ସତ କହୁଛି, ପ୍ରଥମ ଦୃଷ୍ଟିରେ ବିଜୟ ବାବୁଙ୍କ ବିଷୟରେ ଏତେ କଥା ଜାଣିବାର କିଛି ନାହିଁ । ଆପଣ ନିଶ୍ଚୟ ଅନ୍ଧାର ଘରେ ଢେଲା ମାରୁଛନ୍ତି । ଲାଗିଲା ତ ଭଲ, ନ ଲାଗିଲା ତ ନାହିଁ ।''

''ନା, ଡାକ୍ତର ସାହେବ, ଜଣେ ଅପରିଚିତ ବ୍ୟକ୍ତି ଆପଣଙ୍କୁ କାହିଁକି ଖୋଜୁଛନ୍ତି, ଏଇଥିରେ ଆପଣ ଏତେ ବିଚଳିତ ହୋଇପଡ଼ିଲେ ଯେ ତାଙ୍କ ବିଷୟରେ କିଛି ଜାଣିବାର ଉପାୟ ଆପଣଙ୍କ ଆଖି ସାମନାରେ ଥିଲେ ମଧ୍ୟ ଆପଣ ଧରି ପାରିଲେ ନାହିଁ । ମୁଁ ମଧ୍ୟ ବିସ୍ମିତ ହୋଇଥିଲି, କିନ୍ତୁ ଆପଣଙ୍କ ପରି ବିଚଳିତ ନ ହୋଇ ନିଜ ଚେଷ୍ଟାରେ କିଛି ଜାଣିବାର ଉପାୟ ଖୋଜିଲି । ଯେପରି ଯେକୌଣସି ଲୋକକୁ ଦେଖି ସେ ବଙ୍ଗାଳୀ, ଓଡ଼ିଆ, ମାଡ୍ରାସୀ ବା ପଞ୍ଜାବୀ କହି ହେବ, ସେହିପରି ଯେକୌଣସି ଲୋକର ଜାତି, ବ୍ୟବସାୟ ଆଦି ମଧ୍ୟ କହି ହେବ । ନିଜର ବୈଶିଷ୍ଟ୍ୟ ଯେପରି ଚେହେରାରେ ପ୍ରକାଶ ପାଏ, ସେହିପରି ଜାତିର, ଦେଶର ଓ ବ୍ୟବସାୟର ବୈଶିଷ୍ଟ୍ୟ ମଧ୍ୟ ଚେହେରାରେ ପ୍ରକାଶ ପାଏ - ଅବଶ୍ୟ ସେ ସବୁ ସହିତ ଘନିଷ୍ଠ ପରିଚୟ ନଥିଲେ ଜାଣିବା କଷ୍ଟକର । ବିଜୟ ବାବୁଙ୍କ ଚେହେରାରେ ସରଳତା ପ୍ରକାଶ ପାଉଥିଲେ ହେଁ ସେ ଯେ ଅନେକ ଲୋକଙ୍କୁ ଚତୁରତା ସହିତ ଶାସନ କରିପାରନ୍ତି, ଏହା ମଧ୍ୟ ପ୍ରକାଶ ପାଉଛି ଏ ଲକ୍ଷଣ କମ୍‌ବେଶୀ ସବୁ କରଣଙ୍କଠି ପାଇବେ । ତାଙ୍କ ଆଙ୍ଗୁଠିରେ

ପିନ୍ଧିଥିବା ମୁଦିରେ ତାଙ୍କ ନା'ର ଆଦ୍ୟ ଅକ୍ଷର ଇଂରାଜୀରେ ଲେଖାଅଛି - ବି.କେ.ଏମ୍. । ସୁଟକେସ୍ ଉପରେ ବଙ୍ଗଳାରେ ଲେଖା ଅଛି ବି.କେ. ମହାନ୍ତି । ଅତଏବ କରଣ ବୋଲି ଜାଣିବାର ଆଉ ସନ୍ଦେହ ରହିଲା ନାହିଁ । ବିଜୟ ବାବୁ ଯେ ଜମିଦାର, ଏହା ତାଙ୍କର ପୋଷାକ ପରିଚ୍ଛଦ ଓ ଚାଲି ଚଳଣରୁ ଆପଣ ବୁଝିପାରିଥିବେ । କୁଲି ସାଙ୍ଗରେ ଓଡ଼ିଆରେ କଥା କହିବା ବେଳେ ତାଙ୍କ କଥାରେ ସ୍ପଷ୍ଟ ମେଦିନୀପୁରୀ ଟାଣ ଧରିପାରିଲି । ସୁଟ୍‌କେସରେ ବଙ୍ଗଳାରେ ନାଁ ଲେଖା ହୋଇଛି । ବୁଝିଲି, ଭଦ୍ରଲୋକଙ୍କ ଘର ମେଦିନୀପୁରରେ । ବିଜୟ ବାବୁ ଆପଣଙ୍କୁ ଆଦୌ ଚିହ୍ନନ୍ତି ନାହିଁ । ଆପଣଙ୍କ ଠିକଣା ଯୋଗାଡ଼ କରି ଆପଣଙ୍କ ମେସ ଖୋଜି ବାହାର କରିଛନ୍ତି । ଆପଣଙ୍କ ମେସ ଯେଉଁ ଗଳିରେ, ତାକୁ ବାହାର କରିବାକୁ ଅନ୍ତତଃ ଦିନେ ଲାଗିଥିବ । ଆପଣଙ୍କ ମେସରୁ ଖବର ନେଇ ସେ ମୋ ବସା ବାହାର କରିଛନ୍ତି । ମୋ ଚାକର ପାଖରୁ ଖବର ନେଇ ଏଠାକୁ ଆସିଛନ୍ତି । ତେଣୁ ତାଙ୍କର ଉଦ୍‌ବେଗରୁ ବୁଝାଯାଏ, ସେ ସନ୍ଧାନ ପାଇବା ମାତ୍ରକେ ପୁରୀ ଆସିଛନ୍ତି । ଅତଏବ ଧରିନେଲି, କଟକରେ ଦୁଇ ଦିନରୁ ବେଶୀ ନଥିବେ । ଭଦ୍ରଲୋକ ଚାଲିଲାବେଳେ ବାଁ ଗୋଡ଼ ଟିକିଏ ଆସ୍ତେ ଆସ୍ତେ ପକାଉଛନ୍ତି । ଆଘାତଟି ସେ କଟକରେ ପାଇଛନ୍ତି । ଆଘାତ ଗୁରୁତର ଓ ମେଦିନୀପୁରରେ ହୋଇଥିଲେ ସେ ସମ୍ପୂର୍ଣ୍ଣ ଭଲ ହେବା ପର୍ଯ୍ୟନ୍ତ ଅପେକ୍ଷା କରି ଥାଆନ୍ତେ । ତାଙ୍କର ମୁହଁରେ ଉଦ୍‌ବେଗର ଚିହ୍ନ ସୁସ୍ପଷ୍ଟ । ତେବେ ବିପଦ ନିଜର ନୁହଁ । କାରଣ ତା' ହୋଇଥିଲେ ଏତେ ଦୂରରୁ ଜଣେ ସମ୍ପୂର୍ଣ୍ଣ ଅପରିଚିତ ବ୍ୟକ୍ତିଙ୍କ ପାଖକୁ କି ସାହାଯ୍ୟ ପାଇଁ ଆସନ୍ତେ ? ଅତଏବ ବିପଦ ଅନ୍ୟ କାହାରି -ଯାହାର ବିପଦରେ କି ଆପଣ ସାହାଯ୍ୟ କରି ପାରିବେ । ସେ ଆପଣଙ୍କ ଘନିଷ୍ଠ ବନ୍ଧୁ ହେବା ଖୁବ୍ ସମ୍ଭବ । ଯାହା ପାଇଁ ବିଜୟ ବାବୁ ଏତେ କଷ୍ଟ ସ୍ୱୀକାର କରୁଛନ୍ତି, ସେ ନିଶ୍ଚୟ ତାଙ୍କର ନିକଟ ଆତ୍ମୀୟ । ଏତେ ପ୍ରମାଣ ଥିଲେ ହେଁ ଆପଣ ଗୋଟିଏ ବି ଧରି ପାରିଲେ ନାହିଁ ।

ବିଜୟ ବାବୁ ଗାଧୋଇ ଆସିଲେ । ଜଳଖିଆ ଖାଇବାକୁ ଦେଲି । ଖାଇସାରି ସେ କହିଲେ, "ମୁଁ ପ୍ରତାପର ନିଜ ମାମୁଁ । ମୋର ଭିଣୋଇ ପ୍ରାୟ ବର୍ଷକ ଆଗରୁ ମଲେଣି । ମୋର ଭଉଣୀ ତା'ର ଅନେକ ଆଗରୁ ମରିଥିଲେ । ଭଉଣୀ ମରିବା ପରେ ଭିଣୋଇ ଦ୍ୱିତୀୟ ବାର ବିବାହ କରିଥିଲେ । ତାଙ୍କର ଦ୍ୱିତୀୟ ସ୍ତ୍ରୀ ସୁମତି ଦେବୀ । ସୁମତି ଦେବୀଙ୍କ ଗୋଟିଏ ପୁଅ ବର୍ତ୍ତମାନ, ନାଁ ଦୀନବନ୍ଧୁ । ତା'ର ବୟସ ବର୍ତ୍ତମାନ ପ୍ରାୟ ବାଇଶି ହେବ । ଭିଣୋଇ ଅଗାଧ ସମ୍ପତ୍ତି ରଖିଯାଇଛନ୍ତି । ଏହି ଦୁଇ ପୁଅ ସେ ସମ୍ପତ୍ତିର ଅଧିକାରୀ । ମୋର ମଧ୍ୟ କମ୍ ସମ୍ପତ୍ତି ନାହିଁ । ସେ ସବୁର ଅଧିକାରୀ ପ୍ରତାପ । କାରଣ ମୋର କେହି ନାହାନ୍ତି । ପ୍ରତାପର ଧାର୍ମିକ ସ୍ୱଭାବ ଦେଖି ମୁଁ ପୋଷ୍ୟ ପୁତ୍ର ଗ୍ରହଣ କରିନାହିଁ । ଭିଣୋଇ ମରିବା ପରେ ମୋର ସନ୍ଦେହ ଥିଲା ଯେ, ସୁମତି ଚକ୍ରାନ୍ତ କରିବ । ସେଥିପାଇଁ ମୁଁ ଯାଇ ପ୍ରତାପର ଗାଁରେ କିଛି ଦିନ ଥିଲି । ମୋର ଧାରଣା ଭୁଲ୍ । ସୁମତି ଭାରୀ ସରଳ ପ୍ରକୃତିର । ସୁମତି ମୋତେ ନିଜ ବଡ଼

ଭାଇ ପରି ସ୍ନେହ ଓ ଭକ୍ତି କରେ । ଜଣେ ଚତୁର ଓ ଜ୍ଞାନୀ ମେନେଜର ରଖି ସେ ଯେଉଁ ନୂଆ ଜମି ଆଦି କିଣୁଛି ତାହା ଦୁଇ ଭାଇଙ୍କ ନାଁରେ କିଣୁଛି । ମୁଁ ସନ୍ତୁଷ୍ଟ ହୋଇ ଫେରି ଆସିଲି । ପ୍ରାୟ ଚାରି ମାସ ତଳେ ସୁମତି ଓ ମେନେଜର ପାଖରୁ ଖବର ପାଇଲି ଯେ ପ୍ରତାପ ବଦଳି ଯାଇଛି-ମଦ ଓ ବେଶ୍ୟା ନେଇ ସବୁବେଳେ ପଡ଼ିଛି । ମୁଁ ପୁଣି ଗାଁକୁ ଗଲି । ପ୍ରତାପର ଏତେ ଦୂର ଅଧଃପତନ ହୋଇଛି ଯେ ସେ ମୋ ସହିତ ମଧ୍ୟ ସେ ବିଷୟରେ କଥାବାର୍ତ୍ତା କରେ । ବିଶେଷ ଦୁଃଖର କଥା, ତା' ଶରୀରରେ ବ୍ୟାଧିର ଲକ୍ଷଣ ଦେଖା ଦେଇଛି । ସୁମତି ଓ ମେନେଜରଠୁଁ ଶୁଣିଲି, ଆପଣ ତା'ର ଘନିଷ୍ଠ ବନ୍ଧୁ । ଆପଣ ପ୍ରତାପର ମନ ବଦଳାଇ ପାରନ୍ତି ଭାବି ମୁଁ ଆପଣଙ୍କ ପାଖକୁ ଆସିଲି ।''

ପ୍ରତାପର କଥା ଶୁଣି ବଡ଼ ଦୁଃଖ ହେଲା । ଗୋବର୍ଦ୍ଧନ ବାବୁଙ୍କୁ ଦେଖିଲି, ତାଙ୍କର ପୂର୍ବାବସ୍ଥାର ଅନେକ ପରିବର୍ତ୍ତନ ହୋଇଯାଇଛି । ବୁଝିଲି, ସେ ବିଜୟ ବାବୁଙ୍କ କଥାରୁ କିଛି ସନ୍ଦେହ କରିଛନ୍ତି । ସେ କହିଲେ, ''ଆପଣ ଯଦି କୁଣ୍ଠାବୋଧ ନକରନ୍ତି, ତେବେ ଆପଣଙ୍କୁ କେତେଗୁଡ଼ିଏ ପ୍ରଶ୍ନ ପଚାରିବି ।''

''ଆପଣ ତ ସୁବୋଧର ବନ୍ଧୁ, ଆପଣଙ୍କୁ କହିବାରେ ମୋର କିଛି ଆପତ୍ତି ନାହିଁ ।''

''ପ୍ରତାପର ବର୍ତ୍ତମାନ ବୟସ କେତେ ?''

''୨୭ ପୂରି ୨୮ ଚାଲିଛି ।''

''ଏପର୍ଯ୍ୟନ୍ତ ବିବାହ ହୋଇ ନାହିଁ କାହିଁକି ?''

''ଅନେକ ସ୍ଥାନରୁ ପ୍ରସ୍ତାବ ଆସିଥିଲା । ମୁଁ ନିଜେ ମଧ୍ୟ ଅନେକ ପ୍ରସ୍ତାବ ଆଣିଥିଲି । କିନ୍ତୁ ସମସ୍ତେ ପ୍ରତାପକୁ ଦେଖିବାକୁ ଆସି ପ୍ରସ୍ତାବ ଭାଙ୍ଗି ଦେଇଛନ୍ତି ।''

''ଆପଣଙ୍କ ଭିଣୋଇ କାହିଁକି ବାହା ଦେଇ ଯାଇ ନାହାନ୍ତି ?''

''ପ୍ରତାପ ସେ ସମୟରେ ପଢୁଥିଲା । ପ୍ରତାପର ବାହାଘର ବିଷୟରେ ଅନେକ ଥର ତାଙ୍କୁ କହିଛି । କିନ୍ତୁ ସେ ସେତେବେଳେ ବିଶେଷ ଜୋର୍ ଦେଲେ ନାହିଁ । ପ୍ରତାପ ପଢୁଥିବାରୁ ମୁଁ ମଧ୍ୟ ବିଶେଷ ଜୋର୍ ଦେଲି ନାହିଁ ।''

''ଦୀନବନ୍ଧୁ ବାହା ହେଲେଣି ?''

''ହଁ, ଅଳ୍ପଦିନ ତଳେ ବାହା ହୋଇଛି । ସୁମତିର କିନ୍ତୁ ଏଥିରେ ବିଶେଷ ଦୁଃଖ ।''

''ଗାଁରେ ବେଶ୍ୟା ଆସିଲା କୁଆଡୁ ?''

''କଲିକତାରୁ ଆସି ଭିଣୋଇଙ୍କ ଗୋଟିଏ ପୁରୁଣା ଘରେ ରହିଛି । ଶୁଣିଲି, ଦେଶବିଭାଗ ଫଳରେ କଲିକତାର ଗୋଳମାଳରେ ସେ ପଳାଇ ଆସିଛି ।''

''ଆପଣ ତାକୁ ଗାଁରୁ ବାହାର କରିବାର ବ୍ୟବସ୍ଥା କରି ନାହାନ୍ତି ?''

''ସୁମତି ଓ ମେନେଜର ବହୁତ ଚେଷ୍ଟା କରିଥିଲେ । କିନ୍ତୁ ପ୍ରତାପର ଏଥିରେ ଘୋର ଆପତ୍ତି । ସେ ମୋ ସାମନାରେ ମଧ୍ୟ କହିଲା ଯେ, ତାକୁ ତଡ଼ିଦେଲେ ଆମେ ପ୍ରତାପକୁ ମଧ୍ୟ

ହରାଇବୁ । ଏହା ଶୁଣି ମୁଁ ଘୃଣାରେ ଆଉ ଚେଷ୍ଟା କରି ନାହିଁ ।''

''ମେନେଜର କେବେଠୁଁ ନିଯୁକ୍ତ ହେଲେ ?''

''ଭିଣୋଇ ମରିବାର ମାସକ ପରେ ।''

''ଏ ବେଶ୍ୟାଟି କେବେ ଆସି ରହିଲା ?''

''ମୁଁ ଠିକ୍ ଜାଣେ ନାହିଁ । ତେବେ, ମେନେଜର ରହିବାର ପ୍ରାୟ ମାସକ ପରେ ବୋଧହୁଏ ।''

''ମେନେଜର ଓ ସୁମତି ବେଶ୍ୟାକୁ ତଡ଼ିବାକୁ କେବେ ଚେଷ୍ଟା କଲେ ?''

''ତାହା ମୁଁ କହି ପାରିବିନି ।''

''ପ୍ରତାପର ଯେଉଁ ରୋଗ ହୋଇଛି, ତା'ର ଚିକିତ୍ସା ହୋଇଛି କି ?''

''ହଁ, ମେନେଜର ଗୋଟିଏ ବଡ଼ ଡାକ୍ତର ଆଣି ଘରେ ରଖାଇ ଚିକିତ୍ସା କରାଉଥିଲେ । ତାଙ୍କର ଚିକିତ୍ସାରେ ପ୍ରତାପର କିଛି ଉନ୍ନତି ହୋଇଥିଲା, କିନ୍ତୁ ହଠାତ୍ ସେ ଡାକ୍ତର ହଇଜାରେ ମରିଗଲେ । ତା'ପରେ ସୁବିଧାରେ ଡାକ୍ତର ମିଳି ନାହାନ୍ତି । ବର୍ତ୍ତମାନ ଗାଁ ଡାକ୍ତର ଚିକିତ୍ସା କରୁଛି । କିନ୍ତୁ ସେ ସବୁବେଳେ ନଜର ରଖି ନ ପାରିବାରୁ ପ୍ରତାପର ଉନ୍ନତି ଦୂରେ ଥାଉ ଅବସ୍ଥା ଖରାପ ଆଡ଼କୁ ଯାଉଛି ।''

''ଡାକ୍ତରକୁ ହଇଜା ଧରିବା ସମୟରେ ଗାଁରେ କ'ଣ ହଇଜା ଲାଗିଥିଲା ?''

''ହଁ, ଗାଁରେ ପ୍ରାୟ ୪/୫ଜଣ ହଇଜାରେ ମରିଥିଲେ । ସୁମତି ଓ ମେନେଜର ଏ ବିଷୟରେ ମୋତେ ଲେଖିଥିଲେ ।''

''ସେମାନେ ଏ ବିଷୟରେ ମଧ୍ୟ ଲେଖିଥିଲେ ? ଆପଣ ପ୍ରତାପକୁ ସେଠୁଁ ନେଇ ଆସୁ ନାହାନ୍ତି ?''

''ତା' ପାରିଲେ ମୁଁ ସୁବୋଧ ପାଖକୁ କାହିଁକି ଆସନ୍ତି ?''

''ଆଚ୍ଛା, ମେନେଜର ବିଷୟରେ ଆପଣ ଯାହା ଜାଣନ୍ତି କହିବେ କି ?''

''ମୁଁ ତାଙ୍କ ବିଷୟରେ କିଛି ଜାଣେ ନାହିଁ । ତେବେ ସେ ଅତିଶୟ ବୁଦ୍ଧିମାନ ଓ ଚତୁର । ଲୋକଟି ଷ୍ଟେଟର ବିଶେଷ ଉନ୍ନତି କଲେ ହେଁ ମନେହୁଏ ସେ ଟିକିଏ କ୍ରୁର ପ୍ରକୃତିର । ଯେଉଁ ଉପାୟରେ ସେ ସମ୍ପତ୍ତି ବଢ଼ାଇବାକୁ ଲାଗିଛନ୍ତି, ମୁଁ କେତେକ କାରଣରୁ ତାହା ପସନ୍ଦ କରେ ନାହିଁ । ତଥାପି ସେ ଖୁବ୍ ବିଶ୍ୱାସୀ ଲୋକ । ଲୋକଟି ବୋଧହୁଏ ବୈଜ୍ଞାନିକ । ପ୍ରାଣିତତ୍ତ୍ୱ ବିଷୟରେ ସେ କ'ଣ ଗବେଷଣା କରନ୍ତି ବୋଲି କହନ୍ତି । ତାଙ୍କ ଘରେ ନାନା ଜାତିର ସାପ । ସେ ଏଥିପାଇଁ ବୋଧହୁଏ ରଖିଛନ୍ତି ।''

ଗୋବର୍ଦ୍ଧନ ବାବୁ ଅନେକକ୍ଷଣ ନୀରବ ରହି କହିଲେ, ''ବିଜୟ ବାବୁ, ମୁଁ ଯଦି ଏ ବିଷୟରେ ଆପଣଙ୍କୁ ସାହାଯ୍ୟ କରେ ?'' ବିଜୟ ବାବୁ ଆନନ୍ଦରେ ସମ୍ମତି ଦେଲେ । ଗୋବର୍ଦ୍ଧନ ବାବୁ କହିଲେ, ''ଆପଣଙ୍କୁ କିଛି ଖର୍ଚ୍ଚ କରିବାକୁ ପଡ଼ିବ, ଆଉ ମୋର ଅଭିପ୍ରାୟ

କଥା ଆପଣ କାହାରିକୁ ଜଣାଇ ପାରିବେ ନାହିଁ।''

''ଖର୍ଚ୍ଚ ସକାଶେ ଆପଣ ଭାବିବେ ନାହିଁ।''

ଆମେ ତିନିହେଁ ସେଇ ରାତିରେ ବାଲେଶ୍ୱର ଗଲୁ। ବାଲେଶ୍ୱର ଷ୍ଟେଶନରୁ ମଟରରେ ରେମୁଣା ଅତିକ୍ରମ କରି ଅନେକ ଦୂର ଯାଇ ସେଠୁ ବଳଦ ଗାଡ଼ିରେ ପ୍ରାୟ ଦଶ ଘଣ୍ଟା ପରେ ଆମେ ପ୍ରତାପର ଗାଁରେ ପହଞ୍ଚିଲୁ। ରାତି ସେତେବେଳକୁ ହେଲାଣି ପ୍ରାୟ ଦଶଟା। ବିଶାଳ ପୁରୁଣାକାଳିଆ କୋଠା। ନୂଆ ଧରଣର ଅନେକ ଘର ମଧ୍ୟ ତିଆରି ହୋଇଛି ଓ ହେଉଛି। ଅନେକ ଦାସ ଦାସୀ ଓ ଜାକଜମକରେ ପୂର୍ଣ୍ଣ। ଖବର ପାଇ ସୁମତି ଦେବୀ ଆସିଲେ। ଅପୂର୍ବ ସୁନ୍ଦରୀ, ବୟସ ପ୍ରାୟ ଚାଳିଶ ହେବ। କିନ୍ତୁ ଅସ୍ୱାଭାବିକ ସୁନ୍ଦରୀ ନାରୀଙ୍କ ଆଖିରେ ପ୍ରାୟ ଯେପରି ଗୋଟାଏ ନିର୍ମମତା ପ୍ରକାଶ ପାଏ ସୁମତିଙ୍କ ଆଖିରେ ସେହିପରି ନିର୍ମମତା ପ୍ରକାଶ ପାଉଥାଏ। କିଛିକ୍ଷଣ ପରେ ମେନେଜର ଆସିଲେ। ଦୀର୍ଘ ଶୁଷ୍କଦେହ, ଖଣ୍ଡାଧାର ଭଳିଆ ନାକ, ଅତ୍ୟଧିକ ଚଉଡ଼ା କପାଳ ତଳେ ତୀକ୍ଷ୍ଣ ଦୁଇଟି ଆଖି। ସେ ଆମକୁ ଦେଖି ସ୍ଥିର ଦୃଷ୍ଟିରେ କିଛିକ୍ଷଣ ଅନାଇଲେ। ଗୋବର୍ଦ୍ଧନ ବାବୁ ତାଙ୍କୁ ବୋକାଭଳି ଚାହାଣୀରେ ଦୁଇ ଜଣଙ୍କୁ ଅନାଇଲେ। ମୁହୂର୍ତ୍ତକ ପାଇଁ ତାଙ୍କ ଆଖି ଯୋଡ଼ିକ ସାନ ସାନ ହୋଇଗଲା। ପରମୁହୂର୍ତ୍ତରେ ସେ ଯେପରି ଅଧିକ ବୋକାଭଳି ଦିଶିଲେ। ବିଜୟବାବୁ ତାଙ୍କ ପରିଚୟ ଦେଇ କହିଲେ, ''ସୁବୋଧକୁ ଆଣିପାରିଛି, ଦେଖେ, ଯଦି ସେ କିଛି କରିପାରନ୍ତି। ଏ ମହାଶୟଙ୍କ ନାମ ଗୋବର୍ଦ୍ଧନ ମିଶ୍ର-ସୁବୋଧର ବନ୍ଧୁ।''

ସୁମତି ଦେବୀ ଓ ମେନେଜର ଖୁବ୍ ଖୁସୀ ହେଲେ। ମେନେଜର ଦୀର୍ଘ ନିଃଶ୍ୱାସ ପକାଇ କହିଲେ, ''ଆହା, କି ପିଲାର କ'ଣ ହେଲା ! କେଉଁଥି ପାଇଁ ଯେ ଏ ଦୁନିଆରେ କ'ଣ ହୁଏ, ଜାଣିବା କଷ୍ଟକର।'' ମୁଁ ପଚାରିଲି, 'ପ୍ରତାପ କାହିଁ ?'' ସୁମତି ଦେବୀ ଅତି ଦୁଃଖରେ କହିଲେ, 'ସେ କ'ଣ ଆଜିକାଲି ଘରେ ରହୁଛି !'' ମୁଁ ବୁଝିପାରି ନୀରବ ରହିଲି।

ଆମେମାନେ ଖାଇବାକୁ ଗଲୁ। ମେନେଜର ନିଜେ ସବୁ ଦେଖାଶୁଣା କରୁ ଥାଆନ୍ତି। ଭାରୀ ଭଦ୍ରଲୋକ। ବାହାରର ଗୋଟିଏ ଘରେ ଆମର ଶୋଇବା ସ୍ଥାନ ହୋଇଥାଏ। ମେନେଜର ନିଜେ ଛିଡ଼ା ହୋଇ ଆମର ଶୋଇବାର ବନ୍ଦୋବସ୍ତ କରୁ ଥାଆନ୍ତି। ବିଜୟ ବାବୁଙ୍କ ଶୋଇବା ଜାଗା ଖଞ୍ଜା ଭିତରେ। ଗୋବର୍ଦ୍ଧନ ବାବୁ ଘରକୁ ଆସି ଆରାଧନା କରିବାକୁ ବସିଲେ ଦେଖି ମୁଁ ଆଶ୍ଚର୍ଯ୍ୟ ହୋଇଗଲି। ଯେଉଁମାନେ ନିୟମ ମୁତାବକ୍ ସକାଳେ ଓ ସନ୍ଧ୍ୟାରେ ଭଗବାନଙ୍କ ପାଇଁ ଘଣ୍ଟାଏ ସମୟ ରଖିଥାଆନ୍ତି ସେପରି ଲୋକଙ୍କ ଉପରେ ଗୋବର୍ଦ୍ଧନ ବାବୁ ଭାରି ବିରକ୍ତ ହୁଅନ୍ତି। ଭଗବାନଙ୍କ ଅସ୍ତିତ୍ୱ ବିଷୟରେ ପଚାରିଲେ ସେ କୁହନ୍ତି - ସେ କଥା ଜାଣିବାର ସେପରି କିଛି ବିଶେଷ ପ୍ରୟୋଜନ ନାହିଁ। ସେ ବିଷୟରେ ଭାବିବା ପାଇଁ ମୁଁ ଏକ ମିନିଟ୍ ସମୟ ମଧ୍ୟ ଦେବାକୁ ରାଜି ନୁହେଁ। ଯେଉଁମାନେ କୋଥଳି ଗୀତା ଆଦି ଫିଟାଇ ସକାଳେ ଓ ସନ୍ଧ୍ୟାରେ ଘଣ୍ଟା ଘଣ୍ଟା ଧରି ଭଗବାନଙ୍କୁ ପ୍ରାର୍ଥନା କରନ୍ତି, ସେ

ସେମାନଙ୍କ ଉପରେ ବିରକ୍ତ ହୋଇ କହନ୍ତି - ଏମାନେ କାହିଁକି ସମୟ ବୃଥା ନଷ୍ଟ କରନ୍ତି ? ସେ ସମୟରେ ବରଂ ତାସ କିମ୍ବା ସତରଞ୍ଜ (chess) ଖେଳିଲେ ବୁଦ୍ଧି ଖୋଲିବ । ଏପରି ପ୍ରାର୍ଥନା ଯଦି କେହି ମାସେ କରେ, ତେବେ ନିଶ୍ଚୟ ସେ ବୋକା ପାଲଟି ଯିବ । ତାଙ୍କ ମତର ହଠାତ୍ ଏପରି ପରିବର୍ତ୍ତନ ହେବାର କାରଣ ବୁଝି ପାରିଲି ନାହିଁ । ମେନେଜର ବାବୁ ମୋ ଆଡ଼କୁ ଟିକିଏ ହସି ଅନାଇଲେ । ମୁଁ କହିଲି, 'ସେ ଟିକିଏ ଭକ୍ତିମାନ ଲୋକ ।' ମନେ ମନେ ଭାବିଲି - ଏହା ଭିତରେ କ'ଣ ନିଶ୍ଚୟ ଅଛି । ମେନେଜର ବାବୁ ଅନେକକ୍ଷଣ ରହିଲେ, ନାନା ବିଷୟରେ ନାନା କଥା ସେ କହିଲେ । ତାଙ୍କର ପାଣ୍ଡିତ୍ୟ ଦେଖି ମୁଁ ଅଭିଭୂତ ହେଲି । ଗୋବର୍ଦ୍ଧନ ବାବୁ ବି ଏତେ କଥା ଜାଣନ୍ତି କି ନାହିଁ, ଭାବିଲି । ଯାହା ହେଉ, ମୋର ମନେ ପଡ଼ିଗଲା ଗୋବର୍ଦ୍ଧନ ବାବୁଙ୍କ ପ୍ରଶ୍ନ । କଥାରେ କଥା ପଚାରିଲି, ''ସେ ବେଶ୍ୟାଟି କେବେଠୁଁ ଆସି ରହିଛି ?''

''ମୋ ଆସିବାର ମାସକ ପରେ- ଆଜିକି ପ୍ରାୟ ୧୦ମାସ ହେବ ଆସିଛି ।'' ମେନେଜର ଗଲା ପରେ ଗୋବର୍ଦ୍ଧନ ବାବୁ ମୋ ପିଠିରେ ହାତ ମାରି କହିଲେ, ''ସୁନ୍ଦର ! ଡାକ୍ତର, ତୁମ ବିଷୟରେ ମୋର ଭବିଷ୍ୟଦ୍‌ବାଣୀ ନିଶ୍ଚୟ ସଫଳ ହେବ । ମୁଁ ସେ ପ୍ରଶ୍ନଟି ପଚାରିଥିଲେ ଭଲ ହୋଇ ନ ଥାନ୍ତା ।''

ପଚାରିଲି, ''ଆପଣଙ୍କ ହଠାତ୍ ହରିଭକ୍ତିର ଉଦୟ ହେଲା କାହିଁକି ?''

''ଡାକ୍ତର, ମୁଁ ଯାହା କରିଯିବି ତା' ପାଇଁ ବର୍ତ୍ତମାନ କିଛି ପ୍ରଶ୍ନ ପଚାରିବ ନାହିଁ । ମୁଁ ତୁମକୁ ଯେତେବେଳେ ଯାହା କରିବାକୁ କହିବି ତାହା କରିବ । ତୁମେ ପ୍ରତାପ ସହିତ କେବେହେଁ ଏକାକୀ ଦେଖା କରିବ ନାହିଁ । ତାହାକୁ ଯାହା ବୁଝାଇ କହିବ ତାହା ସୁମତି ଦେବୀ ବା ମେନେଜର ସାମନାରେ କହିବ । କାଲି ଦିନରେ ଖାଇବା ପରେ ମେନେଜରଙ୍କୁ ଅନୁରୋଧ କରିବ, ସେଇ ବେଶ୍ୟାଘର ଆଡ଼େ ଟିକିଏ ବୁଲି ଆସିବାକୁ । ମୁଁ ମନା କଲେ ବି ମୋତେ ସାଙ୍ଗରେ ନେବା ପାଇଁ ଅନୁରୋଧ କରିବ ।'' ଏକଥାଗୁଡ଼ିକ ସେ ଖୁବ୍ ଆସ୍ତେ ଆସ୍ତେ କହି ଶୋଇ ପଡ଼ିଲେ ।

ପରଦିନ ଖୁବ୍ ସକାଳୁ ଉଠି ଦେଖିଲି, ଗୋବର୍ଦ୍ଧନ ବାବୁ ପୂଜାରେ ବସିଛନ୍ତି । ପାଟି କରି ନାନା ସ୍ତୋତ୍ର ସେ ଅନର୍ଗଳ ବୋଲି ଯାଉଛନ୍ତି । ଏତେ ସ୍ତୋତ୍ର ତାଙ୍କୁ ଜଣା ମୁଁ ଜାଣି ପାରି ନଥିଲି । ତାଙ୍କ ସାମନାରେ ନାନା ଦେବତାଙ୍କର ଚିତ୍ର ରହିଛି । ମୁଣ୍ଡରେ ଚିତା କାଟି ସେ ଧ୍ୟାନରେ ବସିଲେ । ମେନେଜର ଆସିଲେ ଓ ଗୋବର୍ଦ୍ଧନ ବାବୁଙ୍କୁ ଦେଖି ଟିକିଏ ହସିଲେ । ମୁଁ ମେନେଜର୍ ବାବୁଙ୍କୁ ପଚାରିଲି - ''ପ୍ରତାପ ଆସିଲାଣି ?''

''ହଁ, ତାଙ୍କ ଘରେ ଅଛନ୍ତି ।''

''ଚାଲନ୍ତୁ, ଟିକିଏ ଦେଖାକରି ଆସେ ।''

''କିଛି ଲାଭ ନାହିଁ । ଚେଷ୍ଟା କ'ଣ ମୁଁ କମ କରିଛି ? ହତାଶ ଭାବରେ ସେ କହିଲେ ।

ପ୍ରତାପ ଘରେ ଖଟରେ ଶୋଇଥିଲା । ମୋର ସ୍ପର୍ଶରେ ସେ ଚାହିଁ କହିଲା, "ମୁଁ ଶୁଣିଛି, ତୁ ମୋତେ ବୁଝାଇବାକୁ ଆସିଛୁ ।"

"ପ୍ରତାପ, ଏସବୁ କ'ଣ କରୁଛୁ ? ତୋ'ର ହେଲା କ'ଣ ?" ମୁଁ ଦୁଃଖର ସହିତ କହିଲି ।

"କ'ଣ ଭାବିଛ ତୁମେମାନେ ?"

"ତୁ ଶେଷରେ ମଦ ଓ ବେଶ୍ୟାସକ୍ତ ହେଲୁ ।"

"ହଁ, ମଦ ମୁଁ ଖାଉଛି ଓ ସେଥିପାଇଁ ବ୍ୟାଧି ଧରିଛି । କିନ୍ତୁ ବେଶ୍ୟାସକ୍ତ କହିଲେ ମୁଁ ସତରେ ବଡ଼ କଷ୍ଟ ପାଇବି । ତୁ ଅଞ୍ଜଳି ଦେବୀଙ୍କୁ ଦେଖିନୁ । ଦେଖିଲେ ତୋର ଧାରଣା ବଦଳି ଯିବ । ଏଡ଼େ ଧାର୍ମିକ ଓ ଭକ୍ତିମତୀ ଆମ ଘରମାନଙ୍କରେ ମିଳିବା ସମ୍ଭବ ନୁହେଁ । ଅବସ୍ଥା ଚକ୍ରରେ ପଡ଼ି ସେ ଦିନେ ବେଶ୍ୟା ହୋଇଥିଲେ ସତ, କିନ୍ତୁ କେବେହେଁ ଅପବିତ୍ର ହୋଇନାହାନ୍ତି ।"

'ଅଞ୍ଜଳି ଦେବୀ' ଶୁଣି ଘୃଣାରେ ମୋର ମନ ଭରିଗଲା । ମୁଁ କିଛି କହି ନ ପାରି ନୀରବରେ ଚାଲି ଆସିଲି । ଖାଇବା ପରେ ମେନେଜରଙ୍କୁ କହିଲି, "ଚାଲନ୍ତୁ ଟିକିଏ 'ଦେବୀଙ୍କ ଘର ଦେଖି ଆସିବା ।"

"କାହିଁକି ସେ ନରକକୁ ଯିବେ ?"

"ଦେଖେ, ଯଦି ସେ ଆତ୍ମ କିଛି ଚେଷ୍ଟା କରିପାରେ ।"

ମୋ କଥାରେ କି ଭୁଲ୍ ହୋଇଛି ବୁଝି ପାରିଲି ନାହିଁ; କିନ୍ତୁ ଅନାଇ ଦେଖିଲି, ଗୋବର୍ଦ୍ଧନ ବାବୁ ଅତି କ୍ରୋଧରେ ମୋ ଆଡ଼େ ଅନାଇଛନ୍ତି । ମେନେଜର ବାବୁ ଘୋର ଆପତ୍ତି କରି କହିଲେ - ସେ କୌଣସି ଭଦ୍ରଲୋକଙ୍କୁ ସେଠିକି ଯିବାକୁ ଦେଇ ପାରିବେ ନାହିଁ । ମେନେଜର ବାବୁଙ୍କ ଘୋର ଆପତ୍ତିରୁ ମୋର ଭୁଲ୍ କେଉଁଠି ହେଲା କେତେକଟା ବୁଝିପାରି ବୁଝାଇ କହିଲି - "ନା, ମୁଁ କେବଳ ଏମିତି ଟିକିଏ ବୁଲି ଆସିବାକୁ ଚାହେଁ ।" ମୋର ଭୁଲ୍ ସୁଧାରିବା ପାଇଁ ମୁଁ ମେନେଜରଙ୍କୁ ଲାଗିପଡ଼ି ରାଜି କରାଇଲି । କିନ୍ତୁ ଗୋବର୍ଦ୍ଧନ ବାବୁଙ୍କୁ ରାଜି କରାଇବାକୁ ବେଶୀ କଷ୍ଟ ଲାଗିଲା । ସେ କୌଣସି ମତେ ରାଜି ହେଲେ ନାହିଁ । ମନେମନେ ଭାରି ବିରକ୍ତ ଲାଗିଲା । ଅନେକକ୍ଷଣ ପରେ ମେନେଜର ବାବୁ ଅନୁରୋଧ କରିବାରୁ ସେ ରାଜି ହେଲେ ।

ଘରଠାରୁ ଅନେକ ଦୂର ବିଲ ଭିତର ଦେଇ ଯିବା ପରେ ଟିକିଏ ଜଙ୍ଗଲ । ଜଙ୍ଗଲ ଭିତରେ ଗୋଟିଏ ସାନ କୋଠାଘର- 'ଦେବୀ'ଙ୍କ ଅଧିଷ୍ଠାନ । ଆମେ ଘରର ଚାରିଆଡ଼େ ବୁଲି ଫେରି ଆସିଲୁ ।

ପରଦିନ ସକାଳ ଆଠଟା ବେଳେ ଗୋବର୍ଦ୍ଧନ ବାବୁ ପୂଜା ସାରି ବିଜୟ ବାବୁଙ୍କ ଠାରୁ ଅନେକ ଟଙ୍କା ନେଇ ବାହାରି ଗଲେ । ମେନେଜର ପଚାରିବାରୁ କହିଲେ, "ଟିକିଏ ଗାଁ ବୁଲି

ଦେଖି ଆସେ ।'' ଏଠି ରହିବାର ତିନି ଦିନ ହୋଇଗଲାଣି । ପ୍ରତାପର ମନର ଅବସ୍ଥା ଦେଖି ହତାଶ ଓ ଘୃଣାରେ ଏଠୁ ଚଞ୍ଚଳ ଯିବାକୁ ମନ ହେଉଥାଏ । ଏ ତିନି ଦିନ ଭିତରେ ପ୍ରତାପର କୌଣସି ପରିବର୍ତ୍ତନ ହୋଇନାହିଁ -ବରଞ୍ଚ ଦେଖିଲି, ସେ ଅଧିକ ସମୟ ବାହାରେ ଥାଏ । ବିଜୟ ବାବୁଙ୍କୁ ମଧ ଦେଖିଲି, ସେ ସବୁ ଆଶା ଛାଡ଼ି ଦେଲେଣି । ଗୋବର୍ଦ୍ଧନ ବାବୁ ପୂର୍ବ ପରି ନିର୍ବିକାର । ସେ ଆଜିକାଲି ସକାଳେ ଓ ସନ୍ଧ୍ୟାରେ ପୂଜା ସାରି ଏକା ଏକା ଅନେକକ୍ଷଣ ଗାଁ ବୁଲି ଯାଆନ୍ତି ।

ଚତୁର୍ଥ ଦିନ ଗୋବର୍ଦ୍ଧନ ବାବୁ ପୂଜା ସାରି ପୂର୍ବପରି ସନ୍ଧ୍ୟା ସମୟରେ ବୁଲିବାକୁ ଗଲେ । ଫେରିବାକୁ ତାଙ୍କର ଅନେକ ଡେରି ହେଲା । ଇଆ ଭିତରେ ରାତି ପ୍ରାୟ ଏଗାରଟା ବେଳେ ହଠାତ୍ ପ୍ରତାପ ଝଡ଼ ପରି ମୋ ଘରକୁ ପଶି ଆସି, କିଛିକ୍ଷଣ ସ୍ଥିର ଦୃଷ୍ଟିରେ ଚାହିଁ ପୁଣି ଝଡ଼ପରି ବାହାରିଗଲା । ଦେଖିଲି ତା'ର ମୁହଁ କାଳିଆ ପଡ଼ିଯାଇଛି - ଆଖିରେ ଗୋଟାଏ ତୀବ୍ର ହିଂସା ଜଳି ଉଠୁଛି । ମେନେଜର ମଧ ପରେ ପରେ ଆସିଲେ । ତାଙ୍କର ମୁହଁ ଭୀଷଣ କଠିଣ -'ଆଖି ଦିଓଟି ତୀକ୍ଷଣତର । ସେ କେବଳ କହିଲେ, ''ଆପଣଙ୍କ ବନ୍ଧୁଙ୍କୁ ବୋକା ଭାବି ମୁଁ ଭୁଲ କରିଛି ।'' ସେ ଧୀରେ ଧୀରେ ନଇଁ ନଇଁ ଚାଲିଗଲେ । ଏହା ଭିତରେ ଏପରି କ'ଣ ଘଟିଲା, ମୁଁ ବୁଝିପାରିଲି ନାହିଁ । ଗୋବର୍ଦ୍ଧନ ବାବୁ ଫେରିଲେ ଏହାର ପ୍ରାୟ ଘଣ୍ଟାକ ପରେ । ସେ ଆସିବା ମାତ୍ରକେ ଆରାଧନାରେ ବସିଲେ । ମେନେଜର ପୁଣି ଆସି କହିଲେ, ''ଗୋବର୍ଦ୍ଧନ ବାବୁ, ଟିକିଏ ଶୁଣିଯିବେ ?'' ଗୋବର୍ଦ୍ଧନ ବାବୁ ତାଙ୍କ ପୂଜା ଆସନରୁ କହିଲେ, ''ମୁଁ ତ ବର୍ତ୍ତମାନ ଉଠି ପାରିବି ନାହିଁ ।'' ମେନେଜର ଗୋଟାଏ ତୀବ୍ର କଟାକ୍ଷ କରି ଚାଲିଗଲେ । ଅଜ୍ଞାତ ଭୟରେ ମୋର ଛାତି ଥରି ଉଠିଲା । କିଛିକ୍ଷଣ ପରେ ପ୍ରତାପ ମୋତେ ଡକାଇ ପଠାଇଲା । ମୁଁ ଯିବାରୁ ସେ କହିଲା, ''ସୁବୋଧ, ମୁଁ କାଲି କଟକ ଯିବି, ତୁ ବନ୍ଦୋବସ୍ତ କର । ମୁଁ ଘରେ ବନ୍ଦୋବସ୍ତ କରିବାକୁ କହୁଚି ।'' ହଠାତ୍ ପ୍ରତାପର ଏ ପରିବର୍ତ୍ତନ ଦେଖି ମୋର ସବୁ ଭୟ ଓ ହତାଶା ଚାଲିଗଲା । ବିଜୟ ବାବୁ ଏ ସମ୍ବାଦ ପାଇ ଆସି ମୋତେ ଆନନ୍ଦରେ କୁଣ୍ଢାଇ ପକାଇଲେ । କିଛିକ୍ଷଣ ପରେ ସୁମତି ଦେବୀ ମଧ ଆସି କହିଲେ, ''ସୁବୋଧ, ତୁମ ଉପକାର ଆମେ ଭୁଲି ପାରିବୁ ନାହିଁ । କିନ୍ତୁ କାଲି ଯିବା ତ ହୋଇ ପାରିବ ନାହିଁ । ମୁଁ ଏତେ ଶୀଘ୍ର କିଛି ବନ୍ଦୋବସ୍ତ କରିପାରିବି ନାହିଁ । ତା'ଛଡ଼ା ସବୁ ବଳଦଙ୍କୁ ଫାଟୁଆ ହୋଇଛି । ତୁମେ ପ୍ରତାପକୁ ବୁଝାଇ କହ, ସେ ଦୁଇ ଦିନ ଅପେକ୍ଷା କରୁ - କେବଳ ଦୁଇଦିନ; ଏହା ଭିତରେ ମୁଁ ସବୁ ଠିକ୍ କରିଦେବି ।'' କଟକ ଯିବାକୁ ଯେତେବେଳେ ରାଜି ହୋଇଛି, ସେତେବେଳେ ଆଉ ଦୁଇ ଦିନ ଅପେକ୍ଷା କଲେ ବା କ'ଣ କ୍ଷତି ହେବ ଭାବି ମୁଁ ଯାଇ ପ୍ରତାପକୁ ବୁଝାଇ କହିଲି । ପ୍ରତାପ କହିଲା, ''ଆଚ୍ଛା, ମୋର ମଧ ରହିବା ଦରକାର ଅଛି । ପ୍ରତିଶୋଧ ନେବି ।'' କାହା ପ୍ରତି କି ପ୍ରତିଶୋଧ ସେ ନେବ, ମୁଁ ବୁଝିପାରିଲି ନାହିଁ । କିନ୍ତୁ ଏହା ପ୍ରତାପର ଗୋଟାଏ ମାନସିକ କ୍ଷୋଭ ଭାବି ମୁଁ କିଛି ପଚାରିଲି ନାହିଁ । ଭାବିଲି କଟକ ଗଲେ ସବୁ ଠିକ୍ ହୋଇଯିବ ।

ତା' ପରଦିନ ରାତି ପ୍ରାୟ ଦଶଟା ବେଳକୁ ପ୍ରତାପ ଅଞ୍ଜଳି ଘରକୁ ବାହାରିଲା ବେଳେ ଗୋବର୍ଦ୍ଧନ ବାବୁ ମୋତେ ଚୁପ୍ କରି ଡାକିଲେ । ଆମେ ଦୁହେଁ ତା'ର ଦଶହାତ ପଛରେ ଅଲକ୍ଷିତ ଭାବରେ ଗଲୁ । ଭୀଷଣ ଅନ୍ଧକାର ହୋଇଥାଏ । ଟିପି ଟିପି ବର୍ଷା ଓ ପ୍ରବଳ ଥଣ୍ଡା ପବନ । ମନରେ ଅଧିକ ଭୟ ସଞ୍ଚାର କଲା । ଜଙ୍ଗଲ ଭିତର ଦେଇ ଗଲାବେଳେ ପ୍ରତାପ ହଠାତ୍ ଚିତ୍କାର କରି ଉଠିଲା । ଆଖି ପିଛୁଳାକେ ଗୋବର୍ଦ୍ଧନ ବାବୁ ଟର୍ଚ୍ଚ ଜାଳି ଦୌଡ଼ିଗଲେ । ଟର୍ଚ୍ଚ ଆଲୁଅରେ ଦେଖିଲି, ଗୋଟିଏ ବିଷାକ୍ତ ସାପ ପ୍ରତାପର ଗୋଡ଼ ପାଖରୁ ବିଦ୍ୟୁତ ବେଗରେ ଚାଲିଗଲା । ଗୋବର୍ଦ୍ଧନ ବାବୁ ପକେଟରୁ ଖଣ୍ଡେ ଫିତା ବାହାର କରି କ୍ଷତ ଉପରକୁ ଭିଡ଼ି ବାନ୍ଧି ଦେଲେ ଓ କ୍ଷତ ସ୍ଥାନରେ ଔଷଧ ଲଗାଇ ପ୍ରତାପକୁ ଖାଇବାକୁ ମଧ ଔଷଧ ଦେଲେ । ପ୍ରାୟ ଅଧ ଘଣ୍ଟା ପରେ ପ୍ରତାପର ଚେତନା ଫେରିଲା, ଆମେ ପ୍ରତାପକୁ ଟେକି ଘରକୁ ଆଣିଲୁ । ଜଙ୍ଗଲରୁ ବାହାରି ଆସିବା ପରେ ଆମେ ଅଞ୍ଜଳିର ଆର୍ତ୍ତ ଚିତ୍କାର ଶୁଣିବାକୁ ପାଇଲୁ । ଭୀଷଣ ଭୟ ହେଲା । ବର୍ତ୍ତମାନ ଚକ୍ରାନ୍ତଟା କିଛି କିଛି ବୁଝିପାରିଲି । ସେ ଚିତ୍କାର ଶୁଣି ଭୟରେ ମୋର ଝାଳ ବାହାରିଗଲା । ମୁଁ ଅତି ଅନ୍ତର୍ପଣରେ ଚାରିଆଡ଼େ ଆଲୁଅ ପକାଇ ଆସୁଥାଏ । ଭୟରେ ମୁହଁରୁ କଥା ବାହାରିଲା ନାହିଁ ।

ପରଦିନ ସକାଳେ ଶୁଣିଲି ଯେ, ଅଞ୍ଜଳି ସାପ କାମୁଡ଼ାରେ କାଲି ରାତିରେ ମରି ଯାଇଛି । ହତ୍ୟା ହେଉ ବା ଦୈବାତ୍ ମୃତ୍ୟୁ ହେଉ ଗୋଟାଏ ବିପଦ ଗଲା ଭାବି ଆଶ୍ୱସ୍ତ ହେଲି । କିନ୍ତୁ ଏଠାରୁ କିପରି ବାହାରି ଯିବୁ, ଏ ଭାବନା ମୋତେ ଅସ୍ଥିର କଲା । ଏ ପର୍ଯ୍ୟନ୍ତ କେହି ଜବରଦସ୍ତି ନ କଲେ ମଧ ମୋର ଦୃଢ଼ ଧାରଣା ଜନ୍ମିଲା ଯେ, ଏଠୁଁ ବାହାରିବା କଷ୍ଟକର ଏବଂ ବାହାରିବାର ଚେଷ୍ଟା କଲେ ମଧ କାହାରି ପ୍ରାଣସଂଶୟ ହେବ । ପ୍ରତାପ ଆସି କହିଲା, ''ସୁବୋଧ ତୋ'ଠାରେ ମୁଁ ଚିରଦିନ କୃତଜ୍ଞ ରହିବି । ତୁ ନ ଥିଲେ ମୁଁ ବଞ୍ଚି ନଥାନ୍ତି । କାଲି ଯାଇଥିଲି ମୁଁ ସେ ବିଶ୍ୱାସଘାତିନୀକୁ ହତ୍ୟା କରିବାକୁ । ଭଗବାନ୍ ମୋତେ ସେ ପାପକର୍ମରୁ ବଞ୍ଚାଇଛନ୍ତି ।'' ମୁଁ ଏ ଚକ୍ରାନ୍ତର ଆଭାସ ମାତ୍ର ପ୍ରତାପକୁ ଦେଲି । ଦେଖିଲି, ପ୍ରତାପ ମଧ ଟିକିଏ ସନ୍ଦେହ କରିଛି । କିନ୍ତୁ କିଏ କିପରି ଚକ୍ରାନ୍ତ କରୁଛି ନ ଜାଣିବାରୁ ଆମର ଭୟ ବିଶେଷ । ଗୋବର୍ଦ୍ଧନ ବାବୁ ଫେରିଆସି କହିଲେ, ''ଡାକ୍ତର, ଶୁଣିଛ, ଏ ଘରୁ ଆଜି ସକାଳେ ଗୋଟିଏ ଚାକର ହଇଜାରେ ମରିଛି । ତୁମକୁ, ମୋତେ, ପ୍ରତାପକୁ ଓ ବିଜୟ ବାବୁଙ୍କୁ ଏଇ ମୁହୂର୍ତ୍ତରେ ଏଠାରୁ ବାହାରିଯିବା ପର୍ଯ୍ୟନ୍ତ ନିରମ୍ବୁ ଉପବାସ କରିବାକୁ ହେବ । ମୁଁ ଅନେକ ପଇଡ଼ ଆଣିଛି । ଏହାହିଁ ହେବ ଆମର ଖାଦ୍ୟ ଓ ପାନୀୟ । ଆଉ ପ୍ରତାପ ବାବୁ ମୋର ପରିଚର୍ଯ୍ୟାରେ ରହିବେ ।'' ପ୍ରତାପ ରାଗରେ କହିଲା, ''ଶଠ, ଲମ୍ପଟ'' । ପ୍ରତାପର ଅଯଥା ସନ୍ଦେହ ଓ କ୍ରୋଧ ଦେଖି ମୋର ଦୁଃଖ ହେଲା । ଗୋବର୍ଦ୍ଧନ ବାବୁ କିନ୍ତୁ ହସି ହସି କହିଲେ, ''ମୋର ପରିଚର୍ଯ୍ୟା ଉପରେ ବର୍ତ୍ତମାନ ତୁମର ଜୀବନ ନିର୍ଭର କରୁଛି । ଅତଏବ ତୁମକୁ ଏହା ସହ୍ୟ କରିବାକୁ ହେବ ।'' ସେ ଦିନଯାକ ଆମେ ଚାରିଜଣ ପ୍ରତାପର ଘରେ

ରହିଲୁ । ହଇଜା ଲାଗିବା ବାହାନାରେ ଆମେ ସେଦିନ କିଛି ଖାଇଲୁ ନାହିଁ । ମେନେଜର ବାବୁ ଆସି ଅନେକ ଅନୁରୋଧ କଲେ, କିନ୍ତୁ କୌଣସି ମତେ ସେ ଆମକୁ ରାଜି କରାଇ ପାରିଲେ ନାହିଁ ଦେଖି ଗୋବର୍ଦ୍ଧନ ବାବୁଙ୍କ ଆଡ଼କୁ ଅନାଇ 'ଆଚ୍ଛା' କହି ଚାଲିଗଲେ । କିନ୍ତୁ ଏହି ସାମାନ୍ୟ 'ଆଚ୍ଛା'ଟି ସେ ଏପରି ଭାବରେ କହିଲେ ଯେ, ହଠାତ୍ ମୁଁ ଭୟରେ ଚମକି ପଡ଼ିଲି । ସନ୍ଧ୍ୟା ପରେ ମେନେଜର ଆସିଲେ ପ୍ରତାପର ଖବର ନେବାକୁ । ସେ ଯେତେକ୍ଷଣ ରହିଲେ, ଦେଖିଲି ଗୋବର୍ଦ୍ଧନ ବାବୁ ସବୁବେଳେ ବିଶେଷ ସତର୍କ ରହିଲେ । ପ୍ରତାପ ଟିକିଏ ପାଣି ମାଗିବାରୁ ମେନେଜର ଶୀଘ୍ର ଟେବୁଲ ଉପରୁ ଗିଲାସ ନେଇ ପଇଡ଼ ପାଣି ଢାଳି ନେଇଗଲେ । ଗୋବର୍ଦ୍ଧନ ବାବୁ ଗିଲାସଟି ତାଙ୍କ ହାତରୁ କାଢ଼ିନେଇ ହସି କହିଲେ, ''ମେନେଜର ବାବୁ, ଆପଣ ସେଥିରେ ଆଙ୍ଗୁଳି ବୁଡାଇଛନ୍ତି । ସେ ପାଣି ମୁଁ ଫିଙ୍ଗିଦେଇ ଅନ୍ୟ ପାଣି ଦେଉଛି ।'' ମେନେଜରଙ୍କ ଆଖି ମୁହୂର୍ତ୍ତକ ପାଇଁ ନିଆଁପରି ଜଳି ଉଠିଲା । ଅନାଇ ଦେଖିଲି, ସେ ହାତ ମୁଠା କରି ଦାନ୍ତ ଚିପି ଛିଡ଼ା ହୋଇ ରହିଲେ । ଗୋବର୍ଦ୍ଧନ ବାବୁ ସେ ଗିଲାସ ଓ ପାଣି ଉଭୟ ଫିଙ୍ଗି ଦେଲେ । ସେ ରାତିରେ ଭୀଷଣ ଗରମ ହେଉଥିଲେ ମଧ୍ୟ ଗୋବର୍ଦ୍ଧନ ବାବୁ ସବୁ ଝରକା ଓ କବାଟ ବନ୍ଦ କରି ଜଗି ବସିଲେ । ରାତି ପ୍ରାୟ ବାରଟା ବେଳକୁ ବିଜୟ ବାବୁ ଓ ପ୍ରତାପ ଶୋଇ ପଡ଼ିଲେ । ମୋତେ ମଧ୍ୟ ନିଦ ମାଡୁଥିଲା । କିନ୍ତୁ ଗୋବର୍ଦ୍ଧନ ବାବୁ ମୋତେ ଜଗି ବସିବାକୁ ଅନୁରୋଧ କରିବାରୁ ମୁଁ ବହୁ ଚେଷ୍ଟା କରି ଆଖି ଖୋଲି ଜଗି ବସିଲି । ସେ ରାତିଯାକ ଆମେ ଦୁହେଁ ଜଗି ବସିଲୁ । ରାତି ପ୍ରାୟ ଗୋଟାଏବେଳେ ଗୋବର୍ଦ୍ଧନ ବାବୁ ହଠାତ୍ ଚୌକିରୁ ଉଠି କାନ୍ଥ ପାଖକୁ ଯାଇ କାନ୍ଥରେ କାନ୍ଧ ଲଗାଇ ଛିଡ଼ା ହୋଇ ରହିଲେ । ତା'ପରେ କାହାରି ଅନୁସରଣ କଲା ପରି ସେ ଧୀରେ ଧୀରେ ଅଗ୍ରସର ହୋଇ ଘରର କ୍ଷୁଦ୍ର ନଳାମୁହଁ ପାଖରେ ଛିଡ଼ା ହେଲେ । ଗୋଟିଏ ତୀକ୍ଷ୍ଣ ଆଲୁଅର ରେଖା ସେ ନଳାମୁହଁ ବାଟେ ଦେଖାଗଲା । ଗୋବର୍ଦ୍ଧନ ବାବୁ କ୍ଷିପ୍ର ଗତିରେ ଗୋଟିଏ ବାଡ଼ି ଆଣି ସେଠି ଛିଡ଼ା ହୋଇ ରହିଲେ । କିଛିକ୍ଷଣ ପରେ ଦେଖିଲି, ଗୋଟିଏ ଖୁବ୍ ସରୁ ଅତି ବିଷାକ୍ତ ସାପ ଧୀରେ ଧୀରେ ନଳାମୁହଁ ବାଟେ ପ୍ରବେଶ କରୁଛି । ସେ ବାହାରୁ ନ ବାହାରୁଣୁ ଗୋବର୍ଦ୍ଧନ ବାବୁ ତାକୁ ମାରି ପକାଇଲେ । କିନ୍ତୁ କି ଭୟଙ୍କର ସେ କଥା ଭାବିଲେ ମୋତେ ଏପର୍ଯ୍ୟନ୍ତ ଡରମାଡ଼େ ।

ରାତି ନ ପାହୁଣୁ ଆମେ କଟକ ଯିବାକୁ ବାହାରି ପଡ଼ିଲୁ । ଏଡ଼େ ସକାଳୁ ମଧ୍ୟ ଦେଖିଲି ଯେ, ମେନେଜର ଫାଟକ ପାଖରେ ଛିଡ଼ା ହୋଇଛନ୍ତି । ଗୋବର୍ଦ୍ଧନ ବାବୁ ତାଙ୍କ ଆଡ଼କୁ ଚାହିଁ ଟିକିଏ ହସିଲେ । ମେନେଜର ନୀରବରେ ଜ୍ୱଳନ୍ତ ହିଂସାର ପ୍ରତିମୂର୍ତ୍ତି ଭଳି ଛିଡ଼ା ହୋଇ ରହିଲେ । ଏସବୁ ଘଟଣା କଥା ଭାବି ଆମେ ଏତେ ଭୀତ ହୋଇଥାଉଁ ଯେ, ରାସ୍ତାରେ କେହି କାହାରିକୁ କଥା କହି ପାରିଲୁ ନାହିଁ । ଗୋବର୍ଦ୍ଧନ ବାବୁ କିନ୍ତୁ ପୂର୍ବପରି ନିର୍ବିକାର । ଏ ଲୋକଙ୍କୁ କ'ଣ କୌଣସି କଥା ବିଚଳିତ କରିପାରେ ନାହିଁ ?

କଟକରେ ଆମେ ଗୋବର୍ଦ୍ଧନ ବାବୁଙ୍କ ବସାରେ ରହିଲୁ । ସମ୍ପୂର୍ଣ୍ଣ ନିରାପଦ ସ୍ଥାନରେ ପହଞ୍ଚିବା ପରେ ଆମ ମୁହଁରୁ କଥା ବାହାରିଲା । ବିଜୟ ବାବୁ କହିଲେ, ''ଗୋବର୍ଦ୍ଧନ ବାବୁ, ମୁଁ ଆଉ ବିଶେଷ କ'ଣ କହିବି । ଆପଣ ନଥିଲେ ପ୍ରତାପକୁ ମୁଁ କିମ୍ବା ଆଉ କେହି ସେ ଜାଲ ଭିତରୁ କାଢ଼ି ପାରନ୍ତେ ନାହିଁ । ଆପଣଙ୍କ ଅସୀମ ବୁଦ୍ଧି । କିନ୍ତୁ ଆପଣ ଏତେ ସନ୍ଦେହ କଲେ କିପରି ?''

''ସନ୍ଦେହର କାରଣ ପ୍ରଥମେ ପାଇଲି ପ୍ରତାପଙ୍କ ମନରୁ । ସେ ଛାତ୍ରାବସ୍ଥାରେ ଥିଲେ ଅତ୍ୟଧିକ ନିଷ୍ଠାପର ଓ ଧର୍ମପରାୟଣ । ଏପରି ଲୋକେ କେବେହେଁ ସମତା ରଖି ପାରନ୍ତି ନାହିଁ । ଏମାନେ ହୁଏତ ନିଷ୍ଠାର ଶେଷ ସୀମାକୁ ଯିବେ ଅଥବା ପାପର ଶେଷ ସୀମାକୁ ଯିବେ । କିନ୍ତୁ ଏମାନେ ନିଜେ କେବେହେଁ ସ୍ଖଳନର ସୁବିଧା ଖୋଜି ବୁଲନ୍ତି ନାହିଁ । କେହି ସୁବିଧା ଯୋଗାଇ ନ ଦେବା ପର୍ଯ୍ୟନ୍ତ ଏମାନେ ନିଷ୍ଠାପର ଥାଆନ୍ତି । ଏ ସୁବିଧା ପ୍ରତାପକୁ କିଏ ଦେଲା ? ଗାଁକୁ ବେଶ୍ୟା ଆସିଲା କୁଆଡୁ ? ସୁମତି ଦେବୀ ଓ ମେନେଜର ଏତେ ଡେରିରେ ପ୍ରତାପର ସ୍ଖଳନର ସମ୍ବାଦ ଆପଣଙ୍କୁ ଦେଲେ କାହିଁକି ? ମେନେଜର ସହିତ ସୁମତି ଦେବୀଙ୍କ ସମ୍ପର୍କ କିପରି ? ଏପରି ଚତୁର ମେନେଜର ସୁମତି ଦେବୀ ପାଇଲେ କେଉଁଠୁ ? ପ୍ରତାପର ବିବାହ ଏପର୍ଯ୍ୟନ୍ତ ହୋଇ ନାହିଁ କାହିଁକି ? ଯେଉଁ ଡାକ୍ତରଙ୍କ ଚିକିତ୍ସାରେ ପ୍ରତାପର ଉନ୍ନତି ହେଉଥିଲା, ସେ ହଠାତ୍ ହଇଜାରେ ମଲେ କାହିଁକି ? ଏହିସବୁ ସନ୍ଦେହ ହେବାରୁ ମୁଁ ନିଜେ ଗାଁକୁ ଯାଇ ଅନୁସନ୍ଧାନ କରିବାକୁ ମନ ସ୍ଥିର କଲି । ଦେଖିଲି ମେନେଜର କେବଳ ଚତୁର ନୁହନ୍ତି, ଖାଣ୍ଟି ବୈଜ୍ଞାନିକ ମଧ୍ୟ । ପୃଥିବୀରେ ଅନେକ ବୈଜ୍ଞାନିକ ଅଛନ୍ତି- ସେମାନଙ୍କ ଦ୍ୱାରା ଲୋକମାନଙ୍କର ବିଶେଷ କ୍ଷତି ହେଉଛି, କାରଣ ସେମାନେ ଦାର୍ଶନିକ ନୁହଁନ୍ତି । ଆଇନ୍‌ଷ୍ଟାଇନ୍ ହେଉଛନ୍ତି ବୈଜ୍ଞାନିକ ଓ ଦାର୍ଶନିକ । କିନ୍ତୁ ପରମାଣୁ ବୋମା, ପ୍ଲେଗ ବା ହଇଜା ବୋମା ଯେଉଁମାନେ ତିଆରି କରୁଛନ୍ତି, ସେମାନଙ୍କୁ ଦେଶପ୍ରେମୀ ବା ବୈଜ୍ଞାନିକ ଯାହା କୁହନ୍ତୁ, ସେମାନଙ୍କର ମନଟି ହେଉଛି ହତ୍ୟାକାରୀର ମନ । ସେମାନଙ୍କର ଜ୍ଞାନ ଓ ବୁଦ୍ଧି ସେମାନଙ୍କ ମନକୁ ଅଧିକ ବିପଜ୍ଜନକ କରିଦିଏ । କିନ୍ତୁ ତଥାପି ସେମାନଙ୍କର ବୁଦ୍ଧି ଦେଖି ଆଶ୍ଚର୍ଯ୍ୟ ଲାଗେ । ଆପଣ ଶୁଣି ବିସ୍ମିତ ହେବେ ଯେ, ମେନେଜର ପ୍ରାଣିତତ୍ତ୍ୱ ବିଷୟରେ ଗବେଷଣାମୂଳକ କେତେଗୁଡ଼ିଏ ମୂଲ୍ୟବାନ ପ୍ରବନ୍ଧ ଲେଖିଛନ୍ତି । ମେନେଜର ଜଣେ ଏହିପରି ଲୋକ । ଆମ ଦଣ୍ଡବିଧାନ ଆଇନରେ ଶରୀର-ହତ୍ୟା ପାଇଁ ଦଣ୍ଡ, କିନ୍ତୁ ମନର ହତ୍ୟା ପାଇଁ ଦଣ୍ଡ ନାହିଁ । ମେନେଜର ତେଣୁ ଏହି ସୁବିଧା ନେଇ ପ୍ରତାପର ମନକୁ ହତ୍ୟା କରିବା ପାଇଁ ଚେଷ୍ଟା କଲେ । ପ୍ରତାପର ଶରୀରକୁ ସ୍ୱାଧୀନତା ଦେଇ ସେ ମନଟି ବାନ୍ଧି ରଖିଲେ । ପ୍ରତାପର ଏ ବ୍ୟାଧି ମଦ ଖାଇବା ପାଇଁ ନୁହେଁ କିମ୍ବା ବେଶ୍ୟା ପାଇଁ ନୁହେଁ, ଏହା ମେନେଜର ଦତ୍ତ ସିଫିଲିସ ବିଷ । ସମସ୍ତେ ସନ୍ଦେହ କରିବେ ଯେ, ପ୍ରତାପ ତା'ର ଦୁର୍ନୀତି ସକାଶେ ଏ ବ୍ୟାଧି ଆଣିଛି । ପ୍ରଥମେ ଏ ମନଟିକୁ ମୁକୁଳାଇବାକୁ ମୁଁ ଚେଷ୍ଟା କଲି । ସେ ବେଶ୍ୟା ମେନେଜର

ଶିକ୍ଷାରେ ନିଜକୁ ଅସାଧାରଣ ନାରୀ ବୋଲି ଚିତ୍ରିତ କଲେ ହେଁ ମୁଁ ଦେଖିଲି ସେ ଅତି ସାଧାରଣ ବେଶ୍ୟା । ଅର୍ଥର ଲୋଭ ଦେଖାଇ ମୁଁ ତାକୁ ନିଜର କରି ଦିନେ ରାତିରେ ତା' ଘରେ ଥିବାବେଳେ ପ୍ରତାପ ଆସୁଥିବାର ଜାଣିପାରି ମୁଁ ପାଟିକରି କହିଲି, ''ନା, ନା, ପ୍ରତାପକୁ ବିଷ ଦେବା ଦରକାର ନାହିଁ, ଆମେ କାଲି ପଳାଇବା ।'' ପ୍ରତାପ ଏହା ଶୁଣି ନିଶ୍ଚୟ ବେଶ୍ୟା ପ୍ରତି ଘୃଣା ହେବ ମୁଁ ଜାଣିଥିଲି । ଏହାପରେ ବୁଝିଲି ଯେ, ମେନେଜର ବର୍ତ୍ତମାନ ପ୍ରତାପକୁ ହତ୍ୟା କରିବାକୁ ଚେଷ୍ଟା କରିବ । ଏହାପାଇଁ ମୁଁ ପ୍ରସ୍ତୁତ ଥିଲି । ସାପ ବା ହଇଜାରୁ ଯେ ମୃତ୍ୟୁ ହେବ, ଏହା ମୁଁ ଜାଣିଥିଲି । ପ୍ରତାପ ରକ୍ଷା ପାଇବା ପରେ ଏ ଚକ୍ରାନ୍ତର ଏକମାତ୍ର ସାକ୍ଷୀ ସେହି ବେଶ୍ୟାକୁ ଯେ ମେନେଜର ହତ୍ୟା କରିବ, ତାହା ମଧ ମୁଁ ଜାଣିଥିଲି । ମେନେଜର ପ୍ରଥମେ ତା'ର ଜ୍ଞାନ ଦ୍ୱାରା ଆମକୁ ଅଭିଭୂତ କରିବାର ଚେଷ୍ଟା କଲା । ମନୁଷ୍ୟର ମନ ସହିତ ତାହାର ନିଗୂଢ଼ ପରିଚୟ ଅଛି । ମୁଁ ମଧ ମୋର ଅସ୍ତ୍ର ଛାଡ଼ିଲି; ଦେଖାଇଲି ଯେ, ମୁଁ ଗୋଟିଏ ଅତିବୋକା ଲୋକ । ମେନେଜରର ଅସ୍ତ୍ର ବିଫଳ ହେଲା, କିନ୍ତୁ ମୋ ଅସ୍ତ୍ର ସଫଳ ହେଲା । ସେ ଦିନ ରାତିରେ ଭାବିଥିଲି ଆକ୍ରମଣ ମୋ ଉପରେ ହେବ, କିନ୍ତୁ ହେଲା ପ୍ରତାପ ଉପରେ । ପ୍ରସ୍ତୁତ ଥିବାରୁ ପ୍ରତାପ ରକ୍ଷା ପାଇଲେ । ତା'ପରେ ଯାହା ହେଲା ଆପଣ ତ ଜାଣନ୍ତି । କିନ୍ତୁ କି ସୁନ୍ଦର ଉପାୟ ମେନେଜର ବାହାର କରିଛି । ତା'ର ଆଚରଣରୁ ସନ୍ଦେହ କରିବାର କେହି କିଛି ପାଇବେ ନାହିଁ, ଅଥଚ ସେ ତିଳେ ତିଳେ ହତ୍ୟା କରୁଛି । ଡାକ୍ତରକୁ ହଇଜା ବୀଜାଣୁରେ ମେନେଜର ହିଁ ମାରିଛି ।''

ଆମେ ନିଃଶବ୍ଦରେ ଶୁଣିଲୁ । ଏ ଚକ୍ରାନ୍ତରୁ ପ୍ରତାପକୁ ଉଦ୍ଧାର କରିବାକୁ ଗୋବର୍ଦ୍ଧନ ବାବୁ ଛଡ଼ା ଆଉ କେହି ପାରିଥାନ୍ତା ମୋର ବିଶ୍ୱାସ ହେଉ ନାହିଁ । ପୁଲିସକୁ ଜଣାଇ ତ ଲାଭ ନାହିଁ, କାରଣ 'ଯାହାକୁ ତିଳେ ତିଳେ ହତ୍ୟା କରାହେଉଛି, ସେ ତ ଆଗ୍ରହରେ ତାହା ଗ୍ରହଣ କରୁଛି । ଏ କ୍ଷେତ୍ରରେ ପୁଲିସ କ'ଣ କରିପାରେ ? ତା' ଛଡ଼ା ପ୍ରମାଣ କାହିଁ ଯେ ମେନେଜର ଏ ଚକ୍ରାନ୍ତ କରୁଛି ?

ବିଜୟ ବାବୁ ଅନେକ ଦିନ କଟକରେ ରହି ବହୁ ଅର୍ଥ ବ୍ୟୟ କରି ପ୍ରତାପକୁ ଭଲ କଲେ । ଯିବାବେଳେ ସେ ନିତାନ୍ତ ବାଧ କରି ଗୋବର୍ଦ୍ଧନ ବାବୁଙ୍କୁ ଦଶ ହଜାର ଟଙ୍କା ଦେଇଗଲେ । କିଛି ଦିନ ପରେ ମୁଁ ବିଜୟ ବାବୁଙ୍କଠୁଁ ଖବର ପାଇଲି ଯେ, ପ୍ରତାପ ସନ୍ନ୍ୟାସୀ ହୋଇ ବାହାରି ଯାଇଛି । ଗୋବର୍ଦ୍ଧନ ବାବୁ ଶୁଣି କହିଲେ, ''ଏହା ମୁଁ ଜାଣିଥିଲି । ଏପରି ଲୋକଙ୍କ ଦ୍ୱାରା ପୃଥିବୀର କେବେ ହେଁ ଉପକାର ହେବ ନାହିଁ । କିନ୍ତୁ ଏ ପରାଜୟ କାହାର- ମୋର, ନା ମେନେଜରର ନା ବିଜୟ ବାବୁଙ୍କର, ନା ପ୍ରତାପର, ନା ପ୍ରକୃତିର ? ମୋର ମନେହୁଏ, ଏହା ପ୍ରକୃତିର ପ୍ରତିଶୋଧ । ପ୍ରକୃତିର କୌଣସି ଉଦ୍ଦେଶ୍ୟ ଏପରି ଲୋକଙ୍କ ଦ୍ୱାରା ସାଧିତ ହୋଇପାରିବ ନାହିଁ ।''

* * *

# ବିକୃତି

ଗୋବର୍ଦ୍ଧନ ବାବୁଙ୍କ ଅନୁସନ୍ଧାନଗୁଡ଼ିକ ଯେତେବେଳେ ମୁଁ ଲେଖାରେ ପ୍ରକାଶ କରିବାର ଇଚ୍ଛା ପ୍ରକାଶ କଲି, ସେତେବେଳେ ସେ ଘୋର ଆପତ୍ତି କଲେ । ମୁଁ ବିଶେଷ ଅନୁରୋଧ କରିବାରୁ ସେ କହିଲେ, ''ଏପରି ଘଟଣାଗୁଡ଼ିକର ଦୁଇଟି ଦିଗ ଅଛି - ଗୋଟିଏ ଦିଗ କୌତୂହଳୋଦ୍ଦୀପକ ଏବଂ ଅନ୍ୟଟି ବିଜ୍ଞାନ । ଯଦି ନିହାତି ତୁମେ ମୋର ଅନୁସନ୍ଧାନ ଗୁଡ଼ିକ ପ୍ରକାଶ କରିବାକୁ ଚାହଁ, ତେବେ ମୋର ଅନୁରୋଧ ଯେ ତୁମେ କେବଳ ବୈଜ୍ଞାନିକ ଦୃଷ୍ଟିରୁ ପ୍ରତ୍ୟେକ ଘଟଣାଟି ଦେଖିବ । ତୁମେ ଯେଉଁ ତିନୋଟି ଘଟଣା ପ୍ରକାଶ କରିଛ, ତାହା ମୁଁ ପଢ଼ିଛି । ମୋର ପରାମର୍ଶ ନେଇଥିଲେ ସେ ଲେଖାକୁ ମୁଁ ଅନ୍ୟ ରୂପ ଦେଇ ଥାଆନ୍ତି । ତୁମେ ସେ ଘଟଣାଗୁଡ଼ିକର କୌତୂହଳ ଦିଗଟାହିଁ ବେଶୀ କରି ଲେଖିଛ ।'' ଗୋବର୍ଦ୍ଧନ ବାବୁ ଇତିମଧ୍ୟରେ ଅନେକଗୁଡ଼ିଏ ଘଟଣା ଅନୁସନ୍ଧାନ କରି ସାରିଲେଣି । ଦୁଇ ତିନୋଟିରେ ମୁଁ ତାଙ୍କୁ ସାମାନ୍ୟ ସାହାଯ୍ୟ କରିଛି, ଅନ୍ୟଗୁଡ଼ିକ କୌଣସି କାରଣରୁ ସେ ମୋ ଅଜ୍ଞାତରେ ଅନୁସନ୍ଧାନ କରିଛନ୍ତି । ଯେଉଁ ଗୁଡ଼ିକରେ ମୁଁ ତାଙ୍କୁ ସାମାନ୍ୟ ସାହାଯ୍ୟ କରିଛି ସେଗୁଡ଼ିକ ମଧ୍ୟରୁ ଗୋଟିଏ ସୁଦ୍ଧା ପ୍ରକାଶ ଯୋଗ୍ୟ ମନେ କରେ ନାହିଁ । କିନ୍ତୁ ଗୋବର୍ଦ୍ଧନ ବାବୁଙ୍କ ମତରେ ସେଗୁଡ଼ିକ ମଧ୍ୟରୁ ଅନ୍ତତଃ ଯୋଡ଼ିଏ ମନୋବିଜ୍ଞାନ ଦୃଷ୍ଟିରୁ ବିଶେଷ ପ୍ରକାଶଯୋଗ୍ୟ । ପ୍ରଥମଟି ତା'ର ହେଲା କୋରାପୁଟର ଗୋଟିଏ ଘଟଣା ଯାହାକୁ ଗୋବର୍ଦ୍ଧନ ବାବୁ ବିଶେଷ ପ୍ରାଧାନ୍ୟ ଦିଅନ୍ତି । ଘଟଣାଟି ବିଶେଷ କିଛି ନୁହେଁ । କଲନ୍ତରା ନାମକ ଜଣେ ବୃଦ୍ଧ ସାନ୍ତାଳ ତା'ର ପୁଅର ସ୍ତ୍ରୀ ମୁଂରୀକୁ ଅମାନୁଷିକ ଭାବରେ ହତ୍ୟା କରେ । ଦୁହେଁ ଜଙ୍ଗଲରେ କାଠ କାଟିବା ସମୟରେ କଲନ୍ତରା କୁରାଢ଼ି ଦ୍ୱାରା ମୁଂରୀକୁ ଟିକି ଟିକି କରି କାଟି ପକାଏ । ଗୋବର୍ଦ୍ଧନ ବାବୁ ଓ ମୁଁ ସେତେବେଳେ କୋରାପୁଟରେ ଥିଲୁ । ପୁଲିସ ପ୍ରମାଣ କରେ ଯେ, କଲନ୍ତରା ଜଙ୍ଗଲରେ ମୁଂରୀ ସହିତ ଅବୈଧ ସମ୍ପର୍କ ସ୍ଥାପନ କରିବାକୁ ଚେଷ୍ଟା କରେ ଏବଂ ମୁଂରୀ ରାଜି ନ ହେବାରୁ କଲନ୍ତରା ତାକୁ କ୍ରୋଧରେ ଟିକି ଟିକି କରି କାଟି ପକାଏ । କୋର୍ଟ ଏହା ବିଶ୍ୱାସ କରି କଲନ୍ତରାକୁ ଫାଶି ଦିଏ । ଗୋବର୍ଦ୍ଧନ ବାବୁ କିନ୍ତୁ ଘଟଣାଟିକୁ ଅନ୍ୟ ଦିଗରୁ ଦେଖନ୍ତି । ସେ କହନ୍ତି, ପ୍ରକୃତିର ଅତି ନିକଟ ଦେଇ ବହୁଥିବା ଏହି ଜଙ୍ଗଲୀଙ୍କ ଜୀବନଧାରାରେ ଏଭଳି ବଳପୂର୍ବକ ସମ୍ପର୍କ ସ୍ଥାପନର ଚେଷ୍ଟା ସେମାନଙ୍କ ମନର ଅତୀତ କହିଲେ ଚଳେ, ତା'ଛଡ଼ା ଟିକି ଟିକି କରି କାଟି ପକାଇବା କେବଳ ବହୁ ଦିନ ଧରି ରାଗ ରଖିଥିବା ଲୋକ ପକ୍ଷରେ ସମ୍ଭବ । ସେ ମଧ୍ୟ କହନ୍ତି ସେଇ ବଳାତ୍ ସମ୍ପର୍କ ଭଳିଆ କୃତ୍ରିମ ଜିନିଷ ଆମର

ଏଇ 'ସଭ୍ୟ' ସମାଜରେ କେବଳ ସମ୍ଭବ ନୁହେଁ, ଅବଶ୍ୟମ୍ଭାବୀ । ଏଠାର ହଜାର କୃତ୍ରିମତା ପରସ୍ପରର ଜନ୍ମଦାତା । ଜନ୍ମଦାତା କଦବା ବୀଭତ୍ସ ବିକୃତିର ମଧ୍ୟ ! ଗୋବର୍ଦ୍ଧନ ବାବୁ ଅନୁସନ୍ଧାନ କରି ଦେଖନ୍ତି ଯେ ବୃଦ୍ଧ ବିପତ୍ନୀକ । ସ୍ତ୍ରୀ ମରିଯିବା ପରେ ତା'ର ସମସ୍ତ ସ୍ନେହ ତା'ର ଏକମାତ୍ର ପୁତ୍ରକୁ ଅବଲମ୍ବନ କରି ରହିଥିଲା । ସେଇ ପୁଅ ମୁଂରୀକୁ ବିବାହ କରିବା ପରଠୁଁ କଳନ୍ତରା ସହିତ ପ୍ରାୟ କଳହ କରେ ଏବଂ ଶେଷରେ ବାପଠୁଁ ଭିନ୍ନ ହୋଇଯାଏ । ବୃଦ୍ଧ ପକ୍ଷରେ ଏ ବିଚ୍ଛେଦ ଅସହ୍ୟ ହୁଏ, ସେ ବହୁତ ଅନୁରୋଧ ଉପରୋଧ କରି ପୁଅ ଓ ମୁଂରୀକୁ ନିଜ ଘରକୁ ଫେରାଇ ଆଣେ । ପୁଣି ଦିନେ ତା'ର ପୁଅ ତା' ସହିତ କଳହ କରି ଭିନ୍ନ ହୋଇଯିବାର ଇଚ୍ଛା ପ୍ରକାଶ କରିବାରୁ କଳନ୍ତରା ଏସବୁର ମୂଳ କାରଣ ମୁଂରୀ ଭାବି ତାହାକୁ ହତ୍ୟା କରେ । ଦଣ୍ଡ ଦେବା ପାଇଁ ଏହା ଯଥେଷ୍ଟ କାରଣ ନୁହଁ ଭାବି ପୋଲିସ ସମସ୍ତ ଘଟଣାଟିକୁ ଗୋଟିଏ ଜଘନ୍ୟ ରୂପ ଦିଏ । ଏ ଘଟଣା ବିଷୟରେ ଗୋବର୍ଦ୍ଧନ ବାବୁ ତାଙ୍କ ନୋଟ ବହିରେ ଲେଖିଛନ୍ତି :- ''ସ୍ନେହ ବା ପ୍ରେମର ଦୁଇଟି ଦିଗ ଅଛି; ଯଥା ନିଜର ସୁଖ ଏବଂ ଯାହାକୁ ଭଲ ଲାଗେ ତା'ର ମଙ୍ଗଳ ଇଚ୍ଛା । ଏ ଦୁଇଟି ଦିଗ ଯେଉଁ ପ୍ରେମରେ ପ୍ରକାଶ ପାଇବ, ତାହା ମଙ୍ଗଳକର । କେବଳ ପ୍ରଥମଟି ଥିଲେ ତାହା ଆଣିଦେବ ହିଂସା ଓ କେବଳ ଦ୍ୱିତୀୟଟି ଥିଲେ ଆଣିଦେବ ବୈରାଗ୍ୟ । କଳନ୍ତରାର ପୁତ୍ର ସ୍ନେହରେ କେବଳ ପ୍ରଥମଟି ଦେଖିବାକୁ ମିଳେ, ତଜ୍ଜନିତ ହିଂସା ହତ୍ୟା ପକ୍ଷରେ ଯଥେଷ୍ଟ ।'' ତାଙ୍କର ଟିପ୍‌ପଣୀରୁ ମୁଁ ବିଶେଷ କିଛି ବୁଝିପାରିଲି ନାହିଁ, କନ୍ତୁ ଗୋବର୍ଦ୍ଧନ ବାବୁଙ୍କ ମତରେ ମନୋବିଜ୍ଞାନ ଦୃଷ୍ଟିରୁ ଏହା ପ୍ରକାଶଯୋଗ୍ୟ ।

ସେ ପସନ୍ଦ କରୁଥିବା ଅନ୍ୟ ଘଟଣାଟି ପ୍ରାୟ ଦୁଇବର୍ଷ ତଳର କଥା, ସେଇଟା ମଧ୍ୟ ପ୍ରକାଶଯୋଗ୍ୟ ବୋଲି ମୋର ମତ ନୁହଁ । ତା' କଥା ଭାବିଲେ ଅସୀମ ଘୃଣାରେ ମୋର ବିକାର ଜନ୍ମେ । କିନ୍ତୁ ତଥାପି ଗୋବର୍ଦ୍ଧନ ବାବୁ ପ୍ରକାଶ କରିବାକୁ ବାଧ୍ୟ କରିବାରୁ ମୁଁ ତାହା କରୁଛି । ଏ ଘଟଣା ବିଷୟରେ ଗୋବର୍ଦ୍ଧନ ବାବୁଙ୍କ ସିଦ୍ଧାନ୍ତ ଯଦି ସତ୍ୟ ହୁଏ, ତେବେ ମୁଁ କହିବି ଯେ, ମନୁଷ୍ୟର ମନ ତା'ର କ୍ରମବିକାଶ ଦିଗରେ ଯେତିକି ସାହାଯ୍ୟ କରୁଛି, ବିଲୁପ୍ତି ଦିଗରେ ମଧ୍ୟ ସେତିକି ସାହାଯ୍ୟ କରୁଛି । ମସ୍ତିଷ୍କ ଭିତରେ ସେଇ ପାଉଁଶିଆ ବର୍ଣ୍ଣ ଅଂଶଟି ବୋଧହୁଏ ସୃଷ୍ଟିର ପରାକାଷ୍ଠା । ଅଦମ୍ୟ ତା'ର ପ୍ରକାଶ, ଏଇ ମନ । ଗୋଟାଏ ଦିଗରେ ଏହାର ଗତିକୁ ରୋଧ କଲେ ଏହା ଅନ୍ୟ ଦିଗରେ ଅନ୍ୟ ରୂପ ପ୍ରକାଶ ପାଏ । ତେଣୁ ଜାଣି ହୁଏ ନାହିଁ ଯେ, ଏହାର ପ୍ରକୃତ କାରଣ କ'ଣ ? ହୁଏତ ଜୀବନର ଗୋଟିଏ ଅପୂର୍ଣ୍ଣ କ୍ଷୁଦ୍ର ଆଶା ଦେଖା ଦେବ ଦିନେ ପରିଶ୍ରମକାତରତା ବା କଳହପ୍ରିତା ରୂପ ନେଇ । ସେ ଇଚ୍ଛାଗୁଡ଼ିକ ଭିତରୁ ହୁଏତ କେତେଗୁଡ଼ିଏ ସମାଜର ହିତ ଦୃଷ୍ଟିରୁ ଅପ୍ରିୟ । କିନ୍ତୁ ସେଗୁଡ଼ିକ ଯଦି ଆଦୌ ଚାପି ଦିଆଯାଏ, ତା'ହେଲେ ତାହାର ବାହ୍ୟ ପ୍ରକାଶ ହୁଏତ ବନ୍ଦ ହୋଇପାରେ, କିନ୍ତୁ ତାହାର ଯେଉଁ ଗୁପ୍ତ ବିକୃତି ହେବ ତାହା ସମାଜ ପକ୍ଷରେ ଆପାତତଃ ହାନିକାରକ ନ

ହେଲେ ହେଁ କ୍ରମେ କ୍ରମେ ସମସ୍ତ ସମାଜକୁ ଅବନତି ଆଡ଼କୁ ଟାଣି ନେବ । କେତେକ ବର୍ଷ ପରେ ହୁଏତ ଦେଖାଯିବ ଯେ ଗୋଟିକ ସମାଜ ଯାକରେ ନୈତିକ ଅଧଃପତନ ହୋଇଛି । ମୋର ମନେହୁଏ, ବିଦେଶୀ ଶାସକ ଆମର ସମସ୍ତ ମୌଳିକ ଇଚ୍ଛାଗୁଡ଼ିକ ଏହିପରି ଚାପି ରଖିବାରୁ ଆମର ନୈତିକ ଅଧଃପତନ ଘଟିଛି । ବର୍ତ୍ତମାନ ସ୍ୱାଧୀନତା ପରେ ଏଗୁଡ଼ିକୁ ପୁଣି ନ ସଜାଡ଼ି ଯଦି ଅଧିକ ଦବାଇ ରଖାଯାଏ, ତା'ହେଲେ ପରିଣାମ ଅଧିକ ଖରାପ ହେବ । କାରଣ ମୋର ଧାରଣା, ବିପ୍ଳବୀ ଲୋକମାନଙ୍କୁ ନେଇ ଶାସନ ବରଂ ଚଳି ପାରେ, କିନ୍ତୁ ଯେଉଁମାନଙ୍କର ନୈତିକ ଅଧଃପତନ ଘଟିଛି ସେମାନଙ୍କୁ ଶାସନ କରିବା ଦୁଷ୍କର ।

ଗୋବର୍ଦ୍ଧନ ବାବୁଙ୍କ ବସାକୁ ଲାଗି ଗୋଟିଏ ବେଶ ବଡ଼ ଦୋମହଲା ଭଡ଼ା ଘର ଅଛି । ଅନେକ ଦିନରୁ ସେ ଘର ଖାଲି ପଡ଼ିଛି । ଦିନେ ମୁଁ ଓ ଗୋବର୍ଦ୍ଧନ ବାବୁ କାଠଯୋଡ଼ୀ କୂଳରୁ ସକାଳ ବୁଲା ସାରି ଫେରିବା ସମୟରେ ଦେଖିଲୁ ସେହି ଘର ସାମନାରେ ଅନେକଗୁଡ଼ିଏ ବଳଦ ଗାଡ଼ିରେ ଆଲମାରି ଖଟ ଆଦି ନାନା ଜିନିଷ ରହିଛି । ଗୋବର୍ଦ୍ଧନ ବାବୁ ଗାଡ଼ି ନିକଟରେ ଛିଡ଼ା ହୋଇ ମୋତେ କହିଲେ, ''ଡାକ୍ତର, ତୁମର ଲକ୍ଷ୍ୟ କରିବାର ଶକ୍ତି କେତେଦୂର ବଢ଼ିଛି ତା'ର ପରୀକ୍ଷା ନେବି । କୁହତ ଏଇ ଜିନିଷଗୁଡ଼ିକ ଲକ୍ଷ୍ୟ କରି ତୁମେ ଏହାର ମାଲିକ ବିଷୟରେ କେତେଦୂର ଜାଣି ପାରୁଛ ।''

ମୁଁ ମାଲପତ୍ରଗୁଡ଼ିକ ଭଲ କରି ବୁଲି ଦେଖିଲି । କିନ୍ତୁ ବିଶେଷ କିଛି ଜାଣି ପାରିଲି ନାହିଁ । କହିଲି, ''ମୁଁ ବିଶେଷ କିଛି ଜାଣି ପାରୁ ନାହିଁ; ତେବେ ଭଦ୍ରଲୋକ ଦର୍ଶନ ବିଷୟରେ ଅନେକ ବହି ପଢ଼ନ୍ତି । ଏହି ଆଲମାରି ଗୁଡ଼ିକରେ କେବଳ ଦର୍ଶନ ବିଷୟକ ବହିଗୁଡ଼ିଏ ଅଛି । ପ୍ରତ୍ୟେକ ଆଲମାରି ଉପରେ ଲେଖା ଅଛି - ମନସ୍ତତ୍ତ୍ୱ, ପାଶ୍ଚାତ୍ୟ ଦର୍ଶନ, ପ୍ରାଚ୍ୟ ଦର୍ଶନ, ବେଦ ଇତ୍ୟାଦି ।''

ଗୋବର୍ଦ୍ଧନ ବାବୁ ହସି ହସି କହିଲେ, ''ଡାକ୍ତର ସାହେବ, ବଡ଼ ଆସ୍ତେ ଆସ୍ତେ ତୁମର ଉନ୍ନତି ହେଉଛି । ଜାଣିବାର ପ୍ରଧାନ ଉପାୟ ହେଉଛି ଯେ କୌଣସି ଜିନିଷ ଭଲ କରି ନ ଦେଖିବା ଆଗରୁ କିଛି ଭାବିବାକୁ ଚେଷ୍ଟା କରିବ ନାହିଁ । ତୁମେ ଅଧା ପନ୍ତରିଆ ଭାବରେ ଥରେ ଦେଖି ଗୋଟାଏ ସିଦ୍ଧାନ୍ତକୁ ଆସିବାକୁ ଚେଷ୍ଟା କରୁଛ । ତେଣୁ ମନର ଏ ବ୍ୟଗ୍ରତା ରୋଧ କରି ନ ପାରିବା ଯୋଗୁଁ ସୂକ୍ଷ୍ମ ପ୍ରମାଣଗୁଡ଼ିକ ତୁମ ଆଖିରେ ପଡୁ ନାହିଁ । କହିଲ, କେତୋଟି ବଳଦଗାଡ଼ି ଏଠି ଅଛି ?''

''୧୦/୧୨ଟି ହେବ ।''

''ଏଟା ବୈଜ୍ଞାନିକ ଭଳି ଉତ୍ତର ହେଲା ନାହିଁ । ପନ୍ଦରଟି ଗାଡ଼ିରେ ମାଲପତ୍ର ଆସିଛି । ସେଥି ଭିତରୁ ଦଶଟି ଗାଡ଼ିରେ କେବଳ ବହି ଆଲମାରି ଅଛି । ବହିଗୁଡ଼ିକ ଲାଇବ୍ରେରିରେ ରହିବା ଭଳି ବାବଦ ବାବଦ ହୋଇ ରହିଛି । ଏହି ବିଭାଗ ମାନଙ୍କରୁ ମୋର ଅନୁମାନ ହୁଏ, ଦର୍ଶନ ଓ ମନସ୍ତତ୍ତ୍ୱ ବିଷୟରେ ପ୍ରାଚ୍ୟ ଓ ପାଶ୍ଚାତ୍ୟ ଚିନ୍ତାଧାରାର ଏପରି କୌଣସି ବିଷୟ

ନାହିଁ, ଯାହା ଏହି ଲାଇବ୍ରେରିରେ ନାହିଁ । ଭଦ୍ରଲୋକ କେବଳ ଦର୍ଶନ ହିଁ ପଢ଼ନ୍ତି ଓ ଗବେଷଣା ମଧ୍ୟ କରନ୍ତି । ଏ ଆଲମାରିର ବହିଗୁଡ଼ିକର ଦାମ ଆଠ ହଜାରରୁ କମ୍ ହେବ ନାହିଁ । ତେବେ ଭଦ୍ରଲୋକ କ'ଣ ଧନୀ ? ବର୍ତ୍ତମାନ ଭଦ୍ରଲୋକଙ୍କ ଅନ୍ୟାନ୍ୟ ଜିନିଷଗୁଡ଼ିକ ପ୍ରତି ଲକ୍ଷ୍ୟ କର ଦେଖ, ତାଙ୍କର ଗୃହର ସାମଗ୍ରୀ କେତେ ସାମାନ୍ୟ-ଦୁଇଟି ଖଟ, ସାମାନ୍ୟ ବିଛଣା, କେତେଗୁଡ଼ିଏ ପୁରୁଣା ଟ୍ରଙ୍କ ଓ ସୁଟ୍‌କେସ, ଗୋଟିଏ ସିଲେଇ କଳ, ଠାକୁର ଖଟୁଲି, ଗୋଟିଏ ସୋଲର ଟୋପି ('ସୋଲା ହ୍ୟାଟ୍') ଓ ଚାରୋଟି ବୁଲିଯିବା ବାଡ଼ି, ଗୋଟିଏ ପଢ଼ିବା ଟେବୁଲ, ଦଶଟି ଅଳ୍ପ ଦାମର ଚୌକି, ରନ୍ଧାବଢ଼ାର ସାମଗ୍ରୀ ଏବଂ ଏଇଟି ଚାକରର ସୁଟ୍‌କେସ ଓ ବିଛଣା । ଏହି ସାମାନ୍ୟ ସାମଗ୍ରୀରୁ ମନେହୁଏ ନା ଭଦ୍ରଲୋକ ଧନୀ । ତେବେ ଏହାଙ୍କ ବ୍ୟବସାୟ କ'ଣ ? ଓକିଲ ନୁହଁନ୍ତି, ଡାକ୍ତର ନୁହଁନ୍ତି, ବ୍ୟବସାୟୀ ନୁହଁନ୍ତି, ଏକଥା ବେଶ୍ ଜଣାପଡୁଛି । ଅତଏବ ଅଧ୍ୟାପକ ଏବଂ ଦର୍ଶନ ଶାସ୍ତ୍ର ଅଧ୍ୟାପକ । ଟୋପିଟି ଦେଖ କେଡ଼େ ବଡ଼ । ସାଧାରଣତଃ ଏ ଆକାରର ଟୋପି ବଜାରରେ ମିଳେ ନାହିଁ । ଭଦ୍ରଲୋକଙ୍କର ମୁଣ୍ଡଟି ଅସ୍ୱାଭାବିକ ବଡ଼ । ମନେହୁଏ, ସେ ଖୁବ୍ ପଣ୍ଡିତ ଓ ମେଧାବୀ । ଏ ଟୋପିଟିରୁ ମନେହୁଏ, ଭଦ୍ରଲୋକ ଇଂରାଜୀ ପୋଷାକ ବ୍ୟବହାର କରନ୍ତି । କିନ୍ତୁ ସୌଖୀନତାରେ ନୁହେଁ, କାରଣ ଗୋଟିଏ ମାତ୍ର ଟୋପି ଅଛି । ଅତଏବ ଭଦ୍ରଲୋକ ଚାକିରି ପାଇଁ ନିଶ୍ଚୟ ଏ ପୋଷାକ ବ୍ୟବହାର କରନ୍ତି । ଅତଏବ ସେ ଯେ ଅଧ୍ୟାପକ, ଏ ଟୋପିଟି ତା'ର ଆଉ ଗୋଟିଏ ପ୍ରମାଣ । ଏ ଖଟ ଦୁଇଟି ଦେଖ । ଖଟ ଦୁଇଟି ଏକ ପ୍ରକାରର । ନିଶ୍ଚୟ ବିବାହର ଯୌତୁକ ଖଟ । ଖଟଟି ପ୍ରାୟ ଦଶ ବର୍ଷର ପୁରୁଣା । ଅତଏବ ବିବାହ ଦଶ ବର୍ଷ ଆଗେ ହୋଇଛି । ଭଦ୍ରଲୋକଙ୍କ ସନ୍ତାନ ବୋଧହୁଏ କେହି ନାହାନ୍ତି - କାରଣ ସାନ ଖଟ, ଦୋଳଣା ବା ସାନପିଲା ପଢ଼ିବା ଟେବୁଲ ନାହିଁ । ବୁଲିଯିବା ବାଡ଼ିଗୁଡ଼ିକ ଦେଖ । ତିରିଶ ବର୍ଷଠୁଁ କମ ବୟସର ଲୋକେ ପ୍ରାୟ କେହି ବୁଲିଯିବା ବାଡ଼ି ବ୍ୟବହାର କରନ୍ତି ନାହିଁ । ତିରିଷ ବର୍ଷ ଉପରେ ଭିନ୍ନ ଭିନ୍ନ ଧରଣ ବାଡ଼ି ବ୍ୟବହାର କରନ୍ତି । କମ୍ ବୟସର ବାଡ଼ି ସଉକ ପାଇଁ ଓ ବେଶୀ ବୟସର ବାଡ଼ି ନିର୍ଭର ପାଇଁ । ଏ ଦୁଇଟିର ସମନ୍ୱୟ ପ୍ରାୟ ଚାଳିଶ ବର୍ଷର ଲୋକଙ୍କ ବୁଲିଯିବା ବାଡ଼ିରେ ଦେଖାଯାଏ । ଏଇ ବାଡ଼ିଗୁଡ଼ିକରୁ ମନେହୁଏ, ଭଦ୍ରଲୋକଙ୍କ ବୟସ ଚାଳିଶ ହେବ । ତାଙ୍କର ସ୍ତ୍ରୀ ଘରେ ସିଲାଇ ଓ ଠାକୁର ପୂଜା କରନ୍ତି । ସିଲେଇ ମେଶିନଟି ପ୍ରାୟ ବର୍ଷକ ଆଗରୁ କିଣା ହୋଇଛି - ଅନ୍ତତଃ ବେଶୀ ଦିନର ପୁରୁଣା ନୁହେଁ । ମୋର ମନେହୁଏ, ଭଦ୍ରଲୋକଙ୍କ ଆର୍ଥିକ ଅବସ୍ଥା ଭଲ ଜଣାଯାଉ ନାହିଁ । କିନ୍ତୁ ମୋର ଧାରଣା ଯଦି ଭ୍ରାନ୍ତ ନ ହୁଏ, ତେବେ ଏଇ ଘୋଡ଼ା ଗାଡ଼ିରେ ସେ ଭଦ୍ରଲୋକ ଆସୁଛନ୍ତି ।''

କହୁ କହୁ ଘୋଡ଼ା ଗାଡ଼ି ଆସି କୋଠା ସାମନାରେ ଛିଡ଼ା ହେଲା । ସେଥିରୁ ବାହାରିଲେ ଜଣେ ଦୀର୍ଘ ଓ କ୍ଷୀଣକାୟ ଭଦ୍ରଲୋକ । ପ୍ରଥମ ଦୃଷ୍ଟିରେ ହିଁ ଆଖିରେ ପଡ଼େ ଭଦ୍ରଲୋକଙ୍କ ପ୍ରକାଣ୍ଡ ମୁଣ୍ଡଟି, ଖଣ୍ଡା ଧାର ଭଳି ନାକ, ବଡ଼ ବଡ଼ ଅବିନ୍ୟସ୍ତ ବାଳଗୁଡ଼ିକ ଅଧିକାଂଶ ପାଚି

ଯାଇଛି । ବଡ଼ ବଡ଼ ଆଖି ଯୋଡ଼ିକରେ ଦାର୍ଶନିକର ଉଦାସ ଚାହାଣୀ; କିନ୍ତୁ ସେଥିରେ ବିଷାଦର ଛାୟା ସୁସ୍ପଷ୍ଟ । ସେ ପିନ୍ଧିଛନ୍ତି ଖଣ୍ଡେ ସାଧାରଣ ମୋଟା ଧୋତି ଓ ପଞ୍ଜାବି । ଭଦ୍ରଲୋକ ଗାଡ଼ିରୁ ଜଣେ ଭଦ୍ର ମହିଳାଙ୍କ ହାତ ଧରି ଓହ୍ଲାଇଲେ । ମୁଁ ତାଙ୍କୁ ଦେଖି ଅବାକ୍ ହୋଇଗଲି । କଲେଜ ଛାଡ଼ିବା ପରଠୁଁ ସୁଚାରୁ ଦେବୀଙ୍କୁ ମୁଁ ଏଇ ପ୍ରଥମ ଦେଖିଲି । ସେହି ପରି ସୁନ୍ଦର, ଗମ୍ଭୀର ଓ ବ୍ୟକ୍ତିତ୍ୱପୂର୍ଣ୍ଣ ଚେହେରା । ତାଙ୍କର ଆଖି ଦିଓଟି ଭାରୀ ସୁନ୍ଦର, କିନ୍ତୁ ଦେଖିଲି ବିଷାଦର କାଳିମା ତାଙ୍କର ଆଖିର ସୌନ୍ଦର୍ଯ୍ୟକୁ ମ୍ଳାନ କରି ଦେଇଛି । ଶୁଣିଥିଲି, ସେ ଅଧ୍ୟାପକ ମିଶ୍ରଙ୍କୁ ବିବାହ କରିଛନ୍ତି । ମିଶ୍ର ମହାଶୟଙ୍କ ନାମ ବର୍ତ୍ତମାନ ବିଦ୍ୱାନ ସମାଜରେ ସୁପରିଚିତ । ଦର୍ଶନ ବିଷୟରେ ଗବେଷଣାମୂଳକ ପ୍ରବନ୍ଧ ପାଇଁ ସେ ଆନ୍ତର୍ଜାତିକ ଖ୍ୟାତି ଅର୍ଜନ କରିଛନ୍ତି । ସୁଚାରୁ ଦେବୀଙ୍କ ସହିତ ଭଦ୍ରଲୋକଙ୍କୁ ଦେଖି ମୋର ସନ୍ଦେହ ରହିଲା ନାହିଁ ଯେ ସେ ଅଧ୍ୟାପକ ମିଶ୍ର । ସୁଚାରୁ ଦେବୀ ମୋତେ ଚିହ୍ନିପାରି ନମସ୍କାର କଲେ ଓ ମିଶ୍ର ମହାଶୟଙ୍କ ସହିତ ପରିଚୟ କରାଇ ଦେଲେ । ମୁଁ ମଧ୍ୟ ଗୋବର୍ଦ୍ଧନ ବାବୁଙ୍କୁ ସେମାନଙ୍କ ସହିତ ପରିଚୟ କରାଇଦେଇ କହିଲି, ‘‘ଆପଣମାନେ ଆସିବା ପୂର୍ବରୁ ଜିନିଷ ପତ୍ର ଦେଖି ଆପଣମାନଙ୍କ ବିଷୟରେ ଅନେକ କଥା ଗୋବର୍ଦ୍ଧନ ବାବୁ ଜାଣି ପାରିଛନ୍ତି ।’’ ମିଶ୍ର ମହାଶୟ ଖୁବ୍ ଆନନ୍ଦିତ ହୋଇ କହିଲେ, ‘‘ସତେ ! ମୋର ଧାରଣା ଯେ, ହୋମ୍‌ସ୍‌ଙ୍କ ଚରିତ୍ର କେବଳ କଳ୍ପନା ନୁହେଁ । ଅନେକ ବୁଦ୍ଧିମାନ ଲୋକ ମିଳିବେ, କିନ୍ତୁ ସ୍ଥିତଧୀ ଲୋକ ଖୁବ୍ କମ୍ । ଆମ ଓଡ଼ିଶାରେ ହୋମ୍‌ସ୍ ଜନ୍ମ ନେଲେ ନା କ’ଣ ? ଗୋବର୍ଦ୍ଧନ ବାବୁ, ଆପଣଙ୍କର ଯଦି ଅସୁବିଧା ନହୁଏ ପ୍ରତିଦିନ ସନ୍ଧ୍ୟାବେଳେ ମୋ ଘରେ ଚା’ ଖାଇବାର ନିମନ୍ତ୍ରଣ ରହିଲା ।’’

ଗୁଣ ଚିହ୍ନେ ଗୁଣିଆ । ଏଡ଼େ ବଡ଼ ଜଣେ ଜ୍ଞାନୀ ଯେ ଗୋବର୍ଦ୍ଧନ ବାବୁଙ୍କୁ ଚିହ୍ନି ପାରିଛନ୍ତି, ଏଥିରେ ମୁଁ ଆତ୍ମପ୍ରସାଦ ଅନୁଭବ କଲି । କିନ୍ତୁ ତଥାପି ମନରେ ଟିକିଏ କଷ୍ଟ ପାଇଲି । ଗୋବର୍ଦ୍ଧନ ବାବୁଙ୍କ ଗୁଣର ପ୍ରଚାରରେ ମୋର ଆନ୍ତରିକ ଆନନ୍ଦ । କିନ୍ତୁ ସେ ଚା’ ନିମନ୍ତ୍ରଣ ପାଇଲେ, ଆଉ ମୋତେ ଅବଜ୍ଞା କରାଗଲା ଦେଖି ଟିକିଏ ହିଂସା ମଧ୍ୟ ହେଲା । ସୁଚାରୁ ଦେବୀ ଅବଶ୍ୟ ପରେ ମୋତେ ମଧ୍ୟ ଚା’ ଟେବୁଲରେ ନିତି ଯୋଗ ଦେବାକୁ ଅନୁରୋଧ କଲେ । କିନ୍ତୁ ଗୋବର୍ଦ୍ଧନ ବାବୁ ଗୁଣୀ ହିସାବରେ ନିମନ୍ତ୍ରଣ ପାଇଲେ, ଆଉ ମୁଁ ପାଇଲି ବନ୍ଧୁ ହିସାବରେ । ଶାରୀରିକ ଶକ୍ତିଠାରୁ ମାନସିକ ଶକ୍ତିର ଶ୍ରେଷ୍ଠତା ଉପଲବ୍‌ଧି କଲା ଦିନୁ ପ୍ରତ୍ୟେକେ ନିଜକୁ ଅନ୍ୟଠାରୁ ବେଶୀ ବୁଦ୍ଧିମାନ୍ ବୋଲି ପ୍ରମାଣ କରିବାକୁ ସର୍ବଦା ବ୍ୟଗ୍ର ।

ଗୋବର୍ଦ୍ଧନ ବାବୁ ଓ ମୁଁ ପ୍ରତ୍ୟହ ମିଶ୍ର ମହାଶୟଙ୍କ ଘରକୁ ସନ୍ଧ୍ୟାବେଳେ ଚା’ ଖାଇବାକୁ ଯାଉଁ ଓ ପ୍ରାୟ ଅଧ ଘଣ୍ଟା ପର୍ଯ୍ୟନ୍ତ ନାନା ବିଷୟରେ ଆଲୋଚନା ହୁଏ । ଦୁଇଟି ପଣ୍ଡିତ ଓ ବୁଦ୍ଧିମାନ ଲୋକଙ୍କ ଆଲୋଚନାରେ ମୁଁ କେବେ ହେଁ ଯୋଗ ଦେବାକୁ ସାହସ କରି ନାହିଁ । ଅଧିକାଂଶ ସମୟ ମୁଁ ଓ ସୁଚାରୁ ଦେବୀ ଗପ କରୁ । ସୁଚାରୁ ଦେବୀ ସଂସ୍କୃତ ଅନର୍ସ ସହ

ବି.ଏ. ପାସ୍ କରିଛନ୍ତି । ସେ ଅଧିକାଂଶ ଦିନ ସଂସ୍କୃତ ସାହିତ୍ୟ ବିଷୟରେ ଆଲୋଚନା କରନ୍ତି । ମୁଁ ଏଠି ମଧ ନୀରବ ରୁହେ । ମିଶ୍ର ମହାଶୟ ଆଲୋଚନା ବେଳେ ମଝିରେ ମଝିରେ ଖୁବ୍ ଉତ୍ତେଜିତ ହୋଇଯାଆନ୍ତି । ଗୋବର୍ଦ୍ଧନ ବାବୁ ସବୁବେଳେ ନିର୍ବିକାର । ଅପର ପକ୍ଷରେ ସବୁ କଥା ଖୁବ୍ ମନୋଯୋଗ ଦେଇ ଶୁଣି ନିଜର ମତ ସେ ଧୀରେ ଧୀରେ ପ୍ରକାଶ କରନ୍ତି । କେବେ ହେଁ ଦିନେ ତାଙ୍କୁ ଉତ୍ତେଜିତ ହେବାର ମୁଁ ଦେଖି ନାହିଁ । ମନୁଷ୍ୟର ମନ ଓ ଦଣ୍ଡବିଧି ବିଷୟରେ ଦିନେ ଆଲୋଚନା ହେବାବେଳେ ବେତ ମାଡ଼ କଥା ପଡ଼ିଲା । ଗୋବର୍ଦ୍ଧନ ବାବୁ କହିଲେ ଯେ, ଅନେକ ସମୟରେ ବେତମାଡ଼ ଲୋକଙ୍କୁ ଆନନ୍ଦ ଦିଏ । ଜଗନ୍ନାଥଙ୍କ ମନ୍ଦିରରେ ବେତମାଡ଼ ଖାଇବାକୁ ଅନେକେ ଆଗ୍ରହ ପ୍ରକାଶ କରନ୍ତି । କଥା ମଝିରେ ମିଶ୍ର ମହାଶୟ ହଠାତ୍ ଉଠି ଚାଲିଗଲେ । ମୁଁ ଆଶ୍ଚର୍ଯ୍ୟ ହୋଇ ସୁଚାରୁ ଦେବୀଙ୍କ ଆଡ଼କୁ ଅନାଇ ଦେଖିଲି ସେ ମଧ ଖୁବ୍ ବିଚଳିତ । ମୋତେ ଅନାଇ କହିଲେ, ‘‘ମାଡ଼ ବା ଅତ୍ୟାଚାର କଥା ମଧ ତାଙ୍କର ସହ୍ୟ ହୁଏ ନାହିଁ ।’’ ଗୋବର୍ଦ୍ଧନ ବାବୁ ଦୁଃଖର ସହିତ କହିଲେ, ‘‘ମୁଁ ଅଜାଣତରେ ମିଶ୍ର ମହାଶୟଙ୍କୁ ଆଘାତ ଦେଇଛି, ମୋତେ କ୍ଷମା କରିବେ ।’’ ଏହି ଅଳ୍ପଦିନ ଭିତରେ ମୁଁ ଲକ୍ଷ୍ୟ କରିଛି, ସୁଚାରୁ ଦେବୀ ସବୁବେଳେ ମିଶ୍ର ମହାଶୟଙ୍କ ସୁବିଧା ଅସୁବିଧା ପ୍ରତି ଲକ୍ଷ୍ୟ ରଖି ଥାଆନ୍ତି । ମିଶ୍ର ମହାଶୟଙ୍କର କଲେଜରେ ପଢ଼ାଇବା ଓ ଘରେ ପଢ଼ିବା ଛଡ଼ା ଅନ୍ୟ କୌଣସି ଚିନ୍ତା ନାହିଁ । ଗୃହସ୍ଥର ଯାବତୀୟ କାର୍ଯ୍ୟ ନିଜେ ସୁଚାରୁ ଦେବୀ କରନ୍ତି । ସେ ମିଶ୍ର ମହାଶୟଙ୍କ ଗୁଣମୁଗ୍ଧା । ମିଶ୍ର ମହାଶୟ ଚାଲିଯିବା ପରେ ସୁଚାରୁ ଦେବୀ ମଧ ଉଠି ଘର ଭିତରକୁ ଚାଲିଗଲେ । ମିଶ୍ର ମହାଶୟ ବଡ଼ କୋମଳ ପ୍ରକୃତିର । ଭାବିଲି, ହୋଇପାରେ । ବେତମାଡ଼ କଥାରେ ତାଙ୍କର କୋମଳ ହୃଦୟ ବିଚଳିତ ହୋଇଛି । କିନ୍ତୁ ତଥାପି ତାଙ୍କର ବ୍ୟବହାର ଟିକିଏ ଅଯଥା ଭଳି ଲାଗିଲା । ମୁଁ ଟିକିଏ ଅପ୍ରସ୍ତୁତ ହୋଇ ଫେରିଲି । ଗୋବର୍ଦ୍ଧନ ବାବୁ ଗୋଟିଏ ଦୀର୍ଘ ନିଃଶ୍ୱାସ ପକାଇ ଗମ୍ଭୀର ହୋଇ ଫେରିଲେ । ସେହି ଦିନ ରାତି ପ୍ରାୟ ବାରଟା ବେଳେ ମୋର ହଠାତ୍ ନିଦ ଭାଙ୍ଗିଗଲା ଗୋଟାଏ ଅଦ୍ଭୁତ ଶବ୍ଦରେ - କିଏ ଯେପରି ଭୀଷଣ କଷ୍ଟ ପାଉଛି । ଅଥଚ ଚିତ୍କାର କରି ପାରୁ ନାହିଁ । କାନ ଡେରି ଶୁଣିଲି, ଶବ୍ଦଟି ମିଶ୍ର ମହାଶୟଙ୍କ ଘର ଆଡୁ ଆସୁଛି ! ମିଶ୍ର ମହାଶୟଙ୍କ ଘର ଓ ଆମ ଘର ଭିତରେ ବ୍ୟବଧାନ କେବଳ ଗୋଟିଏ ପାଚେରି । ମୁଁ ଯାଇ ପାଚେରି ପାଖରେ ଛିଡ଼ା ହେଲି । ଗୋବର୍ଦ୍ଧନ ବାବୁଙ୍କୁ ସେଠି ଛିଡ଼ା ହେବାର ଦେଖି ଚମକି ପଡ଼ିଲି । ସଙ୍କେତରେ ସେ ମୋତେ ଚୁପ୍ କରିବାକୁ କହିଲେ । ଖୁବ୍ କାନ ଡେରି ଶୁଣିଲି, ମନେହେଲା କିଏ କାହାକୁ ଯେପରି ବେତରେ ମାରୁଛି । ଗୋଟିଏ କରି ପ୍ରହାର ଓ ତା’ପରେ ସେଇ ଅସ୍ପଷ୍ଟ ଆର୍ତ୍ତନାଦ । ମୁଁ ପାଟିକରି ମିଶ୍ର ମହାଶୟଙ୍କୁ ଡାକିବା ବେଳେ ଗୋବର୍ଦ୍ଧନ ବାବୁ ମୋ ପାଟି ଚିପି ଧରିଲେ । ପ୍ରାୟ ପନ୍ଦର ମିନିଟ୍ ପର୍ଯ୍ୟନ୍ତ ଏହିପରି ଚାଲିବା ପରେ ସବୁ ନୀରବ । ସେ ନୀରବତା ଅଧିକ ଭୟଙ୍କର ମନେ ହେଲା । ମୁଁ ଓ ଗୋବର୍ଦ୍ଧନ ବାବୁ ଘର ଭିତରକୁ

ଫେରି ଆସିଲୁ । ଗୋବର୍ଦ୍ଧନ ବାବୁଙ୍କୁ କିଛି ପଚାରିବାକୁ ସାହସ ହେଲା ନାହିଁ । ସେ ସାଙ୍ଗେ ସାଙ୍ଗେ ଧ୍ୟାନରେ ବସିଲେ । ମୁଁ ସେ ରାତିଯାକ ଶୋଇ ପାରିଲି ନାହିଁ - ସେହି ଆର୍ତ୍ତ ଚିତ୍କାର ମୋତେ ଅସ୍ଥିର କଲା ।

ପରଦିନ ସନ୍ଧ୍ୟାବେଳେ ମିଶ୍ର ମହାଶୟ ପୂର୍ବପରି ଆମକୁ ଡକାଇ ପଠାଇଲେ । ସୁଚାରୁ ଦେବୀଙ୍କ ଅନୁପସ୍ଥିତି ଦେଖି ମୁଁ ସେ ବିଷୟରେ ତାଙ୍କୁ ପଚାରିଲି । ମିଶ୍ର ମହାଶୟ କହିଲେ ତାଙ୍କର ଶରୀର ଅସୁସ୍ଥ, କିନ୍ତୁ ମୋର ସନ୍ଦେହ ହେଲା ହଠାତ୍ ସେ କାହିଁକି ଅସୁସ୍ଥ ହେଲେ । ମିଶ୍ର ମହାଶୟଙ୍କୁ ଭଲକରି ଅନାଇ ଦେଖିଲି । କୌଣସି ମତେ ଭାବି ପାରିଲି ନାହିଁ ଯେ, ଗତ ରାତିରେ ମିଶ୍ର ମହାଶୟ ତାଙ୍କ ସ୍ତ୍ରୀଙ୍କ ଉପରେ କୌଣସି ଅତ୍ୟାଚାର କରିଛନ୍ତି । ସେଇ ସରଳ ଦାର୍ଶନିକ ଭଳି ଚାହାଣି । ଏ ଲୋକ ଏପରି କ୍ରୁର କର୍ମ କରିପାରେ ଭାବିବା ଅସମ୍ଭବ, କିନ୍ତୁ ଖୁବ୍ ଲକ୍ଷ୍ୟ କରି ଦେଖିଲି ଯେ, ତାଙ୍କ ମୁହଁରେ ବେଦନାର ଭାବ ଅଧିକ ସ୍ପଷ୍ଟ ଭାବରେ ଫୁଟି ଉଠିଛି । ପରଦିନ ସୁଚାରୁ ଦେବୀ ଚାହା ପାନରେ ଯୋଗଦେଲେ । ତାଙ୍କର ବ୍ୟବହାରରେ କୌଣସି ପରିବର୍ତ୍ତନ ନାହିଁ । ପୂର୍ବପରି ସେ ମିଶ୍ର ମହାଶୟଙ୍କ ପ୍ରତ୍ୟେକ କାର୍ଯ୍ୟ ଆଗ୍ରହ ସହକାରେ କରିବାର ଦେଖିଲି । ଏହିପରି ଚାରି ପାଞ୍ଚ ଦିନ ଗଲା । ଚାହା ପାନବେଳେ ପୂର୍ବପରି ନାନା ଆଲୋଚନା ଚାଲିଲା । ମିଶ୍ର ମହାଶୟଙ୍କ ପ୍ରତି ଅଯଥା ସନ୍ଦେହ ଲାଗି ମୁଁ ମନେ ମନେ ଲଜ୍ଜା ପାଇଲି । ସେ ରାତିରେ ଘଟଣା ଅନ୍ୟ କିଛି ବୋଲି ଧରିନେଲି । ଦିନେ ସନ୍ଧ୍ୟାବେଳେ ସୁଚାରୁ ଦେବୀ ଛୁରୀରେ ଫଳ କାଟୁ କାଟୁ ତାଙ୍କର ଆଙ୍ଗୁଳି ସାମାନ୍ୟ କାଟି ପକାଇଲେ, ଅଳ୍ପ ଟିକିଏ ରକ୍ତ ବାହାରିଲା । କିନ୍ତୁ ଲକ୍ଷ୍ୟ କଲି, ଭୟରେ ସୁଚାରୁ ଦେବୀଙ୍କ ମୁହଁ କାଳିଆ ପଡ଼ିଗଲା । ସେ ଶୀଘ୍ର ଅଙ୍ଗୁଳିଟି ଲୁଚାଇ ଦେଲେ । ମିଶ୍ର ମହାଶୟ କିନ୍ତୁ ରକ୍ତ ବାହାରିବାର ଦେଖି ପାରିଥିଲେ । ସ୍ୱାମୀ ଓ ସ୍ତ୍ରୀ ଦୁହିଁଙ୍କ ମୁହଁରେ ଗଭୀର ଉତ୍ତେଜନା । ଏହା ଏଡ଼େ ଅସ୍ୱାଭାବିକ ଯେ ଯେକୌଣସି ଲୋକର ଆଖିରେ ପଡ଼ିବ । ମନେହେଲା, ମିଶ୍ର ମହାଶୟ ଉତ୍ତେଜନା ଚାପି ରଖିବାକୁ ଖୁବ୍ ଚେଷ୍ଟା କରୁଛନ୍ତି । ଅଳ୍ପ ସମୟ ପରେ ସେ ଉଦ୍‌ଭ୍ରାନ୍ତ ଭାବରେ ଚାଲିଗଲେ । ସୁଚାରୁ ଦେବୀ ମଧ୍ୟ ହଠାତ୍ ଉଠି ଚାଲିଗଲେ । ତାଙ୍କର ଉଦ୍‌ବେଗ ଏତେ ବେଶୀ ଯେ, ସେ ଆମଠାରୁ ବିଦାୟ ନେବାକୁ ସୁଦ୍ଧା ଭୁଲିଗଲେ । ମୁଁ ଓ ଗୋବର୍ଦ୍ଧନ ବାବୁ ଫେରି ଆସିଲୁ । ଗୋବର୍ଦ୍ଧନ ବାବୁଙ୍କ ମୁହଁଟି ମଧ୍ୟ ବିଷାଦପୂର୍ଣ୍ଣ । ସବୁକଥା ଭାବି ମୋତେ କେମିତି ଅଦ୍ଭୁତ ଲାଗୁଥାଏ । ରାତି ପ୍ରାୟ ଦୁଇଟା ବେଳକୁ ମୋର ନିଦ ଭାଙ୍ଗି ଯିବାରୁ ଉଠି ଦେଖିଲି ଗୋବର୍ଦ୍ଧନ ବାବୁ ଖଟ ଉପରେ ବସି ନିବିଷ୍ଟ ମନରେ କ'ଣ ପଢୁଛନ୍ତି । ଏତେ ରାତିରେ ସେ ତାଙ୍କର ନିୟମ ଭାଙ୍ଗି ପଢ଼ିବାର ଦେଖି ମୋତେ ଆଶ୍ଚର୍ଯ୍ୟ ଲାଗିଲା । କିନ୍ତୁ ତାଙ୍କୁ ପଚାରିବାର ଏହା ଉପଯୁକ୍ତ ସମୟ ନୁହେଁ । ମୁଁ ଫେରି ଆସି ଶୋଇଲି ।

ଏ ଘଟଣାର ତିନି ଦିନ ପରେ ଦିନେ ସକାଳେ ଗୋଟିଏ ଢଙ୍ଗଲୀ ଅନେକଗୁଡ଼ିଏ ଶୁଆ ବିକିବାକୁ ଆଣିଥିଲା । ସକାଳ ବୁଲା ସାରି ଫେରିବା ସମୟରେ ଦେଖିଲୁ, ସାହିର

ଅନେକଗୁଡ଼ିଏ ଲୋକ ଜଙ୍ଗଲୀ ଚାରିପାଖେ ଭିଡ଼ କରି ଶୁଆ ଦେଖୁଛନ୍ତି । ଗୋବର୍ଦ୍ଧନ ବାବୁ ଜଙ୍ଗଲୀକୁ ସେଠାରୁ ଶୀଘ୍ର ଚାଲିଯିବାକୁ କହିଲେ । ସମସ୍ତେ ଗୋବର୍ଦ୍ଧନ ବାବୁଙ୍କ କଥାରେ ବିରକ୍ତ ହେଲେ । ଏହି ସମୟରେ ମିଶ୍ର ମହାଶୟ ଓ ସୁଚାରୁ ଦେବୀ ବାହାରକୁ ଆସିଲେ । କୌଣସି କାରଣରୁ ସୁଚାରୁ ଦେବୀ ମିଶ୍ର ମହାଶୟଙ୍କୁ ଘର ଭିତରକୁ ଯିବାକୁ ଅନୁରୋଧ କରୁଥାନ୍ତି । ମିଶ୍ର ମହାଶୟ ନ ମାନି ଜଙ୍ଗଲୀ ପାଖକୁ ଆସିଲେ ଏବଂ ଅନେକ ଦାମ ଦେଇ ଅନେକଗୁଡ଼ିଏ ଶୁଆ କିଣି ନେଲେ । ସୁଚାରୁ ଦେବୀ ନିତାନ୍ତ ହତାଶ ଭାବରେ ତାଙ୍କର ଅନୁସରଣ କଲେ । ଏହା ଭିତରେ ଏପରି କ'ଣ ଥାଇପାରେ ଯେଉଁଥିପାଇଁ ମିଶ୍ର ମହାଶୟ ଏଡ଼େ ଉତ୍ତେଜିତ ଓ ସୁଚାରୁ ଦେବୀ ଏଡ଼େ ହତାଶ ? ଶୁଆ କିଣିବାରେ ସୁଚାରୁ ଦେବୀଙ୍କର ଆପତ୍ତି ବା କାହିଁକି ? ଗୋବର୍ଦ୍ଧନ ବାବୁ ମଧ ଗୋଟିଏ ଦୀର୍ଘ ନିଃଶ୍ୱାସ ପକାଇ ବସାକୁ ଫେରି ଆସିଲେ । ସେହିଦିନ ସନ୍ଧ୍ୟାବେଳେ ବୁଲିଯିବା ସମୟରେ ମୁଁ ଓ ଗୋବର୍ଦ୍ଧନ ବାବୁ ଦେଖିଲୁ ଯେ, ମିଶ୍ର ମହାଶୟ ଗୋଟିଏ ମଲା ଶୁଆ ବାହାରେ ଫୋପାଡ଼ି ଦେଇଗଲେ । ପ୍ରତ୍ୟେହ ଏହିପରି ଗୋଟିଏ ମଲା ଶୁଆ ବାହାରେ ପଡ଼ିଥିବାର ଆମେ ଦେଖିଲୁ । ଗୋବର୍ଦ୍ଧନ ବାବୁ ପ୍ରତ୍ୟହ ସେ ମଲା ଶୁଆକୁ ଆଣି ପରୀକ୍ଷା କରି ଫୋପାଡ଼ି ଦିଅନ୍ତି । ଦିନେ ସେ ମୋତେ କହିଲେ, ''ଡାକ୍ତର, ତୁମେ ବୋଧହୁଏ ଭାବୁଛ ଯେ, କୌଣସି ସଂକ୍ରାମକ ବ୍ୟାଧିରୁ ଏ ଶୁଆଗୁଡ଼ିକ ମରି ଯାଉଛନ୍ତି । କିନ୍ତୁ ମୁଁ ପରୀକ୍ଷା କରି ଦେଖିଛି ରୋଗର କୌଣସି ଲକ୍ଷଣ ନାହିଁ ।'' ଏହା କହି ସେ ନୀରବ ରହିଲେ - ଏହା ତାଙ୍କର ଧ୍ୟାନର ପୂର୍ବାବସ୍ଥା ।

ପ୍ରତ୍ୟହ ଆମେ ପୂର୍ବପରି ଚାହା ଖାଇବାକୁ ଯାଉ । ମିଶ୍ର ମହାଶୟ ପୂର୍ବପରି ନାନା ବିଷୟରେ ଆଲୋଚନା କରନ୍ତି । କିନ୍ତୁ ଲକ୍ଷ୍ୟ କରେ, ସେ ମଝିରେ ମଝିରେ ଥରି ଉଠନ୍ତି । ସୁଚାରୁ ଦେବୀ ମଧ ତ୍ରସ୍ତ ଥିବା ଭଳି ମନେ ହୁଅନ୍ତି । କି ଅଜ୍ଞାତ ଭୟ ଏପରି କୋମଳ ପ୍ରାଣ ଦୁଇଟିକୁ କମ୍ପିତ କରୁଛି ଭାବି ମୋର ବଡ଼ ଦୁଃଖ ହୁଏ । ଦିନେ ମୁଁ ପଚାରିଲି, ''ମିଶ୍ର ମହାଶୟ, ଆପଣ ଯେଉଁ ଶୁଆଗୁଡ଼ିକ କିଣିଥିଲେ, ସେଗୁଡ଼ିକ କ'ଣ ମରିଗଲେ ?'' ମୋ ପ୍ରଶ୍ନରେ ସୁଚାରୁ ଦେବୀ ପ୍ରକାଶ୍ୟ ଭାବରେ ବିଚଳିତ ହେଲେ । ମିଶ୍ର ମହାଶୟ ଯଦିବା ''ହଁ'' କହିଲେ, କିନ୍ତୁ ତାଙ୍କର ଚେହେରାର ପରିବର୍ତ୍ତନ ଦେଖି ମୁଁ ସ୍ତମ୍ଭିତ ହୋଇଗଲି । ଭୀଷଣ ଉତ୍ତେଜନାରେ ତାଙ୍କର ଆଖି ଯୋଡ଼ିକ ଜଳି ଉଠିଲା । କିଛିକ୍ଷଣ ପରେ ତାଙ୍କର ସମସ୍ତ ଶରୀର ଥରି ଉଠିଲା । ସେ ନିଜକୁ ସମ୍ଭାଳି ନ ପାରି ଭିତରକୁ ହଠାତ୍ ଉଠି ଚାଲିଗଲେ । ସବୁ ମୋତେ ପ୍ରହେଳିକା ଭଳି ଲାଗୁଥାଏ । ଏପରି ଜ୍ଞାନୀ, ସରଳ ଓ ମିଷ୍ଟଭାଷୀ ଲୋକଙ୍କୁ କେଉଁ କଥା ଏଡ଼େ ବିଚଳିତ କରିପାରିଛି ?

ସେହିଦିନ ଖରାବେଳେ ମିଶ୍ର ମହାଶୟ କଲେଜରୁ ଫେରି ଗୋଟିଏ କାଣ୍ଡ କଲେ, ଯଦ୍ୱାରା କି ସେ ସାହିରେ ଗୋଟିଏ ଚାଞ୍ଚଲ୍ୟ ଖେଳିଗଲା । ସେ ଗାଡ଼ିରୁ ଓହ୍ଲାଇ ଘର ଭିତରକୁ ଗଲାବେଳେ ଗୋଟିଏ ୧୨/୧୩ ବର୍ଷର ପିଲା ତାଙ୍କ ଘରୁ ବାହାରି ଆସିଲା । ହାତରେ

ତା'ର ମିଶ୍ର ମହାଶୟଙ୍କ ଫାଉନ୍‌ଟେନ୍ କଲମ । ମିଶ୍ର ମହାଶୟ ଏହା ଦେଖି ପାରି ଟିକିଏ ହସି କଲମଟି ଛଡ଼େଇ ନେଲେ । କିନ୍ତୁ ହଠାତ୍ ଘରୁ ଫେରିଆସି ତାକୁ ଗୋଟିଏ ଚାପୁଡ଼ା ମାରିଲେ । ପିଲାଟି କାନ୍ଦି ପକାଇଲା । ମିଶ୍ର ମହାଶୟ କ୍ଷିପ୍ତ ହୋଇ ଘର ଭିତରୁ ଗୋଟିଏ ବେତ ଆଣି ତାକୁ ନିର୍ଦ୍ଦୟ ଭାବରେ ପ୍ରହାର କଲେ । ପିଲାଟି ଦେହରୁ ରକ୍ତ ବାହାରି ପଡ଼ିଲା । ପାହିର ଲୋକେ ଘେରି ଯାଇ ମିଶ୍ର ମହାଶୟଙ୍କୁ ନାନା କୁକଥା କହିଲେ । କିନ୍ତୁ ମିଶ୍ର ମହାଶୟ ଏତେ କ୍ଷିପ୍ତ ହୋଇଥାଆନ୍ତି ଯେ, ସାହସ କରି ପିଲାଟିକୁ ତାଙ୍କ ପାଖରୁ କେହି ଛଡ଼ାଇ ପାରୁ ନ ଥାନ୍ତି । ଗୋଳମାଳ ଶୁଣି ମୁଁ ଓ ଗୋବର୍ଦ୍ଧନ ବାବୁ ବାହାରକୁ ଆସିଲୁ । ଗୋବର୍ଦ୍ଧନ ବାବୁଙ୍କ ଅସୀମ ସାହସ ! ସେ ଯାଇ ପିଲାଟିକୁ ଛଡ଼ାଇ ଆଣିଲେ । ଏ ଦୃଶ୍ୟ ଦେଖି ମୁଁ ବିସ୍ମିତ ହୋଇଗଲି । ମିଶ୍ର ମହାଶୟଙ୍କ ପାଣ୍ଡିତ୍ୟ ଓ କୋମଳ ପ୍ରାଣ ସହିତ ଏପରି ନିର୍ଦ୍ଦୟତା କିପରି ଏକାଠି ଥାଇପାରେ ?

ଏହି ଘଟଣା ପରେ ମିଶ୍ର ମହାଶୟ ଖୁବ୍ ଶାନ୍ତ ହୋଇଗଲେ । କିଛି ଦିନ ହେଲା ଯେଉଁ ଉତ୍ତେଜନା ତାଙ୍କୁ ସର୍ବଦା ବିଚଳିତ କରୁଥିଲା, ତାହା ଆଉ ନାହିଁ । ତାଙ୍କୁ ଦେଖିଲେ ମନେହୁଏ ସେ ଅନୁଶୋଚନାରେ ଦଗ୍‌ଧ ହେଉଛନ୍ତି । ଆମର ଚା' ଖିଆ ପୂର୍ବ ପରି ଚାଲିଲା । ଏବେ କେଇ ଦିନ ହବ ମୁଁ ଦେଖୁଛି ଚା' ଖାଇ ସାରିବା ସାଙ୍ଗେ ସାଙ୍ଗେ ଗୋବର୍ଦ୍ଧନ ବାବୁ ମୋତେ କୌଣସି ନା କୌଣସି କାମରେ ବାହାରକୁ ପଠାଇ ଦିଅନ୍ତି । ସେ ନିଜେ ଅଧ ଘଣ୍ଟା ପରିବର୍ତ୍ତରେ ପ୍ରାୟ ଦୁଇ ଘଣ୍ଟା ରହି ଗପ କରି ଫେରନ୍ତି । ଏହିପରି ଦଶ ବାରଦିନ ଯିବା ପରେ ଦିନେ ରାତି ପ୍ରାୟ ପାଞ୍ଚଟା ବେଳେ ମୁଁ ମିଶ୍ର ମହାଶୟଙ୍କ ଘର ଆଡୁ କାନ୍ଦିବା ଶବ୍ଦ ପାଇ ଉଠି ପଡ଼ିଲି । କିଛିକ୍ଷଣ କାନ ଡେରି ଶୁଣିବା ପରେ ବୁଝିବାକୁ ବାକି ରହିଲା ନାହିଁ ଯେ, ମିଶ୍ର ମହାଶୟ କାନ୍ଦୁଛନ୍ତି । ମୁଁ ଗୋବର୍ଦ୍ଧନ ବାବୁଙ୍କୁ ଉଠାଇଲି ଓ ଦୁହେଁ ମିଶ୍ର ମହାଶୟଙ୍କ ଘରକୁ ଗଲୁ । ମିଶ୍ର ମହାଶୟ ଗୋଟିଏ ଚୌକିରେ ବସି କାନ୍ଦୁଛନ୍ତି । ତାଙ୍କ ମୁହଁ ଅତ୍ୟଧିକ କାଳିଆ ପଡ଼ିଯାଇଛି । ବେଦନା, ବିଷାଦ, ଅନୁଶୋଚନା ଓ ଭୟ ସବୁ ଯେପରି ଏକା ସାଙ୍ଗରେ ତାଙ୍କୁ ଆକ୍ରମଣ କରିଛନ୍ତି । ସେ ଗୋବର୍ଦ୍ଧନ ବାବୁଙ୍କୁ ଦେଖି ଅଧିକ କାନ୍ଦିଲେ । ପାଖରେ ଗୋଟିଏ ଖଟରେ ସୁଚାରୁ ଦେବୀଙ୍କ ମୃତ ଶରୀର ଦେଖି ମୁଁ ଚମକି ପଡ଼ିଲି । କାଲି ସନ୍ଧ୍ୟା ପର୍ଯ୍ୟନ୍ତ ସେ ଖୁବ୍ ଭଲ ଥିଲେ । ହଠାତ୍ 'କ'ଣ ହେଲା ମୁଁ ବୁଝିପାରିଲି ନାହିଁ । ଗୋବର୍ଦ୍ଧନ ବାବୁ ତାଙ୍କ ଚାଦରଟି କାଢ଼ିଦେଲେ । ଯାହାଦେଖିଲି, ସେଥିରେ ଭୟରେ ପ୍ରାୟ ମୂର୍ଚ୍ଛା ହୋଇଗଲି । ସୁଚାରୁ ଦେବୀଙ୍କ ଶରୀରଟି ଯାକ କାଳିଆ ପଟା ପଟା ଦାଗ- ଯେପରି ବେତ ମାଡ଼ରେ ହୁଏ । କେତେକ ଚିହ୍ନ ଫାଟି ଯାଇଛି । ବୁଝିଲି, ଏହା ମିଶ୍ର ମହାଶୟଙ୍କ କାଣ୍ଡ । ଅସୀମ ଘୃଣାରେ ମୋର ଇଚ୍ଛା ହେଲା ତାଙ୍କ ବେକ ଚିପି ମାରିଦେବାକୁ । କି ଜଘନ୍ୟ ଲୋକ ! ବାହାରକୁ ଏତେ ଭଲ, କୋମଳ ପ୍ରାଣ ଦେଖାନ୍ତି, କିନ୍ତୁ ହୃଦୟଟି ଏଡ଼େ ନିର୍ମମ, ନିଷ୍ଠୁର ! ତେବେ ଏହାଙ୍କର ଭଲ ପାଇବା

କ'ଣ କେବଳ ଛଳନା ? ତା'ହେଲେ ସୁଚାରୁ ଦେବୀଙ୍କ ପ୍ରେମ କ'ଣ ଛଳନା ମଧ ?

ମୋର ମୁଣ୍ଡ ବିନ୍ଧି ଉଠିଲା । ମୁଁ ସେଠି ରହି ନ ପାରି ଚାଲି ଆସିଲି । କିଛିକ୍ଷଣ ପରେ ଗୋବର୍ଦ୍ଧନ ବାବୁ ଆସିଲେ । ମୁଁ ତାଙ୍କୁ କହିଲି, ''ମୁଁ ଯାଉଛି ପୁଲିସକୁ ଖବର ଦେବି । ଏ ମୃତ୍ୟୁର ରୀତିମତ ଅନୁସନ୍ଧାନ ହେବା ଉଚିତ ଏବଂ ମିଶ୍ର ମହାଶୟଙ୍କୁ କଠିନ ଦଣ୍ଡ ମିଳିବା ଉଚିତ ।'' ଗୋବର୍ଦ୍ଧନ ବାବୁ କହିଲେ, ''ଏପରି ଦିନେ ହୋଇପାରେ ମୁଁ ଆଶଙ୍କା କରିଥିଲି ଓ ଏହା ବନ୍ଦ କରିବାକୁ ମୁଁ ଆପ୍ରାଣ ଚେଷ୍ଟା କରିଛି । ପୁଲିସ ଏ ମୃତ୍ୟୁର କ'ଣ ଅନୁସନ୍ଧାନ କରିବ ? ଏହାର କାରଣ ମୁଁ ଅନେକ ଦିନ ଆଗରୁ ଅନୁସନ୍ଧାନ କରି ସାରିଛି । ଆଉ ତା' ଛଡ଼ା ସୁଚାରୁ ଦେବୀ ତ ଲେଖି ଯାଇଛନ୍ତି ଯେ, ସେ ଆତ୍ମହତ୍ୟା କରିଛନ୍ତି ଏବଂ ଏଥିପାଇଁ କେହି ଦାୟୀ ନୁହେଁ । ତାଙ୍କର ଜୀବନବୀମା ପଚାଶ ହଜାର ଟଙ୍କାରୁ ମୋତେ ଦଶ ହଜାର ଦେଇଯାଇଛନ୍ତି । କାରଣ ତାଙ୍କର ବିଶ୍ୱାସ ଯେ, ମୋ ଚେଷ୍ଟାରେ ତାଙ୍କର ସ୍ୱାମୀଙ୍କର ଅନେକ ଉନ୍ନତି ହୋଇଛି ଏବଂ ମୁଁ ଚେଷ୍ଟା ଚଳାଇଲେ ତାଙ୍କ ସ୍ୱାମୀଙ୍କ ପ୍ରକୃତି ବଦଳି ଯିବ । ଡାକ୍ତର, ତୁମେ ଶରୀରର ଜଟିଳ କ୍ରିୟା କଳାପ କେବଳ ଦେଖିଛ, କିନ୍ତୁ ମନଟି ଯେ, ଏହାଠୁଁ କେତେ ଜଟିଳ ତୁମେ ଜାଣ ନାହିଁ । ତୁମେ ସାଧାରଣ ଲୋକଙ୍କ ଭଳି ଭାବୁଛି ଯେ, ମିଶ୍ର ମହାଶୟ ଭାରୀ ନିର୍ଦ୍ଦୟ, ଆଉ ସେ ତାଙ୍କ ସ୍ତ୍ରୀଙ୍କ ଉପରେ ଭୀଷଣ ଅତ୍ୟାଚାର କରନ୍ତି । ତା' ନୁହେଁ- ମିଶ୍ର ମହାଶୟ ଭାରି କୋମଳ ପ୍ରାଣ ଏବଂ ତାଙ୍କ ସ୍ତ୍ରୀଙ୍କୁ ସେ ପ୍ରାଣଠୁଁ ଅଧିକ ଭଲ ପାଆନ୍ତି; କିନ୍ତୁ ତଥାପି ଏ କଥା ସତ, ସେ ମଝିରେ ମଝିରେ ଅତ୍ୟାଚାର କରନ୍ତି । ତୁମେ ଶୁଣି ଆଶ୍ଚର୍ଯ୍ୟ ମଣିବ ଯେ, ଏହା ଗୋଟିଏ ଯୌନ ବିକୃତି । ମୁଁ ଆମ ଗାଁରେ ଠିକ୍ ଏହିପରି ଗୋଟିଏ ଘଟଣା କଥା ଜାଣେ । ଆମେ ତାକୁ 'ଫୋକଟ୍ ବାବା' ବୋଲି ଡାକୁ । ତୁମେ ବୋଧହୁଏ ଜାଣି ନାହଁ, ଗାଁରେ ଯାହାକୁ 'ଚରା ଡାହାଣୀ' ବା 'କଞ୍ଚା ଡାହାଣୀ' ବୋଲି କହନ୍ତି ତାହା ମାତ୍ର ଏକ ପ୍ରକାର ଚରମ ଯୌନ ବିକୃତି । ଏପରି ଲୋକମାନଙ୍କର ଯୌନ ଅଭିଳାଷ ଅତ୍ୟାଚାର ଦ୍ୱାରା ସନ୍ତୁଷ୍ଟ ହୁଏ । ଏପରି ଲୋକେ ଯେ ଦୟାର୍ଦ୍ର, ପଣ୍ଡିତ, ଧାର୍ମିକ ହେବେ ନାହିଁ, ତା'ର କୌଣସି କାରଣ ନାହିଁ । କେବଳ ଏହି ଗୋଟିଏ ଦୁର୍ବଳତା ଛଡ଼ା ଆଉ ସବୁଗୁଣ ସାଧାରଣ ଲୋକଠାରୁ ବେଶୀ ଥାଇପାରେ । ସୁଚାରୁ ଦେବୀ ମଧ ତାଙ୍କର ସ୍ୱାମୀଙ୍କୁ ଖୁବ୍ ଭଲ ପାଉଥିଲେ । ସେ ମିଶ୍ର ମହାଶୟଙ୍କର ଏତେ ଗୁଣମୁଗ୍ଧା ଥିଲେ ଯେ, ନିଜ ଇଚ୍ଛାରେ ସେ ଏ ଅତ୍ୟାଚାରର ମଝିରେ ମଝିରେ ସହ୍ୟ କରୁଥିଲେ, କିନ୍ତୁ ଶେଷକୁ ତାଙ୍କର ସ୍ୱାମୀଙ୍କ ଅବସ୍ଥା ଦିନକୁ ଦିନ ଖରାପ ଆଡ଼କୁ ଯାଉଛି ଭାବି ସେ ଘୋର ମାନସିକ କଷ୍ଟରେ ଆତ୍ମହତ୍ୟା କରିଛନ୍ତି । ଯେଉଁ ଦିନ ପ୍ରଥମେ ବେତମାଡ଼ କଥାରେ ମିଶ୍ର ମହାଶୟ ପାଗଳ ଭଳି ହଠାତ୍ ଆମ ଚାହା ଆସରରୁ ଉଠି ଚାଲି ଗଲେ, ସେହିଦିନ ମୁଁ ଏ ବିଷୟରେ ପ୍ରଥମ ସନ୍ଦେହ କରିଥିଲି । ଏ ବିଷୟରେ ମୋର ଜ୍ଞାନ ଅଳ୍ପ ଥିଲା । ମୁଁ ନାନା ବହି ଏ ବିଷୟରେ ପଢ଼ି ସବୁ କଥା ଜାଣିପାରିଲି । ମିଶ୍ର ମହାଶୟ ବଡ଼ ଆଦର୍ଶବାଦୀ । ତାଙ୍କର ମୁହଁରୁ ମୁଁ

ଶୁଣିଛି, ତାଙ୍କର ପିତା, ପିତାମହ ଆଦି ସମସ୍ତେ ଏହିପରି ଘୋର ଆଦର୍ଶବାଦୀ ଥିଲେ । ଅଥଚ କେହି ଜାଣନ୍ତି ନାହିଁ ଯେ, ତାଙ୍କର ଯୌନ ଅଭିଳାଷଟି ସାଧାରଣ ଲୋକଙ୍କ ଠାରୁ ବେଶୀ । ଏମାନଙ୍କର ଆଦର୍ଶ ଏମାନଙ୍କର ସ୍ୱାଭାବିକ ପ୍ରବୃତ୍ତିକୁ ଦବାଇ ରଖିବାରୁ ପ୍ରାୟ ପାଞ୍ଚ ପୁରୁଷ ପରେ ଏ ଯୌନ ବିକୃତି ଘଟିଛି । ବର୍ତ୍ତମାନ ଏ କଥା ଶୁଣି ଆପଣଙ୍କର ମିଶ୍ର ମହାଶୟଙ୍କ ପ୍ରତି କ'ଣ ଘୃଣା ହୁଏ ?'' ମୁଁ ବୁଝି ପାରିଲି ନାହିଁ ଯେ, ଏ ବିକୃତିର ଏପରି କି ଶକ୍ତି ଥାଇପାରେ, ଯାହାକି ମନୁଷ୍ୟର ସଭ୍ୟତା, ଶିକ୍ଷା, ପାଣ୍ଡିତ୍ୟ ଆଦିର ଶକ୍ତିକୁ ଠେଲି ନିଜକୁ ପ୍ରକାଶ କରିପାରେ । ଗୋବର୍ଦ୍ଧନ ବାବୁ ମୋ ମନ କଥା ବୁଝିପାରି କହିଲେ, ''ଡାକ୍ତର, ଆମର ରକ୍ତରେ ଏପରି ଶକ୍ତି ଅଛି ଯେ ପୃଥିବୀର ସମସ୍ତ ଶକ୍ତି ତାକୁ ଦବାଇ ରଖି ପାରିବ ନାହିଁ । କେବଳ ମୋର ମନେହୁଏ, ଗୋଟାଏ ଅଦୃଶ୍ୟ ଶକ୍ତି ପ୍ରତି ଅନ୍ଧ ବିଶ୍ୱାସ ଏହାକୁ କେତେଟା ଭଲ ଦିଗରେ ଚାଳିତ କରିପାରେ । ମୁଁ ଏହି ଚେଷ୍ଟା ଏତେ ଦିନ ପର୍ଯ୍ୟନ୍ତ କରୁଥିଲି । କିନ୍ତୁ ମିଶ୍ର ମହାଶୟ ବୁଦ୍ଧିମାନ୍ ଓ ପଣ୍ଡିତ । ସେ ଅଦୃଶ୍ୟ ଶକ୍ତିକୁ ଏଡ଼େ ଶୀଘ୍ର ମାନି ନେବାକୁ ରାଜି ନୁହଁନ୍ତି । କିନ୍ତୁ ମୋର ଧାରଣା ଏ ଘଟଣା ପରେ ତାଙ୍କର ମନ ବଦଳିବ ।'' ଆମେ ଶୀଘ୍ର ଶବଦାହ କରି ଫେରି ଆସିଲୁ । ଏ ଘଟଣାଟି ଆଜି ପର୍ଯ୍ୟନ୍ତ ମୋତେ ଅତି ଅଦ୍ଭୁତ ଲାଗେ । ଗୋବର୍ଦ୍ଧନ ବାବୁଙ୍କ କଥା ଯଦି ସତ ହୁଏ, ତା'ହେଲେ ପ୍ରକୃତିକୁ ସୁନ୍ଦରୀ କହିବା ମହା ଭ୍ରମ । କିମ୍ବା ସୁନ୍ଦରୀ ହୋଇ ନ ପାରେ ନିର୍ମମ ଓ ବିଶ୍ୱାସଘାତିନୀ, ସେ ଏ ନିର୍ମମତା ଘୋଡ଼ାଇ ରଖେ ସୌନ୍ଦର୍ଯ୍ୟ ଦ୍ୱାରା । ଏଥିରୁ ମୁକ୍ତି ବୋଧହୁଏ ବୁଦ୍ଧଙ୍କ ନିର୍ବାଣ ।

ଗୋବର୍ଦ୍ଧନ ବାବୁଙ୍କ କଥାର ଯଥାର୍ଥତା ମନସ୍ତତ୍ତ୍ୱବିତ୍‌ମାନେ ଠିକ୍ କରନ୍ତୁ । ମୁଁ କିନ୍ତୁ ଚିର ଦିନ ମିଶ୍ର ମହାଶୟଙ୍କୁ ଘୃଣା ଛଡ଼ା ଆଉ କିଛି କରିପାରିବି ନାହିଁ ଯଦିଚ ମିଶ୍ର ମହାଶୟଙ୍କର ଏବେ ଏକ ଅଦ୍ଭୁତ ପରିବର୍ତ୍ତନ ଘଟିଛି । ସେ ଆଜିକାଲି ସବୁବେଳେ କୀର୍ତ୍ତନ, ସ୍ତବ ସ୍ତୋତ୍ର, ପୂଜା ଆଦିରେ ମାତି ଅଛନ୍ତି । କୀର୍ତ୍ତନ କଲାବେଳେ ଦେଖିଛି, ଭାବରେ ସେ ବିଭୋର ହୋଇ ଯାଆନ୍ତି ଏବଂ ତାଙ୍କ ଆଖିରୁ ଅବିରଳ ଲୁହ ଗଡ଼ୁଥାଏ । ପଣ୍ଡିତ ମିଶ୍ର ମହାଶୟଙ୍କ ମୃତ୍ୟୁ ହୋଇଛି,ଜନ୍ମ ହୋଇଛି ଏକ ଭକ୍ତ ମିଶ୍ର ମହାଶୟଙ୍କ । ଗୋବର୍ଦ୍ଧନ ବାବୁ ଦିନେ ଏହିପରି ଅବସ୍ଥାରେ ମିଶ୍ର ମହାଶୟଙ୍କୁ ଦେଖି କହିଲେ, ''ଯା ହେଉ ମୁଁ ଅନେକଟା ସଫଳ ହୋଇଛି ।'' ପଚାରିଲି,''ଆପଣ ତ ନିଜେ ଈଶ୍ୱର ବିଶ୍ୱାସ କରନ୍ତି ନାହିଁ । ମିଶ୍ର ମହାଶୟଙ୍କୁ ଈଶ୍ୱରଙ୍କ ଅସ୍ତିତ୍ୱ ବିଷୟରେ ବୁଝାଇବା ଅନ୍ୟାୟ ହୋଇ ନାହିଁକି ?'' ସେ ହସି କହିଲେ, ''ଉପାୟ କ'ଣ ? ଏ ରୋଗର ଏକମାତ୍ର ଔଷଧ ଗୋଟାଏ ଅପାର୍ଥିବ ପ୍ରେମ ।''

* * *

# ପ୍ରକୃତିର ପରିହାସ

ମୋର ପରୀକ୍ଷା ଫଳ ବାହାରିଛି । ମୁଁ କୃତିତ୍ୱର ସହିତ ପାସ୍ କରିଛି । ମନରେ ଗୋଟାଏ ଅସୀମ ସାନ୍ତ୍ୱନା ପାଇଲି ଭାବି ଯେ ଆଉ ଗୋଟାଏ ବର୍ଷ କୌଣସି ମତେ ଚଳେଇ ଦେଇ ପାରିଲେ ମୁଁ ଡାକ୍ତର ହେବି । ମନ ଖୁବ୍ ହାଲୁକା ଥାଏ । ପ୍ରାୟ ଦୁଇ ବର୍ଷ ହେବ ଗାଁକୁ ଯାଇ ନାହିଁ । ଗାଁରେ ଥରେ ବୁଲି ଆସିବାର ଇଚ୍ଛା ହେଲା । ମନ ହେଉଥାଏ ଗୋବର୍ଦ୍ଧନ ବାବୁଙ୍କୁ ମୋ ଗାଁକୁ ନେବାକୁ । ଏ ପ୍ରସ୍ତାବ କରିବାକୁ ମୋର ସାହସ ହେଉ ନଥାଏ । କାରଣ ସେ ଯଦି ଥରେ 'ନା' କହନ୍ତି, ତେବେ ଆଉ ରାଜି କରାଇବା ଅସମ୍ଭବ । ମୁଁ ସୁବିଧା ଖୋଜୁଥିଲି । ଦିନେ ଗୋବର୍ଦ୍ଧନ ବାବୁଙ୍କୁ 'ପ୍ରସାରଣ' ଅବସ୍ଥାରେ ପାଇ ପ୍ରସ୍ତାବଟି କଲି (ତାଙ୍କର କାର୍ଯ୍ୟ କରିବାର ଅବସ୍ଥାକୁ ''ସଙ୍କୋଚନ'' ଓ ବିଶ୍ରାମ ନେବା ଅବସ୍ଥାକୁ ''ପ୍ରସାରଣ'' ଆଖ୍ୟା ଦେଇଛି) । ସେ ସାଙ୍ଗେ ସାଙ୍ଗେ ରାଜି ହୋଇଗଲେ । ତହିଁ ଆରଦିନ ଆମେ ଯାଜପୁରକୁ ବାହାରିଲୁ । ମୋ ଗାଁଟି ଠିକ୍ ବୈତରଣୀ ନଦୀ ଉପରେ ।

କିନ୍ତୁ ଗାଁକୁ ଆସି ଆଉ ଗୋଟିଏ ବିପଦ ଉପସ୍ଥିତ ହେଲା । ତିନି ଚାରି ଦିନ ରହିବା ପରେ ଗାଁରେ ମୋର ଆଉ ମନ ଲାଗିଲା ନାହିଁ । କଥା କହିବାକୁ କେହି ଗୋଟିଏ ଲୋକ ନାହାନ୍ତି । ଦେଖିବାର କିଛି ନାହିଁ କି ଖେଳାଖେଳି ମଧ ନାହିଁ । କୌଣସି ମତେ ଅଳସ ଭାବରେ ଦୁଇ ତିନି ଦିନ ଚାଲିଗଲା, କିନ୍ତୁ ଆଉ ରହି ପାରିଲି ନାହିଁ । ସହରରେ ସବୁବେଳେ ଚାଞ୍ଚଲ୍ୟ, ସବୁବେଳେ ଚିନ୍ତା ଭିତରେ ଥାଇ ଥାଇ ଏପରି ଅଭ୍ୟାସ ହୋଇଛି ଯେ, ବର୍ତ୍ତମାନ ବୁଝିଲି, ତାହା ଗୋଟିଏ ନିଶା ଭଳି ମୋତେ ଆକ୍ରମଣ କରିଛି । ଗ୍ରାମର ନିଶ୍ଚିନ୍ତ ଜୀବନ ତେଣୁ ପୀଡ଼ାଦାୟକ ପରି ବୋଧ ହେଲା । ମଦ୍ୟପ ଲୋକଙ୍କୁ ଦିନେ ମଦ ଖାଇବାକୁ ନ ଦେଲେ ସେ ଯେପରି ଯନ୍ତ୍ରଣା ଅନୁଭବ କରେ, ମୁଁ ମଧ ସେହି ଯନ୍ତ୍ରଣା ପାଇଲି । ସହରରେ କିଛି ନ ହେଲେ ଟିକିଏ ଦୋକାନ ବଜାର ବୁଲି ଆସିଲେ ସମୟ କଟିଯାଏ । କିନ୍ତୁ ଗାଁକୁ ଆସି ବୁଝିଲି, ଏହା ଗୋଟିଏ ନିଶା ଛଡ଼ା ଆଉ କିଛି ନୁହେଁ । ଗୋବର୍ଦ୍ଧନ ବାବୁଙ୍କୁ ନୂଆ ନୂଆ ଲୋକ ଭଲ ଲାଗନ୍ତି । କଳ୍ପନା-ପ୍ରବଣ ଲୋକମାନଙ୍କର ଏଇ ଗୋଟାଏ ସୁବିଧା । କୌଣସି ସ୍ଥାନରେ ସେମାନେ ଏକାକୀ ବୋଧ କରନ୍ତି ନାହିଁ । ତା'ଛଡ଼ା ଗୋବର୍ଦ୍ଧନ ବାବୁଙ୍କ ସଂଯମ ଶକ୍ତି ଅସମ୍ଭବ । କୌଣସି ଲୋକଙ୍କୁ ସେ ଅବଜ୍ଞା କରନ୍ତି ନାହିଁ । ପ୍ରତ୍ୟେକ ଲୋକଠାରୁ ତାଙ୍କର ଯେପରି ଶିଖିବାର କିଛି ଅଛି । କଟକରୁ ଫେରି ଯିବାକୁ ଦିନେ ପ୍ରସ୍ତାବ କଲି । ଗୋବର୍ଦ୍ଧନ ବାବୁ କୌଣସି ଆଗ୍ରହ ଦେଖାଇଲେ ନାହିଁ । କେଜାଣେ କେତେ ଦିନ ମୋତେ ଗାଁରେ କଟାଇବାକୁ ହେବ ।

ଗାଁରେ ରହିବାର ପାଞ୍ଚ ଦିନ ପରେ ଗୋଟିଏ ଚାଞ୍ଚଲ୍ୟକର ଘଟଣା ଘଟିଲା । ବହୁଦିନ ପରେ ମଦ୍ୟପ ମଦ ପାଇ ଯେପରି ଆନନ୍ଦିତ ହୁଏ, ମୋର ମନ ସେହିପରି ହେଲା । ଦିନେ ସକାଳୁ ଆମ ଗାଁର ଜୀବନ୍ତ ଖବର କାଗଜ କିଣୁ ପଧାନ ଖବର ଦେଇଗଲା- ନରହରି ବାବୁଙ୍କ ପ୍ରଥମା ପତ୍ନୀଙ୍କୁ କିଏ ମାରି ନଈ ବାଲିରେ ପକାଇ ଦେଇଛି, ପୁଲିସ ଆସି ନଈ ବାଲିରେ ତଦନ୍ତ କରୁଛନ୍ତି । ନରହରି ବାବୁ - ନରହରି ସାହୁ- ଆମ ଗାଁର ଜମିଦାର ଓ ମହାଜନ । ନଗଦ ଦୁଇ ଲକ୍ଷ ଟଙ୍କାର ମାଲିକ । କଲିକତାରେ ବ୍ୟବସାୟ କରି ଓ ଗାଁରେ ମହାଜନି କରି ସେ ଅନେକ ଟଙ୍କା ଓ ଜମିବାଡ଼ି କରିଛନ୍ତି । ଗୋବର୍ଦ୍ଧନ ବାବୁ ଓ ମୁଁ ଘଟଣା ସ୍ଥଳକୁ ଗଲୁ । ପୁଲିସ୍ ଇନ୍‌ସ୍‌ପେକ୍ଟର ମଧ ଉପସ୍ଥିତ ଥିଲେ । ଶବଟି ଦେଖି ପରିଷ୍କାର ମନେହୁଏ ବିଷ ପାନରୁ ମୃତ୍ୟୁ । ଇନ୍‌ସପେକ୍ଟରଙ୍କ ଦୃଢ଼ ବିଶ୍ୱାସ ଯେ ଏହା ହତ୍ୟା । କାରଣ ଆତ୍ମହତ୍ୟା ହୋଇଥିଲେ ସେ ଘରେ ନ କରି ନଈ ବାଲିରେ କାହିଁକି କରନ୍ତେ । ତାଙ୍କର ସନ୍ଦେହ ନରହରି ବାବୁଙ୍କ ଦ୍ୱିତୀୟା ସ୍ତ୍ରୀ ଏ ହତ୍ୟା କରିଛନ୍ତି । ଦୁଇ ସଉତୁଣୀଙ୍କ ଭିତରେ କଳି କଥା ଗାଁର ପ୍ରତ୍ୟେକେ ଜାଣନ୍ତି । ଘଟଣା ଦିନ ରାତିରେ ମଧ ଦୁଇ ସଉତୁଣୀଙ୍କ ମଧରେ ଭୀଷଣ କଳହ ହୋଇଥିଲା । କଳହ ସମୟରେ ନରହରି ବାବୁଙ୍କ ଦ୍ୱିତୀୟା ସ୍ତ୍ରୀ କହିଥିଲେ, ‘‘ମୁଁ ବିଷ ଦେବି, ତୁ ଖାଇ ମର ।’’ ଏ କଥା ପ୍ରଥମା ସ୍ତ୍ରୀଙ୍କ ଖାସ୍ ଚାକରାଣୀ କହିଛି । ଇନ୍‌ସପେକ୍ଟର ଖାନତଲ୍ଲାସ କରି ନରହରି ବାବୁଙ୍କ ଦ୍ୱିତୀୟା ସ୍ତ୍ରୀଙ୍କ ହାତ ବାକ୍‌ସରୁ ଗୋଟିଏ ବିଷ ଶିଶି ମଧ ପାଇଛନ୍ତି । ଏହା ପାଇବା ପରେ ସେ ନରହରି ବାବୁଙ୍କ ଦ୍ୱିତୀୟା ସ୍ତ୍ରୀଙ୍କୁ ଗିରଫ କରିଛନ୍ତି । ନରହରି ବାବୁ ଜାମିନ୍‌ରେ ତାଙ୍କୁ ମୁକୁଳାଇଛନ୍ତି । ଗୋବର୍ଦ୍ଧନ ବାବୁ ଏସବୁ ଶୁଣି ଘଟଣା ସ୍ଥଳଟି ପରୀକ୍ଷା କଲେ । ଶବଟି ନଈ ବନ୍ଧ ପାଖକୁ ଦଶ ହାତ ଖଣ୍ଡେ ଦୂରରେ ନଈ ବାଲିରେ ପଡ଼ିଥିଲା । ନଈ ବନ୍ଧ ପାଖରୁ ସେ ପର୍ଯ୍ୟନ୍ତ ଘୋଷାଡ଼ି ନେଇଯିବାର ସ୍ପଷ୍ଟ ଚିହ୍ନ ମଧ ଅଛି । ମନେହେଲା ହତ୍ୟାକାରୀ ତାଙ୍କୁ ନଈ ବନ୍ଧ ଉପରେ ମାରି ନଈବାଲି ଭିତରକୁ ଟାଣିନେଇ ଯାଇଛି । ଗୋବର୍ଦ୍ଧନ ବାବୁ ସେ ଘୋଷଡ଼ା ଚିହ୍ନଟି ତାଙ୍କ କାଚରେ ଭଲକରି ଦେଖି କହିଲେ, ‘‘ଡାକ୍ତର, ଏଠି ଦେଖିବାର ବିଶେଷ କିଛି ନାହିଁ । ଚାଲ ଟିକିଏ ନରହରି ବାବୁଙ୍କ ପାଖକୁ ଯିବା ।’’ ନରହରି ବାବୁଙ୍କ ଘରକୁ ଯାଇ ମୁଁ ତାଙ୍କ ସହିତ ଗୋବର୍ଦ୍ଧନ ବାବୁଙ୍କ ପରିଚୟ କରାଇ ଦେଲି । ନରହରି ବାବୁଙ୍କ ଦୃଢ଼ ଧାରଣା ତାଙ୍କର ଦ୍ୱିତୀୟା ସ୍ତ୍ରୀ ପକ୍ଷରେ ଏହା କରିବା ଅସମ୍ଭବ; କିନ୍ତୁ ପ୍ରମାଣ ହାତେ ହାତେ ମିଳିବାରୁ ସେ ଅବିଶ୍ୱାସ ମଧ କରିପାରୁ ନାହାନ୍ତି । ଗୋବର୍ଦ୍ଧନ ବାବୁ କହିଲେ, ‘‘ମୁଁ ଠିକ୍ କ'ଣ ଘଟିଛି କହିପାରେ, ଯଦି ଆପଣ ପ୍ରଥମ ବିବାହଠାରୁ ଏ ପର୍ଯ୍ୟନ୍ତ ଯାହା ଘଟିଛି କହିଯାଆନ୍ତି ।’’ ନରହରି ବାବୁ ଶୋକରେ ଅଧୀର ହୋଇ ଯାହା କହିଲେ ତାହା ଏହିପରି-

ନରହରି ବାବୁ ଟିକିଏ ବେଶୀ ବୟସରେ ପ୍ରଥମ ବିବାହ କରିଥିଲେ । ତାଙ୍କର ପ୍ରଥମା ସ୍ତ୍ରୀଙ୍କ ନାମ ନିଶାମଣି ଦେବୀ । ବିବାହ ହେବାର ପାଞ୍ଚ ବର୍ଷ ହୋଇଗଲେ ମଧ ଗୋଟିଏ

ସନ୍ତାନ ନ ହେବାରୁ ନରହରି ବାବୁ ନାନା ଯାଗ ଯଜ୍ଞ ଓ ଔଷଧ ଚିକିତ୍ସା ଆଦି କରାଇଲେ । ସେଥିରେ କିଛି ଫଳ ନ ହେବାରୁ ତାଙ୍କର ବିଶେଷ ମନ କଷ୍ଟ ଦେଖି ନିଶାମଣି ଦେବୀ ମା' ହବାର ସମସ୍ତ ଆଶା ତ୍ୟାଗ କରି ନରହରି ବାବୁଙ୍କୁ ଦ୍ୱିତୀୟବାର ବିବାହ କରିବାକୁ ପ୍ରବର୍ତ୍ତାଇଲେ । ନରହରି ବାବୁ ଶେଷରେ ରାଜି ହେବାରୁ ରଜନୀ ଦେବୀଙ୍କ ସହିତ ତାଙ୍କର ଦ୍ୱିତୀୟ ବାର ବିବାହ ହେଲା । ନିଶାମଣି ଦେବୀ ବିବାହର ସମସ୍ତ ବନ୍ଦୋବସ୍ତ କରି ନିଜେ ରଜନୀ ଦେବୀଙ୍କୁ ପସନ୍ଦ କଲେ । ଏ ବିବାହରେ ସେ ନିଜେ ଖୁବ୍ ଖୁସୀ ହୋଇ ସମସ୍ତ କାର୍ଯ୍ୟ କଲେ । ସମସ୍ତେ ଆଶଙ୍କା କରିଥିଲେ ଯେ, ବିବାହ ପରେ ଦୁଇ ସଉତୁଣୀଙ୍କ ଭିତରେ କଳହ ହେବ । କିନ୍ତୁ ନିଶାମଣି ଦେବୀ ପତିପ୍ରାଣା ଏବଂ ଶାନ୍ତ ପ୍ରକୃତିର । ସ୍ୱାମୀଙ୍କ ସୁଖରେ ହିଁ ତାଙ୍କର ସୁଖ । ବିବାହ ପରେ ବର୍ଷକ ପର୍ଯ୍ୟନ୍ତ ଦୁହିଁଙ୍କ ଭିତରେ କୌଣସି ମନୋମାଳିନ୍ୟ ଘଟି ନାହିଁ । ଦୁହେଁ ସୁଖରେ ଦୁଇଟି ଭଉଣୀ ଭଳି ଥିଲେ । ବର୍ଷକ ପରେ ରଜନୀ ଦେବୀଙ୍କ ଗୋଟିଏ ପୁତ୍ର ସନ୍ତାନ ହେଲା । ଏହା ପରେ ଦୁଇ ଜଣଙ୍କ ମଧ୍ୟରେ ମନୋମାଳିନ୍ୟ ଆରମ୍ଭ ହେଲା । ଏହାର କାରଣ ରଜନୀ ଦେବୀ । ତାଙ୍କ ମନ ନାନା କୁସଂସ୍କାରରେ ପୂର୍ଣ୍ଣ । ନିଶାମଣି ପୁତ୍ରହୀନା ବୋଲି ସେ କେବେହେଁ ତାଙ୍କୁ ପୁଅ ପାଖକୁ ଛାଡ଼ନ୍ତି ନାହିଁ । ପୁଅର ମା' ହେବା ପରେ ତାଙ୍କର ଟିକିଏ ଗର୍ବ ମଧ୍ୟ ବଢ଼ିଲା । ନିଶାମଣି ଦେବୀ ପୁଅକୁ ଟିକିଏ ଆଦର କଲେ ସେ ନାନା ଭର୍ତ୍ସନା କରନ୍ତି । ନରହରି ବାବୁ ମଧ୍ୟ ରଜନୀ ଦେବୀଙ୍କୁ ପ୍ରକାଶ୍ୟ ଭାବରେ ଅଧିକ ସ୍ନେହ ଦେଖାଇଲେ ଓ ନିଶାମଣି ଦେବୀଙ୍କୁ ଅବହେଳା କଲେ । ଏହିପରି ନାନା କାରଣରୁ ସାମାନ୍ୟ କଥାନେଇ ଦୁହିଁଙ୍କ ମଧ୍ୟରେ କଳହ ପ୍ରାୟ ଲାଗିଥାଏ । ପ୍ରାୟ ମାସକ ପୂର୍ବେ ଏହିପରି ଏକ ଚୂଡ଼ାନ୍ତ କଳହ ପରେ ନିଶାମଣି ଦେବୀ ତାଙ୍କ ବାପ ଘରକୁ ଚାଲିଗଲେ; ବର୍ଷେ ପରେ ଫେରିବେ ବୋଲି କହିଗଲେ । କିନ୍ତୁ ଅଳ୍ପ ଦିନ ପରେ, ମୃତ୍ୟୁର ଚାରି ଦିନ ପୂର୍ବେ ଫେରି ଆସିଲେ । ଫେରିବା ପରେ ତାଙ୍କର ଅଦ୍ଭୁତ ପରିବର୍ତ୍ତନ ଦେଖାଗଲା । ରଜନୀ ଦେବୀ ନାନା ଭର୍ତ୍ସନା କଲେ ମଧ୍ୟ ସେ ନୀରବ ରହିଲେ । ଦୁହେଁ ପ୍ରଥମରୁ ରାତି ନ ପାହୁଣୁ ନଈକୁ ନିତି ଗାଧୋଇଯାନ୍ତି ଏବଂ ସେଠି ଦୁହେଁ ପୂଜାପୂଜି କରନ୍ତି । ମରିବା ଦିନ ମଧ୍ୟ ଶେଷ ରାତିରେ ଦୁହେଁ ପୂର୍ବପରି ଗାଧୋଇବାକୁ ଗଲେ । ନଈରେ କୌଣସି କାରଣରୁ ଦୁହିଁଙ୍କ ମଧ୍ୟରେ ଭୀଷଣ କଳହ ହୁଏ । ନିଶାମଣି ଦେବୀଙ୍କ ଖାସ ଚାକରାଣୀ ମଧ୍ୟ ସାଙ୍ଗରେ ଯାଏ । ସେ ଫେରି ଆସି ନରହରି ବାବୁଙ୍କୁ କହିଲା, ''ନିଶାମଣି ଦେବୀ ରଜନୀ ଦେବୀଙ୍କୁ 'ତୋ ପୁଅ ମରୁ' କହିବାରୁ ରଜନୀ ଦେବୀ କହିଲେ, 'ମୁଁ ବିଷ ରଖିଛି, ତୁ ଖାଇ ମର ।' ବର୍ତ୍ତମାନ ଦୁଇଜଣଙ୍କ ଭୀଷଣ କଳହ ଲାଗିଛି ।'' ନରହରି ବାବୁ ଏ କଥାକୁ ବିଶେଷ କିଛି ଗୁରୁତ୍ୱ ଦେଲେ ନାହିଁ । କିନ୍ତୁ କିଛିକ୍ଷଣ ପରେ ରଜନୀ ଦେବୀ ଏକା ଫେରି ଆସିବାରୁ ସେ ଟିକିଏ ଉଦ୍‌ବେଗ ପ୍ରକାଶ କଲେ । ରଜନୀ ଦେବୀଙ୍କୁ ପଚାରିବାରୁ ସେ କହିଲେ, 'ସେ ମଲାଣି, ମୁଁ ତାକୁ ମାରି ଆସିଛି ।' ନରହରି ବାବୁ କିଛିକ୍ଷଣ ଅପେକ୍ଷା କରି, ନିଶାମଣି ଦେବୀ ତଥାପି ନ ଫେରିବାରୁ

ସେ ନଈକୁ ଯାଇ ଦେଖନ୍ତି, ନିଶାମଣି ଦେବୀଙ୍କ ମୃତ ଶରୀର ନଈବାଲିରେ ପଡ଼ିଛି ।

ଗୋବର୍ଦ୍ଧନ ବାବୁ ପଚାରିଲେ, ''ନଈ କୂଳରେ ସେମାନେ ଯେ ପୂଜା କରନ୍ତି, ସେଥିପାଇଁ କ'ଣ ଭୋଗ କରନ୍ତି ?''

''ହଁ, କେଉଁଦିନ କଦଳୀ ବା ଉଖୁଡ଼ା ବା ଫଳ ସେମାନେ ନିଅନ୍ତି ।''

''ସେ ଭୋଗକୁ କ'ଣ ସେମାନେ ସେଇଠି ଖାଆନ୍ତି ?''

''ହଁ, ନିଜେ ଟିକିଏ ପ୍ରସାଦ ପାଇ ବାକି ସବୁ ଗାଁର ପିଲାମାନଙ୍କୁ ଦେଇ ଦିଅନ୍ତି ।''

''ଆପଣଙ୍କୁ ଆଉ ବିଶେଷ କିଛି ପଚାରିବାର ନାହିଁ । ଟିକିଏ ରଜନୀ ଦେବୀ ସହିତ ଦେଖା ହେଲେ କେତେକ କଥା ପଚାରିବି ଯାହା କି ଆପଣ କହି ପାରିବେ ନାହିଁ ।''

ଅନ୍ଦର ମହଲକୁ ଗଲୁ । ରଜନୀ ଦେବୀ କାଠ ପିତୁଳା ପରି ନିର୍ବାକ ନିଶ୍ଚଳ ଭାବରେ ବସିଥାନ୍ତି । କେତେକ ଅପରିଚିତ ଲୋକଙ୍କୁ ଦେଖି ମଧ୍ୟ ସେ ଦେଖି ପାରିଲେ ନାହିଁ । ନରହରି ବାବୁ ତାଙ୍କୁ ଆମର ପରିଚୟ ଦେବାରୁ ସେ ଓଢ଼ଣା ଟାଣିଦେଇ ମୁହଁ ବୁଲାଇ ବସିଲେ । ଗୋବର୍ଦ୍ଧନ ବାବୁ ତାଙ୍କୁ ସାହାଯ୍ୟ କରିବାକୁ ଚାହାନ୍ତି ଶୁଣି ସେ ହଠାତ୍ କାନ୍ଦି ପକାଇଲେ । ଉଚ୍ଛ୍ୱାସର ଟିକିଏ ଉପଶମ ହେବା ପରେ ଗୋବର୍ଦ୍ଧନ ବାବୁ ପଚାରିଲେ, ''ଆପଣମାନେ ନଈ କୂଳରେ କ'ଣ ନିଜେ ନିଜର ଭୋଗ ଖାଆନ୍ତି ?''

''ନା, ସେ ମୋର ଭୋଗ ଖାଏ, ମୁଁ ତା'ର ଖାଏ ।''

''ଭୋଗ କିଏ ସଜାଡ଼ି ରଖନ୍ତି ?''

ରଜନୀ ଦେବୀ ଟିକିଏ ନୀରବ ରହି କହିଲେ, ''ସିଏ'' ।

ଗୋବର୍ଦ୍ଧନ ବାବୁ କହିଲେ, ''ଆପଣ ମିଛ କହୁଛନ୍ତି । ଆପଣଙ୍କ ଘରେ ହେଇ ସେଇଠି ଭୋଗ ହାଣ୍ଡି ରହିଛି । ଆପଣ ଆପଣଙ୍କ ଭୋଗ ସଜାଡ଼ନ୍ତି, ଆଉ ସେ ସଜାଡ଼ନ୍ତି ତାଙ୍କର ।''

ଏକଥାରେ ରଜନୀ ଦେବୀ ପୁଣି କାନ୍ଦି ପକାଇଲେ । ନରହରି ବାବୁ ଆଶ୍ଚର୍ଯ୍ୟ ହୋଇ ଛିଡ଼ା ହୋଇପଡ଼ିଲେ ।

ଗୋବର୍ଦ୍ଧନ ବାବୁ ପୁଣି ପଚାରିଲେ, ''ଆପଣ କାଲି ତାଙ୍କ ଭୋଗ ଖାଇଥିଲେ ?''

''ହଁ'' ।

ଗୋବର୍ଦ୍ଧନ ବାବୁ ଭୋଗ ହାଣ୍ଡି ପାଖକୁ ଯାଇ ସେଇଠି ପରୀକ୍ଷା କଲେ । ତା'ପରେ ସେ ଘରର ଝରକା ପାଖକୁ ଯାଇ କିଛିକ୍ଷଣ ବାହାରକୁ ଚାହିଁଲେ । ମୋତେ ଡାକି କହିଲେ, ''ଡାକ୍ତର, ଦେଖ । ଦେଖିଲି ଅନେକଗୁଡ଼ିଏ ଉଖୁଡ଼ା ଝରକା ତଳେ ଘର ଆରପାଖେ ପଡ଼ିଛି । ମୁଁ ଏଥିରୁ କିଛି ବୁଝି ପାରିଲି ନାହିଁ ହତ୍ୟା ସହିତ ଏହାର ସମ୍ପର୍କ କେଉଁଠି । କିନ୍ତୁ ଗୋବର୍ଦ୍ଧନ ବାବୁ କହିଲେ, ''ଯାହା ଜାଣିବାର ମୁଁ ଜାଣି ପାରିଛି । କେବଳ ଯେଉଁ ହାତ ବାକ୍ସରୁ ବିଷ ଶିଶିଟି ମିଳିଛି, ମୁଁ ତାହା ଦେଖିବାକୁ ଚାହେଁ ।''

ନରହରି ବାବୁ ହତାଶ ଭାବରେ କହିଲେ, ''ତା'ହେଲେ ବଞ୍ଚାଇବାର କୌଣସି ଆଶା ନାହିଁ ?''

ଗୋବର୍ଦ୍ଧନ ବାବୁ ହସି କହିଲେ, ''ମୋର ଶେଷ ପ୍ରମାଣ ସୁବୋଧ ଉପରେ ନିର୍ଭର କରୁଛି ।''

ନରହରି ବାବୁ ଓ ମୁଁ ଅବାକ୍ ହୋଇ ଚାହିଁ ରହିଲୁ । ଗୋବର୍ଦ୍ଧନ ବାବୁ ପୁଣି ହାତ ବାକ୍ସ କଥା ପଚାରିବାରୁ ନରହରି ବାବୁ କହିଲେ, ''ପୁଲିସ ସେ ବାକ୍ସ ଜବତ୍ କରି ନେଇଛି ।''

ଗୋବର୍ଦ୍ଧନ ବାବୁ ପଚାରିଲେ, ''ଏ ବାକ୍ସର ଚାବି କ'ଣ ରଜନୀ ଦେବୀ ସବୁବେଳେ ନିଜେ ରଖନ୍ତି ?''

ନରହରି ବାବୁ କହିଲେ, ''ସେ ଟିକିଏ ସନ୍ଦେହୀ ପ୍ରକୃତିର । ଏହି ବାକ୍ସରେ ତା'ର ସବୁ ଗହଣା ଆଦି ଥାଏ । ସେ ଚାବି ସବୁବେଳେ କାନି ଗଣ୍ଠିରେ ବାନ୍ଧି ରଖେ ।''

''ତା' ହେଲେ ନିଶାମଣି ଦେବୀଙ୍କ ଚାବିପେଣ୍ଟାଟି ମୋତେ ଟିକିଏ ଦେଖାଇବେ ?''

ନରହରି ବାବୁ ଅନେକକ୍ଷଣ ପରେ ଖୋଜିଆଣି ଚାବିପେଣ୍ଟାଟି ଦେଲେ । ଗୋବର୍ଦ୍ଧନ ବାବୁ ସେଇଟି ପକେଟରେ ରଖି କହିଲେ, ''ଡାକ୍ତର, ଚାଲ ଟିକିଏ ନଈ ବାଲିକୁ ଯିବା ।'' ନଈ ବାଲିରେ ସେ ମୋତେ ଟିକିଏ ଅଦ୍ଭୁତ ଅନୁରୋଧ କଲେ । ତାହାର ଅର୍ଥ ବା ଏ ଘଟଣା ସହିତ ତାହାର ସମ୍ପର୍କ ବୁଝି ନ ପାରିଲେ ମଧ୍ୟ ତାଙ୍କ ନିର୍ଦ୍ଦେଶ ଅନୁସାରେ ନଈର ବନ୍ଧ ତଳକୁ ବାଲି ଉପରେ ଶୋଇଲି । ସେ ମୋତେ ଟାଣି ଟାଣି ପ୍ରାୟ ଦଶ ହାତ ପର୍ଯ୍ୟନ୍ତ ନେଲେ । ଏ ଚିହ୍ନଟି ସହିତ ଅନ୍ୟ ଚିହ୍ନଟି ତୁଳନା କରି ସେ ଟିକିଏ ହସିଲେ ।

ପୁଲିସ ଷ୍ଟେଶନକୁ ଯାଇ ସେ ହାତ ବାକ୍ସଟି ଦେଖିବାକୁ ଅନୁରୋଧ କଲେ । ଇନ୍ସପେକ୍ଟର ବାକ୍ସଟି ଆଣି ଦେଲେ । ସେ ବାକ୍ସର ଚାବି ଗଳିବା ଜାଗାଟି କାଚରେ ଅନେକ ବେଳଯାଏ ପରୀକ୍ଷା କରି ଚାବିପେଣ୍ଟାରୁ ଗୋଟିଏ ଚାବି ବାଛି ତାହା ମଧ୍ୟ କାଚ ତଳେ ରଖି ପରୀକ୍ଷା କଲେ । ତାଙ୍କ ମୁହଁରୁ ବୁଝିଲି, ତାଙ୍କର ଅନୁମାନ ସତ୍ୟ ବୋଲି ସେ ସେଥିରୁ ପ୍ରମାଣ ପାଇଲେ । ବାକ୍ସଟି ଠେଲି ରଖିଦେଇ ସେ ପଚାରିଲେ, ''ଆପଣ ଶେଷ ରିପୋର୍ଟ ଦେଲେଣି ?''

''ନାଇଁ, ଲେଖୁଛି ।''

''କ'ଣ ଲେଖୁଛନ୍ତି ?''

''ଲେଖିବାର ଆଉ କ'ଣ ଅଛି ? ରଜନୀ ଦେବୀ ଯେ ହତ୍ୟା କରିଛନ୍ତି, ଏଥିରେ ଆଉ ସନ୍ଦେହର ଅବକାଶ କେଉଁଠି ? ଡାକ୍ତରଙ୍କ ରିପୋର୍ଟରୁ ଯେଉଁ ବିଷରୁ ମୃତ୍ୟୁ ହୋଇଛି ଜଣାଯାଏ, ସେ ବିଷ ନିଶାମଣି ଦେବୀଙ୍କ ହାତ ବାକ୍ସରୁ ବାହାରିଛି । ରଜନୀ ଦେବୀଙ୍କ ଭୋଗ ଖାଇ ତାଙ୍କର ମୃତ୍ୟୁ ହୋଇଛି । ରଜନୀ ଦେବୀ ସେଇ ଦିନ ନିଶାମଣି ଦେବୀଙ୍କୁ ବିଷ

ଦେଇ ମାରିବା ଉଦ୍ଦେଶ୍ୟ ମଧ୍ୟ ପ୍ରକାରାନ୍ତରେ ଜଣାଇଛନ୍ତି । ତାଙ୍କୁ ମାରିବା ପରେ ସେ ତାଙ୍କୁ ଟାଣି ଟାଣି ନେଇ ନଈ ବାଲିରେ ପକାଇଛନ୍ତି । ଏହା ଭିତରେ ସନ୍ଦେହର ଅବକାଶ କାହିଁ ?''

''ତଥାପି- ତଥାପି, ସେଇ ଦିନ କଳିର କାରଣଟି ବଡ଼ ଅଦ୍ଭୁତ ନୁହଁ କି ?''

ଏ ଅବାନ୍ତର କଥାରେ ଇନ୍‌ସପେକ୍ଟର ଓ ମୁଁ ଟିକିଏ ହସିଲୁ । ଗୋବର୍ଦ୍ଧନ ବାବୁ ବୁଝିପାରି କହିଲେ, ''ଦେଖନ୍ତୁ, ଦୁଇଟି ଠିକ୍ ବିପରୀତ କାରଣରୁ ଗୋଟିଏ ଘଟଣା ମଧ୍ୟ ଘଟି ପାରେ । ଯେପରି ଧରନ୍ତୁ, ଆପଣ ସ୍ନେହରେ ଯେତେ ଜୋର୍‌ରେ ଗୋଟିଏ ଚାପୁଡ଼ା ମାରିପାରନ୍ତି, ଖୁବ୍ ଘୃଣାରେ ବା କ୍ରୋଧରେ ମଧ୍ୟ ସେତିକି ଜୋର୍‌ରେ ଗୋଟିଏ ଚାପୁଡ଼ା ମାରିପାରନ୍ତି । ଘଟଣାଟି ଏକା ହେଲେ ମଧ୍ୟ କାରଣ ଦିଓଟି ଠିକ୍ ବିପରୀତ । ଦୁଇ ତିନୋଟି ବଡ଼ ବଡ଼ ଘଟଣା ସହିତ ଆପଣଙ୍କ ସିଦ୍ଧାନ୍ତକୁ ଖାପ ଖୁଆଇ ପାରିଲେ ଯଥେଷ୍ଟ ହେଲା ନାହିଁ । ପ୍ରତ୍ୟେକ ସାମାନ୍ୟ ଘଟଣା ସହିତ ମଧ୍ୟ ଆପଣଙ୍କ ସିଦ୍ଧାନ୍ତକୁ ଖାପ୍ ଖୁଆଇବାକୁ ହେବ । ତାହା ଯଦି ନ ପାରନ୍ତି, ତେବେ ଜାଣିବେ, ଆପଣଙ୍କ ସିଦ୍ଧାନ୍ତରେ କେଉଁଠି ଭୁଲ୍ ଅଛି ।''

ଇନ୍‌ସପେକ୍ଟର ବିରକ୍ତ ହୋଇ କହିଲେ, ''ଆପଣ ତେବେ ରଜନୀ ଦେବୀଙ୍କ ଓକିଲଙ୍କୁ ସବୁ ବୁଝାଇ କହିବେ । ମୋର ସିଦ୍ଧାନ୍ତରେ ମୋର ଦୃଢ଼ ବିଶ୍ୱାସ ଜନ୍ମିଛି ।''

''ଆପଣ ନ ମାନିଲେ ତାହା ହିଁ କରିବାକୁ ହେବ । କିନ୍ତୁ ସେଥିରେ ଆପଣଙ୍କର କ୍ଷତି ଛଡ଼ା ଲାଭ ନାହିଁ । ଆପଣ କେସ୍‌ରେ ହାରିଗଲେ ଆପଣଙ୍କର ବଦନାମ ହେବ ଏବଂ ଚିରଦିନ ପାଇଁ ଉନ୍ନତିର ପଥ ବନ୍ଦ ରହିଯିବ । ତା'ଛଡ଼ା ଜଣେ ନିର୍ଦ୍ଦୋଷ ମହିଳାଙ୍କୁ ଅଯଥା ଅପମାନ କରି ଲାଭ କ'ଣ ? ମୁଁ ଯେଉଁ ସନ୍ଦେହ ଗୁଡ଼ିକ କହୁଛି, ସେଗୁଡ଼ିକ ଆପଣ ପୁଣି ଥରେ ଅନୁସନ୍ଧାନ କରି ଦେଖନ୍ତୁ । ତା'ପରେ ଯଦି ମନେ କରନ୍ତି ଯେ ଆପଣଙ୍କ ସିଦ୍ଧାନ୍ତ ଠିକ୍, ତେବେ ସେହି ପରି ରିପୋର୍ଟ ଦିଅନ୍ତୁ - ମୋର ଆପତ୍ତି ନାହିଁ ।''

ଏହା କହି ଗୋବର୍ଦ୍ଧନ ବାବୁ ତାଙ୍କ ଥିଓରିର ଗୋଟାଏ ପୂରା ବ୍ୟାଖ୍ୟାନ ଦେଲେ:-

''ପ୍ରଥମ ସନ୍ଦେହ ହୁଏ, ବାପ ଘରୁ ଫେରିବା ପରେ ନିଶାମଣି ଦେବୀଙ୍କ ଆଚରଣ । ରଜନୀ ଦେବୀଙ୍କ ନର୍ମମ କଥାରେ ତାଙ୍କର ପୂର୍ବେ ଯେପରି ଧୈର୍ଯ୍ୟଚ୍ୟୁତି ହେଉଥିଲା ଏବଂ ଯାହା ହେବା ସ୍ୱାଭାବିକ ତାହା ଘଟି ନାହିଁ । ବାପ ଘରୁ ଫେରିବା ପରେ ସେ ମୃତ୍ୟୁ ଦିନ ଭୋରରେ ଗାଧୋଇ ଯିବା ପର୍ଯ୍ୟନ୍ତ ଅସ୍ୱାଭାବିକ ଭାବରେ ଶାନ୍ତ ଥିଲେ । ଏ ଆଚରଣରେ ମୋର ସନ୍ଦେହ ହୁଏ ସେ ଗୋଟିଏ ଦୂରଭିସନ୍ଧି ନେଇ ବାପ ଘରୁ ହଠାତ୍ ଫେରିଲେ । ସେ ଯାଇଥିଲେ ଅନ୍ତତଃ ବର୍ଷକ ପାଇଁ ସେଠି ରହିବାକୁ, କିନ୍ତୁ ଫେରିଲେ ହଠାତ୍ କାହାକୁ ନ ଜଣାଇ । ଏହା ମୂଳରେ ଅଛି ସ୍ୱାଭାବିକ ହିଂସା । ତା'ପରେ ଦେଖନ୍ତୁ, ମୃତ୍ୟୁ ଦିନ ରାତିରେ ନିଶାମଣି ଦେବୀଙ୍କ ଆଚରଣ । ନଈ କୂଳରେ ସେ ନିର୍ମମ ଭାବରେ କହିଲେ, ''ତୋ ପୁଅ ମରୁ ।'' ନିଶାମଣି ଦେବୀ ଶାନ୍ତ ପ୍ରକୃତିର ଏବଂ ପତିପରାୟଣା; ସେ ତାଙ୍କର ସ୍ୱାମୀଙ୍କ

ପୁଅକୁ ମଧ୍ୟ ଖୁବ୍ ସ୍ନେହ କରନ୍ତି । ନିଜ ମଧ୍ୟରେ ଯେତେ କଳହ ଲାଗିଲେ ତାଙ୍କ ପ୍ରକୃତିର ନାରୀ ଏପରି କହିବା ଅସମ୍ଭବ । ଏପରି କହିବାର କାରଣ, ମୁଁ ଅନୁମାନ କରେ ଏବଂ ଏହା ନିଶ୍ଚୟ ଯେ, ରଜନୀ ଦେବୀଙ୍କ ମୁହଁରୁ 'ମୁଁ ବିଷ ରଖିଛି, ତୁ ଖାଇ ମର' ବା ଏହିପରି ଗୋଟିଏ କଥା ବାହାର କରିବାକୁ ସେ ଚାହିଁଥିଲେ । ରଜନୀ ଦେବୀ ବିଷ ଦେଇ ବିଷ ବୋତଲଟି ଫୋପାଡ଼ି ଦେବା ଖୁବ୍ ସ୍ୱାଭାବିକ । କିନ୍ତୁ ତା' ନକରି ବିଷ ବୋତଲଟି ସେ ହାତ ବାକ୍ସରେ ସାଇତି ରଖିବା ଉଦ୍ଦେଶ୍ୟ କ'ଣ ? ବର୍ତ୍ତମାନ ଏଇ ଚାବିଟି ଦେଖନ୍ତୁ, ଏହା ନିଶାମଣି ଦେବୀଙ୍କ ଚାବି । ଦେଖନ୍ତୁ, ଏହାର ଅଗଟି କିପରି ମୋଡ଼ି ଯାଇଛି । ମୋର ଦୃଢ଼ ଧାରଣା, ଏଇ ଚାବିରେ ବାକ୍ସ ଖୋଲା ହୋଇଥିଲା । ପୁଣି ଦେଖନ୍ତୁ ଉଖୁଡ଼ା କଥା, ଝରକା ସେ ପାଖରେ କେତେଗୁଡ଼ିଏ ଉଖୁଡ଼ା ପଡ଼ିଥିବାର ଦେଖିଲି । ରଜନୀ ଦେବୀ ଉଖୁଡ଼ା ସହିତ ବିଷ ମିଶାଇ ଥିଲେ ହାଣ୍ଡିରୁ କେତେଗୁଡ଼ିଏ ଉଖୁଡ଼ା ବାହାର କରି ଭୋଗ ସଜାଡ଼ି ବିଷ ମିଶାଇ ଥାଆନ୍ତେ । ବାକି ଉଖୁଡ଼ାତକ ପକାଇ ଦେବାର କୌଣସି କାରଣ ନାହିଁ । ପୁଣି, ଭୋଗ ପାଇଁ ଯେତିକି ଉଖୁଡ଼ା ଦରକାର ସେତିକି ଉଖୁଡ଼ା ଭୋଗ ହାଣ୍ଡିରେ ରଖି ବାକିତକ ନିଶାମଣି ଦେବୀ ଫିଙ୍ଗି ଦେଲେ; କାରଣ ସବୁଥିରେ ବିଷ ମିଶାଇଥିଲେ ବିଭ୍ରାଟ ହୋଇଥାଆନ୍ତା । ଭୋଗ ଅଲଗା କରି ବାହାର କରି ସେଥିରେ ବିଷ ମିଶାଇଥିଲେ ରଜନୀ ଦେବୀ ସନ୍ଦେହ କରିଥାଆନ୍ତେ । ସେଥିପାଇଁ ସେ ଭୋଗ ହାଣ୍ଡିରେ ହିଁ ବିଷ ମିଶାଇଲେ । ତା'ପରେ ଆପଣ କୁହନ୍ତି ଯେ ନିଶାମଣି ଦେବୀଙ୍କ ଶବକୁ କିଏ ଘୋଡ଼ାଇଛି । କିନ୍ତୁ ମୁଁ ପରୀକ୍ଷା କରି ଦେଖିଛି ତା' ନୁହଁ, ସେ ନିଜେ ଗୋଡ଼ରେ ଠେଲି ଠେଲି ଏହିପରି କରିଛନ୍ତି । ଉଦ୍ଦେଶ୍ୟ ଯେ ତାଙ୍କୁ ଘୋଷଡ଼ା ହୋଇଛି ଏହିପରି ପ୍ରମାଣ ରଖିବା । ବର୍ତ୍ତମାନ ଘଟଣାଟି ଏହିପରି ମୋତେ ଜଣାପଡ଼ିଲା । ନିଶାମଣି ଦେବୀ ମା' ନ ହୋଇ ପାରିବାରୁ ଏବଂ ସ୍ୱାମୀଙ୍କ ସ୍ନେହ ହରାଇବାରୁ ନିଜର ଜୀବନ ବ୍ୟର୍ଥ ମନେକଲେ । ମନୁଷ୍ୟ ସବୁ ବିଫଳତା ସହିପାରେ, କିନ୍ତୁ ଚରମ ବ୍ୟର୍ଥତା ସହିପାରେ ନାହିଁ । ଚରମ ବ୍ୟର୍ଥତା ଆସିଲେ ସେ ହୁଏ ପାଗଳ କିମ୍ବା କରେ ଆତ୍ମହତ୍ୟା । ନିଶାମଣି ଦେବୀଙ୍କ ଜୀବନରେ ଆସିଥିଲା ସେହି ଚରମ ବ୍ୟର୍ଥତା-ସନ୍ତାନହୀନତା । ରଜନୀ ଦେବୀଙ୍କ ଗଞ୍ଜଣା ଓ ଗର୍ବ ତାଙ୍କର ଜୀବନକୁ ବିଷମୟ କରିଦେଲା । ସେ ଆତ୍ମହତ୍ୟା କରିବାକୁ ସ୍ଥିର କଲେ । କିନ୍ତୁ ତାଙ୍କର ମନେହେଲା ଯେ ଏହା ସହିତ ଯଦି ସେ ରଜନୀ ଦେବୀଙ୍କୁ ଜଡ଼ାଇ ପାରନ୍ତି, ତା' ହେଲେ ଠିକ୍ ପ୍ରତିଶୋଧ ନିଆ ହେବ । ତେଣୁକରି ଦିନେ ସେ ଭୋଗ ସହିତ ଗୁପ୍ତରେ ବିଷ ମିଶାଇ ବିଷ ବୋତଲଟି ରଜନୀ ଦେବୀଙ୍କ ବାକ୍ସରେ ରଖିଦେଇ ଗଲେ । ସେହିଦିନ ବିନା କାରଣରେ ଜାଣିଜାଣିକି ସେ ରଜନୀ ଦେବୀଙ୍କ ସହିତ କଳହ କରି ନିର୍ମମ କଥା କହିଲେ । ବର୍ତ୍ତମାନ ଏହି ସିଦ୍ଧାନ୍ତଟି ସବୁ ସାମାନ୍ୟ ଓ ବଡ଼ ଘଟଣାଗୁଡ଼ିକ ସହିତ ଖାପ ଖାଉଛି କି ନା ଦେଖନ୍ତୁ । ଯଦି ଖାପ ଖାଏ, ତା'ହେଲେ ଏହା ହିଁ ଏକମାତ୍ର ସିଦ୍ଧାନ୍ତ ଜାଣିବେ ।''

ଗୋବର୍ଦ୍ଧନ ବାବୁ ଓ ମୁଁ ଥାନାରୁ ଫେରି ଆସିଲୁ । ନରହରି ବାବୁ ଶୁଣି ତାଙ୍କର କୃତଜ୍ଞତା ଜଣାଇବାକୁ ଆସିଲେ । ସେ ବାଧ କରାଇ ଗୋବର୍ଦ୍ଧନ ବାବୁଙ୍କୁ ପାଞ୍ଚ ହଜାର ଟଙ୍କା ଦେଇଗଲେ । କହିବା ବାହୁଲ୍ୟ, ଗୋବର୍ଦ୍ଧନ ବାବୁଙ୍କ କଥା ପରେ ଇନ୍‌ସିପେକ୍ଟର ପୁଣି ଥରେ ଅନୁସନ୍ଧାନ କରି ଯେଉଁ ରିପୋର୍ଟ ଦେଲେ, ତଦ୍ଦ୍ୱାରା ସେ ଆତ୍ମହତ୍ୟା ବୋଲି ପ୍ରମାଣ କଲେ ।

ନିଶାମଣି ଦେବୀଙ୍କ ଏ ଚକ୍ରାନ୍ତ ଜଘନ୍ୟ ହେଲେ ହେଁ ମୋର ରଜନୀ ଦେବୀଙ୍କ ପ୍ରତି ଘୃଣା ହେଲା । ଗୋବର୍ଦ୍ଧନ ବାବୁ ଏ ବିଷୟରେ କହିଲେ, ‘‘ଡାକ୍ତର, ସମସ୍ତେ ଚାହାନ୍ତି ଗୋଟିଏ ପୁଅ, ଆମେ ଭାବୁ ଏହା ଆମର ଅପତ୍ୟ ସ୍ନେହ । ମୁଁ ଭାବେ ଯେ, ଏହା ଆମର ନିଜ ପ୍ରତି ସ୍ନେହ ଓ ମୋହ । ଅପତ୍ୟ ସ୍ନେହ ଲୋକେ ଯାହାକୁ କହନ୍ତି, ତାହା ନିଜକୁ ଭଲ ପାଇବାର ରୂପାନ୍ତର ମାତ୍ର । ମନୁଷ୍ୟର ଅମର ହେବାର ଗୋଟାଏ ଅଦମ୍ୟ ଇଚ୍ଛା ଅଛି । ଆମେ ଚାହୁଁ ମରି ମଧ ଅମର ହେବାକୁ । ଏହି ଇଚ୍ଛାରୁ ହିଁ କିଏ ହବାକୁ ଚାହେଁ ବଡ଼ ସାହିତ୍ୟିକ, କିଏ ବଡ଼ ସୈନିକ, କିଏ ବଡ଼ ଦାର୍ଶନିକ ଇତ୍ୟାଦି- ଅବଶ୍ୟ ଯାହାର ଅନ୍ତରର ପ୍ରେରଣା ଅଛି ତା’ କଥା ଅଲଗା । ସାଧାରଣ ଲୋକେ ଅମର ହେବାର ଏକମାତ୍ର ଉପାୟ - ପୁଅ ଭିତରେ ପୁଣି ବଞ୍ଚିବା । ପୁଅ ଥିଲେ ଅନ୍ତତଃ ଲୋକେ କହିବେ ‘‘ଅମୁକ ଲୋକର ପୁଅ ।’ ଏଥିପାଇଁ ସାଧାରଣ ଲୋକେ ଚେଷ୍ଟା କରନ୍ତି ତାଙ୍କର ପୁଅ କିପରି ବଡ଼ ଲୋକ ହେବ ।  ଏହା କେବଳ ନିଜେ ଅମର ହେବାର ଇଚ୍ଛା ।’’



# ନୂଆ ନିବାସ

ମୋର ଏଟା ଡାକ୍ତରୀ କଲେଜର ଶେଷ ବର୍ଷ । ବାହାରେ ରହି ପଢ଼ାପଢ଼ି ହୋଇପାରିବ ନାହିଁ ଭାବି ମୁଁ କଲେଜ ହଷ୍ଟେଲକୁ ଯିବାର ବନ୍ଦୋବସ୍ତ କରୁଥାଏ । ଦୁଇଟି ଘଟଣା ଅନୁସନ୍ଧାନ କରି ଗୋବର୍ଦ୍ଧନ ବାବୁଙ୍କର ବେଶ୍ ଅର୍ଥାଗମ ହୋଇଥାଏ । ସେ ସେହି ଟଙ୍କାରେ ଅନେକଗୁଡ଼ିଏ ବହି ଓ ତାଙ୍କର ରସାୟନ ବିଜ୍ଞାନ ଗବେଷଣା ପାଇଁ ଅନେକ ଯନ୍ତ୍ରପାତି କିଣି ଥାଆନ୍ତି । ସାନ ଘରେ ସେ ସବୁ ପାଇଁ ସ୍ଥାନର ଅଭାବ ହେବାରୁ ସେ ଗୋଟିଏ ବଡ଼ ଭଡ଼ାଘର ଖୋଜୁଥାନ୍ତି । ତାଙ୍କର ଇଚ୍ଛା ନିର୍ଜନ ସ୍ଥାନରେ ଗୋଟିଏ ବଡ଼ କୋଠାଘର ଭଡ଼ା ନେବାକୁ । ମନ ମୁତାବକ ଘର ମିଳୁ ନଥାଏ । କିଛିଦିନ ପରେ ସେ ଗୋଟିଏ ଘରର ସନ୍ଧାନ ପାଇଲେ । ସହର ଠାରୁ ଅନେକ ଦୂରରେ ଗୋଟିଏ ବଡ଼ ଘର-ଚାରିଆଡ଼େ ବିସ୍ତୀର୍ଣ୍ଣ ଜମି । ଘରକୁ ଲାଗି ସାମାନ୍ୟ ଜଙ୍ଗଲ । ଗୋବର୍ଦ୍ଧନ ବାବୁ ଘରର ବ୍ରଜବାବୁ ସାଙ୍ଗେ ସବୁ କଥାବାର୍ତ୍ତା ଛିଣ୍ଡାଇ ଆସିଲେ । ମାସକୁ ପଚାଶ ଟଙ୍କା ଭଡ଼ା । ଘରଟି ପରିଷ୍କାର କରିବାକୁ ବ୍ରଜ ବାବୁ ତିନିଦିନ ସମୟ ନେଇଥାନ୍ତି । ଏହାପରେ ଗୋବର୍ଦ୍ଧନ ବାବୁ ତାଙ୍କ ନୂଆ ବସାକୁ ଯିବେ ଏବଂ ମୁଁ ଯିବି ହଷ୍ଟେଲକୁ ।

ଗୋବର୍ଦ୍ଧନ ବାବୁଙ୍କ ଏ ସମୟଟି ଖୁବ୍ ଭଲ ପଡ଼ିଥାଏ । ଆଗରୁ କହିଛି, ତାଙ୍କର କିଛି ଅର୍ଥାଗମ ହୋଇଥାଏ । ପୁଲିସକୁ ଦୁଇଟି ଜଟିଳ ଘଟଣାରେ ସାହାଯ୍ୟ କରି ସେ ସରକାରଙ୍କ ଠାରୁ ବିଶେଷ ଧନ୍ୟବାଦ ପାଇଥାଆନ୍ତି - ଗୋଟିଏ ହେଉଛି ବିଖ୍ୟାତ ବ୍ୟବସାୟୀ ଶ୍ରୀହର୍ଷ ବାବୁଙ୍କ ଅନ୍ତର୍ଦ୍ଧାନ ଓ ଅନ୍ୟଟି ତ୍ରିପୁରାର ମହାରାଜାଙ୍କ ଚେକ୍ ଜାଲ । ଏ ଦୁଇଟି ଘଟଣା ବିଷୟରେ ଆପଣମାନେ ଖବର କାଗଜରୁ ଯାହା ଜାଣନ୍ତି, ମୁଁ ତାହାଠାରୁ ବେଶୀ ଜାଣେ ନା । ଅନେକେ ଉତ୍ସୁକ ହୋଇ ମୋତେ ପଚାରନ୍ତି, ଏ ଦୁଇଟି ରହସ୍ୟ ଉଦ୍‌ଘାଟନ କରିବାକୁ ଗୋବର୍ଦ୍ଧନ ବାବୁ କିପରି ସମର୍ଥ ହେଲେ । ଗୋବର୍ଦ୍ଧନ ବାବୁଙ୍କ ଅନେକ ଅନୁସନ୍ଧାନରେ ମୁଁ ସାମାନ୍ୟ ସାହାଯ୍ୟ କରିଥିବାରୁ ସେ ଗୁଡ଼ିକର ସମ୍ପୂର୍ଣ୍ଣ ବିବରଣୀ ମୋତେ ଜଣା । ଅନ୍ୟ କେତେକ ଅନୁସନ୍ଧାନ ସହିତ ମୁଁ ନିଜେ ସମ୍ପୃକ୍ତ ନ ହେଲେ ହେଁ ତାଙ୍କଠାରୁ ସେଗୁଡ଼ିକର ସମ୍ପୂର୍ଣ୍ଣ ବିବରଣୀ ମୁଁ ପାଇଛି । ସେମାନଙ୍କ ଭିତରୁ ଯେଉଁଗୁଡ଼ିକ ମୁଁ ବା ଗୋବର୍ଦ୍ଧନ ବାବୁ ପ୍ରକାଶଯୋଗ୍ୟ ମନେକରୁ, ସେଗୁଡ଼ିକ ସମୟ ଓ ସୁବିଧା ପାଇଲେ ପ୍ରକାଶ କରିବାର ଇଚ୍ଛା ଅଛି । କିନ୍ତୁ ଏ ଦୁଇଟି ଘଟଣା ବିଷୟରେ କୌଣସି କାରଣରୁ ଗୋବର୍ଦ୍ଧନ ବାବୁ ମୋତେ କିଛି କହି ନାହାନ୍ତି । ତେଣୁ ଗୋବର୍ଦ୍ଧନ ବାବୁଙ୍କ କୀର୍ତ୍ତିକଳାପ ବିଷୟରେ ଉତ୍ସୁକ ବ୍ୟକ୍ତିମାନଙ୍କୁ ମୁଁ

ଜଣାଉଛି ଯେ ଗୋବର୍ଦ୍ଧନ ବାବୁ ନିଜେ ଏ ଦୁଇଟି ଅତି ଚାଞ୍ଚଲ୍ୟକର ଘଟଣା ବିଷୟରେ ନ କହିବା ପର୍ଯ୍ୟନ୍ତ ମୁଁ କିଛି ବିଶେଷ ବିବରଣୀ ଦେଇ ପାରିବି ନାହିଁ । ଆଶାକରେ ଗୋବର୍ଦ୍ଧନ ବାବୁ ଦିନେ ଏ ଦୁଇଟି ଘଟଣାର ସମ୍ପୂର୍ଣ୍ଣ ବିବରଣୀ ମୋତେ ଦେବେ । ଉପଯୁକ୍ତ ସଫଳତା ଛଡ଼ା ଗୋବର୍ଦ୍ଧନ ବାବୁ 'ମନର ବିଭିନ୍ନ ଅବସ୍ଥାରେ ଶରୀରର ରାସାୟନିକ ପରିବର୍ତ୍ତନ' ବିଷୟରେ ଗୋଟଏ ମୌଳିକ ପ୍ରବନ୍ଧ ଲେଖିଥିବାରୁ ଉତ୍କଳ ବିଶ୍ୱବିଦ୍ୟାଳୟ ତାଙ୍କୁ 'ଡକ୍ଟର' ଉପାଧି ଦେବାକୁ ପ୍ରସ୍ତାବ କରିଛନ୍ତି । ତାଙ୍କର ବହୁମୁଖୀ ପ୍ରତିଭାର ପ୍ରକାଶ ଯୋଗୁଁ ମୋର ନିଜର ଯେତେ ଆନନ୍ଦ ଓ ଗର୍ବ ହେଉଥାଏ, ତାଙ୍କର ନିଜର ବିମର୍ଷତା ସେତେ ବଢୁଥାଏ । ଏହାର କାରଣ ସେ କହନ୍ତି, ବ୍ୟାପକ ଖ୍ୟାତି ଅର୍ଜନ । ଏଥି ସକାଶେ ତାଙ୍କର ଆଶଙ୍କା ଯେ, ଯେଉଁ ଜୀବନ୍ତ ପୁସ୍ତକରୁ ସେ ତାଙ୍କର ସମସ୍ତ ଜ୍ଞାନ ଆହରଣ କରିଛନ୍ତି, ତାହା ଏହି ବ୍ୟାପକ ଖ୍ୟାତି ପରେ ଚିରଦିନ ପାଇଁ ବନ୍ଦ ହୋଇଯିବ । କାରଣ ପୂର୍ବପରି କେହି ତାଙ୍କ ସାଙ୍ଗରେ ଆଉ ମନ ଖୋଲି ମିଶି ପାରିବେ ନାହିଁ । ଦୁଃଖର ବିଷୟ, ଏହି ଅଯଥା କାରଣରୁ ସେ 'ଡକ୍ଟର' ଉପାଧି ପ୍ରତ୍ୟାଖାନ କରିଛନ୍ତି ।

ସେ ଯାହାହେଉ, ଗୋବର୍ଦ୍ଧନ ବାବୁଙ୍କ ଏହି ନୂଆ ବସାରେ ଏପରି ଗୋଟିଏ ହାସ୍ୟକର ଘଟଣା ଘଟିଗଲା ଯାହା ମୁଁ ପ୍ରକାଶ ନ କରି ରହି ପାରୁନାହିଁ । ଅନ୍ୟାନ୍ୟ ଘଟଣାଗୁଡ଼ିକ ସହିତ ତୁଳନାରେ ଏ ଘଟଣା କୌଣସି ଦିଗରୁ ପ୍ରକାଶ୍ୟଯୋଗ୍ୟ ନୁହେଁ, ମୁଁ ନିଜେ ଜାଣେ । କିନ୍ତୁ ତଥାପି ଏ ଘଟଣା ଭିତରେ ଏପରି ଗୋଟିଏ ପ୍ରଚ୍ଛନ୍ନ ହାସ୍ୟରସର ଦିଗ ଅଛି, ଯାହାକି ମୋତେ ବଡ଼ ଆମୋଦ ଦିଏ । ପୃଥିବୀରେ ଯୁଦ୍ଧବିଗ୍ରହ ମୃତ୍ୟୁ ଆଦି ନାନା ବିଷାଦପୂର୍ଣ୍ଣ ଓ ଭୟାବହ ଘଟଣାଗୁଡ଼ିକର ଗୋଟିଏ ହାସ୍ୟକର ଦିଗ ମଧ୍ୟ ଅଛି । ଏ ଘଟଣାଟିରେ ସେହି ଦିଗଟି ମୋ ବିବେଚନାରେ ଯଥେଷ୍ଟ ରହିଛି ।

ଘରଟି ଠିକ୍ କରି ଆସିବାର ଦୁଇ ଦିନ ପରେ ଗୋବର୍ଦ୍ଧନ ବାବୁ ଦିନେ ଖରାବେଳେ କହିଲେ, ''ଡାକ୍ତର, ଚାଲ ଘରଟି ଟିକିଏ ବୁଲି ଦେଖି ଆସିବା । ମୋତେ ସେ ଜାଗା ଆଉ ଘରଟି ଭାରି ଭଲ ଲାଗିଛି । ମୋର ଅନୁରୋଧ, ହଷ୍ଟେଲକୁ ଯିବା ଆଗରୁ ଅନ୍ତତଃ ଚାରି ଦିନ ତୁମେ ସେଠି ରହିଯିବ ।'' ହଷ୍ଟେଲକୁ ଗଲେ ଡାକ୍ତରି ପାସ୍ କରିବା ପର୍ଯ୍ୟନ୍ତ ଗୋବର୍ଦ୍ଧନ ବାବୁଙ୍କ ସହିତ ମୋର ତିନି ଚାରି ଥର ଦେଖା ହେବ କି ନା ସନ୍ଦେହ । ଏହାଙ୍କ ସାନ୍ନିଧ ଏତେ ପ୍ରୀତିକର ଯେ ବାଧ ନ ହୋଇଥିଲେ ମୁଁ ତାଙ୍କୁ ଛାଡ଼ି ଯାଆନ୍ତି ନାହିଁ । ହଷ୍ଟେଲକୁ ଯିବା ଆଗରୁ ନୂଆ ବସାରେ କିଛି ଦିନ ରହିବାକୁ ମୁଁ ରାଜି ହେଲି । ଘରଟି ଦେଖି ମୋତେ ମଧ୍ୟ ଖୁବ୍ ଭଲ ଲାଗିଲା । ଆମେ ନୂଆ ବସାରେ ପହଞ୍ଚି ଦେଖିଲୁ ବ୍ରଜବାବୁ ଆଉ ଜଣେ ଭଦ୍ରଲୋକଙ୍କୁ ଘର ବୁଲାଇ ଦେଖାଉଥାନ୍ତି । ମୁଁ ଏହାର କାରଣ କିଛି ବୁଝିପାରିଲି ନାହିଁ । ଗୋବର୍ଦ୍ଧନ ବାବୁଙ୍କୁ ଦେଖି ବ୍ରଜବାବୁ ଅତି ନମ୍ର ଭାବରେ କହିଲେ, ''କ୍ଷମା କରିବେ, ଏ ଘର ମୁଁ ଆପଣଙ୍କୁ ଭଡ଼ା ଦେଇ ପାରିବି ନାହିଁ । ଏ ମହାଶୟ ବହୁତ ଦିନ ଆଗରୁ ମୋତେ

ଅଗ୍ରିମ ଭଡ଼ା ବଇନା ଦେଇଥିଲେ । କିନ୍ତୁ ଛଅ ମାସ ପର୍ଯ୍ୟନ୍ତ ସେ କୌଣସି ଖବର ନ ଦେବାରୁ ମୁଁ ଆପଣଙ୍କୁ ଘର ଭଡ଼ା ଦେବାକୁ ରାଜି ହୋଇଥିଲି । ବର୍ତ୍ତମାନ ସେ ଆସିବାରୁ ମୁଁ ଆପଣଙ୍କୁ ଘର ଭଡ଼ା ଦେବାକୁ ଅକ୍ଷମ ।'' ଗୋବର୍ଦ୍ଧନ ବାବୁ ଭଦ୍ରଲୋକଙ୍କୁ କିଛିକ୍ଷଣ ଅନାଇ ରହିଲେ । ବିଶେଷତ୍ୱ-ବିହୀନ ସାଧାରଣ ଭଦ୍ରଲୋକ - ବିଶେଷତ୍ୱ ଭିତରେ କେବଳ ବଡ଼ ବଡ଼ ଦାଢ଼ି ଓ ନିଶ । ଗୋବର୍ଦ୍ଧନ ବାବୁ କହିଲେ, ''ବ୍ରଜବାବୁ, ଆପଣ ମିଥ୍ୟା କହୁଛନ୍ତି । ଏ ଭଦ୍ରଲୋକଙ୍କୁ ଆପଣ ଆଦୌ ଚିହ୍ନନ୍ତି ନାହିଁ- ଏହା ତାଙ୍କ ସହିତ ଆପଣଙ୍କର ବ୍ୟବହାରରୁ ଜଣାପଡୁଛି । ଛଅମାସ ଆଗେ ସେ ଆପଣଙ୍କୁ ବଇନା ଦେଇ ନାହାନ୍ତି, କାରଣ ତା' ହୋଇଥିଲେ ଆପଣ ନୂଆ କରି କାହିଁକି ଘର ବୁଲାଇ ଦେଖାନ୍ତେ ? କିନ୍ତୁ ମୋର ମନେହୁଏ, ଏ ମହାଶୟ ଏ ଘର ଆଗରୁ ଦେଖିଛନ୍ତି । କାରଣ ନୂଆ ଘର ଦେଖିବାରେ ଯେଉଁ ଆଗ୍ରହ ପ୍ରକାଶ ପାଏ, ତାହା ମୁଁ ୟାଙ୍କଠାରେ ଦେଖୁନାହିଁ । ମୋର ମଧ ମନେହୁଏ ଯେ, ଆପଣ ଏ ମହାଶୟଙ୍କୁ ନ ଜାଣିଲେ ମଧ ସେ ଆପଣଙ୍କୁ ଚିହ୍ନନ୍ତି ।'' ଏ କଥାରେ ଆଗନ୍ତୁକ ଭଦ୍ରଲୋକ ଚମକି ପଡ଼ିବା ଭଳି ମନେହେଲା । ବ୍ରଜ ବାବୁ କିନ୍ତୁ କ୍ଷିପ୍ତ ହୋଇ କହିଲେ, ''ସେ ଯାହାହେଉ, ଏ ମହାଶୟ ମାସିକ ୧୫୦ଟଙ୍କା ଭଡ଼ା ଦେବାକୁ ଚାହାନ୍ତି । ଆଜି ସକାଳେ ସେ ମାସକର ଅଗ୍ରିମ ଭଡ଼ା ମଧ ଦେଇଛନ୍ତି । ଆପଣ ଯଦି ମାସିକ ୧୫୦ଟଙ୍କା ଦେଇପାରିବେ ତ ରୁହନ୍ତୁ । ମୋର ଆପତ୍ତି ନାହିଁ । କିନ୍ତୁ ଆପଣ ତ ମୋତେ ଅଗ୍ରିମ କିଛି ଦେଇ ନାହାନ୍ତି । ତେଣୁ ଏ ଘର ଉପରେ ଦାବୀ ଏହାଙ୍କର ପ୍ରଥମ - ଆଇନ ଅନୁସାରେ ।''

ଗୋବର୍ଦ୍ଧନ ବାବୁ ଖୁବ୍ ଧୀର ଭାବରେ କହିଲେ, ''ମୁଁ ଏ ଘରେ ରହିବି ଏବଂ ୫୦ଟଙ୍କା ଭଡ଼ାରେ ରହିବି, ଯାହା ଆପଣଙ୍କ ସଙ୍ଗେ ଆଗରୁ ଠିକ୍ ହୋଇଯାଇଛି । ଆପଣ ବାଧା ଦେଇ ପାରନ୍ତି ଯଦି ଦିଅନ୍ତୁ । ଡାକ୍ତର, ଦୟା କରି ତୁମେ ତୁମର ଓ ମୋର ସବୁ ଜିନିଷ ଗୋଟିଏ ଗାଡ଼ି କରି ଶୀଘ୍ର ନେଇଆସ । ମୁଁ ଏଠି ଅପେକ୍ଷା କରୁଛି ।'' ଗୋବର୍ଦ୍ଧନ ବାବୁଙ୍କ ନମ୍ର କଥା ଭିତରେ ଏପରି ଗୋଟାଏ ଜୋର ଅଛି ଯେ, ଶୁଣିଲେ ନିଶ୍ଚିତ ମନେହୁଏ, ତାଙ୍କ ସଙ୍କଳ୍ପରୁ ଆଉ ଟଳାଇ ହେବ ନାହିଁ । ଗୋବର୍ଦ୍ଧନ ବାବୁଙ୍କ କଥାରେ ବ୍ରଜ ବାବୁ ଓ ଆଗନ୍ତୁକ ଭଦ୍ରଲୋକ ବଡ଼ ବିବ୍ରତ ହୋଇ ପଡ଼ିଲେ । କିଛିକ୍ଷଣ ପରେ ସେ ଭଦ୍ରଲୋକ କହିଲେ, ''ବ୍ରଜ ବାବୁ, ଆପଣ ଏହାଙ୍କୁ ଘର ଭଡ଼ା ଦିଅନ୍ତୁ । ମୁଁ ଏ ଘର ଭଡ଼ା ନେବାକୁ ରାଜି ନୁହଁ- ଆପଣ ଯେତେବେଳେ ଏ ମହାଶୟଙ୍କୁ ଆଗରୁ କଥା ଦେଇଛନ୍ତି ।'' ଗୋବର୍ଦ୍ଧନ ବାବୁଙ୍କୁ ଅନାଇ ସେ କହିଲେ, ''ଆପଣ କିଛି ମନେ କରନ୍ତୁ ନାହିଁ । ବ୍ରଜ ବାବୁଙ୍କୁ ତାଙ୍କୁ ମୁଁ ୬ମାସ ଆଗରୁ ବଇନା ଦେଇ ନାହିଁ, କେବଳ ଘରଟି ମୋର ମନ ମୁତାବକ ହୋଇଛି ବୋଲି ତିନିଗୁଣା ଭଡ଼ା ଦେଇ ରହିବାକୁ ରାଜି ଥିଲି । ସେ ଯାହାହେଉ, ମୁଁ ଅନ୍ୟ ଘର ଖୋଜି ନେବି । ଆପଣ ଏଠି ନିଶ୍ଚିନ୍ତରେ ରହିପାରନ୍ତି ।''

ପରଦିନ ଆମେ ନୂଆ ବସାକୁ ଆସିଲୁ । ରହିବାର ଦ୍ୱିତୀୟ ଦିନ ରାତି ପ୍ରାୟ ଗୋଟାକ

ବେଳେ ମୁଁ ଗୋଟାଏ ସାପର ଗର୍ଜନ ଭଳି ଶବ୍ଦ ଶୁଣି ଉଠି ପଡ଼ିଲି । ହଠାତ୍ ଝରକା ପାଖରେ ଗୋଟାଏ କଦାକାର ଭୟଙ୍କର ମୁହଁ ମୁହୂର୍ତ୍ତକ ପାଇଁ ଦେଖି ମୋର ଭୀଷଣ ଭୟ ହେଲା । ମୁଁ ସାଙ୍ଗେ ସାଙ୍ଗେ ଗୋବର୍ଦ୍ଧନ ବାବୁଙ୍କୁ ଉଠାଇ ଏକଥା କହିଲି । ସେ ସ୍ୱପ୍ନ ବୋଲି କହି ଏକଥାଟା ଉଡ଼ାଇ ଦେଲେ । କିନ୍ତୁ ସ୍ୱପ୍ନ କି ଭ୍ରମ ବୋଲି ମୋର ବିଶ୍ୱାସ ହେଲା ନାହିଁ । କେବଳ ସେହି ରାତିରେ ନୁହଁ, ପ୍ରତ୍ୟହ ରାତିରେ କିଛି ନା କିଛି ଏ ଭଳି ଭୌତିକ ଘଟଣା ଘଟିବାକୁ ଲାଗିଲା । କେତେବେଳେ ଶୂନ୍ୟରୁ ଟେକା ପଥର ବୃଷ୍ଟି, କେତେବେଳେ ଅବା ବିଷ୍ଠା ପଡ଼ିବାକୁ ଲାଗିଲା । ଦିନେ ରାତିରେ ଆମେ ଖାଇ ବସିବା ସମୟରେ ସେହିପରି ଗୋଟାଏ ଭୀଷଣ ସାପର ଗର୍ଜନ ଭଳି ଶବ୍ଦ ହେଲା- ମନେ ହେଲା ଠିକ୍ କାନ୍ଥ ସେ ପାଖରେ । ପରେ ପରେ ଅଗଣାରେ ହାଡ଼ ବୃଷ୍ଟି ହେବାକୁ ଲାଗିଲା । ମୁଁ ଗୋବର୍ଦ୍ଧନ ବାବୁଙ୍କୁ ଏ ଘରଛାଡ଼ି ଦେବାକୁ ବିଶେଷ ଅନୁରୋଧ କରି କହିଲି, ''ଆପଣ ହୁଏତ 'ବୀର ପେଶିବା' କଥା ଜାଣନ୍ତି ନାହିଁ, ତେଣୁ ଅବିଶ୍ୱାସ କରନ୍ତି । କିନ୍ତୁ ମୁଁ ଏହାର ଚାକ୍ଷୁଷ ପ୍ରମାଣ ପାଇଛି । ମୋର ଗୋଟିଏ ଭଉଣୀର ଗାଁ 'ଅଲାଣ୍ଡୁ'ରେ ଏପରି ଘଟିବାର ମୁଁ ନିଜେ ଦେଖିଛି ।'' ଗୋବର୍ଦ୍ଧନ ବାବୁ ସେହିପରି ନିର୍ବିକାର ଭାବରେ କହିଲେ, ''ମୁଁ ମଧ ଅବିଶ୍ୱାସ କରେ ନାହିଁ । 'ଏନ୍‌ସାଇକ୍ଲୋପୀଡିଆ ବ୍ରିଟାନିକା'ରେ'ପୋଲ୍‌ଟର୍ଗାଇଷ୍ଟିଜମ୍ ଶୀର୍ଷକ ପ୍ରବନ୍ଧଟି ମୁଁ ପଢ଼ିଛି । ଏ ବିଷୟରେ ବିଶେଷ ଗବେଷଣା ହୋଇ ନ ଥିଲେ ମଧ ଜ୍ଞାନୀ ଲୋକମାନେ ଏହା ସମ୍ଭବ ବୋଲି ବିଶ୍ୱାସ କରନ୍ତି । କିନ୍ତୁ ଦେଖାଯାଉ ଏ ବ୍ୟାପାରଟି କ'ଣ । ଏଠି ରହିଲେ ହୁଏତ ଆମେ ବହୁତ କିଛି ନୂଆ ତଥ୍ୟ ପାଇ ପାରୁ ।'' ପରେ ଟିକିଏ ହସି କହିଲେ, ''କିମ୍ବା କିଏ ଜାଣେ ଏହାର ପରିଣତି ହାସ୍ୟକର ନ ହେବ ?'' ମୁଁ ଚିନ୍ତା କଲି ଆମର ମୌଳିକ 'ଉଦ୍‌ବେଗ'ଗୁଡ଼ିକ ଭିତରୁ 'ଭୟ' ଗୋଟିଏ । କିନ୍ତୁ ଏ ମୌଳିକ 'ଉଦ୍‌ବେଗ' କ'ଣ ଏହାଙ୍କର ନାହିଁ ? ସବୁବେଳେ କେବଳ ବୈଜ୍ଞାନିକ ମନୋବୃତ୍ତି ? ଭାବିଲି ବୋଧହୁଏ ଆଜିକାଲି ଏହା ମଧ ଗୋଟିଏ ମୌଳିକ ଉଦ୍‌ବେଗରେ ପରିଣତ ହେଲାଣି !

ଦିନକୁ ଦିନ ନୂଆ ନୂଆ ଉପଦ୍ରବ ଚାଲିଥାଏ । ରାତିଯାକ ଭୟରେ ମୋର ଭଲ ନିଦ ହୁଏ ନାହିଁ । ଗୋବର୍ଦ୍ଧନ ବାବୁ ହିମାଳୟ ପରି ଅଟଳ । ଏହିପରି ଘଟିବାର ପାଞ୍ଚ ଦିନ ପରେ ଦିନେ ସକାଳେ ସେହି ଆଗନ୍ତୁକ ଭଦ୍ରଲୋକଟି ମୋତେ ଦେଖା କରିବାକୁ ଆସିଲେ । ଗୋବର୍ଦ୍ଧନ ବାବୁ ଟିଉସନ୍ ଯାଇ ଥାଆନ୍ତି, ଘରେ ମୁଁ ଏକା ଥାଏ । ଭଦ୍ରଲୋକ ଏଥର ନିଜର ପରିଚୟ ଦେଲେ । ତାଙ୍କର ନାମ ହରିହର ବେହେରା । ସେ ଏଘରଠାରୁ ପ୍ରାୟ ଦୁଇ ମାଇଲ ଦୂରରେ ଗୋଟିଏ ସାନ ଚାଳ ଘର ଭଡ଼ା ନେଇ ଅଛନ୍ତି । ତାଙ୍କର ଆତ୍ମୀୟ ବିଶେଷ ଅସୁସ୍ଥ ଥିବାରୁ ମୁଁ ଡାକ୍ତର ବୋଲି ଖବର ପାଇ ସେ ମୋତେ ଡାକିବାକୁ ଆସିଛନ୍ତି । ହରିହର ବାବୁ କହିଲେ, ''ଆପଣ ଆଜି ସନ୍ଧ୍ୟାବେଳେ ଦୟାକରି ଟିକିଏ ଦେଖି ଆସିବେ । ମୁଁ ଆପଣଙ୍କ ଫିସ୍ ବାବଦ ଶହେ ଟଙ୍କା ଦେବାକୁ ପ୍ରସ୍ତୁତ ଅଛି ।'' ମୁଁ ଟିକିଏ ଆଶ୍ଚର୍ଯ୍ୟ ହୋଇ

କହିଲି, ''ଏତେ ଟଙ୍କା ଦେଲେ ତ ବଡ଼ ଡାକ୍ତର ଆଣି ପାରିବେ । ମୁଁ ତ ଜଣେ ଛାତ୍ର ମାତ୍ର ।''

''ଆପଣ ଠିକ୍ କହୁଛନ୍ତି । କିନ୍ତୁ ମୋର ଆତ୍ମୀୟ ରୋଗଟି ଗୋପନୀୟ ରଖିବାକୁ ଚାହାନ୍ତି । ସେ ଯଦିଓ ଖୁବ ଧନୀ ତଥାପି ଏଇଥି ପାଇଁ ଏପର୍ଯ୍ୟନ୍ତ ସେ ଚିକିତ୍ସା କରାଇ ନାହାନ୍ତି । ଏ ରୋଗ ଆକ୍ରମଣ କଲାଦିନୁ ସେ ବିଦେଶରେ ଥିଲେ । ତାଙ୍କର ଧାରଣା ଯେ, କୁଷ୍ଠରୋଗ କଦାପି ଭଲ ହେବାର ନୁହେଁ । ହଠାତ୍ କାଲି ମୁଁ ତାଙ୍କୁ ଦେଖିପାରି ମୋ ବସାକୁ ଆଣିଛି । ସେ କୌଣସି ମତେ ରାଜି ନୁହଁନ୍ତି ଯେ ଏକଥା ଆଉ କେହି ଜାଣନ୍ତୁ । ମୁଁ ତାଙ୍କୁ ଅନେକ ବୁଝାଇ କହିଛି ଯେ, ମୋର ଜଣେ ବନ୍ଧୁ ଡାକ୍ତର । ସେ ଚିକିତ୍ସା କଲେ କୌଣସି କ୍ଷତି ହେବ ନାହିଁ । ସେ ରାଜି ହେବାରୁ ମୁଁ ଆପଣଙ୍କୁ ଅନୁରୋଧ କରିବାକୁ ଆସିଲି ।'' ଏହା ଖୁବ୍ ସମ୍ଭବ, ମୁଁ ଦେଖିଛି, ଲଜ୍ଜାରେ ଅନେକେ ଏ ରୋଗକୁ ଅନେକ ଦିନ ଲୁଚାଇ ରଖନ୍ତି ଏବଂ ଏହି କାରଣରୁ ହିଁ ଶେଷରେ ବିଶେଷ କଷ୍ଟ ପାଆନ୍ତି । ମୁଁ ଯିବାକୁ ରାଜି ହେଲି । ରାଜି ହେବାର ବିଶେଷ କାରଣ ମଧ୍ୟ ଅଛି । ଅର୍ଥାଭାବରୁ କେତେଗୁଡ଼ିଏ ଖୁବ୍ ପ୍ରୟୋଜନୀୟ ଅଥଚ ମୂଲ୍ୟବାନ ଡାକ୍ତରୀ ବହି ମୁଁ କିଣି ପାରୁ ନଥିଲି । ଏଇ ସୁଯୋଗରେ ଏତେଗୁଡ଼ିଏ ଟଙ୍କା ଯଦି ରୋଜଗାର ହୁଏ, ତା'ହେଲେ କ୍ଷତି କ'ଣ ? ଗୋବର୍ଦ୍ଧନ ବାବୁଙ୍କୁ ମୁଁ ଏ ସୁସମ୍ବାଦ ଦେଲି । ସେ ଖୁସି ହୋଇ କହିଲେ, ''ହଁ ଡାକ୍ତର, ଏଇ ସୁଯୋଗରେ ଯଦି କିଛି ଅର୍ଥ ଲାଭ ହୁଏ,ତା'ହେଲେ କ୍ଷତି କ'ଣ ?''

ସେହିଦିନ ସନ୍ଧ୍ୟା ସମୟରେ ହରିହର ବାବୁ ମୋତେ ଡାକିବାକୁ ଆସିଲେ । ଗୋବର୍ଦ୍ଧନ ବାବୁ ନିତି ସନ୍ଧ୍ୟାରେ ଟିଉସନ୍ କରିବାକୁ ଯାଆନ୍ତି । ରାମା ବଜାରକୁ ଯାଏ, ଫେରେ ପ୍ରାୟ ଅଧ ଘଣ୍ଟା ପରେ । ଗୋବର୍ଦ୍ଧନ ବାବୁ ଫେରନ୍ତି ଦୁଇଘଣ୍ଟା କରେ । ମୁଁ ଘରେ ଏକା ଥାଏ, ପଢ଼ାପଢ଼ି କରେ । ହରିହର ବାବୁଙ୍କୁ ମୁଁ ଟିକିଏ ଅପେକ୍ଷା କରିବାକୁ କହିଲି । ନାନା ବିଷୟର କଥା ପଡ଼ିଲା । ହରିହର ବାବୁଙ୍କୁ ମୁଁ କହିଲି, ''ଆପଣ ଏ ଘର ଭଡ଼ା ନ ନେଇ ଭଲ କରିଛନ୍ତି । ଏ ଘରଟି ଭୂତର ଆଡ୍ଡା ।'' ଯାହା ଯାହା ଘଟିଛି ଓ ଘଟୁଛି, ମୁଁ କହିଲି । ହରିହର ବାବୁ ଭୀଷଣ ଭୟ ପାଇଲେ । ସେ ମଧ୍ୟ ନାନା ଭୟାବହ ଭୌତିକ କାଣ୍ଡ ବିଷୟରେ ନିଜର ଅଭିଜ୍ଞତା କଥା କହିଲେ । ମୋର ବିଶେଷ ଭୟ ହେଲା । ଏ ଘରଟିର ପାଖ ଆଖରେ କୌଣସି ଘର ନାହିଁ; ଚାରିଆଡ଼ ଜଙ୍ଗଲ; ଅନ୍ଧାର ପକ୍ଷ । ଏସବୁ ମିଳି ଏପରି ଭୟାବହ ପରିସ୍ଥିତି ସୃଷ୍ଟି କଲା ଯେ, ମୁଁ ସେଇ ମୁହୂର୍ତ୍ତରେ ଠିକ୍ କଲି ଗୋବର୍ଦ୍ଧନ ବାବୁ ଆସିଲେ ତାଙ୍କୁ ଏ ଘର ଛାଡ଼ି ଦେବାକୁ ବାଧ୍ୟ କରାଇବି । ହରିହର ବାବୁ ମଧ୍ୟ ସେହି ଉପଦେଶ ଦେଲେ । ଯାହା ହେଉ ରାମା ଫେରିବାରୁ ମୁଁ ରୋଗୀ ଦେଖିବାକୁ ବାହାରିଲି । ଆମ ନୂଆ ଘରଠାରୁ ପ୍ରାୟ ଦୁଇ ମାଇଲ୍ ଦୂରରେ ଗୋଟିଏ ନିର୍ଜନ ସ୍ଥାନରେ କ୍ଷୁଦ୍ର ଚାଳଘରେ ହରିହର ବାବୁଙ୍କ ଆତ୍ମୀୟ ବସା କରିଛନ୍ତି । ତାଙ୍କୁ ପରୀକ୍ଷା କରି ଦେଖିଲି । ଦେଖିବାର ବିଶେଷ କିଛି ନଥିଲା ।

ରୋଗଟି ଏତେ ବଢ଼ିଛି ଯେ, ଏହା ଭଲ ହେବାର କୌଣସି ଆଶା ନାହିଁ- ଯଦି ବା ଥାଏ, ତାହା ମୋର ଆୟତ୍ତ ବାହାରେ । ଟଙ୍କା ଲୋଭରେ ଏ ରୋଗୀକୁ ହାତକୁ ନେବାକୁ ମୋତେ ବାଧିଲା । ମୁଁ ପୁଣି ଅନୁରୋଧ କଲି କୌଣସି ବଡ଼ ଡାକ୍ତର ଡାକିବାକୁ । ହରିହର ବାବୁ ଏଥିରେ ଭୀଷଣ ଆପତ୍ତି କଲେ ଏବଂ ମୋତେ ବିଶେଷ ଅନୁରୋଧ କରି କହିଲେ, ‘‘ଆପଣ ଦୟା କରି ଏହାଙ୍କ ଚିକିତ୍ସା କରନ୍ତୁ, ତା’ ନହେଲେ ଏହାଙ୍କର ଆଉ ଚିକିତ୍ସା ହୋଇ ପାରିବ ନାହିଁ । ଆପଣଙ୍କୁ ମୁଁ ଫିସ୍ ବାବଦ ଦୈନିକ ୧୦୦ଟଙ୍କା ଦେବି ଓ ଏଠାରେ ଦୁଇ ଘଣ୍ଟା ରହି ଟିକିଏ ସେବା ଆଦି କରିବା ପାଇଁ ଦୈନିକ ୫୦ଟଙ୍କା ଅଧିକା ଦେବି ।’’ ବାଧ ହୋଇ ଯଥାସାଧ ଚେଷ୍ଟା କରିବାକୁ ଓ ଦୁଇ ଘଣ୍ଟା ନିତି ରହିବାକୁ ମୁଁ ପ୍ରତିଶ୍ରୁତି ଦେଲି । ସେଦିନ ସନ୍ଧ୍ୟାବେଳେ କରିବାର ବିଶେଷ କିଛି ନଥିଲା । ମୁଁ କେତେ ପୁଡ଼ିଏ ଔଷଧ କିଣି ଆଣିବାକୁ କହିଲି । ଘଣ୍ଟାକ ପରେ ସେଠୁ ବାହାରିଲି । ହରିହର ବାବୁ ମୋ ହାତରେ ୧୦୦ଟଙ୍କା ଦେଇ ମୋ ସହିତ ଅନେକ ଦୂର ଆସିଲେ ଏବଂ ବାରବାର ତାଙ୍କ କୃତଜ୍ଞତା ଜଣାଇଲେ । ଫେରିବାବେଳେ ସେ ଅନୁରୋଧ କଲେ - ‘‘ମୁଁ ଥାଏ ନ ଥାଏ, ଆପଣ ରୋଜ ଦୁଇ ଘଣ୍ଟା ରହିବେ ତାଙ୍କ ପାଖରେ । ଟିକିଏ ପ୍ରକୋପ ବଢ଼େ ।’’ ଏ କଥାରେ ମଧ ପ୍ରତିଶ୍ରୁତି ଦେଇ ଫେରିଲି । ସନ୍ଧ୍ୟାବେଳେ ତାଙ୍କର ରାସ୍ତାରେ ଆସୁ ଆସୁ ମନକୁ ବୁଝାଇ କହିଲି, ‘ଏଥିରେ ମୋର ଦୋଷ କ’ଣ ?’ ତଥାପି ମୋର ବିବେକ ମାନୁ ନଥାଏ । ମନେ ହେଉଥାଏ, ଏ ଟଙ୍କା ମୁଁ ଯେପରି ଠକାଇ ନେଉଛି । ଗୋଟାଏ ଦିଗରେ ଆଦର୍ଶ ଓ ଅନ୍ୟ ଦିଗରେ ପ୍ରୟୋଜନ ମଧରେ ପଡ଼ି ମୋ ମନରେ ବଡ଼ ଦ୍ୱିଧା ଜାତ ହେଲା । ଦେଖିଲି, ଯେଉଁମାନଙ୍କର ଆଦର୍ଶ ମାନି ଚଳିବାର ଯଥେଷ୍ଟ ମାନସିକ ଶକ୍ତି ଅଛି ଏବଂ ଯେଉଁମାନଙ୍କର ଆଦର୍ଶର କୌଣସି ଜଞ୍ଜାଳ ନାହିଁ, ସେମାନେ ପ୍ରକାଶ୍ୟରେ ଗୋଟାଏ ଦିଗ ମାଡ଼ି ଚଳନ୍ତି । କିନ୍ତୁ ମଧମ ଶ୍ରେଣୀର ଲୋକେ କେଉଁ ଦିଗଟି ଛାଡ଼ି ପାରନ୍ତି ନାହିଁ । ପ୍ରଥମେ ପ୍ରଥମେ ହୁଏତ ସେମାନଙ୍କର ଆଦର୍ଶ ଟିକିଏ ମାନସିକ ବାଧା ଉପୁଜାଏ, କିନ୍ତୁ ପ୍ରୟୋଜନ ଏତେ ବେଶୀ ଯେ, କ୍ରମେ କ୍ରମେ ଆଦର୍ଶର ଆନ୍ତରିକ ପ୍ରେରଣା ଆଉ ରୁହେ ନାହିଁ-ରୁହେ କେବଳ ଆଦର୍ଶର ବାହ୍ୟ ଆବରଣ । ଏପରି ଅବସ୍ଥାର ଲୋକଙ୍କୁ ଆମେ କହୁ ‘ବିରାଡ଼ି ବୈଷ୍ଣବ’ । କିନ୍ତୁ ମୁଁ ମୋର ମନରୁ ହିଁ ବୁଝିପାରୁଛି ଯେ, ଏମାନଙ୍କର ଦୁର୍ବଳ ମନଟି ସହିତ ପରିଚିତ ହେଲେ ଏମାନେ ଘୃଣାର ପାତ୍ର ନ ହୋଇ ଦୟାର ପାତ୍ର ହେବେ । କିନ୍ତୁ ବିପଦ ହେଉଛି ଯେ, ପୃଥିବୀରେ ଏହି ଶ୍ରେଣୀର ଲୋକେ ବେଶୀ । ତେଣୁ ବୁଦ୍ଧ, ରାମମୋହନ ବା ଯିଶୁଙ୍କ ଭଳି ଶକ୍ତିମାନ୍ ପୁରୁଷଙ୍କର ଆଦର୍ଶ ବହିରେ ହିଁ କେବଳ ଲେଖାରୁହେ । କାର୍ଯ୍ୟତଃ ମଧମ ଶ୍ରେଣୀର ଲୋକମାନଙ୍କର ଫାଙ୍କା ଆଦର୍ଶ ହିଁ ସମାଜରେ କାର୍ଯ୍ୟକାରୀ ହୁଏ । ଅତଏବ ମୋର ମନେହୁଏ, ଏହି ଶ୍ରେଣୀର ଆର୍ଥିକ ଉନ୍ନତି ଉପରେ ନିର୍ଭର କରେ ସମାଜର ନୈତିକ ଉନ୍ନତି ।

ଫେରି ଆସି ଗୋବର୍ଦ୍ଧନ ବାବୁଙ୍କୁ ସବୁ କଥା କହିଲି । ସେ ସବୁ କଥା ଶୁଣି ପ୍ରାୟ

ମନେ ମନେ କହିଲେ, ''ହୁଁ'' । ନାନା ଭୟବହ ଭୌତିକ କାଣ୍ଡ ବିଷୟରେ ସେ ନିଜର ଅଭିଜ୍ଞତା କହିସାରି କହିଲେ, ''ସେ ଥାଆନ୍ତୁ ବା ନ ଥାଆନ୍ତୁ ଆପଣଙ୍କୁ ପ୍ରତ୍ୟହ ଦୁଇ ଘଣ୍ଟା ସେଠି ରହିବାକୁ ହେବ ।'' ତା'ପରେ ସେ ପୁଣି କମିଜ ପିନ୍ଧି ବାହାରିଗଲେ । ମୁଁ ପ୍ରତ୍ୟହ ରୋଗୀ ଦେଖିବାକୁ ଯାଇ ସେଠି ଦୁଇଘଣ୍ଟା ରୁହେ । ଗଲାବେଳେ ମୁଁ ମୋ ଘରେ ଚାବି ପକାଇ ଦେଇଯାଏ । ଗୋବର୍ଦ୍ଧନ ବାବୁ ଟିଉସନକୁ ଗଲାବେଳେ ତାଙ୍କ ଘରେ ଚାବି ପକାଇ ଯାଆନ୍ତି । ସେ ତାଙ୍କର ଭଲ ଚାବି ପରିବର୍ତ୍ତରେ ଗୋଟିଏ ଶସ୍ତା ଚାବି କିଣି ଆଣି ଘରେ ପକାଇବାର ଅର୍ଥ ମୁଁ ସେତେବେଳେ କିଛି ବୁଝି ପାରିଲି ନାହିଁ । ରାମା ବଜାରକୁ ଗଲାବେଳେ ବାହାରେ ତାଲା ପକାଇ ଯାଏ । ଏହିପରି ପ୍ରାୟ ତିନି ଦିନ ଗଲା ପରେ ଚତୁର୍ଥ ଦିନ ମୋର ଶରୀର ଟିକିଏ ଅସୁସ୍ଥ ଥିବାରୁ ମୁଁ ରୋଗୀ ଦେଖିବାକୁ ଯାଇ ପାରିଲି ନାହିଁ । କିଛି ଦୂର ଯାଇ ରାସ୍ତାରୁ ଫେରି ଆସିଲି । ରାମା ବାହାରେ ତାଲା ପକାଇ ଦେଇଯାଇ ଥିବାରୁ ମୁଁ ବାହାରେ ବଗିଚାରେ ଟିକିଏ ଅପେକ୍ଷା କଲି । ଭାରି ଡର ମାଡୁଥାଏ । କିଛିକ୍ଷଣ ପରେ ମୋର ମନେ ହେଲା, ଅନ୍ଧାରରେ କିଏ ଯେପରି ଘର ଭିତରକୁ ପ୍ରବେଶ କଲା । ଭୀଷଣ ଅନ୍ଧକାର ଭିତରେ ମୁଁ ଯେମିତି ଗୋଟାଏ ଅଧିକତର କଳା ଛାୟା ଟିକିଏ ମାତ୍ର ଦେଖିବାକୁ ପାଇଲି । କିଛିକ୍ଷଣ ପରେ ମନେହେଲା, ଗୋବର୍ଦ୍ଧନ ବାବୁଙ୍କ ଘର ତାଲା କିଏ ଭାଙ୍ଗୁଛି । ଭୟ ସତ୍ତ୍ୱେ ମୁଁ ଆଉ ଅପେକ୍ଷା ନକରି ଭୟର ସ୍ଥାନକୁ ଦଉଡ଼ି ଗଲି । କିଛି ଦେଖିବାକୁ ପାଇଲି ନାହିଁ । ଘରର ତାଲା ଭଙ୍ଗା ହୋଇନାହିଁ । କିନ୍ତୁ ମୋର ସ୍ପଷ୍ଟ ମନେହେଲା, ଗୋଟାଏ କଳାଛାୟା ଯେପରି ସେ ସ୍ଥାନରୁ ଦୌଡ଼ି ଚାଲିଗଲା । ମୁଁ ଭୟରେ ଚିତ୍କାର କରି ଉଠିଲି, ''କିଏ ?'' ଦୂରରୁ ଶବ୍ଦ ଶୁଣିଲି, ''ମୁଁ । କିଛିକ୍ଷଣ ପରେ ଗୋବର୍ଦ୍ଧନ ବାବୁ ହସି ହସି ନିକଟକୁ ଆସି କହିଲେ, ମୁଁ । କିଛି ଭୟ ନାହିଁ । ତୁମେ ସବୁ ଗୋଳମାନ କରିଦେଲ ।'' ଭୟରେ ଏ ପର୍ଯ୍ୟନତ ମୋର ଛାତି ଓ ଗୋଡ଼ ଥରୁଥାଏ । କିଛି କହିବାର କ୍ଷମତା ନଥାଏ । ରାମା ଏ ପର୍ଯ୍ୟନ୍ତ ନ ଫେରିବାରୁ ଆମେ ବାହାରେ ଅନେକ ବେଳଯାଏ ଅପେକ୍ଷା କରି ରହିଲୁ । ରାମାର ଡେରି ଦେଖି ତା'ଉପରେ ମୋର ଭାରି ରାଗ ହେଉଥାଏ । ପ୍ରାୟ ଦୁଇଘଣ୍ଟା ପରେ ରାମା ଫେରିଲା । ମୁଁ ରାଗରେ ତାକୁ ଚାପୁଡାଏ ପକାଇବାକୁ ଯାଉଥିଲି, ଗୋବର୍ଦ୍ଧନ ବାବୁ ମୋ ହାତ ଧରି ପକାଇ କହିଲେ, ''ତା'ର ଦୋଷ ନାହିଁ ।'' ରାମା କହିଲା, ''ମୁଁ କ'ଣ କରିବି ? ବଜାରରେ ଗୋଟିଏ ଲୋକ ମିଛରେ କହିଲା - ମୁଁ ତା ଗୋଡ଼ ମାଡ଼ି ପକାଇଛି । ସେ ମୋତେ ଗୋଟିଏ ଚାପୁଡ଼ା ମାଇଲା ଏବଂ ମୋଟେ ମୋତେ ଛାଡ଼ିଲା ନାହିଁ । ସେଇଥିରେ ଏତେ ଡେରି ହୋଇଗଲା ।''

ଆମେ ବସା ଭିତରକୁ ଗଲୁ । ଅଳ୍ପ ସମୟ ପରେ ହରିହର ବାବୁ ଆସି କହିଲେ, ''ଆପଣ ଆଜି ଗଲେ ନାହିଁ । ରୋଗୀର ଅବସ୍ଥା ବଡ଼ ଖରାପ ଆଡ଼କୁ ଯିବାର ଦେଖି ମୁଁ ଅନ୍ୟ ଗୋଟିଏ ଡାକ୍ତର ଡାକି ଆଣିଲି । ଆପଣଙ୍କ ଶରୀର ଅସୁସ୍ଥ ଅଛି ଭାବି ଆପଣଙ୍କୁ କଷ୍ଟ

ଦେଲି ନାହିଁ । କିନ୍ତୁ କାଲି ଆପଣ ନିଶ୍ଚୟ ଯିବେ, କାରଣ ଏ ନୂଆ ଡାକ୍ତର ଦେଖି ମୋର ଆତ୍ମୀୟ ଅଧିକ ଉତ୍‌କ୍ଷିପ୍ତ ହେଲେ ।'' ଶରୀରର ସାମାନ୍ୟ ଅସୁସ୍ଥତା ସକାଶେ ମୁଁ ଯାଇ ନ ପାରିବାରୁ ବଡ଼ ଖରାପ ଲାଗିଲା । ମୁଁ ହରିହର ବାବୁଙ୍କୁ କ୍ଷମା ମାଗିଲି । ଗୋବର୍ଦ୍ଧନ ବାବୁ ହରିହର ବାବୁଙ୍କୁ ପଚାରିଲେ, ''ଆପଣଙ୍କ ଆତ୍ମୀୟଙ୍କ ନାମ କ'ଣ ?''

''ବିଦ୍ୟାଧର ବାବୁ ।''

କିନ୍ତୁ ମୋର ମନେହେଲା, ସେ ଯେପିର ଟିକିଏ ଭାବି ଏ ନାଆଁଟି କହିଲେ । ଭାବିଲି, ବୋଧହୁଏ ହରିହର ବାବୁ ତାଙ୍କ ଆତ୍ମୀୟ ନାମ ଲୁଚାଇବାକୁ ଚାହୁଥିଲେ । ଗୋବର୍ଦ୍ଧନ ବାବୁ ପୁଣି ପଚାରିଲେ ''ବିଦ୍ୟାଧର କଅଣ ?''

''ବିଦ୍ୟାଧର ଗୌରସିଂ ।''

ଏଥର ମଧ ମନେ ହେଲା, ସାଙ୍ଗିଆଟି ସେ ଭାବିକରି କହିଲେ । ହରିହର ବାବୁ ଚାଲିଗଲେ । ଗୋବର୍ଦ୍ଧନ ବାବୁ କହିଲେ, ''ଏ ଭୌତିକ କାଣ୍ଡ, ଏ ରୋଗୀ ଦେଖା ଓ ରାଗର ଢୋରରେ ଗୋଳମାଳର ପରିଣତି ବୋଧହୁଏ କାଲି ହେବ । ଆପଣ କାଲି ଗୋଟିଏ ନାଟକୀୟ ପରିଣତି ଦେଖିବା ପାଇଁ ପ୍ରସ୍ତୁତ ଥାଆନ୍ତୁ ।'' କିନ୍ତୁ ଏତିକି କହି ସେ ନୀରବ ରହିଲେ । ଯେତେ ପଚାରିଲେ ମଧ ସେ ଟିକିଏ ହସିବା ଛଡ଼ା ଆଉ କିଛି କହିଲେ ନାହିଁ । ଭୟ ଓ ସଂଶୟ ଭିତରେ ସେ ରାତିଟା କଟି ଗଲା । ଏତେ ଦିନ ପର୍ଯ୍ୟନ୍ତ ନିଶ୍ଚିତ ଭୟ ସାମନାରେ ଥିଲି । କିନ୍ତୁ ଗୋବର୍ଦ୍ଧନ ବାବୁଙ୍କ କଥାରେ ଗୋଟିଏ ଅନିଶ୍ଚିତ ଭୟ ମୋତେ ଆକ୍ରମଣ କଲା ଏବଂ ଏହା ନିଶ୍ଚିତ ଭୟଠାରୁ ଅଧିକ ଭୟଙ୍କର ଓ ପୀଡ଼ାଦାୟକ ହେଲା ।

ପରଦିନ ସନ୍ଧ୍ୟା ସମୟରେ ମୁଁ ରୋଗୀ ଦେଖିବାକୁ ଗଲି । ଭଦ୍ରଲୋକ କାଲି ମୋ ବସାରୁ ଗଲାବେଳେ ମୋତେ ଆସନ୍ତା ତିନି ଦିନର ଫିସ୍ ଦେଇ ଯାଇଥାଆନ୍ତି । ମୁଁ ବିଦ୍ୟାଧର ବାବୁଙ୍କ ବସାରେ ପହଞ୍ଚି ତାଙ୍କୁ ପଚାରିଲି, ''ଆପଣଙ୍କର କ'ଣ କାଲି ଶରୀର ବିଶେଷ ଖରାପ ହୋଇଥିଲା ।'' ସେ କହିଲେ, ''ନା ତ, ଆପଣଙ୍କ ଦୟା ଓ ସେ ବାବୁଙ୍କ ଦୟାରେ ମୋର ଦେହ ଭଲ ଲାଗୁଛି ।'' କାଲି ତାଙ୍କ ଶରୀର ଖରାପ ନ ଥିବାର ଶୁଣି ଓ 'ସେ ବାବୁ' ବୋଲି କହିବାର ଶୁଣି ମୋର ସନ୍ଦେହ ହେଲା । ମୁଁ ତାଙ୍କର ପରିଚୟ ପଚାରିଲି । ସେ ଯାହା କହିଲେ, ତାହା ଶୁଣି ଅଜ୍ଞାତ ଭୟରେ ମୋର ଛାତି ଥରି ଉଠିଲା । ସେ କହିଲା, ''ମୁଁ ବାବୁଙ୍କ ଆତ୍ମୀୟ ନୁହଁ- ଜଣେ ସାମାନ୍ୟ ଭିକାରୀ । ବାବୁ ଦିନେ ମୋତେ ଦେଖି ଦୟା କରି ମୋର ଚିକିତ୍ସା କରାଉଛନ୍ତି ।'' ମୁଁ ଆଉ ସେଠି ରହି ପାରିଲି ନାହିଁ, ଫେରି ଯିବାକୁ ବାହାରିଲି । କିଛି ଦୂର ଆସି ଦେଖିଲି କେତେଗୁଡ଼ିଏ ପୁଲିସ୍ କାର୍ ରହିଛି । କିଛି ବୁଝି ନ ପାରିବାଟା ଯେ ଏଡ଼େ ପୀଡ଼ାଦାୟକ ହୋଇପାରେ ମୁଁ ସେଇ ଦିନ ବୁଝିଲି । ଅନ୍ଧକାରରେ ଜଙ୍ଗଲ ଭିତର ଦେଇ ବସାକୁ ଯିବା ସମୟରେ ଗୋଟିଏ ନିଃଶବ୍ଦ ହାତ ମୋର ହାତ ଉପରେ ପଡ଼ିଲା । ଭୟରେ ମୁଁ ଚିତ୍କାର କରିବାକୁ ଯାଉଥିଲି, କିନ୍ତୁ ପାରିଲି ନାହିଁ - କିଏ ମୋର ପାଟି ଚିପି

ଧରିଲା । ଭୟରେ ମୂର୍ଚ୍ଛା ପ୍ରାୟ ହୋଇଗଲି । କିନ୍ତୁ ପର ମୁହୂର୍ତ୍ତରେ ମୋ କାନରେ କିଏ କହିଲା, ''ଭୟ ନାହିଁ, ମୁଁ । ''ଭୟରୁ ହଠାତ୍ ଆଶ୍ଚର୍ଯ୍ୟ । ସେଠୁ ଆମ ବସା ଆଉ ଅଳ୍ପ ଦୂରରେ, କିନ୍ତୁ ଗୋବର୍ଦ୍ଧନ ବାବୁ ଏଠି ନିଃଶବ୍ଦରେ କ'ଣ କରୁଛନ୍ତି ? ଅନାଇ ଦେଖିଲି ଗୋବର୍ଦ୍ଧନ ବାବୁ ଏକା ନୁହନ୍ତି - ଅନେକ ପୁଲିସ୍, ପୁଲିସ ଇନ୍‌ସପେକ୍ଟର ଗୁଣନିଧି ବାବୁ ଓ ଜଣେ ଅପରିଚିତ ଭଦ୍ରଲୋକ ନିଃଶବ୍ଦରେ କାହା ଅପେକ୍ଷାରେ ଛିଡ଼ା ହୋଇ ରହିଛନ୍ତି । ଅଳ୍ପ ସମୟ ଆମକୁ ଅପେକ୍ଷା କରିବାକୁ ପଡ଼ିଲା । ହଠାତ୍ ଶୁଣିଲି, ଗୁଣନିଧି ବାବୁ ନାଟକୀୟ ଭଙ୍ଗିରେ କହୁଛନ୍ତି, ''ଆସନ୍ତୁ ଆସନ୍ତୁ ! ମନୋଜ ବାବୁ, ଆପଣଙ୍କ ଅଭ୍ୟର୍ଥନା ପାଇଁ ଆମେ ଅପେକ୍ଷା କରି ରହିଛୁ ।'' ଚାରିଆଡ଼ୁ ଟର୍ଚ୍ଚ ଆଲୁଅ ଜଳି ଉଠିଲା । ଅନାଇ ଦେଖିଲି, ହରିହର ବାବୁ ଭୟ ଓ ଆଶ୍ଚର୍ଯ୍ୟରେ ହାତରେ ଗୋଟିଏ ବଡ଼ ପେଡ଼ି ଧରି ଛିଡ଼ା ହୋଇଛନ୍ତି ! ଗୁଣନିଧି ବାବୁ ହରିହର ବାବୁଙ୍କୁ ଧରି କାହାକୁ ଡାକି କହିଲେ, ''ବୀରେନ୍ ବାବୁ, ଆସନ୍ତୁ । ଚିହ୍ନନ୍ତୁ ଏଗୁଡ଼ିକ ଆପଣଙ୍କ ଗହଣା କି ନା ?'' ବୀରେନ୍ ବାବୁ - ସେହି ଅପରିଚିତ ଭଦ୍ରଲୋକ - ଆସି ଚିହ୍ନି କହିଲେ, ପ୍ରତ୍ୟେକଟି ଗହଣା ତାଙ୍କ ଦୋକାନର । ତାଙ୍କ ଦୋକାନର ଚିହ୍ନ ମଧ୍ୟ ସେ ପ୍ରତ୍ୟେକ ଗହଣାର ଦେଖାଇଲେ । ପେଡ଼ିଟି ଭିତରକୁ ଅନାଇ ଦେଖିଲି, ପ୍ରାୟ ଲକ୍ଷାଧିକ ଟଙ୍କାର ପଥର ଓ ସୁନାର ନାନା ଅଳଙ୍କାର । ସମସ୍ତ ଘଟଣାଟି ବୁଝି ପାରିଲି । ଏହି ସମୟରେ ଆଉ ଗୋଟିଏ ପୁଲିସ୍ କାର ଆମ ନିକଟକୁ ଆସିଲା । ପୁଲିସ ସେଥିରୁ କାହାକୁ ତଳକୁ ଓହ୍ଲାଇ ଆଣିଲା । ରାମା କହିଲା, ''ଏହି ଲୋକଟି କାଲି ମୋତେ ମାରିଥିଲା, ଆଜି ମଧ୍ୟ ମୋତେ ମାରି ଅଟକାଇ ରଖିଲା, ପୁଲିସ୍ ତାକୁ ଧରି ଆଣିଛି ।'' ଘଟଣାଟି ଏତେବେଳେ କିଛି କିଛି ବୁଝିପାରିଲି ! କିନ୍ତୁ କିପରି ଗୋବର୍ଦ୍ଧନ ବାବୁ ଏହା ଜାଣି ପାରିଲେ, ମୁଁ ଆଦୌ ବୁଝିପାରିଲି ନାହିଁ । ଗୋବର୍ଦ୍ଧନ ବାବୁ ମୋର ଆଶ୍ଚର୍ଯ୍ୟ ଭାବ ଦେଖି ବୁଝିପାରି କହିଲେ, ''ବସା ଭିତରକୁ ଆସ, ସବୁ କହୁଛି ।'' ଘର ଭିତରେ ତାଙ୍କର ଆରାମ ଚୌକିରେ ବସି ସେ କହିଲେ, ''ତୁମେ ହରିହର ବାବୁ ବୋଲି ଯାହାକୁ କହୁଛ, ସେ ହେଉଛନ୍ତି କଲିକତାର ବିଖ୍ୟାତ ଗହଣା ଦୋକାନୀ ବୀରେନ୍ ବାବୁଙ୍କ ମେନେଜର ମନୋଜ ବାବୁ । ମନୋଜ ବାବୁ ଜଣେ ଆମ ଦେଶର ଲୋକ । କିନ୍ତୁ ମୁଁ ଯଦି ତାଙ୍କୁ ଧରାଇ ଦେଇ ନଥାନ୍ତି, ତେବେ ଏ ଦିଗରେ ସେ ବିଶେଷ ନାଁ କରି ପାରନ୍ତେ, ଏକଥା ନିଶ୍ଚୟ । ଛଅବର୍ଷ ଆଗେ ସେ ବୀରେନ୍ ବାବୁଙ୍କ ଦୋକାନରୁ ଅନେକ ଗହଣା ଚୋରି କରିବା ଅପରାଧରେ ପାଞ୍ଚବର୍ଷ ଜେଲ ଦଣ୍ଡ ପାଇ କିଛି ଦିନ ତଳେ ଜେଲରୁ ମୁକ୍ତ ହୋଇଛନ୍ତି । ଦଣ୍ଡ ଅବଶ୍ୟ ସେ ପାଇଲେ, କିନ୍ତୁ ଚୋରି ମାଲ ପୁଲିସ୍ ପାଇଲେ ନାହିଁ । ଜେଲରୁ ଫେରି ସେ ଗୁଡ଼ିକ ନେବା ପାଇଁ ମନୋଜ ବାବୁ ଏ ଘର ଭଡ଼ା ନେବାକୁ ଚାହିଁଲେ । କାରଣ କଲିକତାରୁ ଚୋରି କରି ପଳାଇ ଆସି ସେ ଏହି ଘରେ ଥିଲେ ଏବଂ ଏହି ଘରେ ଧରା ପଡ଼ିଥିଲେ । ସେତେବେଳେ ତାଙ୍କ ଚେହେରା ଅନ୍ୟ ରୂପ ଥିଲା, ତେଣୁ ବ୍ରଜବାବୁ ତାଙ୍କୁ ଚିହ୍ନି ପାରିଲେ ନାହିଁ । ମୋର ପ୍ରଥମେ ସନ୍ଦେହ ହେଲା

ତାଙ୍କ ବ୍ୟବହାର ଦେଖି । ମନେହେଲା, ସେ ଏ ଘର ବ୍ରଜ ବାବୁଙ୍କୁ ଜାଣନ୍ତି, ଅଥଚ ବ୍ରଜ ବାବୁ ତାଙ୍କୁ କାହିଁକି ଚିହ୍ନି ପାରୁନାହାନ୍ତି । ନିଶ୍ଚୟ ତାଙ୍କ ଚେହେରା ସେ ବଦଳାଇଛନ୍ତି । ସନ୍ଦେହ ହେଲା ଯେ, ଦାଢ଼ି ଯୋଗୁଁ ଏବଂ ଅନ୍ୟାନ୍ୟ କେତେକ କାରଣ ଯୋଗୁଁ ବ୍ରଜ ବାବୁ ଚିହ୍ନି ପାରୁ ନାହାନ୍ତି । ପରିଚୟ ଏପରି ଗୁପ୍ତ ରଖିବାର ଉଦ୍ଦେଶ୍ୟ କ'ଣ ? ମହାଶୟ ତିନିଗୁଣ ଭଡ଼ା ଦେଇ କାହିଁକି ଏଘରେ ରହିବାକୁ ଚାହାନ୍ତି ? ଏ ଘରେ ହଠାତ୍ ଭୂତ ଉପଦ୍ରବ ଆରମ୍ଭ ହେଲା କାହିଁକି ? ଆମକୁ ଭୟଭୀତ କରାଇ ଘର ଛାଡ଼ି ଦେବାକୁ ବାଧ କରାଇବା ପାଇଁ ନୁହେଁ ତ ? ଜଣେ ଡାକ୍ତରୀ ଛାତ୍ରକୁ ଏତେ ଅଧିକା ଫିସ୍ ଦେଇ ରୋଗୀ ଦେଖାଇବା ଉଦ୍ଦେଶ୍ୟ କ'ଣ ? ଦୁଇ ଘଣ୍ଟା ସକାଶେ ତାଙ୍କୁ ଘରୁ ବାହାରେ ରଖିବା ନୁହେଁ ତ ? ମୁଁ ପୁଲିସ ଥାନାରେ ଯାଇ ଖବର ନେଲି ଯେ, ତିନି ମାସ ଭିତରେ କେଉଁ କେଉଁ ପ୍ରସିଦ୍ଧ ଚୋର ଓ ଖୁଣୀ ଇତ୍ୟାଦି ଖଲାସ ହୋଇଛନ୍ତି, ପ୍ରତ୍ୟେକଙ୍କ ଇତିହାସ ପଢ଼ିଲି ଏବଂ ସନ୍ଦେହ କଲି, ହରିହର ବାବୁ ନିଶ୍ଚୟ ବୀରେନ୍ ବାବୁଙ୍କ ମେନେଜର ମନୋଜ ବାବୁ ଏବଂ ଚୋରି ମାଲ ନିଶ୍ଚୟ ଏଇ ଘରେ ଅଛି । ବ୍ରଜ ବାବୁଙ୍କ ଠାରୁ ମଧ ଖବର ନେଲି ଯେ, ମନୋଜ ଏହି ଘରୁ ଧରା ହୋଇଥିଲା ଛଅ ବର୍ଷ ଆଗେ । ମୋର ଆଉ ସନ୍ଦେହ ରହିଲା ନାହିଁ । ଅବଶ୍ୟ ମୁଁ ଚେଷ୍ଟା କଲେ ଜାଣିପାରି ଥାଆନ୍ତି, ଚୋରି ମାଲ ଏ ଘରେ କେଉଁଠି ଅଛି; କିନ୍ତୁ ମଝିରେ ମଝିରେ ମୋ ମନରେ ଟିକିଏ ହାସ୍ୟରସ ଜାଗି ଉଠେ । ଏହାର ଗୋଟାଏ ନାଟକୀୟ ଉପସଂହାର କରିବାର ଇଚ୍ଛା ହେଲା । ପୁଲିସକୁ ରାଜି କରାଇବାରେ ଓ ବୀରେନ୍ ବାବୁଙ୍କ ଆସିବାରେ ଡେରି ହେଲା, ତେଣୁ କାଲି ମୁଁ ଏକା ପ୍ରସ୍ତୁତ ଥିଲି । ତୁମେ ଆସି ସବୁ ଗୋଳାମାଳ କରିଦେଲ, ଆଉ ଭଲ ମଧ କଲ । ଆଜି ବୀରେନ୍ ବାବୁ ଆସି ପହଞ୍ଚିଲେ ଓ ପୁଲିସ ମଧ ରାଜି ହେଲେ, ନାଟକଟି ଭଲ ଜମିଲା ।'' ଘର ଭିତରକୁ ଯାଇ ଦେଖିଲି କାନ୍ଥଟି ଭଙ୍ଗା ହୋଇଛି । କାନ୍ଥ ଭିତରୁ ଗୋଟିଏ ସାନ କୋଠରୀ ପରିମାଣରେର ଇଟା କାଢ଼ି ନିଆହୋଇଛି ।

ଗୁଣନିଧି ବାବୁଙ୍କ ନାଟକୀୟ ଭଙ୍ଗୀରେ ''ଆସନ୍ତୁ, ଆସନ୍ତୁ'' କଥା ମନେ ପଡ଼ିଲେ ଏ ପର୍ଯ୍ୟନ୍ତ ହସ ମାଡ଼େ ।



# ନରଛଞ୍ଚାଣ

# ସିଟି ବେଙ୍କ୍ ଚୋରି ରହସ୍ୟ

ମେଡିକେଲ୍ କଲେଜ ହଷ୍ଟେଲରେ ରହିବାର ପ୍ରାୟ ତିନି ମାସ ହୋଇଗଲା । ଏ କେତେଦିନ ନିଜର ପଢ଼ାପଢ଼ି ଓ ଅନ୍ୟ କାର୍ଯ୍ୟରେ ଏତେ ବ୍ୟସ୍ତ ରହିଗଲି ଯେ ଅନେକ ଥର ଇଚ୍ଛା କଲେ ମଧ ମୁଁ ଗୋବର୍ଦ୍ଧନ ବାବୁଙ୍କୁ ଦେଖା କରିବାକୁ ଯାଇ ପାରିଲି ନାହିଁ । ମନର ଯେକୌଣସି ଅବସ୍ଥାରେ ତାଙ୍କର ସାହଚର୍ଯ୍ୟ ବଡ଼ ପ୍ରୀତିପ୍ରଦ । ସେଦିନ କାମ ଟିକିଏ କୋହଳ ଥିବାରୁ ଓ ଅନ୍ୟାନ୍ୟ କେତେକ କାରଣରୁ ମନଟା ଟିକିଏ ଉଦାସ ଥିବାରୁ ମୁଁ ଗୋବର୍ଦ୍ଧନ ବାବୁଙ୍କ ସଙ୍ଗେ ଥରେ ଦେଖା କରି ଆସିବାକୁ ବାହାରିଲି । ଗୋବର୍ଦ୍ଧନ ବାବୁଙ୍କ ବସାରେ ପହଞ୍ଚିଲି ପ୍ରାୟ ସାଢ଼େ ନ'ଟା ବେଳକୁ ।

ଘରୁ ବାହାରିଲା ବେଳେ ଯାହା ଆଶଙ୍କା କରିଥିଲି, ଠିକ୍ ସେଇଆ ଘଟିଲା । ମୁଁ ପହଞ୍ଚିଲା ବେଳକୁ ଗୋବର୍ଦ୍ଧନ ବାବୁ 'ସଙ୍କୋଚନ' ଅବସ୍ଥାରେ । ସାମନାରେ ଖଣ୍ଡେ ବହି ଖୋଲା ହୋଇ ପଡ଼ିଛି -ଭୂତତ୍ତ୍ୱର ଗୋଟିଏ ବହି । ଗୋବର୍ଦ୍ଧନ ବାବୁ ପଦ୍ମାସନରେ ବସିବା ଭଳି ଖଟ ଉପରେ ବସିଛନ୍ତି । ହାତରେ ଗୋଟିଏ ନାଲି ପେନସିଲ୍ - ପଦ୍ମନାଡ଼ ଭଳି ଧରା ହୋଇଛି । ସହଜରେ ଏତିକି ଟିକିଏ ମଣିଷ - ଏବେ ଆହୁରି ଛୋଟ ଦିଶୁଛନ୍ତି । ଆଖି ଯୋଡ଼ିକ ନିଶ୍ଚଳ । ସେ ଧ୍ୟାନମୌନ ଦୃଷ୍ଟି କେଉଁଠି ଯେ ନ୍ୟସ୍ତ ମୁଁ ବୁଝିପାରିଲି ନାହିଁ । ମାତ୍ର ଏତିକି ବୁଝିଲି ନିଶ୍ଚୟ ବହି ପଢୁ ପଢୁ କୌଣସି ଗୋଟିଏ ସମସ୍ୟା ମନକୁ ଆସିଛି - ସେହି ଚିନ୍ତାରେ ସେ ଧ୍ୟାନମଗ୍ନ । ମୁଁ ତାଙ୍କର ମନର ପ୍ରତ୍ୟେକ ଅବସ୍ଥା ସହିତ ପରିଚିତ । ତେଣୁ ଯେତେ ଦୂର ସମ୍ଭବ ନିଜକୁ ତାଙ୍କର ଦୃଷ୍ଟିର ଅନ୍ତରାଳରେ ରଖି ଅତି ସନ୍ତର୍ପଣରେ ପ୍ରବେଶ କଲି ଏବଂ ତାଙ୍କ ପଛରେ ଗୋଟିଏ ଚୌକିରେ ନିଃଶବ୍ଦରେ ବସି ଅପେକ୍ଷା କରି ରହିଲି । ପ୍ରାୟ ଅଧଘଣ୍ଟା ପରେ ଆଉ ଖଣ୍ଡିଏ ବହି ଆଣିବା ପାଇଁ ଖଟରୁ ଉଠିବା ବେଳେ ସେ ମୋତେ ଦେଖିଲେ । ତାଙ୍କର ଭାବର ଆତିଶଯ୍ୟ ମୁଁ କେବେ ହେଁ ଦେଖି ନାହିଁ । କିନ୍ତୁ ତାଙ୍କ ଆଖିରୁ ମୁଁ ବୁଝିପାରିଲି ମୋ ଆସିବାରେ ସେ ଖୁସି ହୋଇ ଅଛନ୍ତି । ମୋତେ ଦେଖି ସେ କହିଲେ, ''ଡାକ୍ତର, ଆଜି ସକାଳେ ମୁଁ ତୁମ କଥା ଭାବୁଥିଲି । ନାଃ, ଏ ବିଷୟରେ ମୁଁ ବିଶେଷ ଅନୁସନ୍ଧାନ କରିବି - କାରଣ ଅନେକ ଥର ଦେଖିଛି ଯାହାକୁ ଦେଖିବାର ଖୁବ୍ ଇଚ୍ଛା ହେଉଥାଏ ଆକସ୍ମିକ ଭାବରେ ସେ ଆପେ ଆପେ ଆସି ଦେଖା ଦିଏ । ଯିଏ ଯେତେ ଦୂରରେ ଥାଉ ନା କାହିଁକି ଜଣକର ମନର ପ୍ରଭାବ ମଧ ଅନ୍ୟର ମନ ଉପରେ ପଡ଼େ ।'' କିଛିକ୍ଷଣ ସେ ନୀରବ ରହିଲେ - ବୋଧହୁଏ ଏ ବିଷୟରେ ସେ କ'ଣ ଚିନ୍ତା କଲେ । ତାଙ୍କ ନୋଟ ବହି

(ଗୋଟିଏ ପ୍ରକାଣ୍ଡ ମୋଟା ଖାତା)ରେ ସେ କ'ଣ ଟିପି ରଖି ମୋତେ ସ୍ଥିର ଦୃଷ୍ଟିରେ ପୁଣି କିଛିକ୍ଷଣ ଚାହିଁ କହିଲେ, "ତା'ପରେ, ଡାକ୍ତର ସାହେବ, ଖୁବ୍ ରାତି ଉଜାଗର ରହି ପାଠ ପଢୁଛ ଦେଖୁଛି । ତୁମର ଓଜନ ପ୍ରାୟ ଛଅଟି ପାଉଣ୍ଡ କମିଲାଣି । କାଲି ରାତିରେ ସିନେମା ଦେଖି ଯାଇଥିଲ, ନା ? କିନ୍ତୁ ଖରାବେଳେ ମାଛ ଧରିବାକୁ ସମୟ ପାଉଛ କିପରି ?" କିଛିକ୍ଷଣ ନୀରବ ରହି ସେ ଟିକିଏ ହସି କହିଲେ "ମୋର ମନେ ହୁଏ ତୁମର ସିନେମା ଯିବା ଆଉ ମାଛ ଧରିବା ସହିତ ଆଉ କିଛି ଜଡ଼ିତ !"

ଏକଥାରେ ଚମକି ପଡ଼ି ମୁଁ କହିଲି "ମୋର ଦୃଷ୍ଟିଶକ୍ତି ଆପଣଙ୍କ ଠାରୁ କିଛି କମ୍ ନୁହେଁ । ମୋର ଆଖିତଳ କଳା ଚିହ୍ନରୁ ଯେକେହି ଅନୁମାନ କରିବ ମୁଁ ବହୁତ ରାତି ପର୍ଯ୍ୟନ୍ତ ପାଠ ପଢୁଛି । ମୋର ପାତଳା ପଞ୍ଜାବି ପକେଟରୁ ସିନେମା ଟିକଟର ଅଧା ଅଂଶଟା ଦେଖି କାଲି ବାଇସ୍କୋପ୍ ଯିବା କଥା ଜାଣିବାରେ ମଧ୍ୟ ବିଶେଷ ବାହାଦୁରି ନାହିଁ । ମୋତେ ବହୁଥର ଯିଏ ଆଗରୁ ଦେଖିଛି ବର୍ତ୍ତମାନ ମୋ ଚେହେରା ଦେଖି ସେ କହିପାରେ ମୁଁ ଓଜନରେ କମି ଯାଇଛି । କିନ୍ତୁ ଠିକ୍ ଛଅଟି ପାଉଣ୍ଡ କମିଛି, ଖରାବେଳେ ମାଛ ଧରିବାକୁ ଯାଇଥିଲି ଓ ଏହା ସହିତ ଅନ୍ୟ କିଛି ଜଡ଼ିତ ଏ ସବୁ ଅନୁମାନ କରିବା ଭଳି ମୋ ଦେହରେ କୌଣସି ଲକ୍ଷଣ ପ୍ରକାଶ ପାଉଛି କହିଲେ ମୁଁ କହିବି ଏଥିରେ ମଣିଷ ବୁଦ୍ଧିର ବାହାଦୁରି ନାହିଁ, ଅଛି ଇନ୍ଦ୍ରିୟାତୀତ ଇନ୍ଦ୍ରଜାଲର ମାୟା ।" ପୂର୍ବପରି ସେ ହସି କହିଲେ, "କିନ୍ତୁ ଡାକ୍ତର, ଏ ସବୁର ଇଙ୍ଗିତ ଯେ ତୁମରି ଦେହରେ ହିଁ ଅଛି ମୁଁ ବର୍ତ୍ତମାନ ତାହା ପ୍ରମାଣ କରୁଛି, ଦେଖ । କିନ୍ତୁ ଆଗେ ଲେଖିଦିଅ ଯେ ବୁଝାଇ ଦେବା ପରେ ତୁମେ ଆଉ କହିପାରିବ ନାହିଁ, ଇଏ ତ ଖୁବ୍ ସହଜ - ଏଥିରେ ବାହାଦୁରି କିଛି ନାହିଁ !"

"ଆଚ୍ଛା ମାନିଲି ।"

"ଏଥର ସେ କଥା କହିଲେ କିନ୍ତୁ ଟଙ୍କାଟିଏ ଜରିମନା ଆଦାୟ କରିବି । ବର୍ତ୍ତମାନ ଦେଖ । ତୁମର ଗାଲହାଡ଼ ଟିକିଏ ବାହାରି ପଡ଼ିଲାଣି । ତୁମ କାନ ତଳକୁ ଚମଡ଼ା ବି ଓହଳି ପଡ଼ିଲାଣି । ହଷ୍ଟେଲକୁ ଯିବା ଆଗରୁ ଏପରି ନଥିଲା । ଶରୀରର ଓଜନ କମିଲେ ତାହା ଅନ୍ୟାନ୍ୟ ଅଙ୍ଗ ପ୍ରତ୍ୟେଙ୍ଗରୁ ଯେତେ ଜଣାନଯାଏ ସେତେ ଜଣା ପଡ଼େ ମୁହଁରୁ । ଶରୀରର ଓଜନ ଛଅ ପାଉଣ୍ଡରୁ ଦଶ ପାଉଣ୍ଡ କମିଲେ ଏହି ଲକ୍ଷଣଗୁଡ଼ିକ ପ୍ରକାଶ ପାଏ । ତୁମ ମୁହଁରେ ଏ ଲକ୍ଷଣଗୁଡ଼ିକ ସାମାନ୍ୟ ଭାବରେ ପ୍ରକାଶ ପାଉଥିବାରୁ ସହଜରେ ଅନୁମାନ କରାଯାଇପାରେ ଯେ ଓଜନ ଛଅଟି ପାଉଣ୍ଡ କମିଛି । ଏଥର ନିଜ ଜୋତାକୁ ଲକ୍ଷ୍ୟ କର । ଜୋତାର ଗୋଇଠି ପାଖରେ ଟିକିଏ କାଦୁଅ ଲାଗି ଶୁଖି ଯାଇଛି । ଏ କାଦୁଅ ଯେ ପୋଖରୀ କୂଳର ତା' ଯେ କେହି କହିପାରିବ, କାରଣ ଏପରି ଚିକିଟା କାଦୁଅ ପ୍ରାୟ ପୋଖରୀ କୂଳରେ ଦେଖାଯାଏ । ବର୍ତ୍ତମାନ ପ୍ରଶ୍ନ ହେଉଛି ତୁମେ ବା ଏମିତି ଦାମିକା ଜୋତା ମାଡ଼ି କାହିଁକି ପୋଖରୀ କୂଳକୁ ଯାଇଥିଲ ? ତୁମ ଦେହରେ ପ୍ରକାଶ ପାଉଥିବା ଅନ୍ୟାନ୍ୟ ଲକ୍ଷଣଗୁଡ଼ିକ

ସହିତ ସମ୍ବନ୍ଧ ନିରୂପଣ କରାଯାଉ । ତୁମ ପକେଟରେ ଗୋଟିଏ ନୁହଁ ଚାରୋଟି ବାଇସ୍କୋପ ଟିକଟ ଅଛି । ଅତଏବ ତୁମେ ଏକା ବାଇସ୍କୋପ ଦେଖି ଯାଇନଥିଲ । ଚାରୋଟି ଯାକ ଟିକଟ ତୁମରି ପକେଟରେ ଥିବାରୁ ମନେହୁଏ ତୁମେ ଚାରୋଟି ଯାକ ଟିକଟ କିଣିଥିଲ ଅର୍ଥାତ୍ ଅନ୍ୟ ତିନିଜଣଙ୍କୁ ବାଇସ୍କୋପ ଦେଖାଇ ନେଇ ଯାଇଥିଲ । ଏବେ ଅନ୍ୟ ତିନିଜଣ କିଏ ଜାଣି ପାରିଲେ ସବୁ କଥା ପରିଷ୍କାର ହୋଇଯିବ । ଏମାନେ ତୁମର ବନ୍ଧୁ ନା ଅନ୍ୟ କେହି ? ଟିକେଟ ଏହି ପଞ୍ଜାବି ପକେଟରେ ଅଛି, ତେଣୁ ଏହି ପଞ୍ଜାବି ପିନ୍ଧି ତୁମେ ବାଇସ୍କୋପ ଦେଖି ଯାଇଥିଲ । ବାଃ ! କି ସୁନ୍ଦର ବାସ୍ନା ଏ ପଞ୍ଜାବିରୁ ବାହାରୁଛି । ଓଡିକୋଲୋନ୍ ! ପଞ୍ଜାବିର ଏ ଫାଳକରୁ ଗୋଟିଏ ସସ୍ତା ଅତରର ତୀବ୍ର ଗନ୍ଧ ମଧ୍ୟ ଟିକିଏ ଟିକିଏ ପାଉଛି ! ଆଗେ ତ ତୁମକୁ କେବେ ଅତର ବ୍ୟବହାର କରିବାର ଦେଖି ନାହିଁ । ପୁଣି ଦୁଇ ପ୍ରକାରର ଅତର କାହିଁକି ? ଗୋଟିଏ ନିଜର, ଅନ୍ୟଟି ଆଉ କିଏ ଦେଇଛି । ଆଣ ତ, ତୁମର ରୁମାଲ ଟିକିଏ ଦେଖେଁ ।’’ ମୁଁ ସମ୍ମୋହିତ ପରି ଚାହିଁ ରହି ରୁମାଲଟି ବଢ଼ାଇ ଦେଲି । ଗୋବର୍ଦ୍ଧନ ବାବୁ ରୁମାଲଟି ଶୁଙ୍ଘି ଏବଂ ମୋର ପଞ୍ଜାବିର ବିଭିନ୍ନ ସ୍ଥାନ ଶୁଙ୍ଘି ପୁଣି କହିଲେ ‘‘ଓଡିକୋଲୋନ୍ ନିଶ୍ଚୟ ତୁମର - କାରଣ ଏହାର ଗନ୍ଧ ମୁଁ ତୁମର ଏବଂ ପଞ୍ଜାବିର ବେକ ପାଖରୁ କେବଳ ପାଉଛି । ଏ ଅତର ଲଗାଇବାରେ ଗୋଟିଏ ଶୃଙ୍ଖଳା ମଧ୍ୟ ଦେଖିବାକୁ ପାଉଛି । କିନ୍ତୁ ଅନ୍ୟ ଅତରଟି ପଞ୍ଜାବିର ବାଁ ପାଖରେ ଏଣେ ତେଣେ ବିଶୃଙ୍ଖଳ ଭାବରେ ପଡ଼ିଛି । ମୋର ମନେ ହେଉଛି ଅତର ବୋତଲରୁ କିଏ ତୁମ ଉପରକୁ ତାହା ପୋପାଡ଼ିଚି । ବର୍ତ୍ତମାନ ସହଜରେ ବୁଝାଯାଏ ଯେ ‘କାଲି ମଧୁ ଯାମିନୀତେ, ଜ୍ୟୋତ୍ସା ନିଶୀଥେ’... ଆହା ... ଲଜ୍ଜା କରୁଛ କାହିଁକି ! ଏଥିରେ ଲଜ୍ଜା କରିବାର କ’ଣ ଅଛି । ଏହାହିଁ ତ ଯୌବନର ସ୍ୱାଭାବିକ ଧର୍ମ । ବର୍ତ୍ତମାନ ଏହା ସହିତ ପୋଖରୀ କୂଳକୁ ଯିବାର କିଛି ସମ୍ବନ୍ଧ ଅଛି କି ନା ଅନୁସନ୍ଧାନ କରି ଦେଖାଯାଉ । ଏପରି ଦାମୀ ଜୋତା ପିନ୍ଧି ପୋଖରୀ କୂଳକୁ ଯିବାର କାରଣ କ’ଣ ଥାଇ ପାରେ ? ଖରାଦିନେ ପୋଖରୀ ପାଣି ପର୍ଯ୍ୟନ୍ତ ନ ଗଲେ ଏ କାଦୁଅ ଲାଗିବା ସମ୍ଭବ ନୁହେଁ । କାହାରିକୁ ବୁଡ଼ି ଯିବାରୁ ରକ୍ଷା କରିବା ପାଇଁ ? ତା’ ହେଲେ ତ ଜୋତା ପୋଖରୀ ବନ୍ଧ ଉପରେ ଖୋଲି ରଖି ଯାଇଥାଆନ୍ତ । ଗାଧୋଇବା ପାଇଁ ? ଗାଧୋଇଲା ବେଳେ ଏ ଜୋତା କେହି ବ୍ୟବହାର କରିବେ ନାହିଁ । ଆଉ ତୁମେ ବା ପୋଖରୀକୁ ଗାଧୋଇବାକୁ ଯିବ କାହିଁକି ? ଅତଏବ ଖୁବ୍ ସମ୍ଭବ ପୋଖରୀକୁ ମାଛ ଧରିବାକୁ ଯାଇଥିଲ । କିନ୍ତୁ ତୁମର ବର୍ତ୍ତମାନ ସମୟର ଏତେ ଅଭାବ ଯେ ତୁମକୁ ରାତି ରାତି ଜେଗିଁ ପଢ଼ିବାକୁ ହେଉଛି । ଅଥଚ ବାଇସ୍କୋପ ଦେଖି ଯିବାକୁ ଏବଂ ଖରାବେଳେ ମାଛ ଧରିବାକୁ ସମୟ ପାଉଛ କେଉଁଠୁ ? ଏବେ ତୁମର ଅତର ବ୍ୟବହାର କରିବା ଓ ସିନେମା ଦେଖିଯିବା ସହିତ ମାଛଧରିବାର ସମ୍ବନ୍ଧଟି ଧରା ପଡ଼ିଲା କି ନାହିଁ ! ତୁମର ପ୍ରଣୟିନୀଙ୍କ ଘର ବଗିଚାରେ ହୁଏତ ଗୋଟିଏ ପୋଖରୀ ଅଛି । ତୁମେ ମାଛ ଧରିବା ବାହାନାରେ ସେଠିକି ଯାଇଥିଲ । ମାଛ ଧରି ସାରି ତୁମେ ତୁମର ପ୍ରଣୟିନୀ ଓ ଖୁବ୍

ସମ୍ଭବ ତାଙ୍କର ମା' ଓ ବାପାଙ୍କୁ ମଧ୍ୟ ସିନେମା ନେଇ ଯିବାର ପ୍ରସ୍ତାବ କଲ । କ'ଣ... ଠିକ୍ ତ ?''

''ଏ ତ ଖୁବ୍ ସହଜ''

''ହଁ, ମାତ୍ର ଏକ ଟଙ୍କା - ପକେଟରୁ ବାହାର କଲେ ହେଲା ।''

ମୁଁ ହସି ପକାଇଲି ।

ମୋର ଅନ୍ତରର ଗୋପନ କଥା ଏପର୍ଯ୍ୟନ୍ତ କେହି ଜାଣନ୍ତି ନାହିଁ । ଏହି ବୟସରେ ପ୍ରଣୟ କରିବାର ଇଚ୍ଛା ଯେପରି ପ୍ରବଳ ସେ ବିଷୟରେ ଲଜ୍ଜା ମଧ୍ୟ ସେତିକି ପ୍ରଚଣ୍ଡ । ଏହି ଦୁଇଭାଗ ମିଶି ମନକୁ ଗୋଟାଏ ସ୍ୱପ୍ନ ରାଜ୍ୟକୁ ନେଇଯାଏ । ମୁଁ ଥିଲି ମୋର ଏହି ଗୋପନ ସ୍ୱପ୍ନ ରାଜ୍ୟରେ - କେବଳ ପରୀକ୍ଷାର ପଢ଼ାପଢ଼ି ପାଇଁ ବାସ୍ତବ ରାଜ୍ୟକୁ ମଝିରେ ମଝିରେ ଆସୁଥିଲି । ସେ ରାଜ୍ୟର ସନ୍ଧାନ କେତେଗୁଡ଼ିଏ ତୁଚ୍ଛ କାରଣରୁ ଜଣା ପଡ଼ିଯିବାରୁ ମୋତେ ହସ ମାଡ଼ିଲା । ଅନ୍ୟ କେହି ଜାଣି ପାରିଥିଲେ ମୋର ଲଜ୍ଜା ଓ ଭୟ ଉଭୟ ହୁଅନ୍ତା ? କିନ୍ତୁ ଗୋବର୍ଦ୍ଧନ ବାବୁଙ୍କ ପ୍ରକୃତିରେ ଏପରି ଗୋଟାଏ ଆନ୍ତରିକତା ଅଛି ଏବଂ ପ୍ରତ୍ୟେକ ମନୁଷ୍ୟ ପ୍ରତି ତାଙ୍କର ଏପରି ଗୋଟାଏ ସହଜ ସହାନୁଭୂତି ଅଛି, ଯେ କେହି ଲୋକ ତାଙ୍କ ବିଶ୍ୱାସରେ ମନ ଖୋଲି ସବୁ କହିପାରେ । ଗୋବର୍ଦ୍ଧନ ବାବୁ ହଠାତ୍ ଗମ୍ଭୀର ହୋଇ କହିଲେ, ''ଡାକ୍ତର, ଏ ବିଷୟରେ ମୋର ଧାରଣା ଯେ ପ୍ରେମ ଗୋଟିଏ ପ୍ରବୃତ୍ତି - ପୁଣି ଗୋଟିଏ ମୌଳିକ ପ୍ରବୃତ୍ତି । ଏହାକୁ ପ୍ରଚ୍ଛନ୍ନ ରଖିବା ଯେତିକି ମାରାତ୍ମକ, ଉଚ୍ଛୃଙ୍ଖଳ ଭାବରେ ପ୍ରକାଶ କରିବା ମଧ୍ୟ ସେତିକି ବିପଜ୍ଜନକ । ଉଭୟ ପନ୍ଥାରେ ମନୁଷ୍ୟର ଏହି ସହଜ ପ୍ରବୃତ୍ତି ବିକୃତ ହୋଇଯାଏ । ଏହି ମୌଳିକ ପ୍ରବୃତ୍ତିର ବିକୃତି ଘଟିଲେ ମନୁଷ୍ୟର ଅନ୍ୟାନ୍ୟ ସବୁ ଦିଗରେ ବିକୃତି ଘଟିବ ଏବଂ ତାହା ନାନା ବିକାର ରୂପରେ ପ୍ରକାଶ ପାଇବ । ଜୀବନରୁ ସରସତା ଚାଲିଯିବ । ଯେଉଁ ଆବେଗକୁ ତୁମେ ପ୍ରେମ କହୁଛ ସେହି ଆବେଗରୁ ହିଁ ତୁମେ ପ୍ରେରଣା ପାଉଛ କଠିନ ପରିଶ୍ରମ କରି, ବଡ଼ ହୋଇ, ତୁମର ପ୍ରଣୟିନୀ ଚକ୍ଷୁରେ ନିଜକୁ ବଡ଼ କରି ଦେଖାଇବାକୁ, ପ୍ରକୃତରେ ନିୟମଗୁଡ଼ିକ ଏହିପରି ନିର୍ମମ ଅଥଚ ସରଳ । କିନ୍ତୁ... କିନ୍ତୁ.... କିଏ ଜଣେ ବିପଦରରେ ପଡ଼ି ମୋ ପାଖକୁ ଆସିବା ଭଳି ମନେ ହେଉଛି ।''

ବାହାରକୁ ଅନାଇ ଦେଖିଲି ସତେଇଶ ଅଠେଇଶ ବର୍ଷର ଗୋଟିଏ ଯୁବକ ଖୁବ୍ ଜୋର୍‌ରେ ସାଇକେଲ୍ ଚଳାଇ ଫାଟକ ଭିତରେ ପଶିଲା । ଅଳ୍ପ ସମୟ ପରେ ସେ ଝଡ଼ ପରି ଘର ଭିତରକୁ ପଶି ଆସି ବ୍ୟସ୍ତ ଭାବରେ ପଚାରିଲା, ''ଗୋବର୍ଦ୍ଧନ ବାବୁ ଅଛନ୍ତି ?'' ଗୋବର୍ଦ୍ଧନ ବାବୁ ତାଙ୍କୁ ଗୋଟିଏ ଚୌକି ଦେଖାଇ ଦେଇ କହିଲେ ''ବସନ୍ତୁ, ବ୍ୟସ୍ତ ହୁଅନ୍ତୁ ନାହିଁ ।'' ଭଦ୍ରଲୋକ ଚୌକିରେ ବସି ଟିକିଏ ଆଶ୍ୱସ୍ତ ହୋଇ କହିଲେ, ''ମୋର ନାମ ଶଶିଭୂଷଣ ଦାସ । ମୁଁ ଏଇ କଟକରେ ସିଟି ବେଙ୍କରେ କେଶିୟର କାମ କରେ । ବଡ଼ ବିପଦରେ ପଡ଼ି... ।'' ଗୋବର୍ଦ୍ଧନ ବାବୁ ବାଧା ଦେଇ କହିଲେ, ''ବିପଦ କଥା ପରେ

କହିବେ । ଆପଣ କଥା କହି ପାରୁନାହାନ୍ତି । ଗିଲାସେ ଥଣ୍ଡା ପାଣି ପିଇ ଆଗେ ଟିକିଏ ବିଶ୍ରାମ କରନ୍ତୁ ।'' ବଡ଼ ବିପଦରେ ପଡ଼ି ଯେ ସେ ଆସିଛନ୍ତି ତାହା ତାଙ୍କର ଅତ୍ୟଧିକ ଉଦ୍‌ବେଗ ଏବଂ ଚେହେରାରୁ ସ୍ପଷ୍ଟ ଜଣା ପଡ଼େ । ଗୋବର୍ଦ୍ଧନ ବାବୁ ଗିଲାସେ ଥଣ୍ଡା ପାଣି ଆଣି ଦେଲେ । ଶଶୀବାବୁ ଏକା ନିଃଶ୍ୱାସକେ ପାଣିତକ ପିଇ ଟିକିଏ ବିଶ୍ରାମ ନେଇ କହିଲେ, ''ମୁଁ ଘୋର ବିପଦରେ ପଡ଼ି ଆପଣଙ୍କ ପାଖକୁ ସାହାଯ୍ୟ ଭିକ୍ଷା ପାଇଁ ଆସିଛି । କାଲି... ।'' କିନ୍ତୁ ସେ ଆଉ କହି ପାରିଲେ ନାହିଁ । ବାହାରକୁ ଚାହିଁ ସେ ଭୟରେ କଳାକାଠ ପଡ଼ିଗଲେ । ଅନାଇ ଦେଖିଲେ ଜଣେ ପୁଲିସ ସବ୍‌ଇନ୍ସପେକ୍ଟର ଦୁଇଜଣ କନେଷ୍ଟବଲ ସହିତ ଆସୁଛନ୍ତି । ଘର ଭିତରକୁ ଆସି ସେ ପଚାରିଲେ, ''ଆପଣଙ୍କ ନାମ ଶଶିଭୂଷଣ ଦାସ ? ଆପଣ ସିଟି ବେଙ୍କରେ କାମ କରନ୍ତି ?'' ଶଶୀବାବୁ ମୁଣ୍ଡ ହଲାଇ ସମ୍ମତି ଜଣାଇଲେ ।

''ଆପଣଙ୍କୁ ମୁଁ ଗିରଫ କରିବାକୁ ଆସିଛି । ଅଭିଯୋଗ ଯେ କାଲି ରାତିରେ ଆପଣ ବେଙ୍କର ଦୁଇ ଲକ୍ଷ ଟଙ୍କା ଚୋରି କରିଅଛନ୍ତି । ଏ ବିଷୟରେ ପ୍ରମାଣ ମଧ୍ୟ ମିଳିଛି । ବର୍ତ୍ତମାନ ଦୟା କରି ଆପଣ ଥାନାକୁ ଚାଲନ୍ତୁ । ଏ ବିଷୟରେ ଯଦି ଆପଣଙ୍କର କିଛି କହିବାର ଥିବ ତ ସେଇଠି କହିବେ ।''

ଶଶୀ ବାବୁ ଅଧୀର ହୋଇ କାନ୍ଦି ପକାଇଲେ । ସେ କିଛି କହିବାକୁ ଚେଷ୍ଟା କରୁଥିଲେ, ମାତ୍ର ତାଙ୍କର ଓଠ ଦିଓଟି ଖାଲି ଥରି ଉଠିଲା । ଅନେକକ୍ଷଣ ପରେ ସେ ଧୀରେ ଧୀରେ କହିଲେ, ''ଗୋବର୍ଦ୍ଧନ ବାବୁ, ମୁଁ ଶପଥ କରି କହୁଛି ଏ ଟଙ୍କା ମୁଁ ଚୋରି କରିନାହିଁ । ଆପଣ ମୋତେ ଏ ବିପଦରୁ ରକ୍ଷା ନ କଲେ ମୋର ଜୀବନ ନଷ୍ଟ ହୋଇଯିବ । ମୋର ଏଇ ପନ୍ଦର ଦିନ ତଳେ ବିବାହ ହୋଇଛି... ସେ... ମୁଁ... ଆପଣ... '' ତାଙ୍କର କହିବାର ଧୈର୍ଯ୍ୟ ଆଉ ରହିଲା ନାହିଁ । ତଳକୁ ମୁହଁ ପୋତି ସେ କାନ୍ଦି ପକାଇଲେ । ମୋ ଆଖିରୁ ମଧ୍ୟ ପାଣି ଝରିଲା ।

ଗୋବର୍ଦ୍ଧନ ବାବୁ କିନ୍ତୁ ପୂର୍ବପରି ନିର୍ବିକାର । କୌଣସି ଆବେଗ ତାଙ୍କୁ କେବେ ସ୍ପର୍ଶ କରେ ନାହିଁ । ଏଥିପାଇଁ ମଝିରେ ମଝିରେ ତାଙ୍କ ଉପରେ ମୋର ରାଗ ଆସେ । ଶଶୀବାବୁଙ୍କ ଆବେଗକୁ ଅବଜ୍ଞା କରି ସେ ପୁଲିସ ସବ୍‌ଇନ୍ସପେକ୍ଟରଙ୍କୁ ପଚାରିଲେ, ''ଆପଣ କିପରି ଜାଣିଲେ ଯେ ଶଶୀବାବୁ ମୋ ଘରକୁ ଆସିଛନ୍ତି ?''

''ସେ ତାଙ୍କ ଅଫିସ୍ ଟେବୁଲ୍ ଉପରେ ଆପଣଙ୍କୁ ଏ ବିଷୟରେ ଖଣ୍ଡେ ଚିଠି ଲେଖି ରଖିଥିଲେ । ପରେ ବୋଧହୁଏ ସେ ଚିଠି ନଦେଇ ନିଜେ ଆସିବା ଭଲ ମନେ କଲେ ।''

ଶଶୀବାବୁ ମୁଣ୍ଡ ଟେକି କହିଲେ, ''ହଁ, ଆଜି ପ୍ରାୟ ଦଶଟା ବେଳେ ଯେତେବେଳେ ମୁଁ ଦେଖିଲି ଯେ ଟଙ୍କା ଚୋରି ଯାଇଛି ସେତେବେଳେ ପ୍ରଥମେ ମୋର ମନେ ପଡ଼ିଲା ଆପଣଙ୍କ କଥା । ଆପଣଙ୍କ ସାହାଯ୍ୟ ଭିକ୍ଷା କରି ଖଣ୍ଡେ ପତ୍ର ଲେଖିଲି । କିନ୍ତୁ ପରେ ନିଜେ ଆସିବା ଉଚିତ ମନେ କଲି ।''

ଗୋବର୍ଦ୍ଧନ ବାବୁ କିଛିକ୍ଷଣ ସ୍ଥିର ଦୃଷ୍ଟିରେ ଶଶୀବାବୁଙ୍କ ଆଡ଼କୁ ଚାହିଁ କହିଲେ, ''ଆପଣ ନିଶ୍ଚିନ୍ତ ରୁହନ୍ତୁ । ମୋ ଦ୍ୱାରା ଯାହା ସମ୍ଭବ ତାହା ମୁଁ କରିବି । ଆପଣ ନିର୍ଦ୍ଦୋଷ ବୋଲି ଯଦି ମୁଁ ବୁଝେ ତା' ହେଲେ ନିଶ୍ଚୟ ଆପଣ ଏଥିରୁ ମୁକ୍ତି ପାଇବେ । ସବ୍‌ଇନ୍ସପେକ୍ଟର ବାବୁ, ଆପଣଙ୍କର ତ ଗୋଟିଏ ବିବୃତି ଏହାଙ୍କ ପାଖରୁ ନେବା କଥା । ମୁଁ ମଧ୍ୟ ଶୁଣିବାକୁ ଚାହେଁ ଘଟଣାଟି କ'ଣ । ତେଣୁ ମୁଁ ଅନୁରୋଧ କରୁଛି ଆପଣ ଏହାଙ୍କୁ ଏହିଠାରେ ଘଟଣାଟି କହିବାକୁ ଅନୁମତି ଦିଅନ୍ତୁ ।''

''ତାଙ୍କର ଆଉ ବିଶେଷ କିଛି କହିବାର ନାହିଁ । କେବଳ ଆଇନତଃ ଗୋଟିଏ ବିବୃତି ଦରକାର ବୋଲି ମୁଁ ଏକଥା କହିଲି । ଆଚ୍ଛା କୁହନ୍ତୁ; ଆପତ୍ତି କ'ଣ ?'' ତାଙ୍କର କଥାରୁ ମନେହେଲା ସେ ଯେପରି ଗୋବର୍ଦ୍ଧନ ବାବୁଙ୍କ ପ୍ରତି ଦୟା କରୁଛନ୍ତି । ଶଶିବାବୁ ଟିକିଏ ସାହସ ପାଇ କହିଲେ, ''ମୁଁ ସିଟି ବେଙ୍କର କେଶିୟର୍ । ବେଙ୍କରେ ପ୍ରତିଦିନର ଆଦାୟ ଟଙ୍କା ସେହିଦିନ ଇମ୍ପିରିଅଲ୍ ବେଙ୍କକୁ ଚାଲିଯାଏ । ଯେଉଁଦିନ ଯାଇ ନପାରେ ସେ ଦିନ ବେଙ୍କର ଲୁହା ସିନ୍ଦୁକରେ ରଖାହୁଏ ଏବଂ ତହିଁଆର ଦିନ ବେଙ୍କ ଖୋଲିବା ସଙ୍ଗେ ସଙ୍ଗେ ଇମ୍ପିରିଆଲ୍ ବେଙ୍କକୁ ପଠାହୁଏ । ପଅର ଦିନ...''

ଗୋବର୍ଦ୍ଧନ ବାବୁ ବାଧା ଦେଇ କହିଲେ, ''କାହିଁକି ଦିନେ ଦିନେ ଏପରି ହୁଏ ?''

''ହୁଏତ କେହି ଟିକିଏ ଡେରି କରି ଟଙ୍କା ଦେଲେ କିମ୍ବା ଏଜେଣ୍ଟ ଅନ୍ୟ କାର୍ଯ୍ୟରେ ବ୍ୟସ୍ତ ଥିଲେ ଏପରି ଘଟେ ।''

''ଏପରି କ'ଣ ପ୍ରାୟ ଘଟେ ? ନା ଦିନେ ଅଧେ ?''

''ନା, ତେବେ ଆଜିକାଲି ବେଙ୍କର କାମ ବଢ଼ିବାରୁ ପ୍ରାୟ ଏପରି ଘଟୁଛି ।''

''କେବେଠୁ ଏପରି ଘଟୁଛି ?''

ଶଶୀବାବୁ ଟିକିଏ ଭାବି କହିଲେ, ''ମୋର ଠିକ୍ ମନେ ନାହିଁ, ତେବେ ଗଲା ମାସକ ଭିତରେ ପ୍ରାୟ ଚାରିଥର ଏପରି ଘଟିଛି ।''

''କେବେ କେବେ ଆପଣଙ୍କର ମନେ ଅଛି ?''

ଶଶୀବାବୁ ପକେଟରୁ ଗୋଟିଏ ନୋଟ୍ ବହି ବାହାର କରି କହିଲେ, ''ଗଲା ମାସରେ ୨, ୯, ୧୬, ୨୩ ଓ ୩୦ ତାରିଖ ମାନଙ୍କରେ ଟଙ୍କା ପଠା ହୋଇ ପାରିନଥିଲା ।''

''ପଅର ଦିନ ମଧ୍ୟ ଟଙ୍କା ପଠା ହୋଇନଥିଲା ?''

''ଆଜ୍ଞା ନା ।''

''ପଅର ଦିନ ଥିଲା ଶନିବାର । ଡାକ୍ତର, ଦେଖତ ଗଲା ମାସର ୨, ୯, ୧୬, ୨୩ ଓ ୩୦ ତାରିଖ ମାନଙ୍କରେ କି କି ବାର ଥିଲା ।''

ମୁଁ କେଲେଣ୍ଡର ଦେଖି କହିଲି ସେ ସବୁ ତାରିଖ ଶନିବାର ଥିଲା । ଏ ସମ୍ବାଦ ପରେ

ଗୋବର୍ଦ୍ଧନ ବାବୁଙ୍କ ଶରୀର ପୁଣି ସଙ୍କୁଚିତ ଓ ଆଖି ସାନ ସାନ ହୋଇ ଆସିଲା । ଅଭିଜ୍ଞତାରୁ ବୁଝିଲି ସେ କିଛି ଗୋଟାଏ ଟେର୍ ପାଇ ସାରିଲେଣି । ସେ ତାଙ୍କ ଆରାମ ଚୌକି ଉପରକୁ ଗୋଡ଼ ଟେକି ଦେଇ ବସି କହିଲେ, ''ଏଥର ଆପଣଙ୍କ କଥା କୁହନ୍ତୁ ।''

''ବେଙ୍କର ଟଙ୍କା ଲୁହା ସିନ୍ଦୁକରେ ରୁହେ । ଏହି ସିନ୍ଦୁକର ଦୁଇଟି ଚାବି । ଦୁଇଟି ଯାକ ଖୋଲିଲେ ଯାଇ ସିନ୍ଦୁକ ଖୋଲେ । ଗୋଟିଏ ଥାଏ ମୋ ପାଖରେ ଅନ୍ୟଟି ଥାଏ ମେନେଜରଙ୍କ ପାଖରେ । ମେନେଜର ଯଦି ଅସୁସ୍ଥ ହୁଅନ୍ତି ବା କୌଣସି କାରଣରୁ ବାହାରକୁ ଯାଆନ୍ତି ତା'ହେଲେ ତାଙ୍କ ଚାବିଟି ମୋତେ ଦେଇଯାଆନ୍ତି । ପ୍ରାୟ ...''

ଗୋବର୍ଦ୍ଧନ ବାବୁ ପୁଣି ବାଧା ଦେଇ କହିଲେ, ''ଏପରି କେତେଥର ଘଟିଛି ?''

''ମେନେଜର ପ୍ରତ୍ୟେକ ଶନିବାର ଦିନ ପୁରୀ ଯାଆନ୍ତି । ସେଠି ଏହି ବେଙ୍କର ଗୋଟିଏ ଶାଖା ଅଛି । ପ୍ରତି ସୋମବାର ସେ ଏହି ଶାଖା ବେଙ୍କ ପରିଦର୍ଶନ କରି ସୋମବାର ସନ୍ଧ୍ୟା ବେଳକୁ ଫେରନ୍ତି ।''

''ତା'ହେଲେ ପଅର ଦିନ ମଧ୍ୟ ସେ ପୁରୀ ଯାଇଥିଲେ । ଫେରିଲେ କେବେ ?''

''ଏଥର ସେ ଶାଖା ବେଙ୍କ ପରିଦର୍ଶନ କରି ପାରି ନାହାନ୍ତି । କଟକରେ କୌଣସି ଜରୁରି କାର୍ଯ୍ୟବଶତଃ ତାଙ୍କୁ ରବିବାର ଫେରି ଆସିବାକୁ ହେଲା । ସେ ରବିବାର ଦିନ ସକାଳେ କଟକ ଫେରିଲେ ।''

ଗୋବର୍ଦ୍ଧନ ବାବୁ ଆଖି ବନ୍ଦ କରି ବସି ରହିଲେ । ମୁହୂର୍ତ୍ତକ ଭିତରେ ତାଙ୍କର ଏ ଅଭୂତ ଭାବାନ୍ତର ଲକ୍ଷ୍ୟ କରି ଶଶୀବାବୁ ବୋଧହୁଏ ଟିକିଏ ଆଶ୍ଚର୍ଯ୍ୟ ହୋଇଗଲେ । କିଛିକ୍ଷଣ ନୀରବ ରହି ସେ ପୁଣି କହିଲେ, ''ପ୍ରତ୍ୟେକ ଶନିବାର ଚାବି ମୋତେ ଦେବା ଛଡ଼ା ମେନେଜର ଆହୁରି ତିନି ଚାରିଥର ମଧ୍ୟ ମୋତେ ଚାବି ରଖିବାକୁ ଦେଇଥିଲେ । ତାଙ୍କର ଶାରୀରିକ ଅସୁସ୍ଥତା ଯୋଗୁଁ ଗତ ମାସକ ଭିତରେ ଏହି କାରଣରୁ ମୋ ପାଖରେ ତାଙ୍କର ଚାବିଟି ତିନି ଚାରି ଥର ଥିଲା । ପଅର ଦିନ ମୁଁ ସିନ୍ଦୁକ ବନ୍ଦ କରି ଦୁଇଟି ଚାବି ଲଗାଇ ମୋ ବସାକୁ ଆସିଲି । ଚାବି ମୋ ପାଖରେ ମୁଁ ଅତି ସାବଧାନରେ ରଖେ । କେବଳ ପାଇଖାନା ଯିବା ସମୟରେ ମୁଁ ମୋ ବିଛଣା ତଳେ ଚାବି ରଖି ଦେଇଯାଏ । ପଅର ଦିନ ରାତି ପ୍ରାୟ ନ'ଟା ବେଳେ ମୁଁ ବାଇସ୍କୋପ ଦେଖିବା ପାଇଁ ମେସ୍‌ର ଅନ୍ୟ ବନ୍ଧୁମାନଙ୍କ ସହିତ ବାହାରି ଗଲି । - ନା, ଠିକ୍ ସେମାନଙ୍କ ସହିତ ନୁହେଁ । ମୋତେ ଟିକେ ପାଇଖାନା ଯିବାକୁ ପଡ଼ିଲା । ଟିକିଏ ଡେରି ହୋଇଗଲା, ମୁଁ ତର ତର ହୋଇ ବାହାରି ପଡ଼ିଲି । ବାଇସ୍କୋପ ଦେଖୁ ଦେଖୁ ପ୍ରାୟ ଘଣ୍ଟାକ ପରେ ମୋର ଚାବି କଥା ମନେ ପଡ଼ିଲା । ପକେଟରେ ହାତ ଦେଇ ଦେଖିଲି ଯେ ଚାବି ମୋ ପକେଟରେ ନାହିଁ । ଭାବିଲି ବୋଧହୁଏ ବିଛଣାରେ ତକିଆ ତଳେ ଛାଡ଼ି ଆସିଛି । ବନ୍ଧୁମାନଙ୍କୁ ଏକଥା କହିଲି । ସେମାନେ ମଧ୍ୟ କହିଲେ ଚାବି ବିଛଣାରେ ଥିବ । ସେ ବିଷୟରେ ଆଉ ବିଶେଷ କିଛି ନ ଭାବି ବାଇସ୍କୋପ ଦେଖି ସାରି ପ୍ରାୟ ରାତି ବାରଟା ବେଳକୁ

ବସାକୁ ଫେରିଲି ଏବଂ ଚାବି ତକିଆ ତଳେ ଥିବାର ଦେଖି ଆଶ୍ୱସ୍ତ ହେଲି ।''

ସବ୍‌ଇନ୍ସପେକ୍ଟର ପଚାରିଲେ, ''କିନ୍ତୁ ରାତି ପ୍ରାୟ ସାଢ଼େ ବାରଟା ବେଳେ ଆପଣ କାହିଁକି ବେଙ୍କକୁ ଯାଇଥିଲେ ? ଆପଣଙ୍କୁ ବେଙ୍କର ଦୁଆର ମୁହଁରେ ଛିଡ଼ା ହୋଇ ସେଇ ଦୁଆର ତାଲା ଟାଣୁଥିବାର ଜମାଦାର ଦେଖିଛି । ଆପଣ କ'ଣ ଏହା ଅସ୍ୱୀକାର କରିବେ ?''

ଏ ପ୍ରଶ୍ନରେ ଶଶିବାବୁଙ୍କ ମୁହଁ କପାଳରେ ବିନ୍ଦୁ ବିନ୍ଦୁ ଝାଳ ଫୁଟି ଉଠିଲା । ତାଙ୍କ ମୁହଁରୁ ଅନେକ ବେଳଯାଏ କଥା ବାହାରିଲା ନାହିଁ । ଅନେକକ୍ଷଣ ପରେ ସେ କହିଲେ, ''ହଁ, ମୁଁ ଯାଇଥିଲି । ମୋର କିପରି ସନ୍ଦେହ ହେଲା ଯେ ଚାବି ମୁଁ ବିଛଣା ତଳେ ହୁଏତ ରଖି ନାହିଁ । ସନ୍ଦେହ ହେବାରୁ ମୁଁ ବେଙ୍କକୁ ଦେଖିବାକୁ ଯାଇଥିଲି କିଛି ଦୁର୍ଘଟଣା ଘଟିଛି କି ନାହିଁ ! ସେଇଥିପାଇଁ ବାହାରର ତାଲାଟି ଟାଣି ମୁଁ ପରୀକ୍ଷା କରୁଥିଲି । ତାହା ପୂର୍ବପରି ଅକ୍ଷତ ଥିବାର ଦେଖି ମୁଁ ନିଶ୍ଚିନ୍ତ ହୋଇ ଫେରିଲି ।''

ଗୋବର୍ଦ୍ଧନ ବାବୁ ପଚାରିଲେ, ''ଜମାଦାର ଦେଖିଛି, ନା ? ଜମାଦାର କ'ଣ ବେଙ୍କ ପାଖରେ ରହେ ?''

''ସେ ରାତିରେ ବେଙ୍କ ଜଗିବା ସକାଶେ ବେଙ୍କରେ ଗୋଟିଏ ଘରେ ରୁହେ । ସେଇଠି ତା'ର ବସା ।''

ସବ୍‌ଇନ୍ସପେକ୍ଟର କହିଲେ, ''ଗୋବର୍ଦ୍ଧନ ବାବୁ, ଆପଣତ ଅନୁସନ୍ଧାନ ଟିକିଏ ଟିକିଏ କରନ୍ତି । ଶଶୀବାବୁଙ୍କ ସଫେଇ ମନକୁ ପାଇଲା ତ ?'' ସବ୍‌ଇନ୍ସପେକ୍ଟରଙ୍କ ତାଚ୍ଛଲ୍ୟ ବ୍ୟଞ୍ଜକ 'ଟିକିଏ ଟିକିଏ' ଶୁଣି ମୁଁ ବଡ଼ ବିରକ୍ତ ହୋଇ କିଛି କହିବାକୁ ଯାଉଥିଲି । ଗୋବର୍ଦ୍ଧନ ବାବୁ ନିର୍ବିକାର ପରି ହସି ହସି କହିଲେ, ''ଦେଖାଯାଉ ।'' ଶଶୀବାବୁ କରୁଣ ଭାବରେ କହିଲେ, ''ଗୋବର୍ଦ୍ଧନ ବାବୁ, ଆପଣ ବିଶ୍ୱାସ କରନ୍ତୁ, ମୁଁ ମିଛ କହୁ ନାହିଁ - ଯା' କହୁଛି ସବୁ ସତ ।''

ଗୋବର୍ଦ୍ଧନ ବାବୁ ହଠାତ୍ ଗମ୍ଭୀର ଭାବରେ କହିଲେ,''ଦୁନିଆଯାକ ତ ସମସ୍ତେ କହନ୍ତି ମୁଁ ସତ କହୁଛି । କିନ୍ତୁ କେବଳ କଥାକୁ ଯଦି ସମ୍ପୂର୍ଣ୍ଣ ବିଶ୍ୱାସ କରାଯାଏ ତା'ହେଲେ ଆଉ ଅନୁସନ୍ଧାନ ବା ଗବେଷଣା ଚଳେ କାହିଁକି ?''

ଗୋବର୍ଦ୍ଧନ ବାବୁଙ୍କ କଥାରେ ଶଶୀବାବୁ ମର୍ମାହତ ହୋଇ ପଡ଼ିଲେ ।

ଗୋବର୍ଦ୍ଧନ ବାବୁ ପୁରି କହିଲେ,''ଆପଣ ହତାଶ ହେବେ ନାହିଁ । ଏପରି ହୋଇପାରେ ଯେ ଯେଉଁ ପ୍ରମାଣଗୁଡ଼ିକ ଆପଣଙ୍କ ବିପକ୍ଷରେ ବର୍ତ୍ତମାନ ଯାଉଛି; ଅନୁସନ୍ଧାନ ପରେ ଦେଖାଯିବ ସେ ଗୁଡ଼ିକ ହୁଏତ ଆପଣଙ୍କ ସପକ୍ଷରେ । ତେଣୁ ଅନୁସନ୍ଧାନ ନ କରି ମୁଁ କିଛି ମତ ଦେଇପାରିବି ନାହିଁ । କୁହନ୍ତୁ ତ, ଆପଣଙ୍କ ମେସର ସମସ୍ତେ କ'ଣ ବାଇସ୍କୋପ ଦେଖି ଯାଇଥିଲେ ?''

''କେବଳ ଜଣକ ଛଡ଼ା ଆଉ ସମସ୍ତେ ଯାଇଥିଲେ । ସେ ମେସରେ ମୋରି ଘରେ ରୁହନ୍ତି । ତାଙ୍କ ଶରୀର ଅସୁସ୍ଥ ଥିବାରୁ ସେ ଗଲେ ନାହିଁ । ଆପଣ କହିବାରୁ ମୋର ଗୋଟିଏ

କଥା ବର୍ତ୍ତମାନ ମନେ ପଡୁଛି । ପାଇଖାନାରୁ ଫେରିବାବେଳେ ମୁଁ ଦେଖିଲି ସେ ମୋ ଜାମା ପକେଟରେ ହାତ ଗଳାଇଛନ୍ତି । ମେସରେ ଅନେକ ଥର ଟଙ୍କା ଚୋରି ହୋଇଛି ଏବଂ ସବୁଥର ଆମ ସମସ୍ତଙ୍କର ସନ୍ଦେହ ତାଙ୍କ ଉପରେ ପଡ଼ିଛି । କାରଣ ତାଙ୍କର ଅବସ୍ଥା ସ୍ୱଚ୍ଛଳ ନଥିଲେ ସୁଦ୍ଧା ଅନେକ ସମୟରେ ତାଙ୍କୁ ବେପରୁଆ ଭାବରେ ଟଙ୍କା ଖର୍ଚ୍ଚ କରିବାର ଆମେ ଦେଖିଛୁ । ଥରେ ଗୋଟିଏ ନୋଟ୍ ଆମେ ଚିହ୍ନ ଦେଇ ରଖିଥିଲୁ । ସେ ନୋଟ୍ ଚୋରି ଗଲା କିନ୍ତୁ ପରେ ବାହାରିଲା ତାଙ୍କରି ପାଖରୁ । ମୋ ପକେଟରେ ହାତ ଗଳାଇବାର କାରଣ ପଚାରିବାରୁ ସେ କହିଲେ ତାଙ୍କ ଚାବି ହଜି ଯାଇଥିବାରୁ ମୋ ଚାବି ଖୋଜୁଥିଲେ । ବର୍ତ୍ତମାନ ମୋର ଦୃଢ଼ ବିଶ୍ୱାସ ହେଉଛି ସେ ଏ କାଣ୍ଡ କରିଛନ୍ତି । ମୁଁ ତକିଆ ତଳେ ଆଦୌ ଚାବି ରଖିନଥିଲି । ଆପଣ ନିଜେ ଯାଇ ମଧ ଦେଖିବେ ତାଙ୍କ କଥାବାର୍ତ୍ତା ଓ ବ୍ୟବହାର ବଡ଼ ସନ୍ଦେହ ଜନକ ।''

ଗୋଟିଏ ନୂଆ ପ୍ରମାଣର ସଙ୍କେତ ପାଇ ଗୋବର୍ଦ୍ଧନ ବାବୁ ଟିକିଏ ଚିନ୍ତିତ ହେଲେ । ସେ ବିଷୟରେ କିଛି ନ ପଚାରି ଗୋବର୍ଦ୍ଧନ ବାବୁ ପଚାରିଲେ, ''ବାଇସ୍କୋପ ଟିକେଟ କ'ଣ ଆଗରୁ କିଣା ହୋଇଥିଲା ?''

''ହଁ, ସେ ଦିନ ଖରାବେଳେ ମେନେଜର ଆମକୁ ଗୋଟିଏ ଭୋଜି ଦେଇଥିଲେ ଏବଂ ବାଇସ୍କୋପ ଯିବାର ଟିକେଟ୍ ମଧ ନିଜ ପକେଟରୁ କିଣି ଦେଇଥିଲେ ।''

''କାହିଁକି ?''

''ଅନେକ ଦିନରୁ ତାଙ୍କର ପୁଅର ଜନ୍ମ ଉପଲକ୍ଷେ ଆମକୁ ଗୋଟିଏ ଭୋଜି ଦେବାର ଥିଲା । ଏହି ଭୋଜିଟି ସେ ପଅର ଦିନ ଦେଇଥିଲେ ।''

''ପୁଅଟିର ବର୍ତ୍ତମାନ ବୟସ କେତେ ?''

''ପ୍ରାୟ ଦୁଇ ବର୍ଷ ହେବ ।''

''ଦୁଇବର୍ଷ !'' ଗୋବର୍ଦ୍ଧନ ବାବୁ ଆଶ୍ଚର୍ଯ୍ୟ ଭାବରେ ପଚାରିଲେ । ଏଥିରେ ଆଶ୍ଚର୍ଯ୍ୟ ହେବାର କ'ଣ ଅଛି ମୁଁ ବୁଝିପାରିଲି ନାହିଁ । ବେଙ୍କ ଚୋରି ସହିତ ମେନେଜରଙ୍କ ଶିଶୁ ପୁତ୍ରର ସମ୍ବନ୍ଧ ବାହାର କରିବା ବଡ଼ ହାସ୍ୟକର ମନେ ହେଲା । ଭାବିଲି ଏହା ଗୋବର୍ଦ୍ଧନ ବାବୁଙ୍କର ଗୋଟିଏ ଧୂଆଁବାଣ । କିଛିକ୍ଷଣ ଚିନ୍ତା କରିବା ପରେ ଗୋବର୍ଦ୍ଧନ ବାବୁ ସବ୍‌ଇନ୍ସପେକ୍ଟରଙ୍କୁ କହିଲେ, ''ମୋର ଆଉ ବିଶେଷ କିଛି ଶଶୀବାବୁଙ୍କ ଠାରୁ ଜାଣିବାର ନାହିଁ । ଆପଣ ଯଦି ଏହାଙ୍କୁ ଗିରଫ କରନ୍ତି ତା'ହେଲେ ମୁଁ ତାଙ୍କୁ ଜାମିନ୍‌ରେ ଖଲାସ କରିବାକୁ ପ୍ରସ୍ତୁତ ଅଛି । ଆପଣ ବର୍ତ୍ତମାନ ଦୟା କରି ଗୋଟିଏ କଥାର ଉତ୍ତର ଦିଅନ୍ତୁ । ବେଙ୍କର କୌଣସି ତାଲା ଭଙ୍ଗା ହୋଇଛି କି ନା ?''

''ଯେଉଁ ଘରେ ଲୁହା ସିନ୍ଦୁକ ରୁହେ ସେହି ଘର ତାଲା ଭଙ୍ଗା ହୋଇଛି ।''

ଗୋବର୍ଦ୍ଧନ ବାବୁ ହଠାତ୍ ଆନନ୍ଦିତ ହୋଇ ପଚାରିଲେ, ''ଶଶୀବାବୁ, ବାହାର

ତାଲାର ଚାବି ବୋଧହୁଏ ଥାଏ ଜମାଦାର ପାଖରେ ଏବଂ ସିନ୍ଦୁକ ଘର ଚାବି ଥାଏ ଫରାସ ପାଖରେ - ଯେ ଘର ଝଡ଼ା ଝଡ଼ି କରେ ?''

''ହଁ ।''

''ଆପଣଙ୍କ ଘରେ ଯେଉଁ ଭଦ୍ରଲୋକ ଥାଆନ୍ତି ସେ କେଉଁ ଅଫିସ୍‌ରେ କାମ କରନ୍ତି ?''

''ଇନ୍‌କମ୍ ଟିକସ ଅଫିସରେ ।''

''ତାଙ୍କର ପ୍ରତ୍ୟହ ଅଫିସରୁ ଫେରିବା ସମୟ କ'ଣ ?''

''ସେ ରୋଜ ଫେରନ୍ତି ପ୍ରାୟ ରାତି ୮/୯ଟା ବେଳେ ।''

''ସବ୍‌ଇନ୍‌ସପେକ୍ଟର ବାବୁ, ଆପଣଙ୍କ ମତ କ'ଣ ?''

''ଏଥିରେ ଆଉ ସନ୍ଦେହ କରିବାର କ'ଣ ଅଛି ? ସିନ୍ଦୁକର ଦୁଇଟି ଯାକ ଚାବି ଶଶିବାବୁଙ୍କ ପାଖରେ ଥିଲା । ରାତି ସାଢ଼େ ବାରଟା ବେଳେ ସେ ବେଙ୍କକୁ ଯାଇଥିଲେ । ଏ ଦୁଇଟି କ'ଣ ଯଥେଷ୍ଟ ନୁହେଁ ଏହାକୁ ଦୋଷୀ ସାବ୍ୟସ୍ତ କରିବା ପାଇଁ ?''

''ତଥାପି ଦିନଟା ଶନିବାର ସେକଥା ମଧ ବିବେଚନା କରନ୍ତୁ ଟିକିଏ ।''

ଗୋବର୍ଦ୍ଧନ ବାବୁଙ୍କ କଥାରେ ସେ ତାଚ୍ଛଲ୍ୟର ହସ ହସି କହିଲେ, ''ଆପଣ କ'ଣ ପାଗଳ ହେଲେ ? ଚୋର କ'ଣ ତିଥି ବାର ଦେଖି ଚୋରି କରେ ଯେ ଶନିବାର ଦିନ ଚୋରି କରିବା ତା ପକ୍ଷରେ ନିଷିଦ୍ଧ ! ଆପଣଙ୍କୁ ଏଦିଗରେ କିଛି କିଛି ମାଲୁମ ଅଛି ମୁଁ ଜାଣେ, ତଥାପି ଏ ଦିଗରେ ଆପଣଙ୍କର ଯଥେଷ୍ଟ ଅଭିଜ୍ଞତା ନାହିଁ ତା' ନ ହେଲେ ଆପଣ ମେନେଜରଙ୍କ ପୁଅର ବୟସ ଶୁଣି ଆଶ୍ଚର୍ଯ୍ୟ ହୁଅନ୍ତେ କାହିଁକି - ସେ ବିଷୟରେ ପଚାରନ୍ତେ ବା କାହିଁକି ? ପୁଣି ଶନିବାରଟା ଆପଣଙ୍କୁ ମଧ ବ୍ୟସ୍ତ କରନ୍ତା ନାହିଁ । ଯେଉଁ ପ୍ରଧାନ ପ୍ରମାଣ ଗୁଡ଼ିକ ହାତକୁ ଆସିଛି, ସେଗୁଡ଼ିକ ଯେଉଁ ଆଡ଼େ ନିର୍ଦ୍ଦେଶ କରୁଛି ସିଧା ସେହି ଆଡ଼େ ଚାଲନ୍ତୁ । ଦେଖିବେ ଆପଣ ଠିକ୍ ଗନ୍ତବ୍ୟ ସ୍ଥଳରେ ପହଞ୍ଚୁଛନ୍ତି । ଏ ହେଲା ଅନୁସନ୍ଧାନର ପ୍ରଥମ ଏବଂ ପ୍ରଧାନ ନିୟମ ।''

ଗୋବର୍ଦ୍ଧନ ବାବୁ ବିନୀତ ଭାବରେ କହିଲେ, ''ଆପଣ ଠିକ୍ କହିଛନ୍ତି । କିନ୍ତୁ କେଉଁ ଘଟଣାଗୁଡ଼ିକୁ ପ୍ରଧାନ କୁହାଯିବ, ତାହା ହିଁ ମୋର ଚିନ୍ତାର ବିଷୟ । ସେ ଯାହା ହେଉ ଶଶୀବାବୁ, ଆପଣ କୁହନ୍ତୁ ତ ଯେଉଁ ଦିନମାନଙ୍କରେ ମେନେଜରଙ୍କ ଅସୁସ୍ଥତା ଯୋଗୁ ଦୁଇଟି ଯାକ ଚାବି ଆପଣଙ୍କ ପାଖରେ ଥିଲା ସେ ଦିନ ଗୁଡ଼ିକରେ ସିନ୍ଦୁକରେ ଟଙ୍କା ଥିଲା କି ନା !''

ଶଶିବାବୁ ପୁଣି ତାଙ୍କ ନୋଟ ବହି ବାହାର କରି ଦେଖି କହିଲେ, ''ସେ ଦିନଗୁଡ଼ିକ ମଧ୍ୟରୁ ଦୁଇ ଦିନ ସିନ୍ଦୁକରେ ଟଙ୍କା ଥିଲା । ଦିନେ ଛ'ଲକ୍ଷ ଟଙ୍କା ଥିଲା ।''

''ଏ ସବୁର ପ୍ରମାଣ ବୋଧହୁଏ ବେଙ୍କର କାଗଜ ପତ୍ରରୁ ମିଳିବ ?''

''ନିଶ୍ଚୟ ।''

"ମୋର ଆଉ କିଛି ପଚାରିବାର ନାହିଁ।"

ଆମେ ସମସ୍ତେ ଗୋଟିଏ ଗାଡ଼ିରେ ପୁଲିସ ଷ୍ଟେଶନକୁ ଗଲୁ। ଗୋବର୍ଦ୍ଧନ ବାବୁ ଶଶୀବାବୁଙ୍କୁ ଜାମିନରେ ଖଲାସ କରି ଆଣିଲେ। ଥାନାରେ ଥିବା ବେଙ୍କର ସିନ୍ଦୁକ ଘର ଭଙ୍ଗା ତାଲାଟି ସେ ତାଙ୍କ ମେଗ୍ନିଫାଇଙ୍ଗ କାଚ ତଳେ ରଖି ପରୀକ୍ଷା କରୁ କରୁ ହଠାତ୍ ଆନନ୍ଦରେ କହି ଉଠିଲେ, "ଆଃ-ହା, ଡାକ୍ତର ଏ କ'ଣ ?"

ତାଲାଟି ହାତକୁ ନେଇ ମୁଁ ମଧ୍ୟ ପରୀକ୍ଷା କଲି। ସାଧାରଣ ପିତଳ ତାଲା। କୌଣସି ଗୋଟିଏ ଭାରି ଜିନିଷ ଦ୍ୱାରା ଭଙ୍ଗା ହୋଇଛି ବୋଲି ସ୍ପଷ୍ଟ ଜଣା ପଡ଼ିଲା। କିନ୍ତୁ ତା'ଠୁଁ ବେଶୀ କିଛି ଜାଣି ପାରିଲି ନାହିଁ। ଗୋବର୍ଦ୍ଧନ ବାବୁ ବିରକ୍ତ ହୋଇ କହିଲେ। "ଏକୁହିଁ କହନ୍ତି ଆଖି ଥାଇ ଅନ୍ଧ। ଏ କ'ଣ ଲାଗିଛି ?" ଏତେ ଲୋକଙ୍କ ଉପସ୍ଥିତିରେ ଗୋବର୍ଦ୍ଧନ ବାବୁଙ୍କ ମୋ ପ୍ରତି ବିରକ୍ତି ପ୍ରକାଶ ମୋତେ ବଡ଼ ଲଜ୍ଜା ଦେଲା। ମୋ କାନରେ କେବଳ ଗୋଟିଏ କଥା ପ୍ରତିଧ୍ୱନିତ ହେବାକୁ ଲାଗିଲା "ଏ କ'ଣ ଲାଗିଛି। ଏ କ'ଣ ଲାଗିଛି।" ନିରୀକ୍ଷଣ କରି ଦେଖିଲି ଟିକିଏ ହଳଦି ଭଳିଆ କ'ଣ ତାଲାରେ ଲାଗିଛି; କିନ୍ତୁ ଗୋଟାଏ ସିଦ୍ଧାନ୍ତକୁ ଆସିବା ଭଳିଆ କିଛି ବୁଝି ପାରିଲି ନାହିଁ। ସେ ଅଧିକ ବିରକ୍ତ ହୋଇ କହିଲେ, "ଡାକ୍ତର, ବୁଝିପାରୁନା ! ଆଶ୍ଚର୍ଯ୍ୟ ! ଏ ହଳଦିର ଅଂଶ। ତାଲାଟି ଭଲ କରି ଦେଖ। ହାତୁଡ଼ିରେ ଭଙ୍ଗା ହୋଇ ନାହିଁ। ଏହି ଆଞ୍ଜୁଡ଼ା ଦାଗରୁ ଓ ହଳଦି ଲାଗିଥିବାରୁ ସ୍ପଷ୍ଟ ପ୍ରମାଣ ହେଉଛି ତାଲାଟି ଶିଳପୁଆ ଦ୍ୱାରା ଭଙ୍ଗା ହୋଇଛି।"

ହେଲେ ବା, ସେଥିରୁ କ'ଣ ପ୍ରମାଣ ମିଳିଲା ? ପୂର୍ବପରି ମୁଁ ଅନ୍ଧାରରେ ରହିଗଲି। ସେଠାରୁ ଆମେ ବେଙ୍କକୁ ଆସିଲୁ। ପୁଲିସର ଅନୁମତି ନେଇ ଗୋବର୍ଦ୍ଧନ ବାବୁ କାଗଜ ପତ୍ର ପରୀକ୍ଷା କରିବାକୁ ଲାଗିଲେ। କାଗଜ ପରୀକ୍ଷା କରି ଓ ମେନେଜରଙ୍କୁ ପଚାରି ସେ ବୁଝିଲେ ଯେ ଶଶିବାବୁଙ୍କ କହିଥିବା କଥା ଗୁଡ଼ାକ ସତ୍ୟ। ସେଠାରୁ ଗଲୁ ଶଶିବାବୁଙ୍କ ମେସକୁ। ଶଶିବାବୁଙ୍କ ଘରେ ଯେଉଁ ଭଦ୍ରଲୋକ ରୁହନ୍ତି ତାଙ୍କର ଅସୁସ୍ଥତା ହେତୁ ସେ ସେଦିନ ବାଇସ୍କୋପ ଯାଇନଥିଲେ। ଗୋବର୍ଦ୍ଧନ ବାବୁ ତାଙ୍କୁ କିଛିକ୍ଷଣ ଚାହିଁ ରହି କହିଲେ "ଆପଣ ହଜି ଯାଇଥିବା ଚାବି ପାଇଲେଣି ?"

ଭଦ୍ରଲୋକ ନିବିଷ୍ଟ ଭାବରେ କ'ଣ ଗୋଟିଏ ଦେଖୁଥିଲେ। ଗୋବର୍ଦ୍ଧନ ବାବୁଙ୍କ ପ୍ରଶ୍ନରେ ହଠାତ୍ ଚମକି ପଡ଼ି ସେ ବ୍ୟସ୍ତ ହୋଇ ବିଛଣା ତଳେ କ'ଣ ଲୁଚାଇ ଦେଲେ। ମୁଁ ଦୌଡ଼ିଯାଇ ବାହାର କରି ଆଣି ଦେଖିଲି ତାହା ଗୋଟିଏ ସୁନ୍ଦରୀ ବାଳିକାର ଫଟ। ଭଦ୍ରଲୋକଙ୍କ ଅଦ୍ଭୁତ ଚେହେରା ଓ ତାଙ୍କ ପ୍ରଣୟିନୀଙ୍କ ସୌନ୍ଦର୍ଯ୍ୟ ଦେଖି ମୁଁ ଟିକିଏ ହସି ପକାଇଲି। ସେ କିଛିକ୍ଷଣ ତଳକୁ ମୁହଁ ପୋତି ବସି ରହି ଧୀରେ ମୁଣ୍ଡ ଟେକି ଗୋବର୍ଦ୍ଧନ ବାବୁଙ୍କ ପ୍ରଶ୍ନର ଉତ୍ତର ଦେଲେ।

"ନା, ଆପଣ ପାଇଛନ୍ତି କି ?"

''ନା ।''

''ତେବେ ଆପଣ ଜାଣିଲେ କିପରି ?''

''ଆପଣଙ୍କ ଧୋବା କାଲିଠୁ ଲୁଗା ଦେଇ ଯାଇଛି । ଆପଣଙ୍କ ଟ୍ରଙ୍କ ଉପରେ ସେଗୁଡ଼ିକ ରହିଛି । ଆପଣଙ୍କ ବିଛଣା ଚାଦର ଧୋବା - ଘରେ ପକାଇ ଅଛନ୍ତି, କିନ୍ତୁ ଟ୍ରଙ୍କ ଚାବି ହଜି ଯାଇଥିବାରୁ ଆପଣ ଟ୍ରଙ୍କରୁ ନୂଆ ଚାଦର ବାହାର କରିପାରି ନାହାନ୍ତି । ବର୍ତ୍ତମାନ କୁହନ୍ତୁତ, ଆପଣ ପରଦିନ କେତେବେଳେ ଅଫିସରୁ ଫେରିଲେ ?

''ମୋ ସହିତ ଏପରି ବ୍ୟବହାର କରିବା ଏବଂ ମୋତେ ଏସବୁ ପ୍ରଶ୍ନ କରିବାର ଆପଣଙ୍କ ଅଧିକାର ଯାହା ଥାଉ ନା କାହିଁକି ଆପଣଙ୍କ ଉଦ୍ଦେଶ୍ୟ ମୁଁ ବୁଝିପାରିଛି । ହଁ, ମୁଁ ଟଙ୍କା ନେଇଛି ।''

ଶଶିବାବୁ ଉଦ୍‌ଫୁଲ୍ଲ ହୋଇ କହିଲେ, ''ଗୋବର୍ଦ୍ଧନ ବାବୁ ମୁଁ କ'ଣ କହୁଥିଲି ? ଟଙ୍କା ଆପଣ କ'ଣ କଲେ ?'

ଗୋବର୍ଦ୍ଧନ ବାବୁଙ୍କ ଆଖିରେ କୌତୁକ ଫୁଟି ଉଠିଲା । ଭଦ୍ରଲୋକ କିଛିକ୍ଷଣ ତଳକୁ ମୁହଁ ପୋତି ବସି ରହି କହିଲେ ''ଶଶିବାବୁ, ଆପଣତ ସବୁ ଜାଣନ୍ତି । ତାକୁ ଗୋଟିଏ ଉପହାର କିଣି ଦେଇଛି ।''

''ଦୁଇ ଲକ୍ଷ ଟଙ୍କାର !'' ଶଶିବାବୁ ମୁଣ୍ଡରେ ହାତ ଦେଇ ବସି ପଡ଼ିଲେ ।

ଭଦ୍ରଲୋକ ଆଶ୍ଚର୍ଯ୍ୟ ହୋଇ କହିଲେ, ''ଦୁଇ ଲକ୍ଷ ଟଙ୍କା କ'ଣ ?'' ଗୋବର୍ଦ୍ଧନ ବାବୁ ଶଶିବାବୁଙ୍କୁ ଉଠାଇ ଧରି କହିଲେ, ''ସେ ଆପଣଙ୍କ ଟ୍ରଙ୍କରୁ ଚୋରି କରିଥିବା ଟଙ୍କା କଥା କହୁଛନ୍ତି, ବେଙ୍କ ଚୋରି ଟଙ୍କା ନୁହେଁ । ଆପଣ କୁହନ୍ତୁ ପଅରଦିନ ଅଫିସରୁ ଆପଣ କେତେବେଳେ ଫେରିଲେ ।''

''ପ୍ରାୟ ସାଢ଼େ ସାତଟା ବେଳକୁ'' ଭୟରେ ତାଙ୍କ ମୁହଁ କାଳିଆ ପଡ଼ିଗଲା ।

''ପଅର ଦିନଠୁଁ ଆପଣଙ୍କ ଶରୀର ଅସୁସ୍ଥ ଅଛି ?''

''ହଁ ।''

''ଆପଣ ପଅରଦିନ ଅଫିସରୁ ଆସି ସାଙ୍ଗେ ସାଙ୍ଗେ ଶୋଇ ପଡ଼ିଲେ ?''

''ହଁ ।''

''ତା'ପର ଆପଣ ଉଠି ଶଶୀବାବୁଙ୍କ ଚାବି ତାଙ୍କ ପକେଟରୁ କାଢ଼ି ଆପଣଙ୍କ ଟ୍ରଙ୍କ ଖୋଲିବାକୁ ଚେଷ୍ଟା କଲେ ?''

''ଆଜ୍ଞା ହଁ ।''

''ଏତିକିବେଳେ ଆପଣ ତାଙ୍କ ଟ୍ରଙ୍କରୁ ଟଙ୍କା ଚୋରି କରିନବାର ସୁଯୋଗ ପାଇ ଲୋଭ ସମ୍ଭାଳି ପାରିଲେ ନାହିଁ ?''

ଭଦ୍ରଲୋକ ନୀରବ ରହିଲେ ।

''ବେଶ୍ ଆପଣ କେବେ ମୋ ପାଖରୁ ଆସିବେ, ମୁଁ ଏ ରୋଗ ଭଲ କରି ଦେବି । ଏଥର କୁହନ୍ତୁ, ଆପଣ ତାଙ୍କ ପକେଟରୁ ଚାବି ଆଣିବାବେଳେ ତାଙ୍କ ଅଫିସ୍ ଚାବି ପକେଟରେ ଥିଲା ?''

''ମୋର ଯେତେଦୂର ମନେ ପଡୁଛି, ନଥିଲା ।''

''ଡାକ୍ତର, ଚାଲ ଥାନାକୁ । ଶଶୀବାବୁ ଆପଣ ମଧ ଆସନ୍ତୁ ।''

ଅବିଳମ୍ବେ ଆମେ ଥାନାରେ ପହଞ୍ଚିଲୁ । ଗୋବର୍ଦ୍ଧନ ବାବୁ ଥାନା ଇନ୍ସପେକ୍ଟରଙ୍କୁ ଦେଖା କରି କହିଲେ, ''ଆପଣ ସିଟି ବେଙ୍କ ଚୋରି କଥା ବୋଧହୁଏ ଜାଣନ୍ତି । ଏ ଘଟଣାରେ କେତେଗୁଡ଼ିଏ ବଡ଼ ବଡ଼ କାରଣରୁ ଆପଣମାନଙ୍କ ସନ୍ଦେହ ପଡ଼ିଛି ଶଶିବାବୁଙ୍କ ଉପରେ । ଏହା ଖୁବ୍ ସ୍ୱାଭାବିକ । ଦୁଇଟି ଯାକ ଚାବି ଯେତେବେଳେ ତାଙ୍କ ପାଖରେ; ଚୋରି କରିବା ଆଉ କାହାଦ୍ୱାରା ସମ୍ଭବ ? ପୁଣି ରାତି ସାଢ଼େ ବାରଟା ବେଳେ ସେ ବେଙ୍କକୁ ଯାଇଥିଲେ । ଏକଥା ସେ ନିଜେ ସ୍ୱୀକାର କରୁଛନ୍ତି ।''

''ହଁ, ହଠାତ୍ ଲୋଭରେ ପଡ଼ି ଚୋରି କରିଛନ୍ତି ଏହା ମୋର ବର୍ତ୍ତମାନ ଦୃଢ଼ ଧାରଣା ।''

''କିନ୍ତୁ ସେ ଯେ ନିର୍ଦ୍ଦୋଷ ତା'ର ପ୍ରମାଣ ମୁଁ ପାଇପାରିଛି । ଶଶିବାବୁ ଏ ଘଟଣାଟି ଅନୁସନ୍ଧାନ କରିବାକୁ ମୋତେ ଅନୁରୋଧ କରିଛନ୍ତି । କିନ୍ତୁ ମୋର ଏତେ କାମ ଅଛି ଯେ ଏହା ପାଇଁ ଆଦୌ ସମୟ ଦେଇପାରିବି ନାହିଁ । ଶେଷ ପର୍ଯ୍ୟନ୍ତ ଅନୁସନ୍ଧାନ ଚଳାଇଲେ ମୁଁ ଅବଶ୍ୟ ଚୋରି ମାଲ ସହିତ ଧରାଇ ଦେଇ ପାରନ୍ତି, ଏଥିରେ ସନ୍ଦେହ ନାହିଁ । କିନ୍ତୁ ମୋର ସମୟର ବିଶେଷ ଅଭାବ । ଆପଣ ଦୟା କରି ଏଇ କେତୋଟି କଥା ଅନୁସନ୍ଧାନ କଲେ ଚୋର ଧରିପାରିବେ । ପ୍ରଥମତଃ, ଶଶିବାବୁଙ୍କ ନିକଟରେ ଅନେକ ଥର ଦୁଇଟି ଯାକ ଚାବି ରହିଛି । ଏହି ଦିନଗୁଡ଼ିକ ଭିତରୁ ଥରେ ଛ'ଲକ୍ଷ ଟଙ୍କା ପ୍ରତି ଲୋଭ ନ ହୋଇ ତାଙ୍କର ଦୁଇଲକ୍ଷ ଟଙ୍କା ପ୍ରତି କାହିଁକି ଲୋଭ ହେଲା ? ଦ୍ୱିତୀୟରେ, ବାହାରର ତାଲାଟି ଭଙ୍ଗା ହୋଇ ନାହିଁ, ଭଙ୍ଗା ହୋଇଛି ସିନ୍ଦୁକ ଘର ତାଲାଟି । ଏହି ଦୁଇ ତାଲାର ଚାବି ଭିନ୍ନ ଭିନ୍ନ ଲୋକଙ୍କ ପାଖରେ ଥାଏ । ବାହାର ଚାବି ଯାହା ପାଖରେ ଥାଏ ସେ ଏ ଚୋରିରେ ସଂପୃକ୍ତ ସନ୍ଦେହ ନାହିଁ । ତୃତୀୟରେ ସିନ୍ଦୁକ ଘର ତାଲାଟି ଭଙ୍ଗା ହୋଇଛି ଶିଳପୁଆରେ । ଶଶିବାବୁ ତାଙ୍କ ଘରୁ ଶିଳପୁଆ ଆଣିବା କଥା ସିଦ୍ଧାନ୍ତ କରିବା ହାସ୍ୟାସ୍ପଦ । ଜମାଦାର ବେଙ୍କର ଗୋଟିଏ ଘରେ ରହେ । ଶିଳୁପୁଆଟି ତାହାରି, ଏଥିରେ ଆଉ ସନ୍ଦେହ ଥାଇ ନପାରେ । ବର୍ତ୍ତମାନ ଦେଖାଯାଉ ଏହି ଜମାଦାର ସହିତ ଆଉ କିଏ ଅଛି । ଦୁଇଜଣ କେବଳ ଥାଇପାରନ୍ତି -ମେନେଜର କିମ୍ବା କେଶିୟର୍ । ଏ ଦୁଇଜଣଙ୍କ ଛଡ଼ା ସିନ୍ଦୁକରେ ଟଙ୍କା ଥିବା କଥା ତୃତୀୟ ଜଣ ଜାଣିବା ସମ୍ଭବ ନୁହେଁ, କାରଣ ତା'ହେଲେ ଯେଉଁ ଦିନ ଛ'ଲକ୍ଷ ଟଙ୍କା ଥିଲା ସେ ଦିନ ସେ ନେଇ ପାରିଥାନ୍ତା । ପୁଣି ଜମାଦାର ଓ କେଶିୟର୍ ମିଶି କାଣ୍ଡଟି କରିଥିଲେ ବର୍ତ୍ତମାନ ଜମାଦାର

କେଶିୟରକୁ ଧରାଇ ଦେବାର କାରଣ କ'ଣ ? ତା'ପରେ ଦେଖନ୍ତୁ, ମେନେଜର ପଥର ଦିନ ହଠାତ୍ ପୁଅର ଜନ୍ମଦିନ ଉପଲକ୍ଷେ ଦୁଇ ବର୍ଷ ପରେ ଭୋଜି ଦେଲେ କାହିଁକି ? ଯଦି ବା ଦେଲେ, ସମସ୍ତଙ୍କୁ ବାଇସ୍କୋପ ଦେଖି ଯିବାର ଖର୍ଚ୍ଚ ପୁଣି କାହିଁକି ଦେଲେ ? ପୁଣି ଯଦିବା ଦେଲେ, ସନ୍ଧ୍ୟା ଶୋ'ର ଟିକଟ ନ ଆଣି ରାତି ଶୋ'ର କାହିଁକି ଅଣାଇଲେ ? ମୁଁ ପ୍ରଥମରୁ କହିଛି ଶନିବାର ଚୋରି ହେବାଟା ଗୋଟାଏ ପ୍ରଧାନ କଥା । ପ୍ରତ୍ୟେକ ଶନିବାର ମେନେଜର ଯାଆନ୍ତି ପୁରୀ । କହିପାରନ୍ତି ଯେ ଏହି ସୁଯୋଗରେ ଶଶିବାବୁ ଚୋରି କରିଛନ୍ତି । କିନ୍ତୁ ଟିକିଏ ଚିନ୍ତା କଲେ ଦେଖି ପାରିବେ ଯେ ମେନେଜରଙ୍କ ଅସୁସ୍ଥତା ବେଳେ ଯେତେବେଳେ ତାଙ୍କ ନିକଟରେ ଚାବିଥିଲା ସେ ସୁଯୋଗରେ ମଧ ନେଇ ପାରିଥାଆନ୍ତେ । ମୋର ଅନୁମାନ, ଘଟଣା ଦିନ ମେନେଜର ଅନ୍ୟ ଜାଗାରେ ଥିବାରୁ ଏ କାଣ୍ଡ କରାଇବା ଅସମ୍ଭବ; ଏହାର ପ୍ରମାଣ ଦେବା ମେନେଜରଙ୍କ ଉଦ୍ଦେଶ୍ୟ । ମେନେଜର ପ୍ରତ୍ୟେକ ଥର ଫେରନ୍ତି ସୋମବାର ସନ୍ଧ୍ୟାକୁ । କିନ୍ତୁ ଏଥର ଫେରିଛନ୍ତି ରବିବାର ସକାଳକୁ । ଏସବୁ ବିଷୟରେ ଚିନ୍ତା କରି ମୁଁ ଦେଖୁଛି ଯେ ଚୋରିଟି ମେନେଜର ଓ ଜମାଦାର ଦୁହେଁ ମିଶି କରିଛନ୍ତି ଏବଂ କେଶିୟର ଉପରେ ସନ୍ଦେହ ଯେପରି ସମସ୍ତଙ୍କର ହୁଏ ତାହାର ଉପଯୁକ୍ତ ବ୍ୟବସ୍ଥା କରିଛନ୍ତି । ଶଶିବାବୁଙ୍କୁ ସେଦିନ ଅନେକକ୍ଷଣ ପାଇଁ ବାହାରେ ରଖିବା ଉଦ୍ଦେଶ୍ୟରେ ମେନେଜର ସମସ୍ତଙ୍କ ପାଇଁ ରାତି ୯ଟା-୧୨ଟା ଶୋ'ର ବାଇସ୍କୋପ ଟିକଟ କିଣି ଆଣିଛନ୍ତି । କିନ୍ତୁ ଜମାଦାର କାମଟି ବେଶୀ ବୁଦ୍ଧି ସହକାରେ କରିବାକୁ ଯାଇ ବାହାର ତାଲାଟି ଭାଙ୍ଗିଲା ନାହିଁ । ରାତି ସାଢ଼େ ବାରଟା ବେଳେ ସେ ଶୋଇଥିବାର କଥା, କିନ୍ତୁ ତା' କଥାରୁ ଜଣା ପଡ଼େ ସେ ସେତେବେଳେ ଚେଇଁଥିଲା । ଏହିସବୁ କାରଣରୁ ମୋର ଦୃଢ଼ ବିଶ୍ୱାସ ଆପଣ ଯଦି ଶୀଘ୍ର ମେନେଜର ଓ ଜମାଦାର ଘର ଖାନତଲାସ୍ କରନ୍ତି ତା'ହେଲେ ଟଙ୍କା ନିଶ୍ଚୟ ପାଇବେ । ତଥାପି ଗୋଟିଏ କଥା ମୁଁ ଜାଣି ପାରୁନାହିଁ, ଶଶିବାବୁଙ୍କ ଚାବି ଜମାଦାର କିପରି ନେଲା । ମୋର ଅନୁମାନ ଶଶିବାବୁ ପାଇଖାନାରେ ଥିବା ବେଳେ ଜମାଦାର ଚାବି ଦୁଇଟି ନେଇଥିଲା । ସେଦିନ ତା'ର ସୌଭାଗ୍ୟକୁ ଶଶିବାବୁଙ୍କ ଘରେ ଯେ ଭଦ୍ରଲୋକ ଥିଲେ ସେ ଅସୁସ୍ଥତାବଶତଃ ଚାବି ନେଲାବେଳେ ଶୋଇ ପଡ଼ିଥିଲେ ।' ପୁଣି ଜମାଦାର ଚାବି ବିଛଣା ତଳେ ରଖି ଦେଇଗଲା ବେଳେ ବି ଶୋଇପଡ଼ିଥିଲେ ।''

ଇନ୍ସପେକ୍ଟର ଅନେକକ୍ଷଣ ତଳକୁ ମୁହଁ ପୋତି ଚିନ୍ତା କଲେ । ତା'ପରେ ଗୋବର୍ଦ୍ଧନ ବାବୁଙ୍କ ଆଡ଼କୁ ଅନାଇ ସେ କହିଲେ, ''ମୁଁ ବୁଝିପାରୁଛି ଆମର ଟିକିଏ ଭୁଲ ହୋଇଯାଇଛି । ଆପଣ ଯାଆନ୍ତୁ ମୁଁ ବର୍ତ୍ତମାନ ସବୁ ବନ୍ଦୋବସ୍ତ କରୁଛି ।''

ବାହାରକୁ ଆସି ଗୋବର୍ଦ୍ଧନ ବାବୁ ହସି ହସି କହିଲେ, ''ଶୁଣିଲ ଡାକ୍ତର, 'ଟିକିଏ' !''

ଶଶିବାବୁ ଭାବର ଆବେଗରେ ଗୋବର୍ଦ୍ଧନ ବାବୁଙ୍କୁ ସାଷ୍ଟାଙ୍ଗ ନମସ୍କାର କରି ଛିଡ଼ା

ହୋଇ ରହିଲେ । ଗୋବର୍ଦ୍ଧନ ବାବୁ କେବଳ ତାଙ୍କ ପିଠିରେ ଟିକିଏ ହାତ ମାରି ଚାଲି ଆସିଲେ ।

ମୋର ଦିନଟା ଯେ ଏପରି ସୁନ୍ଦର ଭାବରେ କଟିବ ଧାରଣା ନଥିଲା । ବସାକୁ ଫେରି ମୁଁ ହଷ୍ଟେଲ ଯିବାକୁ ବାହାରିଲି । କିନ୍ତୁ ଗୋବର୍ଦ୍ଧନ ବାବୁ ମୋତେ ମଧ୍ୟାହ୍ନ ଭୋଜନ ଓ ପୁଣି ସନ୍ଧ୍ୟାବେଳେ ଚାହା ଖାଇ ଯିବାକୁ ଅଟକାଇଲେ । ଯେତେକ୍ଷଣ ଏଠି ମୁଁ ଥାଏ ବଡ଼ ଆନନ୍ଦରେ ସମୟ କଟେ । ବସାରେ ପହଞ୍ଚିବା ବେଳକୁ ପ୍ରାୟ ଦିନ ଦୁଇଟା ବାଜି ଯାଇଥିଲା । ଆମେ ଖିଆ ପିଆ ସାରିଲୁ । ଖାଇସାରି ଗୋବର୍ଦ୍ଧନ ବାବୁ ତାଙ୍କ କାମରେ ମନ ଦେଲେ । ଏ ଅବସ୍ଥାରେ ତାଙ୍କୁ ଦେଖିଲେ କେହି କହି ପାରିବେ ନାହିଁ ଯେ କିଛିକ୍ଷଣ ଆଗେ ସେ ଗୋଟିଏ ଜଟିଳ ସମସ୍ୟାର ସମାଧାନ କରି ଆସିଛନ୍ତି । ତାଙ୍କ କଥା ଭାବୁ ଭାବୁ ମୁଁ ଶୋଇ ପଡ଼ିଲି । ସନ୍ଧ୍ୟାବେଳକୁ ଉଠିଲି ତାଙ୍କ ଡାକରେ । ଚାହା ଖାଉ ଖାଉ ଗୋବର୍ଦ୍ଧନ ବାବୁ କହିଲେ, ''ଡାକ୍ତର, ମୁଁ କେତେଥର କହିଛି ଯେ କେବଳ କେତୋଟି ବଡ଼ ଘଟଣାକୁ ନିଜର ଧାରଣା ସହିତ ଖାପ ଖୁଆଇବାକୁ ଅନୁସନ୍ଧାନ କହନ୍ତି ନାହିଁ । - ଆଉ, ଏତେ ଲୋଭ ବା କାହିଁକି ? ସାମ୍ରାଜ୍ୟ ବିସ୍ତାର, ଧର୍ମ ପ୍ରଚାର, ବ୍ୟବସାୟରେ ଶୋଷଣ, ଠକାମି, ଜାଲ ଇତ୍ୟାଦି ମୂଳରେ କି ପ୍ରେରଣା ଅଛି ! କି ଗୂଢ଼ ଶକ୍ତି ମନୁଷ୍ୟକୁ ଏ ସବୁରେ ନିୟୋଜିତ କରୁଛି !! ଡାକ୍ତର, ଥରେ ଅର୍ଥନୈତିକ ସମତା ସମାଜରେ ଆଣି ପରୀକ୍ଷା କରି ଦେଖିବାକୁ ଇଚ୍ଛା ହୁଏ । ମୁଁ ଯଦି ମଧ୍ୟଯୁଗର ସମ୍ରାଟର କ୍ଷମତା ପାଆନ୍ତି ତେବେ - ।'' କିଛିକ୍ଷଣ ପାଇଁ ସେ ନୀରବ ରହି ପୁଣି କହିଲେ, ''ଡାକ୍ତର, ଦେଖ ଏହି ଘଟଣାଟି ବାହାରକୁ କେଡ଼େ ସହଜ, ଅଥଚ ଭିତରେ କେତେ ଜଟିଳ । ବହୁ ଯୁଗ ପୂର୍ବେ ଜୀବଜନ୍ତୁମାନଙ୍କର ଶରୀର ବାହାରକୁ ଯେତେ ଜଟିଳ ଥିଲା, ଭିତରେ ମନଟି ସେତେ ସରଳ ଥିଲା । ଆଜିକାଲି ଆମର ଶରୀର ବାହାରକୁ ଯେତେ ସରଳ ମନେ ହେଉଛି, ଭିତରେ ମନର ଜଟିଳତା ସେତେ ବଢୁଛି । ବିବର୍ତ୍ତନର ଗତି କେଉଁ ଆଡ଼େ ? ଆମର ବିଲୋପ ନା ମହାମାନବର ବିକାଶ ?''

ଏହି ସମୟରେ ଇନ୍ସପେକ୍ଟର ଆସି ସଂବାଦ ଦେଲେ ଯେ ମେନେଜରଙ୍କ ଘରୁ ଦେଢ଼ ଲକ୍ଷ ଟଙ୍କା ଓ ଜମାଦାର ଘରୁ ପଚାଶ ହଜାର ଟଙ୍କା ମିଳିଛି । ଗୋବର୍ଦ୍ଧନ ବାବୁ ବୋଧହୁଏ ତାଙ୍କ ଆସିବା ଜାଣି ପାରିଲେ ନାହିଁ କିମ୍ବା ତାଙ୍କ କଥା ଶୁଣି ପାରିଲେ ନାହିଁ । ସେ ପୂର୍ବପରି ଶୂନ୍ୟ ଦୃଷ୍ଟିରେ ଚାହିଁ ବସି ରହିଲେ । ଇନ୍ସପେକ୍ଟର କିଛିକ୍ଷଣ ଅପେକ୍ଷା କରି, ବିରକ୍ତ ହୋଇ ଚାଲିଗଲେ । ଗୋବର୍ଦ୍ଧନ ବାବୁ ପୂର୍ବପରି ଶୂନ୍ୟ ଆଡ଼କୁ ଅନାଇ କହି ଚାଲିଲେ ''ମାର୍କ୍ସ୍ କୁହନ୍ତି ଯେ ମନୁଷ୍ୟ ସମାଜରେ ନୀତି, କୃଷ୍ଟି, ଧର୍ମ, ସାହିତ୍ୟ, କଳା ଆଦି ସବୁ ନିର୍ଭର କରେ ସେହି ସମାଜର ଅର୍ଥନୀତି ଉପରେ, ଅର୍ଥାତ୍ ଧନ ଉତ୍ପାଦନ ଓ ବଣ୍ଟନର ଭିତ୍ତି ଉପରେ । କିନ୍ତୁ ଟିକିଏ ତଳେଇ ଦେଖିଲେ ଜଣାଯିବ ସାହିତ୍ୟ କୁହ କଳା କୁହ ଧର୍ମ କୁହ ବା ଆଦର୍ଶ କୁହ, ପ୍ରତ୍ୟେକ ଦିଗରେ ଜଣେ ଅନ୍ୟ ଜଣକୁ ବଳି ଯିବାକୁ ଚେଷ୍ଟା କରୁଛି ଏବଂ ଯୁଗେ ଯୁଗେ କରି

ଆସୁଛି । ଅର୍ଥାତ୍ ଜଣେ ଅନ୍ୟ ଜଣଙ୍କ ଠାରୁ ସବୁଥିରେ ବଡ଼ ଏହା ପ୍ରମାଣ କରିବାକୁ ଓ ପ୍ରତିଷ୍ଠା କରିବାକୁ ଚେଷ୍ଟା କରୁଛି । ଏହା କ'ଣ ଖାଲି ଅର୍ଥୋପାର୍ଜନ ପାଇଁ ? 'କ୍ରମବିକାଶ'ରେ ମନୁଷ୍ୟ ବୁଦ୍ଧି ପାଇଲା ଦିନୁ ପ୍ରତ୍ୟେକ ଅନ୍ୟଠାରୁ ନିଜକୁ ବେଶୀ ବୁଦ୍ଧିମାନ ପ୍ରତିପନ୍ନ କରିବାକୁ ଚେଷ୍ଟା କରୁଛି । ଏ ଚେଷ୍ଟା କେତେବେଳେ ପ୍ରକାଶ ପାଇଛି ସାହିତ୍ୟରେ, କେତେବେଳେ ବା ଶାନ୍ତିରେ, କେତେବେଳେ ବା ରାଜନୀତିରେ, କେତେବେଳେ ବା ଅର୍ଥୋପାର୍ଜନରେ । ମାର୍କ୍ସ୍ଙ୍କ ସମୟରେ ଏହା ପ୍ରକାଶ ପାଇଥିଲା ଅର୍ଥୋପାର୍ଜନରେ-ଅର୍ଥାତ୍ ପୁଞ୍ଜିବୃଦ୍ଧିରେ । ତେଣୁ ମାର୍କ୍ସ୍ଙ୍କୁ ଏକମାତ୍ର ପନ୍ଥା ଦିଶିଥିଲା ଆର୍ଥିକ ସମତା । କିନ୍ତୁ ମୁଁ କହି ରଖୁଛି ଆର୍ଥିକ ସମତା ଆଣିଲା ପରେ ଦେଖିବ ଏ ଚେଷ୍ଟା ପ୍ରକାଶ ପାଇଛି ଅନ୍ୟ କୌଣସି ଦିଗରେ - ହୁଏତ ଜ୍ଞାନରେ ।''

ନୀରବର ସବୁ ଶୁଣିଲି - ବୁଝେ ବା ନ ବୁଝେ । ସନ୍ଧ୍ୟା ବେଳେ ଖବରକାଗଜବାଲା କାଗଜ ଦେଇଗଲା । ପୂର୍ବର ଅନେକ ଘଟଣା ପରି ଏ ରହସ୍ୟ ଭେଦର ସବୁଯାକ ବାହାଦୁରି ପୁଲିସ୍ ପାଇଛି । ଅସଲ ଲୋକଙ୍କ ଆଉ ଗୋଟିଏ ରହସ୍ୟ ପାଇ ସେଥିରେ ଧ୍ୟାନମଗ୍ନ । ନୀରବରେ ହଷ୍ଟେଲକୁ ଫେରି ଆସିଲି ।



# ଜାଲ ଚେକ

ଗୋବର୍ଦ୍ଧନ ବାବୁଙ୍କର ଯେତେଗୁଡ଼ିଏ ଅନୁସନ୍ଧାନ ସହିତ ମୁଁ ପ୍ରତ୍ୟକ୍ଷ ବା ପରୋକ୍ଷ ଭାବରେ ଜଡ଼ିତ ସେଗୁଡ଼ିକ ପ୍ରକାଶ କରିବାର ଇଚ୍ଛା ମୋର ଅନେକ ଦିନରୁ ଥିଲା । ସେଗୁଡ଼ିକ ଭିତରୁ ଅନେକଗୁଡ଼ିଏ ଆଗରୁ ପ୍ରକାଶ କରି ସାରିଛି । ଏ ପର୍ଯ୍ୟନ୍ତ ଯେତେଗୁଡ଼ିଏ ପ୍ରକାଶ କରିଛି ସେଗୁଡ଼ିକ ମୁଁ କାଳାନୁକ୍ରମିକ ଭାବରେ ସଜାଇଛି । ସାହିତ୍ୟ ଦୃଷ୍ଟିରୁ ଘଟଣାଗୁଡ଼ିକ ଟ୍ରେଜେଡି, କମେଡି, ହାସ୍ୟୋଦ୍ଦୀପକ, କୌତୂହଳୋଦ୍ଦୀପକ ଭାବରେ ସଜାଇବା ଉଚିତ ମନେକରି ମୁଁ ସମସ୍ତ ଅନୁସନ୍ଧାନ ଗୁଡ଼ିକୁ ପୁଣି ଥରେ ପଢ଼ି ସେଗୁଡ଼ିକରର ଶ୍ରେଣୀବିଭାଗ କରିବାକୁ ଚେଷ୍ଟା କଲି । କିନ୍ତୁ ନିଜର କଳ୍ପନାପ୍ରସୂତ ନାଟକ, ଉପନ୍ୟାସ ବା ଗଳ୍ପ ପରି ଏ ଘଟଣାଗୁଡ଼ିକୁ କୌଣସି ଗୋଟିଏ ନିର୍ଦ୍ଦିଷ୍ଟ ଶ୍ରେଣୀଭୁକ୍ତ କରିବା କଷ୍ଟକର ମନେହେଲା । ପ୍ରତ୍ୟେକ ମନୁଷ୍ୟର ଈର୍ଷା ସହାନୁଭୂତି ପ୍ରେମ ଘୃଣା ଔଦାର୍ଯ୍ୟ ନୀଚତା ଆଦି ନାନା ପରସ୍ପରବିରୋଧୀ ଭାବ ଦ୍ୱାରା ଚାଳିତ । ମନୁଷ୍ୟର ସାମାଜିକ ବ୍ୟବହାର ମନର ବିଭିନ୍ନ ଅବସ୍ଥାରେ ବିଭିନ୍ନ ପ୍ରକାରର ହୁଏ । ତେଣୁ ଗୋଟିଏ ମାତ୍ର ଘଟଣାରୁ ମନୁଷ୍ୟର ଚରିତ୍ର ବିଷୟରେ ସିଦ୍ଧାନ୍ତ କରିବା ଯେ କେବଳ ଭୁଲ ହେବ ତା ନୁହେଁ- ଘୋର ଅନ୍ୟାୟ ମଧ୍ୟ ହେବ । ଗୋବର୍ଦ୍ଧନ ବାବୁଙ୍କ ଅନୁସନ୍ଧାନଗୁଡ଼ିକୁ ତେଣୁ ଶ୍ରେଣୀବିଭାଗ କରିବାର ଚେଷ୍ଟା ତ୍ୟାଗ କରି ସୁବିଧା ଓ ପ୍ରୟୋଜନ ଅନୁସାରେ ପ୍ରକାଶ କରିବା ହିଁ ଶ୍ରେୟସ୍କର ମନେ କଲି । ନିମ୍ନୋକ୍ତ ଘଟଣାଟି ବୋଧହୁଏ ମୋର ଯୁକ୍ତିର ଯଥାର୍ଥତା ପ୍ରମାଣ କରିବ ।

ତ୍ରିପୁରା ମହାରାଜାଙ୍କ ଚେକ୍ ଜାଲ ବିଷୟକ ଘଟଣାଟି ପ୍ରକାଶ କରିବାକୁ ମୁଁ ଏଥିପୂର୍ବେ ପାଠକମାନଙ୍କୁ ଏକପ୍ରକାର ପ୍ରତିଶ୍ରୁତି ଦେଇଛି । ମୋର ଧାରଣା ଥିଲା ଗୋବର୍ଦ୍ଧନ ବାବୁ ଏ ଘଟଣାର ଅନୁସନ୍ଧାନ ଭାର ନିଜ ହାତକୁ ନେଇଅଛନ୍ତି । କିନ୍ତୁ ଏ ଘଟଣାଟିର ପ୍ରାୟ ବର୍ଷକ ପରେ ମୁଁ ବୁଝିଲି ଯେ ମୋର ଧାରଣା ଭୁଲ । ପୁଲିସ ଏ ଘଟଣାଟିକୁ ଅନୁସନ୍ଧାନ କରିବାକୁ ଯଥାସାଧ୍ୟ ଚେଷ୍ଟା କରି ବିଫଳ ହୋଇ ତ୍ରିପୁରା ମହାରାଜାଙ୍କୁ ହତାଶ ବାଣୀ ପ୍ରାୟ ବର୍ଷକ ପରେ ଅଳ୍ପଦିନ ତଳେ ଶୁଣାଇ ଅଛନ୍ତି ।

ମୋର ଡାକ୍ତରୀ ପରୀକ୍ଷା ଶେଷ ହୋଇଥାଏ । ପରୀକ୍ଷାରେ ମୁଁ ଆଶାତୀତ ଭାବେ ଭଲ ଫଳ କରିଥାଏ; କିନ୍ତୁ ଅକ୍ଳାନ୍ତ ପରିଶ୍ରମ ଓ ରାତ୍ରି ଜାଗରଣରେ ମୋର ସ୍ୱାସ୍ଥ୍ୟଭଙ୍ଗ ହୋଇଥାଏ । ଦିନେ ସକାଳେ ହଷ୍ଟେଲରେ ମୁଁ ଖଟ ଉପରେ ଚିନ୍ତାକ୍ଳାନ୍ତ ହୋଇ ବସିଛି । ଏହିପରି ସମୟରେ ଦେଖିଲି ଦୂରରେ ଗୋବର୍ଦ୍ଧନ ବାବୁ ଗୋଟିଏ ଘୋଡ଼ାଗାଡ଼ିରେ ହଷ୍ଟେଲ୍

ଆଡ଼କୁ ଆସୁଛନ୍ତି । ଆଶ୍ଚର୍ଯ୍ୟ ହୋଇ ବାହାରକୁ ଆସିଲି । ଗୋବର୍ଦ୍ଧନ ବାବୁ ଗାଡ଼ିରୁ ଓହ୍ଲାଇ ନିକଟକୁ ଆସି ମୋତେ କିଛିକ୍ଷଣ ସ୍ଥିର ଦୃଷ୍ଟିରେ ଚାହିଁ ରହିଲେ । ତାଙ୍କ ଆଖିରେ ସ୍ନେହର ଭର୍ତ୍ସନା ଦେଖି ମୋତେ ଭଲ ଲାଗିଲା । ଗୋବର୍ଦ୍ଧନ ବାବୁ କହିଲେ, ''ଡାକ୍ତର, ମୋ ବସାକୁ ଆସ । ମୁଁ ପନ୍ଦର ମିନିଟ ଭିତରେ ଟିକିଏ କାମ ସାରି ଆସୁଛି । ଇତି ମଧ୍ୟରେ ତୁମେ ତୁମର ସବୁ ଜିନିଷ ପତ୍ର ଗାଡ଼ିରେ ଉଠାଇ ଦିଅ ।'' ଏହା କହି ଗାଡ଼ି ରଖି ଦେଇ ସେ ଚାଲିଗଲେ ।

ପରୀକ୍ଷା ପାଇଁ ହାଡ଼ଭଙ୍ଗା ପରିଶ୍ରମ ପରେ ତାଙ୍କ ବସାରେ ରହିବାକୁ ମୋର ଭାରି ଇଚ୍ଛା ଥିଲା । କିନ୍ତୁ ଗୋଟାଏ ଅହେତୁକ ଅଭିମାନବଶତଃ ମୁଁ ତାଙ୍କ ଆଡୁ ଏ ପ୍ରସ୍ତାବ ପାଇଁ ଅପେକ୍ଷା କରି ବସିଥିଲି । ମୋର ନିଜର ଅଭିଜ୍ଞତାରୁ ମୁଁ ଭାବେ ସମସ୍ତଙ୍କ ବ୍ୟକ୍ତିତ୍ୱରେ ପୁରୁଷ ଓ ସ୍ତ୍ରୀ ଲକ୍ଷଣ ମିଳି ରହିଛି- କାହା ଭିତରେ ଗୋଟିଏ ଅପେକ୍ଷା ଅନ୍ୟଟି ବେଶୀ ଦେଖାଯାଏ । ଠିକ୍ ପନ୍ଦର ମିନିଟ ପରେ ଗୋବର୍ଦ୍ଧନ ବାବୁ ଫେରିଲେ । ଆମେ ନୂଆ ବସାକୁ ଚାଲିଗଲୁ । ସେଠାରେ ରହିବାର ପ୍ରାୟ ଚାରିଦିନ ପରେ ଦିନେ ସକାଳେ ଚାହା ଖାଇବା ସମୟରେ ଗୋବର୍ଦ୍ଧନ ବାବୁ କହିଲେ, ''ଡାକ୍ତର, ତୁମ୍ଭର କିମ୍ଭୂତ ଲେଖାର କ୍ଷମାଶୀଳ ପାଠକମାନଙ୍କୁ ତୁମେ ଏଇ ପ୍ରକାର ପ୍ରତିଶ୍ରୁତି ଦେଇଛ ତ୍ରିପୁରା ମହାରାଜାଙ୍କ ଚେକ ଜାଲ ବିଷୟଟି ପ୍ରକାଶ କରିବାକୁ । ମୋତେ ନ ପଚାରି ଏପରି କରିବାର ଫଳ ତୁମେ ବୋଧହୁଏ ପାଇସାରିଛି, କେହି କେହି ପାଠକ ତୁମକୁ ଇତିମଧ୍ୟରେ ଚିଠି ଦ୍ୱାରା ଗାଳି ଯଦି ଦେଇଥାଆନ୍ତି ତା'ହେଲେ ସେମାନଙ୍କୁ ବିଶେଷ ଦୋଷ ଦେବି ନାହିଁ । ଦୁଃଖର କଥା ଏ ବିଷୟରେ ସମସ୍ତେ ଖବର କାଗଜରୁ ଯାହା ଜାଣନ୍ତି ତାଠୁଁ ମୁଁ ଅଧିକା କିଛି ଜାଣେନା । କିନ୍ତୁ ସୌଭାଗ୍ୟବଶତଃ ଆଜି ଜାଣି ପାରିବି ବୋଲି ଆଶା କରେ । ପୁଲିସ ବର୍ଷେ କାଳ ଅନୁସନ୍ଧାନ କରି ମଧ୍ୟ କୌଣସି ତଥ୍ୟ ନ ପାଇବାରୁ ସାତଦିନ ତଳେ ମହାରାଜାଙ୍କୁ ଏ ବିଷୟ ଜଣାଇ ଦେଇଛନ୍ତି । ଚାରିଦିନ ତଳେ ମହାରାଜାଙ୍କ ସେକ୍ରେଟେରୀଙ୍କଠାରୁ ମୁଁ ଗୋଟିଏ ଟେଲିଗ୍ରାମ ପାଇଛି ଯେ ଏ ବିଷୟରେ ଅନୁସନ୍ଧାନର ଭାର ମୋତେ ଦେବା ପାଇଁ ସେ ଆଜି ଆସି ପହଞ୍ଚିବେ । ତାଙ୍କର ଆସିବାର ଆଉ ବିଳମ୍ବ ନାହିଁ । ଇତିମଧ୍ୟରେ ତୁମେ ଦୟା କରି ମୋର ନୋଟ ବହିର ୧୧୪୫ ପୃଷ୍ଠା ବାହାର କରି ଘଟଣାଟି ଖବରକାଗଜରୁ ପଢ଼ି ପୁଣି ଥରେ ଶୁଣାଅ ।''

ଗୋବର୍ଦ୍ଧନ ବାବୁଙ୍କ ନୋଟ ବହି ଗୋଟିଏ ଏନ୍‌ସାଇକ୍ଲୋପୀଡିଆ ବା ମାଦଳାପାଞ୍ଜି କହିଲେ ଚଳେ । ପୃଥିବୀର ଯାବତୀୟ ଘଟଣା ଗୋବର୍ଦ୍ଧନ ବାବୁଙ୍କ ଟିପ୍‌ପଣୀ ସହ ଏଥିରେ ସ୍ଥାନ ପାଇଛି । ଉତ୍ତର ମେରୁ ପାଖରେ ଯେଉଁ ପ୍ରକାଣ୍ଡ କଙ୍କାଳ ମିଳିଥିଲା ସେ ବିଷୟରେ ତାଙ୍କର ଟିପ୍‌ପଣୀ ହୋଇଛି ଦୀର୍ଘ ପନ୍ଦର ପୃଷ୍ଠା । ଏହି କଙ୍କାଳ କୁଆଡ଼େ ପ୍ରମାଣ କରିଛି ତାଙ୍କର 'କ୍ରମବିକାଶ' ବିଷୟରେ ଗୋଟିଏ ଅନୁମାନ । ଶିରସ୍ତ୍ରାଣ ବିଷୟକ ତାଙ୍କର ସଚିତ୍ର

ଲେଖାଟି ଉପରେ ଥରେ ଆଖି ବୁଲାଇ ଦେଇଗଲି । ଅସମିଆ, ବଙ୍ଗାଳୀ ଓ ଓଡ଼ିଆ ଜାତିର କୌଣସି ଶିରସ୍ତ୍ରାଣ ନଥିବାର କାରଣ କୁଆଡ଼େ ସେମାନଙ୍କର କଳାପ୍ରିୟତା । ତାଙ୍କର ଦୀର୍ଘ ଲେଖାଟି ସ୍ଥାନେ ସ୍ଥାନେ ପଢ଼ି ଶିରସ୍ତ୍ରାଣ ଓ କଳା ଭିତରେ ଏପରି ଘନିଷ୍ଠ ସମ୍ବନ୍ଧରେ କାରଣ ବୁଝି ନ ପାରିଲେ ମଧ୍ୟ ତାଙ୍କର ଓଡ଼ିଆ ଜାତିର କଳାପ୍ରିୟତା ବିଷୟରେ ସିଦ୍ଧାନ୍ତଟି ମନରେ ଗୋଟାଏ ଗର୍ବ ଆଣି ଦେଲା । ଖାତାର ୧୧୪୫ ପୃଷ୍ଠା ବାହାର କରି ଦେଖିଲି କୌଣସି ଇଂରାଜୀ ଖବରକାଗଜରେ ବାହାରି ଥିବା ଏ ବିଷୟକ ବିବରଣୀଟି କଟା ହୋଇ ରଖା ହୋଇଛି । ବିବରଣୀଟି ଏହିପରି -

''ଫେବ୍ରୁୟାରି ୪ ତାରିଖରେ (୧୯୩୯ ମସିହା) ତ୍ରିପୁରାର ମହାରାଜା କୌଣସି କାର୍ଯ୍ୟୋପଲକ୍ଷେ କଟକ ଆସିଥିଲେ । ଉକ୍ତ ମାସ ୭ ତାରିଖରେ ସେ ହଠାତ୍ ହୃଦ ରୋଗରେ ପୀଡ଼ିତ ହେବାରୁ କଟକର ପ୍ରସିଦ୍ଧ ହୃଦ୍‌ରୋଗ ବିଶେଷଜ୍ଞ ଡଃ ଶ୍ରୀ ବିକ୍ରମ ପ୍ରଧାନ ତାଙ୍କର ଚିକିତ୍ସା ଆରମ୍ଭ କଲେ । ଡଃ ପ୍ରଧାନଙ୍କ ଚିକିତ୍ସାରେ ଆରୋଗ୍ୟ ଲାଭ କରି ମହାରାଜା ଉକ୍ତ ମାସ ୧୭ତାରିଖ ଦିନ କଟକ ଛାଡ଼ି ଚାଲି ଗଲେ । ଡଃ ପ୍ରଧାନଙ୍କ ଫିସ୍ ବାବଦ ୫୭୫ଟଙ୍କା ବାକି ଥିବାରୁ ସେ ତାହା ଚେକ ଦ୍ୱାରା ତ୍ରିପୁରାରୁ ପଠାଇ ଦେବେ ବୋଲି ପ୍ରତିଶ୍ରୁତି ଦେଇଗଲେ । ୨୮ ତାରିଖ ପର୍ଯ୍ୟନ୍ତ ଡଃ ପ୍ରଧାନ କୌଣସି ଖବର ନ ପାଇବାରୁ ମାର୍ଚ୍ଚ ମାସ ପହିଲାରେ ଏ ବିଷୟରେ ମହାରାଜାଙ୍କୁ ଲେଖିଲେ । ଏହାର ଉତ୍ତରରେ ମହାରାଜା ମାର୍ଚ୍ଚ ୫ତାରିଖ ଦିନ ଲେଖି ଜଣାଇଲେ ଯେ ସେ ଫେବ୍ରୁୟାରି ୨୨ ତାରିଖ ଦିନ ଇମ୍ପରିଏଲ୍ ବେଙ୍କର ୨୯୩୪ ନମ୍ବର ଚେକ ଦ୍ୱାରା ଟଙ୍କା ପଠାଇ ସାରିଛନ୍ତି । ଖବର ନେବାରୁ ଜଣାପଡ଼ିଲା ଉକ୍ତ ନମ୍ବର ଚେକଟି ଫେବ୍ରୁୟାରି ୨୭ ତାରିଖ ଦିନ 'କର ବ୍ରଦର୍ସ ଏଣ୍ଡ କୋ' ନାମକ କଟକରେ ଗୋଟିଏ କମ୍ପାନୀର ପ୍ରତିଷ୍ଠାତା ମିଃ. ବି. ବି. କର (ବିମାନ ବିହାରୀ କର) ଇମ୍ପିରିଏଲ ବେଙ୍କରୁ ଭଙ୍ଗାଇ ସିଟି ବେଙ୍କରେ ଗୋଟିଏ ବିରାଟ ଅଙ୍କର ଟଙ୍କା - ଟ୫,୦୦, ୦୭୫ ରଖିଲେ ଏବଂ ୨୮ ତାରିଖରେ ସମସ୍ତ ଟଙ୍କା ସିଟି ବେଙ୍କରୁ ଉଠାଇ ନେଲେ । ସିଟି ବେଙ୍କରୁ ଖବର ନେବାରେ ଜଣାପଡ଼ିଲା, ଆଇନତଃ ଟଙ୍କା ଜମା ରଖିବା ସମୟରେ ଜଣେ ଚିହ୍ନଟ ଆବଶ୍ୟକ ବୋଲି ସେହି ବେଙ୍କର ଜଣେ କର୍ମଚାରୀ ମିଃ କରଙ୍କୁ ଚିହ୍ନଟ କରିଥିଲେ । ଉକ୍ତ କର୍ମଚାରୀଙ୍କୁ ପଚାରିବାରେ ଜଣା ପଡ଼ିଲା ଯେ ତନ୍ତି ସାହି ଗଳିରେ ତାଙ୍କ ବସା ପାଖରେ ଗୋଟିଏ ବଡ଼ ଦି'ମହଲା ଘର ସାମନାରେ ଘଟଣାର ଦିନକ ଆଗରୁ ସେ 'କର ବ୍ରଦର୍ସ ଏଣ୍ଡ କୋ' ନାମକ ସାଇନ୍ ବୋର୍ଡ ଦେଖି ଭିତରକୁ ଯାଇ ମିଃ. କରଙ୍କ ସହିତ ଆଳାପ କରିଥିଲେ । ତାଙ୍କ କହିବା ଅନୁସାରେ ମିଃ କର ଶ୍ୟାମବର୍ଣ୍ଣ, ଖୁବ୍ ଡେଙ୍ଗା ଓ ରୋଗା । ତାଙ୍କର ଖୁବ୍ ଅଳ୍ପ ଅଳ୍ପ ନିଶ ମଧ୍ୟ ଥିଲା । ସେ କଟକରେ ସୁନାରୂପା ବ୍ୟବସାୟ ପାଇଁ କଲିକତାରୁ ଆସିଥିଲେ । ସେ ଭଲ ଓଡ଼ିଆ କହି ପାରୁନଥିଲେ- ଅଧିକାଂଶ ସମୟରେ ବଙ୍ଗଳାରେ କଥାବାର୍ତ୍ତା କରୁଥିଲେ । ପୁଲିସ ସାଙ୍ଗେ ସାଙ୍ଗେ ସେ ଘର

ଖାନ୍‌ତଲାସ୍ କରି ତାଙ୍କର କୌଣସି ଚିହ୍ନ ବର୍ଣ୍ଣ ସୁଦ୍ଧା ପାଇ ନାହାନ୍ତି । ଏ ଘଟଣାଟିର ଅନୁସନ୍ଧାନ ଭାର ନିଜେ ପୁଲିସ ସାହେବ ନେଇଥିବାରୁ ଆଶାକରାଯାଏ ଶୀଘ୍ର ରହସ୍ୟଟି ଜଣା ପଡ଼ିବ । କର ବ୍ରଦର୍ସ ଯେଉଁ ଘର ଭଡ଼ା ନେଇଥିଲେ ସେ ଘର ମାଲିକକୁ ପଚାରିବାରେ ଜଣା ପଡ଼େ ଯେ ଉପରୋକ୍ତ ବର୍ଣ୍ଣନାର ଜଣେ ସାମାନ୍ୟ ଛୋଟା ଲୋକ ସାହେବୀ ପୋଷାକ ପିନ୍ଧି ତାଙ୍କ ସହିତ ଦେଖା କରିବାକୁ ଆସିଥିଲେ ଓ ଅଗ୍ରିମ ଭଡ଼ା ୫୦୦ଟଙ୍କା ଦେଇ ସେହି ଘରଟି ଭଡ଼ା ନେଇଥିଲେ । ସେ 'କର ବ୍ରଦର୍ସ ଏଣ୍ଡ କୋ' ସାଇନ୍ ବୋର୍ଡଟି ମରା ହୋଇଥିବା ମଧ ଦେଖିଛନ୍ତି । କିନ୍ତୁ ମାର୍ଚ୍ଚ ପହିଲା ଦିନ ସକାଳେ ବୁଲିଯିବା ସମୟରେ ସେ ଘରଟି ଏକଦମ ଫାଙ୍କା ଦେଖି ସନ୍ଦେହ ହେବାରୁ ପୁଲିସକୁ ଏ ବିଷୟ ଜଣାଇଲେ ।''

ବିବରଣୀଟି ଶୁଣି ଗୋବର୍ଦ୍ଧନ ବାବୁ ଧାନସ୍ଥ ହେଲେ । ଏହି ସମୟରେ ଗୋଟିଏ ଘୋଡ଼ା ଗାଡ଼ି ସାମନା ଫାଟକ ପାଖରେ ଛିଡ଼ା ହେଲା । ସେଥିରୁ ଓହ୍ଲାଇଲେ ଜଣେ ପ୍ରୌଢ଼ ସୁପୁରୁଷ ଭଦ୍ରଲୋକ । ଗୋବର୍ଦ୍ଧନ ବାବୁ ତାଙ୍କୁ ନିଜର ପରିଚୟ ଦେଇ ପାଛୋଟି ଆଣିଲେ ଏବଂ କହିଲେ ''ଆପଣ ଷ୍ଟେଶନରୁ କଟକ ହୋଟେଲରେ ଜିନିଷପତ୍ର ରଖି ଦେଇ ସିଧା ମୋ ବସାକୁ ଆସିଲେ କାହିଁକି ? ଟିକିଏ ବିଶ୍ରାମ କରି ଆସିଥିଲେ ଭଲ ହୋଇଥାଆନ୍ତା ।'' ସେ ଭଦ୍ରଲୋକ ଟିକିଏ ବିସ୍ମିତ ଭାବରେ ଗୋବର୍ଦ୍ଧନ ବାବୁଙ୍କୁ ଅନାଇ ରହି କହିଲେ ''ପୁରୀରେ ବିଶେଷ କାର୍ଯ୍ୟଥିବାରୁ ମୋତେ ଦିନ ଗାଡ଼ିରେ ପୁରୀ ଚାଲିଯିବାକୁ ହେବ । ତେଣୁ ମୁଁ ଆପଣଙ୍କ ପାଖକୁ ସିଧା ଚାଲି ଆସିଲି । କିନ୍ତୁ ଆପଣ... ।''

ଗୋବର୍ଦ୍ଧନ ବାବୁ ବାଧ ଦେଇ କହିଲେ, ''ଆପଣ ବର୍ତ୍ତମାନ ଚାହା ଜଳଖିଆ ଖାଇ ଟିକିଏ ବିଶ୍ରାମ କରନ୍ତୁ, ପରେ ଅନ୍ୟ କଥା ହେବ । କଟକ ହୋଟେଲର ଚପରାସି ଆପଣଙ୍କ ଗାଡ଼ି ପଛରେ ଛିଡ଼ା ହୋଇ ରହିଛି, ସେ ବୋଧହୁଏ ବାଟ ଦେଖାଇ ଆଣିଛି। ତା' ପୋଷାକରେ ହୋଟେଲର ନାଁ ଲେଖା ଅଛି । ଆପଣଙ୍କ ପୋଷାକରେ ଏପର୍ଯ୍ୟନ୍ତ କୋଇଲା ଗୁଣ୍ଡ ଲାଗି ରହିଛି ।'' ଭଦ୍ରଲୋକଙ୍କ ବିସ୍ମୟ ଭାବ କଟିଗଲା । ସେ ଗମ୍ଭୀର ଭାବରେ ଟିକିଏ ହସିଲେ ।

ରାମା ମୁହଁ ଧୋଇବା ପାଇଁ ପାଣି ଓ ଚାହା ଜଳଖିଆ ଆଣି ଦେଲା । ଭଦ୍ରଲୋକ ଖାଉ ଖାଉ ନିଜର ପରିଚୟ ଦେଲେ ''ମୋର ନାମ ଶ୍ରୀ ଅନାଥନାଥ ଚକ୍ରବର୍ତ୍ତୀ । ମୁଁ ତ୍ରିପୁରା ମହାରାଜାଙ୍କ ପ୍ରାଇଭେଟ ସେକ୍ରେଟାରୀ । ମହାରାଜାଙ୍କ ଚେକ୍ ଜାଲ ବିଷୟଟି ବୋଧହୁଏ ଆପଣ ସବୁ ଜାଣନ୍ତି । ଯଦି ନ ଜାଣନ୍ତି ତା'ହେଲେ ମୁଁ ଘଟଣାଟି କହିବି ।''

''ନା, କହିବାର ଆବଶ୍ୟକ ନାହିଁ। ମୋର ବନ୍ଧୁ ଡାକ୍ତର ସୁବୋଧ ଚନ୍ଦ୍ର ମହାନ୍ତି କିଛିକ୍ଷଣ ପୂର୍ବରୁ ମୋତେ ଘଟଣାର ବିବରଣୀଟି ଖବର କାଗଜରୁ ପଢ଼ି ଶୁଣାଉଥିଲେ । ମୁଁ ଜାଣେ ଆପଣ ଆଉ ବିଶେଷ କିଛି କହି ପାରିବେ ନାହିଁ ।''

ଅନାଥବାବୁ ସ୍ମିତ ହସି କହିଲେ, ''ଓଃହୋ, ମୁଁ ଆସିବା ପୂର୍ବରୁ ଆପଣ ତା'ହେଲେ ପ୍ରସ୍ତୁତ ହୋଇ ସାରିଛନ୍ତି । ପୁଲିସ ଆସାମୀକୁ ଖୋଜି ବାହାର କରିବାର ଯଥେଷ୍ଟ ଚେଷ୍ଟା କରିଛି, ସେମାନଙ୍କୁ ଦୋଷ ଦେବା ଅନ୍ୟାୟ ହେବ । କିନ୍ତୁ ନାନା ପ୍ରକାର ଚେଷ୍ଟା ସତ୍ତ୍ୱେ ବିଫଳ ହୋଇ ମହାରାଜାଙ୍କୁ ପ୍ରାୟ ସାତ ଦିନ ତଳେ ପୁଲିସ ତାହା ଜଣାଇ ଦେଇଅଛନ୍ତି । ମହାରାଜାଙ୍କ ପରିଚିତ ଏଠାକାର ଜଣେ ଓକିଲ ଏ ଘଟଣାଟିର ଅନୁସନ୍ଧାନ ଭାର ଆପଣଙ୍କୁ ଦେବାକୁ ମହାରାଜାଙ୍କୁ  ଅନୁରୋଧ କରିବାରୁ ମହାରାଜା ଏଥିପାଇଁ ମୋତେ ପଠାଇଛନ୍ତି ।''

ଅନାଥ ବାବୁ ପକେଟରୁ ଖଣ୍ଡେ ଚିଠି ବାହାର କରି ଗୋବର୍ଦ୍ଧନ ବାବୁଙ୍କୁ ଦେଲେ । ଚିଠିଟି ପଢ଼ି ସାରି ଗୋବର୍ଦ୍ଧନ ବାବୁ କହିଲେ, ''କିନ୍ତୁ ବର୍ଷକ ପରେ ମୁଁ କ'ଣ କରିପାରେ ? ପୁଲିସ ପରି କେବଳ ଯଥାସାଧ୍ୟ ଚେଷ୍ଟା କରିପାରେ ସିନା, କିନ୍ତୁ ଫଳ କିଛି ହେବ ବୋଲି ଆଶା ହେଉ ନାହିଁ । କିଏ ଜାଲ କରିଛି ଜାଣି ପାରିଲେ ମଧ୍ୟ ମୋର ଯଥେଷ୍ଟ ସନ୍ଦେହ ଆପଣ ଟଙ୍କା ଆଉ ଫେରି ପାଇବେ ନାହିଁ ।''

''ଆପଣ କୃତକାର୍ଯ୍ୟ ହେଲେ ମହାରାଜ ଦଶ ହଜାର ଟଙ୍କା ପାରିଶ୍ରମିକ ସ୍ୱରୂପ ଦେବେ ବୋଲି ସ୍ୱୀକାର କରି ଅଛନ୍ତି - ଅବଶ୍ୟ ସମୁଦାୟ ଟଙ୍କାଟି ମିଳିଲେ । ଆପଣ ଯଦି କେବଳ ଦୋଷୀ ଧରାଇ ଦେଇପାରନ୍ତି ତେବେ ପାରିଶ୍ରମିକ ସ୍ୱରୂପ ପାଞ୍ଚ ହଜାର ଟଙ୍କା ପାଇବେ ।''

ଏ କଥାରେ ଗୋବର୍ଦ୍ଧନ ବାବୁ ବୋଧହୁଏ ଟିକିଏ ବିରକ୍ତ ହେଲେ । ସେ ଗମ୍ଭୀର ହୋଇ କହିଲେ, ''ଦେଖନ୍ତୁ, ଟଙ୍କା ଲୋଭରେ ମୁଁ କିଛି କରେ ନାହିଁ । ଅନ୍ୟାନ୍ୟ ବିଜ୍ଞାନ ପରି ଏହା ମଧ୍ୟ ଗୋଟିଏ ବିଜ୍ଞାନ । ଏହି ବିଜ୍ଞାନ ଦିଗଟି ମୋତେ ଆକୃଷ୍ଟ କରିଛି, ଅର୍ଥଲୋଭ ନୁହଁ । ପାରିଶ୍ରମିକ ମୁଁ ଯେ ନ ନିଏ ତା' ନୁହେଁ । ଯେ ଦେଇପାରେ ତାଠୁ ନେବାକୁ ଦ୍ୱିଧା କରେ ନାହିଁ । ସେ କଥା ଛାଡ଼ନ୍ତୁ । ମୋର କେତେ ଗୁଡ଼ିଏ ପ୍ରଶ୍ନର ଉତ୍ତର ଆପଣ ଦିଅନ୍ତୁ । କଟକରୁ ତ୍ରିପୁରା ବା ତ୍ରିପୁରାରୁ କଟକ ଚିଠି ଯିବା ଆସିବାକୁ କେତେ ଦିନ ଲାଗେ ?''

''ଚିଠି ଦେବାର ଠିକ୍ ପଞ୍ଚମ ଦିନରେ ପହଞ୍ଚେ ।''

''ପୁଲିସ୍ କାହାକୁ ସନ୍ଦେହ କରିଅଛନ୍ତି ?''

''ସେ କଥା ମୁଁ ବିଶେଷ ଜାଣ ନାହିଁ । ତେବେ ଡଃ  ପ୍ରଧାନଙ୍କୁ - ।''

''ଚେକ୍‌ଟି ଆପଣ ସାଧାରଣ ଲଫାପାରେ ପଠାଇଥିଲେ ?''

''ହଁ ।''

''ହଉ ଆପଣ ତେବେ ଆସନ୍ତୁ । ମୁଁ  ଯଥାସାଧ୍ୟ ଚେଷ୍ଟା କରିବି । କିନ୍ତୁ ମୁଁ ପୂର୍ବରୁ କହି ରଖୁଛି ଯେ ବର୍ଷକ ପରେ ଏ ରହସ୍ୟର କିଛି ପତ୍ତା ମିଳିବ ବୋଲି ଆଶା ହେଉ ନାହିଁ । ଅନୁସନ୍ଧାନ କରିବା ପୂର୍ବରୁ ମୁଁ ଆଉ ଗୋଟିଏ କଥା କହି ରଖୁଛି, ସଫଳ ହୁଏ ବା ନହୁଏ

ମୋର ପାରିଶ୍ରମିକ ଦଶହଜାର ଟଙ୍କା ଦବାକୁ ହେବ । ଏ ସର୍ତ୍ତରେ ଯଦି ଆପଣ ରାଜି ଥାଆନ୍ତି ତା'ହେଲେ - ।''

ଅନାଥ ବାବୁ ଟିକିଏ ଚିନ୍ତିତ ହେଲେ । କିଛିକ୍ଷଣ ଭାବି ସେ କହିଲେ, ''ଏହା ପାଇଁ ମୁଁ ପ୍ରସ୍ତୁତ ନଥିଲି । ମହାରାଜଙ୍କ ଠାରୁ କୌଣସି ନିର୍ଦ୍ଦେଶ ମଧ ମୁଁ ଏ ବିଷୟରେ ପାଇ ନାହିଁ । ତେବେ ମହାରାଜଙ୍କୁ ମୁଁ ବୁଝାଇ କହିବି । ବର୍ତ୍ତମାନ ମୁଁ ମୋ ଦାୟିତ୍ୱରେ ଏ ସର୍ତ୍ତରେ ରାଜି ଅଛି ।''

''ଉତ୍ତମ । ତା'ହେଲେ ଆପଣ ଆସନ୍ତୁ । ମୋର ବିଶ୍ୱାସ ଆପଣ ପରେ ଏ ସର୍ତ୍ତ ବିଷୟରେ କିଛି ଗୋଳମାଳ କରିବେ ନାହିଁ ।''

ମୋତେ ଟିକିଏ ଆଶ୍ଚର୍ଯ୍ୟ ଲାଗିଲା । ଯେତେ ଲୋକ ବିପଦରେ ପଡ଼ି ଗୋବର୍ଦ୍ଧନ ବାବୁଙ୍କ ନିକଟକୁ ଆସିଛନ୍ତି, ଧନୀ ଦରିଦ୍ର ନିର୍ବିଶେଷରେ ସମସ୍ତେ ତାଙ୍କର ପୂର୍ଣ୍ଣ ସହାନୁଭୂତି ପାଇଛନ୍ତି ବିନା ସର୍ତ୍ତରେ । କିନ୍ତୁ ଏଥର ଏପରି ସର୍ତ୍ତ ରଖିବାର ଉଦ୍ଦେଶ୍ୟ ମୁଁ ବୁଝିପାରିଲି ନାହିଁ ।

ଅନାଥ ବାବୁ ଚାଲିଗଲା ପରେ ଗୋବର୍ଦ୍ଧନ ବାବୁ ପୂର୍ବ ପରି ଧ୍ୟାନମଗ୍ନ ହୋଇ ବସିଲେ । ପୁରାଣର ମୁନି ଋଷିଙ୍କ ଭଳି ସେ ଧ୍ୟାନରେ ସବୁ ଜାଣିବାକୁ ଚେଷ୍ଟା କରୁଛନ୍ତି ବୋଲି ମୋର ମନେ ହେଲା । ଅନ୍ୟ କୌଣସି ଅନୁସନ୍ଧାନରେ ତାଙ୍କୁ ଏତେ ଧ୍ୟାନମଗ୍ନ ହେବାର ମୁଁ ଦେଖିନାହିଁ । ଯେତେ ବୁଦ୍ଧିମାନ୍ ଲୋକ ହେଉନା କାହିଁକି ଏବଂ ଚିନ୍ତାଶକ୍ତି ତା'ର ଯେତେ ଥାଉନା କାହିଁକି ବର୍ଷକ ପରେ ଏପରି ରହସ୍ୟ ଭେଦ କରିବାର ଚେଷ୍ଟା ସଫଳ ହେବ ଆଶା କରିବା ଦୁରାଶା ବୋଲି ମୋର ମନେ ହେଲା । ପୁଲିସ୍ ଦୀର୍ଘ ଏକ ବର୍ଷ ଧରି ଅନୁସନ୍ଧାନ କରି ବିଫଳ ହେବା ପରେ ଆଉ ଅଧିକା କିଛି କରିବାର କ'ଣ ବା ଥାଇପାରେ ? ଗୋବର୍ଦ୍ଧନ ବାବୁ କିନ୍ତୁ 'ସଙ୍କୋଚନ' ଅବସ୍ଥାରେ ଦୁଇଟି ଦିନ ରହିଲେ । କେବଳ ନିତ୍ୟକର୍ମ ସାରିବା, ଖାଇବା, ଦୈନିକ ଦୁଇ ଘଣ୍ଟା ଶୋଇବା ଏବଂ ଖରାବେଳେ ଘଣ୍ଟାଏ ପାଇଁ ବାହାରକୁ ଯିବା ଛଡ଼ା ସବୁବେଳେ ସେ ତାଙ୍କ ଆରାମ ଚୌକିରେ ମାଉଁସ ପିଣ୍ଡୁଳାଟି ଭଳି ବସି ରହିଲେ । ଏ ପ୍ରକାର ବୃଥା ଚେଷ୍ଟାରେ ଶକ୍ତି କ୍ଷୟ କରିବା ଦେଖି ମୋର କୌତୂହଳ ଚାଲିଯାଇ ଦିନକୁ ଦିନ ବିରକ୍ତି ବଢ଼ିବାକୁ ଲାଗିଲା ।

'ଯଥା ପୂର୍ବଂ, ତଥା ପରଂ' ଅବସ୍ଥାରେ ଦୁଇଟି ଦିନ ଯିବା ପରେ ତୃତୀୟ ଦିନ ଗୋବର୍ଦ୍ଧନ ବାବୁ ବାହାରକୁ ଯିବା ସମୟରେ କହିଗଲେ ''ମୁଁ ଥାନାକୁ ଯାଉଛି- ଫେରିବାକୁ ଟିକିଏ ଡେରି ହୋଇପାରେ, କେହି ଦେଖା କରିବାକୁ ଆସିଲେ କହିଦେବ ।''

ସେ ଫେରିଲେ ସେଦିନ ପ୍ରାୟ ଦିନ ତିନିଟା ବେଳକୁ । ଖାଇସାରିବା ପରେ ମୁଁ ପଚାରିଲି, ''କିଛି ସନ୍ଧାନ ପାଇଲେ ?''

''ନା, ତେବେ ଏତିକି ସୁବିଧା ହେଲା ଯେ ଅନେକ ଗୁଡ଼ାଏ ଅଯଥା ପରିଶ୍ରମ

ମୋତେ ବର୍ତ୍ତମାନ କରିବାକୁ ପଡ଼ିବ ନାହିଁ । ଏ କ୍ଷେତ୍ରରେ ସାଧାରଣତଃ ଯାହା କରିବାର କଥା ପୁଲିସ୍ ସବୁ କରିସାରିଛି । ସେମାନେ ପ୍ରାୟ ଭାରତର ସବୁଠାରେ ଅନୁସନ୍ଧାନ କରି ଜାଣିଛନ୍ତି ଯେ 'କର ବ୍ରଦର୍ସ' ବୋଲି କୌଣସି କମ୍ପାନୀ ନଥିଲା ବା ନାହିଁ । ଘଟଣା ଘଟିବା ଦିନଠାରୁ ସେମାନେ ଭାରତର ସବୁ ବେଙ୍କରେ ଅନୁସନ୍ଧାନ କରିଅଛନ୍ତି । ଏ ଘଟଣା ପରେ ଏକା ସାଙ୍ଗରେ ଅନେକ ଗୁଡ଼ିଏ ଟଙ୍କା ଯେଉଁମାନେ ଭାରତର ଯେକୌଣସି ବେଙ୍କରେ ଜମା କରିଥିଲେ ସେମାନଙ୍କ ବିଷୟରେ ତନ୍ନତନ୍ନ କରି ଅନୁସନ୍ଧାନ କରି ପୁଲିସ୍ ଦେଖିଛନ୍ତି ଯେ ସେମାନଙ୍କ ଭିତରେ କେହି ସନ୍ଦେହଜନକ ଚରିତ୍ରର ନୁହଁନ୍ତି । ଡଃ ପ୍ରଧାନଙ୍କୁ ସନ୍ଦେହ କରି ତାଙ୍କ ପ୍ରତି ପୁଲିସ ବିଶେଷ ଦୃଷ୍ଟି ଦେଇଥିଲେ । କିନ୍ତୁ ଏବେ ସେମାନେ ଜାଣି ପାରିଛନ୍ତି ଯେ ଡଃ ପ୍ରଧାନ ଜଣେ ବିଦ୍ୱାନ୍, ଜ୍ଞାନପିପାସୁ ବ୍ୟକ୍ତି । ସେ ତାଙ୍କ ଗବେଷଣାରେ ସବୁବେଳେ ନିବିଷ୍ଟ ଥାଆନ୍ତି । ଘଟଣା ପରେ ସେ ଅନେକ ଟଙ୍କାର ଯନ୍ତ୍ରପାତି କିଣିଛନ୍ତି ସତ, କିନ୍ତୁ ପ୍ରମାଣ ମିଳିଛି ଯେ ସେ ତାଙ୍କର ସମସ୍ତ ସମ୍ପତ୍ତି ଓ ତାଙ୍କର ସାନ ଭାଇଙ୍କର ସ୍ତ୍ରୀଙ୍କର ଅଳଙ୍କାର ବିକ୍ରୟ କରି ଏସବୁ ପାଇଁ ଆବଶ୍ୟକୀୟ ଅର୍ଥର ଆୟୋଜନ କରିଥିଲେ । ଡଃ ପ୍ରଧାନ ଅବିବାହିତ । ତାଙ୍କର ସାନ ଭାଇ ଗୋଲୋକବିହାରୀ ଜଣେ ଖ୍ୟାତନାମା ଓକିଲ । ଦୁଇ ଭାଇ ଏକା ସାଙ୍ଗରେ ଥାଆନ୍ତି । ଡଃ ପ୍ରଧାନଙ୍କ ଗବେଷଣାର ସମସ୍ତ ଖର୍ଚ୍ଚ ଗୋଲୋକ ବାବୁ କୌଣସି ମତେ ବହନ କରନ୍ତି । ଗୋଲୋକ ବାବୁ ଭାରି ଭ୍ରାତୃଭକ୍ତ । ପୁଲିସର ଅନୁସନ୍ଧାନର ଏହି ଫଳାଫଳ ମୋର ଜଞ୍ଜାଳ ଅନେକ କମାଇ ଦେଇଛି ।''

''ବର୍ତ୍ତମାନ ଆପଣ ତେବେ କ'ଣ କରିବେ ?''

''ଆପାତତଃ କିଛି ଠିକ୍ କରି ନାହିଁ । ତେବେ ଆମକୁ ଆଜି ଡଃ ପ୍ରଧାନଙ୍କ ଘରକୁ ଯିବାକୁ ହେବ । ଡାକ୍ତର, ତୁମେ ଯା' ଭିତରେ ହୃଦ୍‌ରୋଗ ବିଷୟରେ କିଛି ପଢ଼ାପଢ଼ି କରିନିଅ । ତୁମେ ଓ ମୁଁ ଆଜି ସନ୍ଧ୍ୟାବେଳେ ଡଃ ପ୍ରଧାନଙ୍କ ଘରକୁ ଯିବା । ତୁମେ ହୃଦରୋଗ ବିଷୟରେ ତାଙ୍କୁ ନାନାଦି ପ୍ରଶ୍ନ ପଚାରିବ ।''

ଗୋବର୍ଦ୍ଧନ ବାବୁ ଖାଇସାରି ପୁଣି ଚିନ୍ତା କରିବାକୁ ବସିଲେ । ପାଞ୍ଚମିନିଟ୍ ମଧରେ ତାଙ୍କର ବୋକାଙ୍କ ଭଳି ବଡ଼ ବଡ଼ ଆଖି ଯୋଡ଼ିକ କ୍ରମେ କ୍ରମେ ସାନ ହୋଇ ବନ୍ଦ ହୋଇଗଲା । ମୋର ଆଖି ଯୋଡ଼ିକ ମଧ ବନ୍ଦ ହୋଇଗଲା -ତେବେ ଚିନ୍ତା ହେତୁରୁ ନୁହଁ, ତନ୍ଦ୍ରାରୁ । ଗୋବର୍ଦ୍ଧନ ବାବୁ ସେଥିରେ ବାଧା ଦେଇ କହିଲେ, ''ଡାକ୍ତର, ଯାଅ ବହି ଟିକିଏ ଓଲଟାଇ ନିଅ ।''

ସନ୍ଧ୍ୟାବେଳେ ଆମେ ଡଃ ପ୍ରଧାନଙ୍କ ଘରକୁ ଗଲୁ । ନିଜର ପରିଚୟ ଦେଇ କହିଲି, ''ମୁଁ ଆସିଛି ହୃଦ୍‌ରୋଗ ବିଷୟରେ କିଛି ପଚାରିବାକୁ ।'' ଡଃ ପ୍ରଧାନ ଜଣେ ଖାଣ୍ଟି ବୈଜ୍ଞାନିକ । ତାଙ୍କର ଗବେଷଣାଗାରଟି ନାନା ପ୍ରକାର ଆଧୁନିକ ସୂକ୍ଷ୍ମ ଯନ୍ତ୍ର ପାତିରେ ପୂର୍ଣ୍ଣ । ଏପରି ଘରୋଇ ଗବେଷଣାଗାର ଖୁବ୍ ବିରଳ । ସେ ସବୁବେଳେ ସେହି

ଗବେଷଣାଗାରରେ ହୃଦ୍‌ରୋଗ ବିଷୟରେ କୌଣସି ମୌଳିକ ଗବେଷଣା କରୁଥାଆନ୍ତି। ଦୀର୍ଘକାୟ ରୁଗ୍ଣ ଗୌର ବର୍ଣ୍ଣ ଚେହେରା। ଆଖି ଦିଓଟି ସବୁବେଳେ ଗଭୀର ଓ ଗମ୍ଭୀର। ମୁଣ୍ଡର ବାଳ ଅବିନ୍ୟସ୍ତ, ନିଶଦାଢ଼ି ପ୍ରାୟ ସାତ ଦିନ ହେବ କଟା ହୋଇନଥାଏ। ମୋର ଯିବାର ଅଭିପ୍ରାୟ ଶୁଣି ସେ ବଡ଼ ଆନନ୍ଦିତ ହେଲେ, କିନ୍ତୁ କହିଲେ "କ୍ଷମା କରିବେ। ମୁଁ ବର୍ତ୍ତମାନ ଭାରି ବ୍ୟସ୍ତ। ବିଶ୍ରାମ ପାଇଁ ସୁଦ୍ଧା ଟିକିଏ ସମୟ ପାଉନାହିଁ। ଆଉ ସାତ ଦିନ ପରେ ଆସିଲେ ଆପଣଙ୍କ ସହିତ ଆଲୋଚନା କରିପାରିବି ବୋଲି ଆଶା କରେ।" ତାଙ୍କର ବିନୟ ଦେଖି ଭକ୍ତିରେ ମୋର ମୁଣ୍ଡ ନଇଁ ଗଲା। ଗୋବର୍ଦ୍ଧନ ବାବୁ ଯେ ଏପରି ଲୋକଙ୍କୁ ସନ୍ଦେହ କରିପାରନ୍ତି ଦେଖି ମୋର ତାଙ୍କ ଉପରେ ମଧ୍ୟ ଟିକିଏ ବିରକ୍ତି ଆସିଲା। ଡଃ ପ୍ରଧାନଙ୍କ ଗବେଷଣାଗାରରୁ ଫେରିବା ସମୟରେ ଗୋଲୋକ ବାବୁଙ୍କ ସହିତ ସାକ୍ଷାତ ହେଲା। ଦେଖିଲି ଡଃ ପ୍ରଧାନଙ୍କ ସହିତ ତାଙ୍କ ଚେହେରାର ବହୁତ ସାଦୃଶ୍ୟ ଅଛି। ଗୋବର୍ଦ୍ଧନ ବାବୁ ତାଙ୍କ ସହିତ ଡଃ ପ୍ରଧାନଙ୍କ ବିଷୟରେ କଥାବାର୍ତ୍ତା କଲେ। ଗୋଲୋକ ବାବୁ ସତେ ବଡ଼ ଭ୍ରାତୃଭକ୍ତ। ତାଙ୍କର ଜୀବନର ଏକମାତ୍ର ଉଦ୍ଦେଶ୍ୟ ବଡ଼ଭାଇଙ୍କର ଗବେଷଣା ପାଇଁ ସବୁ ପ୍ରକାର ସୁବିଧା କରାଇ ଦେବା। କାର୍ଯ୍ୟତଃ ସେ ଡଃ ପ୍ରଧାନଙ୍କ ସେକ୍ରେଟେରି।

ବସାକୁ ଫେରିବା ସାଙ୍ଗେ ସାଙ୍ଗେ ଗୋବର୍ଦ୍ଧନ ବାବୁ ପୁଣି ଚିନ୍ତାମଗ୍ନ ହେଲେ। ଏ ଅନୁସନ୍ଧାନଟି ପ୍ରତି ମୂଳରୁ ମୋର ବିରକ୍ତି ଥିଲା। ତ୍ରିପୁରା ମହାରାଜା କୋଟିପତି। ପାଞ୍ଚଲକ୍ଷ ଟଙ୍କା ତାଙ୍କ ନିକଟରେ ପାଞ୍ଚ ପଇସା ପରି। ଏଥିପାଇଁ ବର୍ଷକ ପରେ ଏତେ ଶକ୍ତି ଓ ସମୟର ଅପଚୟ ମୋତେ ଭଲ ଲାଗୁନଥାଏ। କିନ୍ତୁ ଅର୍ଥଲାଭ ଆଶାରେ ଗୋବର୍ଦ୍ଧନ ବାବୁ ଏତେ ପରିଶ୍ରମ କରୁନଥିଲେ ତାହା ମୁଁ ଜାଣେ। ଏହା ତାଙ୍କର ଗୋଟିଏ ମାନସିକ ବିଳାସ। ରାତିରେ ଖାଇସାରି ମଧ୍ୟ ଗୋବର୍ଦ୍ଧନ ବାବୁ ଜାକିଜୁକି ହୋଇ ଖଟ ଉପରେ ବସିଲେ। ମୁଁ ହତାଶ ହୋଇ ଶୋଇବାକୁ ଗଲି। କେବଳ ଚିନ୍ତା ଦ୍ୱାରା ଏ ରହସ୍ୟ କିପରି ଭେଦ ହୋଇପାରିବ ବୁଝିପାରିଲି ନାହିଁ।

ପରଦିନ ସକାଳେ ଉଠି ଦେଖିଲି ଗୋବର୍ଦ୍ଧନ ବାବୁ କ'ଣ ଲେଖିବାରେ ବ୍ୟସ୍ତ। ମୁଁ ଜଳଖିଆ ଖାଇ ସାରିବା ପରେ ମୋ ହାତରେ ଗୋଟିଏ କାଗଜ ଦେଇ ସେ କହିଲେ, "ଡାକ୍ତର, ଏ ସମ୍ବାଦଟି ତୁମେ କଟକର ପ୍ରତ୍ୟେକ ଖବରକାଗଜକୁ ଦେଇ ଆସ।" ସମ୍ବାଦଟି ଏହିପରି ଲେଖା ହୋଇଥିଲା :- "ତ୍ରିପୁରା ମହାରାଜାଙ୍କ ଚେକ ଜାଲ ବିଷୟକ ଘଟଣାଟି ଏ ପର୍ଯ୍ୟନ୍ତ ପୁଲିସ ଅନୁସନ୍ଧାନ କରୁଥିଲେ। ପ୍ରାୟ ବର୍ଷେ ଅନୁସନ୍ଧାନ ଚଳାଇବା ପରେ ସେମାନେ ବିଫଳ ହେବାରୁ ତ୍ରିପୁରା ମହାରାଜା ଏ ଅନୁସନ୍ଧାନର ଭାର ସୁବିଖ୍ୟାତ ବେସରକାରୀ ଡିଟେକ୍ଟିଭ୍ ଶ୍ରୀ ଗୋବର୍ଦ୍ଧନ ମିଶ୍ର ଏମ୍.ଏସ୍‌ସି., ବି.ଏଲ୍.ଙ୍କୁ ଦେଇଅଛନ୍ତି। ଜଟିଳ ରହସ୍ୟ ଭେଦ କରିବାରେ ଗୋବର୍ଦ୍ଧନ ବାବୁଙ୍କ ଅପୂର୍ବ ଧୀଶକ୍ତି ସୁବିଦିତ। ବିଶ୍ୱସ୍ତ

ସୂତ୍ରରୁ ଖବର ମିଳେ ସେ ଜାଣି ପାରିଛନ୍ତି ଯେ ଡାକ ବିଭାଗର କୌଣସି କର୍ମଚାରୀ (ନାଁଟି ସେ ଗୁପ୍ତ ରଖିଥିବାରୁ ଆମେ ପ୍ରକାଶ କରିବାକୁ ଅକ୍ଷମ) ଏ ରହସ୍ୟ ସହିତ ବିଶେଷ ଭାବେ ସଂପୃକ୍ତ । ଗୋବର୍ଦ୍ଧନ ବାବୁ ଏଥିରେ ସଫଳ ହେଲେ ମହାରାଜା ଦଶହଜାର ଟଙ୍କା ପୁରସ୍କାର ଦେବେ ବୋଲି ସ୍ୱୀକାର କରିଅଛନ୍ତି । ଏ ପୁରସ୍କାର ପାଇଁ ଗୋବର୍ଦ୍ଧନ ବାବୁ ଯଥାସାଧ ଚେଷ୍ଟା କରୁଅଛନ୍ତି ।''

ମୁଁ ଯେତେଦୂର ଜାଣେ ଏ ସମ୍ବାଦରେ ଗୋବର୍ଦ୍ଧନ ବାବୁ ଅନୁସନ୍ଧାନ ଭାର ନେବା ଛଡ଼ା ଆଉ ଗୋଟିଏ ବର୍ଣ ସୁଦ୍ଧା ସତ୍ୟ ନୁହେଁ । ଏ ମିଥ୍ୟା ସମ୍ବାଦ ପ୍ରଚାରର ଉଦ୍ଦେଶ୍ୟ କ'ଣ ମୁଁ ବୁଝିପାରିଲି ନାହିଁ । ପୁଣି ଏ ସମ୍ବାଦରେ ନିଜର ଗୁଣ ଅତିରଞ୍ଜିତ କରି ପ୍ରଚାର କରାଇବା ଏବଂ ଏ ଅନୁସନ୍ଧାନର ଉଦ୍ଦେଶ୍ୟ ଅର୍ଥଲାଭ ବୋଲି ଜଣାଇବା ମଧ୍ୟ ମୋତେ ଭଲ ଲାଗିଲା ନାହିଁ । ମୋର ମନ କଥା ବୁଝିପାରି ଗୋବର୍ଦ୍ଧନ ବାବୁ କହିଲେ, ''ଡାକ୍ତର, ତୁମେ ଦ୍ୱିଧା କର ନାହିଁ । ଶୀଘ୍ର ଦେଇ ଆସ ।'' ଏ ଅନୁସନ୍ଧାନରେ ନିଜକୁ ଗୋପନ ରଖିବା ହିଁ ସବୁଠାରୁ ଭଲ ବୋଲି ମୋର ଧାରଣା ଥିଲା । ଗୋବର୍ଦ୍ଧନ ବାବୁଙ୍କ ଓଲଟା କଥା ଦେଖି ମୋତେ ଆଶ୍ଚର୍ଯ୍ୟ ଲାଗିଲା । ଯାହାହେଉ, ସମ୍ବାଦଟି ମୁଁ ପ୍ରତ୍ୟେକ ଖବରକାଗଜକୁ ଦେଇ ଆସିଲି । ଫେରିଆସି ଦେଖିଲି ଗୋବର୍ଦ୍ଧନ ବାବୁ ନିବିଷ୍ଟ ଭାବରେ ପଢୁଛନ୍ତି ବୈଷ୍ଣବ ପାଣୀଙ୍କର 'ହରିଶ୍ଚନ୍ଦ୍ର' ଗୀତାଭିନୟ । ସାହିତ୍ୟ ବିଷୟରେ ମୋତେ ବିଶେଷ କିଛି ମାଲୁମ୍ ନାହିଁ; ତଥାପି ବୈଷ୍ଣବ ପାଣୀଙ୍କ ଯାତ୍ରା ବହି ଯେ ଗୋବର୍ଦ୍ଧନ ବାବୁଙ୍କ ଭଳି ରୁଚିବାନ ଚିନ୍ତାଶୀଳ ପାଠକଙ୍କୁ ମଣ୍ଡିତ କରିବ, ତାହା ଥିଲା ମୋର ଧାରଣା ବାହାରେ । ଗୋବର୍ଦ୍ଧନ ବାବୁ କବି ବୈଷ୍ଣବ ପାଣୀଙ୍କର ଲେଖାକୁ ଭାରି ପ୍ରଶଂସା କରନ୍ତି । ତାଙ୍କ ମତରେ ଆଜିକାଲିର ଓଡ଼ିଆ ନାଟକ ଠାରୁ ବୈଷ୍ଣବ ପାଣୀଙ୍କର ଗୀତିନାଟ୍ୟଗୁଡ଼ିକ ଯଥେଷ୍ଟ ଉନ୍ନତତର । ତାଙ୍କର ବିଶ୍ୱାସ ବୈଷ୍ଣବ ପାଣୀ ଦିନେ ନା ଦିନେ ଓଡ଼ିଆ ସାହିତ୍ୟର ଦରବାରରେ ଯୋଗ୍ୟ ଆସନ ପାଇବେ । ସମସ୍ୟାମୂଳକ ନାଟକ ଲେଖିବାକୁ ଯାଇ ଆଜିକାଲିକାର ଲେଖକମାନେ ଯେଉଁ ସମସ୍ୟାମାନ ଥୋଉଛନ୍ତି ତାହା ଯେପରି ହାସ୍ୟକର, ଯେଉଁ ସମାଧାନର ସୂଚନା ଦେଉଛନ୍ତି ତାହା ମଧ୍ୟ ସେହିପରି ହାସ୍ୟାସ୍ପଦ । ସେ ଯାହାହେଉ, ଏଡ଼େ ବଡ଼ ଗୋଟିଏ ଜଟିଳ ସମସ୍ୟାରେ ବ୍ୟସ୍ତ ରହି ସେ ଯେ କିପରି ସାହିତ୍ୟରେ ମନ ଦେଇ ପାରୁଛନ୍ତି ଦେଖି ମୋତେ ଆଶ୍ଚର୍ଯ୍ୟ ଲାଗିଲା । ମୋତେ ଦେଖି ପାରି ସେ କହିଲେ, ''ସମ୍ବାଦଟି ଖବରକାଗଜରେ ନ ବାହାରିବା ପର୍ଯ୍ୟନ୍ତ କିଛି କରିବାର ନାହିଁ । ଅତଏବ ବର୍ତ୍ତମାନ କବି ବୈଷ୍ଣବ ପାଣୀଙ୍କ ସାହିତ୍ୟ ଆଲୋଚନା କରାଯାଉ ।'' ଆଜିକାଲିକାର ସାହିତ୍ୟରେ କିପରି (ବଙ୍ଗଳାର ବିଖ୍ୟାତ ପୁସ୍ତକ 'ଆବୋଲ ତାବୋଲ୍'ରୁ ଉଦ୍ଧାର କରି ସେ କହିଲେ) ''ରାମ୍ ଖଟାଖଟ ଘେଚାଂ ଘେଞ୍ଚ୍, କଥାଏ କାଟେ କଥାର ପେଞ୍ଚ''ତାହା ସେ ଅନେକ ଉଦାହରଣ ଦେଖାଇ କହିଲେ । ସାହିତ୍ୟ ଆଲୋଚନାରେ ସେଦିନ ସୂର୍ଯ୍ୟାସ୍ତ ହେଲା ।

ସନ୍ଧ୍ୟା ହେବା ସଙ୍ଗେ ସଙ୍ଗେ ରାତିରେ ଫଟ ଉଠାଇବାର ଗୋଟିଏ କେମେରା ଧରି ଟିକିଏ ବୁଲି ଆସିବାକୁ ଗୋବର୍ଦ୍ଧନ ବାବୁ ମୋତେ ଡାକିଲେ । ବୁଲୁ ବୁଲୁ ଆମେ ଡଃ ପ୍ରଧାନଙ୍କ ଘର ଆଡ଼କୁ ଗଲୁ । ତାଙ୍କ ଘରଠାରୁ ଅଳ୍ପ ଦୂରରେ ଗୋବର୍ଦ୍ଧନ ବାବୁ ଛିଡ଼ା ହେଲେ । ଖବରକାଗଜ ବାଲା ଡାକିଗଲା ‘‘ଗୋବର୍ଦ୍ଧନ ବାବୁଙ୍କ ଅଦ୍ଭୁତ କୀର୍ତ୍ତି, ତ୍ରିପୁରା ମହାରାଜାଙ୍କ ଚେକ୍ ଜାଲ ରହସ୍ୟ ଭେଦ ।’’ ଗୋଲୋକ ବାବୁ ବାହାରକୁ ଆସି ପାଟି କରି ଖବରକାଗଜ ବାଲାକୁ ଡାକିଲେ । ଖବରକାଗଜଟି ପଢୁ ପଢୁ ସେ ଘର ଭିତରକୁ ଯାଇ ଅଳ୍ପ ସମୟ ପରେ ପୁଣି ଲୁଗା କାମିଜ ପିନ୍ଧି ବ୍ୟସ୍ତ ଭାବରେ ପଦାକୁ ବାହାରି ଗଲେ । ବ୍ୟସ୍ତରେ କଉଠି ଗୋଡ଼ ଟିକେ ବାଜି ଗଲା ବୋଧହୁଏ, ସାମାନ୍ୟ ଛୋଟଉଥାନ୍ତି । ଗୋବର୍ଦ୍ଧନ ବାବୁ ତାଙ୍କୁ ଧୀରେ ଧୀରେ ଅନୁସରଣ କରି ଚାଲିଲେ । କିଛିଦୂର ଯାଇ ଗୋଲୋକ ବାବୁ ଗୋଟିଏ ଚାଳ ଘର ସାମନାରେ ଛିଡ଼ା ହୋଇ ଏଣେ ତେଣେ ଚାହିଁଲେ ଏବଂ ଖୁବ୍ ଧୀରେ ଧୀରେ ‘ବିପିନ, ବିପିନ’ ବୋଲି ଡାକିଲେ । ଘର ଭିତରୁ ଗୋଟିଏ ପନ୍ଦର ଷୋଳ ବର୍ଷର ଝିଅ ବାହାରି ଆସି କହିଲା, ବାପା ଗାଁକୁ ଯାଇଛନ୍ତି, ପଅର ଦିନ ଆସିବେ ।’ ଗୋଲୋକ ବାବୁ ବଡ଼ ବ୍ୟସ୍ତ ଭାବରେ ସେଠାରୁ ଫେରିଲେ । ସେ ଫେରିଯିବା ପରେ ଗୋବର୍ଦ୍ଧନ ବାବୁ ଘର ସାମନାରେ ବିପିନକୁ ଡାକିବାକୁ ଲାଗିଲେ । ସେହି ଝିଅଟି ପୁଣି ବାହାରି ଆସିଲା । ଗୋବର୍ଦ୍ଧନ ବାବୁ ତାକୁ ପଚାରି ଅନେକ କଥା ଜାଣି ପାରିଲେ, ବିପିନ ବେହେରା ଗୋଲୋକ ବାବୁଙ୍କ ଗାଁର ଲୋକ, ପୋଷ୍ଟମେନ୍ କାମ କରେ, ସେ ବର୍ତ୍ତମାନ ଧାନ କଟାକଟି ପାଇଁ ଗାଁକୁ ଯାଇଛି, ପ୍ରଥମେ ତାଙ୍କର ଜମି ଆଦି କିଛି ନ ଥିଲା - କିଛି ଦିନ ତଳେ ସେ ଖଣ୍ଡେ ଜମି କିଣିଛି ଇତ୍ୟାଦି । ଗୋବର୍ଦ୍ଧନ ବାବୁ ସନ୍ତୁଷ୍ଟ ହୋଇ ବସାକୁ ଫେରିଲେ । ରାସ୍ତାରେ ମୋତେ ସେ କହିଲେ, ‘‘ଡାକ୍ତର, ତୁମେ ବର୍ତ୍ତମାନ ବୋଧହୁଏ ଅନେକଟା ବୁଝି ପାରିଛନ୍ତି ।’’

କିନ୍ତୁ ମୁଁ ଆଦୌ କିଛି ବୁଝି ପାରି ନ ଥିଲି । ବସାକୁ ଫେରି ଗୋବର୍ଦ୍ଧନ ବାବୁ କହିଲେ ‘‘ପୁଲିସ କରୁଥିଲେ ତୁମର ଏଲୋପ୍ୟାଥିକ୍ ଚିକିତ୍ସା । ଏ ଚିକିତ୍ସା ଦ୍ୱାରା ରୋଗର ସବୁ ଲକ୍ଷଣ ସେମାନେ ଦବାଇ ଦେବାରୁ ଠିକ୍ ରୋଗଟି ଧରା ପଡ଼ିଲା ନାହିଁ । ବର୍ଷକ ପରେ ମୋ ହାତକୁ ଯେତେବେଳେ ଘଟଣାଟିର ଅନୁସନ୍ଧାନ ଭାର ଦିଆହେଲା ସେତେବେଳେ ଦେଖିଲି ଯେ ରୋଗର କୌଣସି ଲକ୍ଷଣ ବାହାରକୁ ପ୍ରକାଶ ପାଉନାହିଁ । ରୋଗଟି ତେଣୁ ବାହାରକୁ ଟାଣି ଆଣିବା ଠିକ୍ କଲି - ହୋମିଓପ୍ୟାଥି ଡାକ୍ତର ଯାହା କରନ୍ତି । ରୋଗଟି ଅନ୍ଦାଜ କରି ଗୋଟିଏ ପାନ ଔଷଧରେ - ଅର୍ଥାତ୍ ଖବରକାଗଜରେ ସେଇ ଲେଖାଟି ଦେଇ ମୁଁ ରୋଗର ପୂର୍ବର ସବୁ ଲକ୍ଷଣଗୁଡ଼ିକ ପୁଣି ବାହାରକୁ ଟାଣି ଆଣିପାରିଲି । ପୁଲିସ ବୈଜ୍ଞାନିକ ଭାବରେ ରୋଗଟି ଠିକ୍ ଅନ୍ଦାଜ ନ କରି ବାହାରର ସାମାନ୍ୟ କେତେକ ଲକ୍ଷଣ ଉପରେ ଭିତ୍ତି କରି ଯେଉଁ ଉପାୟ ଅବଲମ୍ବନ କଲେ ସେଥିରେ ମୂଳ ରୋଗଟି ସାବଧାନ ହୋଇଗଲା । ମୁଁ

ବୈଜ୍ଞାନିକ ଭାବରେ ଅନ୍ଦାଜ କରି ଯେଉଁ ଔଷଧଟି ଦେଲି ସେଥିରେ ଲୁଚି ଯାଇଥିବା ରୋଗର ଲକ୍ଷଣଗୁଡ଼ିକ ପୁଣି ବାହାରକୁ ଫୁଟି ପ୍ରକାଶ ପାଇଲା । ବର୍ଷକ ପରେ ଅନୁସନ୍ଧାନର ଭାରଟି ଦେବାରୁ ଏପରି କରିବା ଛଡ଼ା ମୋର ଅନ୍ୟ ଉପାୟ ନଥିଲା । ବର୍ତ୍ତମାନ ଦୋଷୀ ଧରିବାକୁ ବିଶେଷ କଷ୍ଟ ହେବ ନାହିଁ । କିନ୍ତୁ ମୋର ଭୟ ହେଉଛି ଯେ ଏଥିରୁ ଅନ୍ୟ କିଛି ବିଭ୍ରାଟ ଘଟିପାରେ । ବର୍ତ୍ତମାନ ପଅର ଦିନ ପର୍ଯ୍ୟନ୍ତ ଆଉ କିଛି କରିବାର ନାହିଁ ।''

କିନ୍ତୁ ପରଦିନ ସକାଳେ ଖବର ମିଳିଲା ବିପିନ ବେହେରା ଆତ୍ମହତ୍ୟା କରିଛି । ଗୋବର୍ଦ୍ଧନ ବାବୁ ଖବରଟି ପାଇ ବ୍ୟସ୍ତ ହୋଇ ମୋତେ ଡାକି ବିପିନ ବସାକୁ ବାହାରିଲେ । ଜଣା ଗଲା, ସେ ସମସ୍ତ ଦୋଷ ସ୍ୱୀକାର କରି ଆତ୍ମହତ୍ୟା କରିଛି । ପକେଟରୁ ଅନ୍ୟାନ୍ୟ କେତେକ ଜିନିଷ ଭିତରୁ ବାହାରିଲା ଗୋଟିଏ ହିସାବ ଖାତା, ଗୋଟିଏ ସାନ ବିଷ ଶିଶି ଓ ଖଣ୍ଡେ ଖବରକାଗଜ ଯେଉଁଥିରେ ଗୋବର୍ଦ୍ଧନ ବାବୁଙ୍କର ସେହି ସଂବାଦଟି ବାହାରିଥିଲା । ଗୋବର୍ଦ୍ଧନ ବାବୁ ଘରଟି ଓ ଶବ ଅନେକକ୍ଷଣ ପରୀକ୍ଷା କରି କହିଲେ, ''ଆତ୍ମହତ୍ୟା ହେଉ ବା ନ ହେଉ ଘଟଣା ପୂର୍ବରୁ ସେ ବାହାରକୁ ଯାଇଥିଲା କାହିଁକି ? ଦେଖନ୍ତୁ ଗୋଡ଼ଟି ଯେଉଁ ପର୍ଯ୍ୟନ୍ତ ଧୁଆ ହୋଇଛି ତା' ଉପରକୁ ଗାଁର ମାଟିଆ ଧୂଳି ଏବଂ ଧୂଆ ହେବା ଅଂଶ ଉପରେ ପଡ଼ିଛି କଟକର ଲାଲ ଧୂଳି । ମୋର ମନେ ହୁଏ ଗାଁରୁ ଆସି ସଙ୍ଗେ ସଙ୍ଗେ ଗୋଡ଼ ହାତ ଧୋଇ ସେ ପୁଣି ବାହାରକୁ ଯାଇଥିଲା, ଏ ବିଷ ସେ ପାଇଲା କେଉଁଠୁ ? ବିଷ ଖାଇ ବିଷ ବୋତଲ ପକେଟରେ ରଖିବା ଅସ୍ୱାଭାବିକ । ମୋର ମନେ ହୁଏ ଏହି ଶିଶିରୁ ସେ ବିଷ ଖାଇ ନାହିଁ । ତା'ର ଦାନ୍ତରେ ବିସ୍କୁଟର କେତେକ ଅଂଶ ଲାଗି ରହିଛି (ଗୋବର୍ଦ୍ଧନ ବାବୁ ଶବର ବାଁ କଳରେ ଆଙ୍ଗୁଠି ଭର୍ତ୍ତି କରି ଟାଣି ଆଣି ଦେଖାଇଲେ) । ଏଥିରୁ ପ୍ରମାଣିତ ହୁଏ, ଗାଁରୁ ଆସିବା ମାତ୍ରକେ ସେ ଯାହା ଘରକୁ ଯାଇଥିଲା ସେଠାରେ ତାହା ବିସ୍କୁଟ ଖାଇଥିଲା ଏବଂ ଖୁବ୍ ସମ୍ଭବ ତାହା ସହିତ ବିଷ ମିଶାଇ ତାହାକୁ ଦିଆ ହୋଇଥିଲା । ହେଇ ଦେଖନ୍ତୁ କାହାର ଜୋତାଚିହ୍ନ । ଏ ଚିହ୍ନ ଠିକ୍ - । ବିପିନ ଗାଁକୁ ଯାଇଥିଲା । ସେଠି ଆତ୍ମହତ୍ୟା ନ କରି କଟକକୁ ଆସିବା ସଙ୍ଗେ ସଙ୍ଗେ ଆତ୍ମହତ୍ୟା କରିବାର ମାନେ କ'ଣ ? ଏସବୁର କାରଣରୁ ମୋର ମନେହୁଏ ଏ ଆତ୍ମହତ୍ୟା ନୁହଁ । ମୋର ମନେହୁଏ -''

ଆତ୍ମହତ୍ୟାର ଖବର ପାଇ ପୁଲିସ ଇନ୍ସପେକ୍ଟର ସେଠାରେ ଉପସ୍ଥିତ ଥିଲେ । ସେ କହିଲେ, ''ଏ ଚିଠି ତ ତା'ର ହାତର ଲେଖା । ଆପଣ ତା'ରି ଅନ୍ୟାନ୍ୟ ହାତ ଲେଖା ସହିତ ମିଳାଇ ଦେଖନ୍ତୁ ନା । ଏଥିରେ ଆଉ ସନ୍ଦେହ କରିବାର କ'ଣ ଅଛି ?''

ଗୋଲୋକ ବାବୁ ଏହି ସମୟରେ ବ୍ୟସ୍ତ ଭାବରେ ପ୍ରବେଶ କଲେ । ଗୋବର୍ଦ୍ଧନ ବାବୁ ଇନ୍ସପେକ୍ଟରଙ୍କ କୌଣସି ଉତ୍ତର ନ ଦେଇ ଗୋଲୋକ ବାବୁଙ୍କୁ ସଙ୍କେତରେ ବାହାରକୁ ଡାକିଲେ । ମୁଁ ମଧ୍ୟ ବାହାରକୁ ଗଲି । ଗୋଲୋକ ବାବୁଙ୍କର ଚେହେରାର ପରିବର୍ତ୍ତନ ଦେଖି ମୁଁ ଆଶ୍ଚର୍ଯ୍ୟ ହୋଇଗଲି । ବାହାରକୁ ଆସି ଗୋବର୍ଦ୍ଧନ ବାବୁ ଗୋଲୋକ ବାବୁଙ୍କ କାନ୍ଧରେ

ହାତରଖି କହିଲେ, ''ଗୋଲୋକ ବାବୁ, ଏହି ହତ୍ୟା ବିଷୟରେ ଆପଣଙ୍କ ସହିତ ମୋର କେତେକ କଥା ଅଛି । ଦୟା କରି ଆପଣଙ୍କ ବସାକୁ ଚାଲନ୍ତୁ ।'' ହତ୍ୟା କଥା ଶୁଣି ଗୋଲୋକ ବାବୁ ଟିକିଏ ଚମକି ପଡ଼ିଥିଲେ କିନ୍ତୁ ପରମୁହୂର୍ତ୍ତରେ ନିଜକୁ ସମ୍ଭାଳି ନେଇ କହିଲେ ''ଆପଣ ଏହାକୁ ହତ୍ୟା ବୋଲି ସାବ୍ୟସ୍ତ କରିବା ପାଇଁ କିଛି ବିଶେଷ କାରଣ ଅଛି କି ? ଆପଣ ବା କିଏ ଯାହାର ଆଦେଶ ମୁଁ ପାଳନ କରିବାକୁ ବାଧ ହେବି ? ଆପଣ ନିଶ୍ଚୟ ପୁଲିସ୍‌ର ଲୋକ ନୁହଁନ୍ତି ?''

ଗୋବର୍ଦ୍ଧନ ବାବୁ ଟିକିଏ ହସି କହିଲେ, ''ଆପଣଙ୍କ ସୌଭାଗ୍ୟ ଯେ ମୁଁ ପୁଲିସ୍‌ର ଲୋକ ନୁହେଁ । ମୁଁ ଯାହା ଜାଣି ପାରିଛି ତାହା ଯଦି ପୁଲିସ ଜାଣି ପାରେ ତା'ହେଲେ ଆପଣଙ୍କ ରକ୍ଷା ନାହିଁ । କିନ୍ତୁ ମୋର ଯଥେଷ୍ଟ ଆଶା ଅଛି ଯେ ପୁଲିସ ଏ ରହସ୍ୟ ଭେଦ କରିପାରିବ ନାହିଁ । ଅତଏବ ଏଠାରେ ଆଉ ନ ରହି ଚାଲନ୍ତୁ ଆପଣଙ୍କ ଘରକୁ ।''

ଏକଥା ପରେ ଗୋଲୋକ ବାବୁ ଯନ୍ତ୍ରଚାଳିତ ପରି ଗୋବର୍ଦ୍ଧନ ବାବୁଙ୍କୁ ଅନୁସରଣ କଲେ । ଗୋଲୋକ ବାବୁଙ୍କ ଘରେ ପହଞ୍ଚି ଗୋବର୍ଦ୍ଧନ ବାବୁ କହିଲେ, ''ମୋର ଆଉ ସନ୍ଦେହ ନାହିଁ ଯେ ତ୍ରିପୁରା ମହାରାଜାଙ୍କ ଚେକ୍‌ଟି ଆପଣ ଜାଲ କରି ଅଛନ୍ତି । ମୁଁ ଅନୁସନ୍ଧାନ ଦ୍ୱାରା ଯାହା ଜାଣି ପାରିଛି ତାହା କହିଯାଉଛି । ଯେଉଁଠି ଭୁଲ୍ ହେବ ଆପଣ ମୋତେ ସଂଶୋଧନ କରିଦେବେ । ତ୍ରିପୁରା ମହାରାଜା ଆପଣଙ୍କ ଭାଇଙ୍କ ପାଖକୁ ୫୭୫ଟଙ୍କା ଚେକ୍ ଯୋଗେ ପଠାଇବା କଥା ଆପଣ ଜାଣି ପାରିଥିଲେ । ଜାଣିବା ଦିନରୁ ଆପଣ ସେହି ଚେକ୍‌ଟି ଜାଲ୍ କରିବା ପାଇଁ ସିଦ୍ଧାନ୍ତ କରି ସାରିଥିଲେ । ମହାରାଜା ଯେ ଚେକ୍ ଯୋଗେ ଟଙ୍କା ପଠାଇବେ ଏ କଥା ଆଉ କେହି ଜାଣିବା ସମ୍ଭବ ନୁହଁ । ମୁଁ ସନ୍ଧାନ ନେଇ ଜାଣିଛି ଯେ, ଯେଉଁ ଘରଟି 'କର ବ୍ରଦର୍ସ'-ଅର୍ଥାତ୍ ଆପଣ-ଭଡ଼ା ନେଇଥିଲେ ସେହି ଘର ଆପଣ, ନିଜର ଜଣେ ବନ୍ଧୁଙ୍କ ପାଇଁ ଭଡ଼ା ନେବେ ବୋଲି କହି ଅଟକାଇ ରଖିଥିଲେ । ଫେବ୍ରୁୟାରି ୨୬ ତାରିଖ ଦିନ ଆପଣ ଘରର ମାଲିକଙ୍କୁ କହି ଆସିଲେ, ଆପଣଙ୍କ ବନ୍ଧୁ ଆସିବେ ନାହିଁ, ତେଣୁ ଅନ୍ୟ କାହାରିକୁ ସେ ଘର ଭଡ଼ା ଦେଇପାରନ୍ତି । ସେହିଦିନ 'କର ବ୍ରଦର୍ସ' ଘରଟି ଭଡ଼ା ନେଲେ । ତ୍ରିପୁରାରୁ କଟକ ଏବଂ କଟକରୁ ତ୍ରିପୁରାକୁ ଚିଠି ପଞ୍ଚମ ଦିନରେ ପହଞ୍ଚେ । ମହାରାଜା ୨୨ ତାରିଖରେ ଯେଉଁ ଚେକ୍ ପଠାଇଲେ ତାହା ୨୬ ତାରିଖ ଦିନ ଆପଣ ପାଇଛନ୍ତି । ବାହାରର କୌଣସି ଲୋକ ହୋଇଥିଲେ ସେହି ଦିନ ସେ ଅବଶ୍ୟ ଚେକ୍‌ଟି ଭଙ୍ଗାଇ ନିଅନ୍ତା, କିନ୍ତୁ ଏତେ ଶୀଘ୍ର ଏଡ଼େ ସୁନ୍ଦର ଭାବରେ ନିଶ୍ଚିହ୍ନ ହେବା ତା' ପକ୍ଷରେ ସମ୍ଭବ ହୁଅନ୍ତା ନାହିଁ । ତେଣୁ ସ୍ଥାନୀୟ କୌଣସି ଲୋକ ଏହା କରିଛି ବୋଲି ମୋର ପ୍ରଥମେ ହିଁ ସନ୍ଦେହ ହୋଇଥିଲା । ଆପଣଙ୍କ ଉପରେ ସନ୍ଦେହ ହେବା ସ୍ୱାଭାବିକ୍, କାରଣ ଡଃ ପ୍ରଧାନ ତାଙ୍କ ଚିଠିପତ୍ର ଦେଖିବା ଆଗରୁ ଆପଣ ସେସବୁ ଦେଖନ୍ତି । ଆପଣ ଭାବିଥିଲେ ଚେକଟି ରେଜିଷ୍ଟାର୍ଡ ଡାକରେ ଆସିବ, ତେଣୁ ଆପଣ ନିଜ ଗାଁର ପୋଷ୍ଟମେନ୍

ବିପିନକୁ ହାତ କରିବାର ଚେଷ୍ଟା କରିଥିଲେ । କିନ୍ତୁ ଚେକଟି ସାଧାରଣ ଲଫାପାରେ ଆସିବାରୁ ତାହାର ସାହାଯ୍ୟ ଦରକାର ହେଲା ନାହିଁ । ଆପଣ କିପରି ଚେକଟିରେ ଲିଖିତ ଟଙ୍କାର ଅଙ୍କ ଓ ପ୍ରାପକର ନାମ ଉଠାଇ ଦେଇ ଚେକ୍‌ଟି ଏଡ଼େ ସୁନ୍ଦର ଭାବରେ ଜାଲ କଲେ ତାହା ଅବଶ୍ୟ ମୁଁ ଜାଣି ପାରି ନାହିଁ । ଆପଣ ଯେଉଁ ସବୁ କେମିକାଲ ବ୍ୟବହାର କରି ଏହା କରିଛନ୍ତି ସେସବୁ ନିଶ୍ଚୟ ବର୍ତ୍ତମାନ ଆପଣଙ୍କ ଘରେ କେଉଁଠି ଅଛି । ବିପିନ କିନ୍ତୁ ଚେକ ଆସିବା କଥା ଜାଣିପାରିଥିବାରୁ ଘଟଣାଟି ପ୍ରକାଶ ପାଇବା ପରେ ଆପଣଙ୍କୁ ଭୟ ଦେଖାଇଲେ । ଆପଣ ତାକୁ ସନ୍ତୁଷ୍ଟ କରିବା ପାଇଁ ଅନେକ ଟଙ୍କା ଦେଲେ । ଆପଣ ଏତେ ଟଙ୍କା ବେଙ୍କରେ ନ ରଖିବାରୁ ଏବଂ ଆପଣ ଜଣେ ଖ୍ୟାତନାମା ଓକିଲ ହୋଇଥିବାରୁ ପୁଲିସ ଆପଣଙ୍କୁ ସନ୍ଦେହ କରିନାହିଁ । କିନ୍ତୁ ମୁଁ ସମ୍ବାଦଟି ଖବରକାଗଜରେପ୍ରକାଶ କରିବା ପରେ ଆପଣଙ୍କ ଦୋଷର ଲକ୍ଷଣ ସବୁ ବାହାରକୁ ପ୍ରକାଶ ପାଇଲା । ବିପିନକୁ ଆପଣ ହତ୍ୟା କରିଛନ୍ତି । ବିପିନ ଖବରକାଗଜରୁ ତା'ର ଗ୍ରାମରେ ସମ୍ବାଦଟି ପଢ଼ି ସାଙ୍ଗେ ସାଙ୍ଗେ ଆପଣଙ୍କ ନିକଟକୁ ଆସିଥିଲା । ଆପଣ ସେତେବେଳେ ତାକୁ ଚାହା ସହିତ ବିଷ ଦେଲେ । ଆଗରୁ ଆପଣ ଏ ବିଷୟରେ ସିଦ୍ଧାନ୍ତ ନିଶ୍ଚୟ କରିଥିଲେ କାରଣ ବିପିନ ପକେଟରୁ ଯେଉଁ ଚିଠି ଖଣ୍ଡକ ବାହାରିଲା ତାହା ବିପିନ ଲେଖିନାହିଁ, ଲେଖିଛନ୍ତି ଆପଣ । ଚିଠିଟି ଗୋଟିଏ ପଇସିକିଆ କାଗଜରେ ଲେଖା - ଯେଉଁ କାଗଜରେ ଦଲିଲ ଆଦି ଲେଖା ହୁଏ । ଏ କାଗଜ ଥାଏ ଓକିଲମାନଙ୍କ ଘରେ । ବିପିନକୁ ବିଷ ଦେଇ ତାକୁ ଆପଣ ଶୀଘ୍ର ଆପଣଙ୍କ ଘରୁ ବାହାର କରି ଦେଲେ ଏବଂ ତାହା ପଛେ ପଛେ ଆସି ସେ ମରିବା ପରେ ଏ ଚିଠିଟି ଏବଂ ବିଷ ବୋତଲଟି ତାହା ପକେଟରେ ରଖିଦେଲେ । ସେ ଆତ୍ମହତ୍ୟା କରିଛି ଏହା ପ୍ରମାଣ କରିବା ପାଇଁ ଆପଣ ଯାହା ଯାହା କଲେ ଠିକ୍ ସେହି ଗୁଡ଼ିକ ହିଁ ତାହା ଅପ୍ରମାଣ କରୁଅଛି- ଅବଶ୍ୟ ବୁଦ୍ଧିମାନ୍ ଲୋକ ନ ହେଲେ ତାହା ଧରିବା ଅସମ୍ଭବ । ଆପଣଙ୍କର ଯଦି ଅନ୍ୟ କିଛି କହିବାର ଥାଏ ତ କୁହନ୍ତୁ ।''

ଗୋଲୋକ ବାବୁ କେବଳ ତଳକୁ ମୁହଁ ପୋତି ବସି ରହିଲେ । ଗୋବର୍ଦ୍ଧନ ବାବୁ କିଛିକ୍ଷଣ ଅପେକ୍ଷା କରି କହିଲେ, ''କିନ୍ତୁ ଗୋଟାଏ କଥା ବୁଝିପାରୁ ନାହଁ । ଆପଣ ଏତେ ଗୁଡ଼ିଏ ଟଙ୍କା କଲେ କ'ଣ ?''

ଅନେକକ୍ଷଣ ପରେ ଗୋଲୋକ ବାବୁ ମୁହଁ ଟେକି କହିଲେ, ''ଓଃହୋ, ମୁଁ ଯଦି ଟିକିଏ ସନ୍ଦେହ କରି ଥାଆନ୍ତି ଯେ ସେ ସମ୍ବାଦଟି ଫାଙ୍କି... ଯାଃ... ସବୁ ସରିଗଲା ।'' ଏପରି ପରିସ୍ଥିତିରେ ମଧ୍ୟ ଗୋଲୋକ ବାବୁ ତାଚ୍ଛଲ୍ୟର ସ୍ୱରରେ କହିଲେ, ''ସଂସାରର ଲୀଳା ଖେଳ ସରିଲା ଆମ୍ଭର... ମୋର କିଛି ଅଧିକା କହିବାର ନାହିଁ । ଏ ଟଙ୍କାରୁ ଗୋଟିଏ ପଇସା ସୁଦ୍ଧା ମୁଁ ବ୍ୟୟ କରି ନାହିଁ ମୋ ପାଇଁ । ଏ ଟଙ୍କାରେ ଯାହା ହୋଇଛି ତାହା ସମଗ୍ର ପୃଥିବୀର ମଙ୍ଗଳ ପାଇଁ । ଆପଣ ଅଳ୍ପ ଦିନ ପରେ ଖବର ପାଇବେ ଡଃ ପ୍ରଧାନଙ୍କ

ହୃଦ୍‌ରୋଗ ବିଷୟରେ ଅପୂର୍ବ ମୌଳିକ ଗବେଷଣା ସଫଳ ହୋଇଛି । ଏ ଗବେଷଣା ପୃଥିବୀରେ ଚାଞ୍ଚଲ୍ୟ ସୃଷ୍ଟି କରିବ । କିନ୍ତୁ ଏ ଗବେଷଣା ପାଇଁ ଯେଉଁ ବିପୁଳ ଅର୍ଥ ବ୍ୟୟ ହୋଇଛି ତାହା ମୋର ନିଜର ସମ୍ପତ୍ତି ଅଳଙ୍କାର ଆଦି ବିକ୍ରୟ କରି ସୁଦ୍ଧା ଯୋଗାଇ ନ ପାରିବାରୁ ମୁଁ ଏ ପନ୍ଥା ଅବଲମ୍ବନ କରିଛି । ତେଣୁ ମୋର କୌଣସି ଆକ୍ଷେପ ନାହିଁ । ମୋର କେବଳ ଦୁଃଖ ଯେ ବଡ଼ଭାଇ ଯଦି ଜାଣି ପାରନ୍ତି...ତେବେ... ।'' ତା'ପରେ ଅନୁନୟର କଣ୍ଠରେ ସେ କହିଲେ, ''ଗୋବର୍ଦ୍ଧନ ବାବୁ, ଆପଣଙ୍କୁ ମୋର ବିନୀତ ଅନୁରୋଧ, ଆଉ ଗୋଟିଏ ସପ୍ତାହ ପାଇଁ ଅନ୍ତତଃ ଏ କଥାଟି ଗୋପନ ରଖନ୍ତୁ । ତାଙ୍କର ଏ ଗବେଷଣା ପାଇଁ ବହୁ ଅର୍ଥର ପ୍ରୟୋଜନ ଥିଲା । ଟଙ୍କା ପାଇଁ ଭାବି ଭାବି ସେ ପ୍ରାୟ ଆତ୍ମହତ୍ୟା କରିବାକୁ ବସିଥିଲେ । ମୁଁ ସହ୍ୟ କରି ନ ପାରି... ଆଉ ମାତ୍ର ସପ୍ତାହେ । ତା'ପରେ ମୁଁ ଆପଣଙ୍କ ପାଖରେ ଉପସ୍ଥିତ ହେବି... ଆପଣ ଯାହା ଇଚ୍ଛା ସେତେବେଳେ କରିପାରନ୍ତି ।'' ସେ ଆବେଗରେ ଗୋବର୍ଦ୍ଧନ ବାବୁଙ୍କ ଗୋଡ଼ ଧରିବାକୁ ଯାଉଥିଲେ । ଗୋବର୍ଦ୍ଧନ ବାବୁ ବାଧା ଦେଇ କହିଲେ, ''ମୁଁ କିନ୍ତୁ ନିରୁପାୟ ।''

ସେହି ମୁହୂର୍ତ୍ତରେ ମୋର ଗୋବର୍ଦ୍ଧନ ବାବୁଙ୍କ ଉପରେ ଯେଉଁ କ୍ରୋଧ ଜାତ ହେଲା ତାହା କୌଣସି ମତେ ଦମନ କରି ପାରିଥିଲି ।

ଗୋବର୍ଦ୍ଧନ ବାବୁ ସେଠାରୁ ମୋତେ ପ୍ରାୟ ଟାଣି ବାହାର କରି ଆଣିଲେ । ବସାକୁ ଆସି ଦେଖିଲି ତାଙ୍କର ଆଖି ଦିଓଟି ଛଳ ଛଳ । ଜୀବନରେ ସେହି ଥରେ ମାତ୍ର ମୁହୂର୍ତ୍ତକ ପାଇଁ ମୁଁ ତାଙ୍କ ଆଖିରେ ଲୁହର ଆଭାସ ଦେଖିଛି ।

ପରଦିନ ସକାଳେ ଖବର ପାଇଲି ଗୋଲୋକ ବାବୁ ଆତ୍ମହତ୍ୟା କରିଛନ୍ତି । ଗୋବର୍ଦ୍ଧନ ବାବୁଙ୍କୁ ଖବରଟି ଦେବାକୁ ଯାଇ ଦେଖିଲି ସେ ତଳକୁ ମୁହଁ ପୋତି ବସି ଅଛନ୍ତି । ମୋତେ ଦେଖିପାରି ସେ କହିଲେ, ''ଡାକ୍ତର, ମୁଁ ଜାଣେ । ଦେଖ ଡାକ୍ତର, ଲେନିନ୍ କହିଛନ୍ତି ଲକ୍ଷ୍ୟ ମହତ୍ ଥିଲେ ତା'ର ସାଧନ ପାଇଁ ଯେକୌଣସି ପନ୍ଥା ଅବଲମ୍ବନ କରାଯାଇପାରେ, ମାତ୍ର ଗାନ୍ଧିଜୀ କହନ୍ତି, ମହତ୍ ଉଦ୍ଦେଶ୍ୟ ମହତ୍ ପନ୍ଥାରେ ହିଁ ସାଧିତ ହୋଇପାରେ । ଯଥାର୍ଥରେ ପନ୍ଥା ଯଦି ନୀଚ ହୁଏ, ସେଥିରେ ଲକ୍ଷ୍ୟର ମହତ୍ତ୍ୱ ରହିବ ନାହିଁ, ପୁଣି ତା'ଉପରୁ ଲୋକଙ୍କର ଆସ୍ଥା କମିଯିବ ।'' ଏତିକି କହି ସେ ନୀରବ ରହିଲେ ।

ଏ ଅନୁସନ୍ଧାନରେ ଗୋବର୍ଦ୍ଧନ ବାବୁ ଗୋଟିଏ ସମ୍ପୂର୍ଣ୍ଣ ନୂତନ ଉପାୟ ଆବିଷ୍କାର କରିଥିଲେ । ସେ ଉପାୟରେ ନାମ ସେ ରଖିଥିଲେ ''ହୋମିଓପ୍ୟାଥିକ ପଦ୍ଧତି ।'' ଏଥିପାଇଁ ପୁଲିସଠାରେ ସେ ବହୁ ପ୍ରଶଂସା ମଧ୍ୟ ପାଇଛନ୍ତି । ପୁଲିସ ସ୍ୱୀକାର କରିଛି ଯେ ବହୁ ପୁରୁଣା ରୋଗ ଭଳି ବହୁ ପୁରୁଣା ଅପରାଧ ପକ୍ଷରେ ହୋମିଓପ୍ୟାଥିକ ପଦ୍ଧତି ଅତି ଫଳପ୍ରଦ । ଏ ପଦ୍ଧତି ବୁଝାଇବାକୁ ଯାଇ ଗୋବର୍ଦ୍ଧନ ବାବୁ କୁହନ୍ତି କେବଳ କୌଣସି ଅପରାଧ ଅନୁସନ୍ଧାନ ପକ୍ଷରେ ଏ ପଦ୍ଧତି ଯେ ପ୍ରଯୁଜ୍ୟ ତା' ନୁହଁ; ଅନେକ ସମୟରେ ଦେଖାଯାଏ ଯୁଗ ଯୁଗ ଧରି

ନାନା ଦମନ ଫଳରେ ହୁଏତ ଗୋଟିଏ ମନୁଷ୍ୟ ସମାଜରେ ନାନା ବିକୃତି ଦେଖା ଦେଇଛି । ଏହାର ମୂଳ କାରଣ ଧରି ନ ପାରି କୌଣସି ମୂର୍ଖ ଶାସକ ଅଧିକରୁ ଅଧିକ ଦମନର ବ୍ୟବସ୍ଥା କରେ- ନାନା ଦମନମୂଳକ ଆଇନ ପାସ ହୁଏ । ଯେଉଁ ଶାସନ ଯେତେ ଦମନମୂଳକ ଆଇନ ଉପରେ ପ୍ରତିଷ୍ଠିତ, ସେ ଶାସନ ସେତେ ଦୁର୍ବଳ । ବହୁ ଆଇନ ଶାସକର ଲୋକପ୍ରିୟତା ବା ଶକ୍ତିର ପରିଚୟ ଦିଏ ନାହିଁ । ଏପରି ଆଇନ ପାସ କରିବା ଦ୍ୱାରା ସମାଜରେ ମୂଳଦୋଷ ଲୁଚିଯାଇ ନାନା ବିକୃତି ରୂପରେ ଦେଖାଦିଏ ଏବଂ ଯେତେ ବିକୃତି ବଢ଼େ ସେତେ ଆଇନ ବଢ଼େ ଏବଂ ଯେତେ ଆଇନ ବଢ଼େ ସେତେ ବିକୃତି ବଢ଼େ । ଠିକ୍ ଏତିକିବେଳେ ଏହି ପ୍ରକାର ପୁରୁଣା ରୋଗ ପାଇଁ ଦରକାର ହୋମିଓପ୍ୟାଥିକ ପଦ୍ଧତି । ଠିକ୍ ମୌଳିକ ଦୋଷଟି କ'ଣ ଅନ୍ଦାଜ କରି ବା ଅନୁସନ୍ଧାନ କରି ସେ ଦିଗରେ ପୂର୍ଣ୍ଣ ସ୍ୱାଧୀନତା ଦେଲେ ରୋଗଟି ପ୍ରଥମେ ବଢ଼ିବ କିନ୍ତୁ କ୍ରମେ କ୍ରମେ ତାହା ସ୍ୱାଭାବିକ ଭାବରେ କମି ଆସିବ ।'' ଏ ପନ୍ଥାଟି ସତେ ଅପୂର୍ବ ମନେ ହେଲା । କିନ୍ତୁ ତଥାପି ଗୋବର୍ଦ୍ଧନ ବାବୁ ଅନେକ ଦିନ ପର୍ଯ୍ୟନ୍ତ ମନଃ କଷ୍ଟରେ କାଳ କଟାଇଲେ । ମହାରାଜାଙ୍କ ପ୍ରଦତ୍ତ ପୁରସ୍କାର ସେ ଗ୍ରହଣ କଲେ ସତ; କିନ୍ତୁ ତାହା ଦାନ କଲେ ଡଃ ପ୍ରଧାନଙ୍କ ଗବେଷଣାଗାରକୁ ।

ଗୋଲକ ବାବୁଙ୍କ ଆତ୍ମହତ୍ୟାର ଦୁଇଦିନ ପରେ ଡଃ ପ୍ରଧାନଙ୍କ ଗବେଷଣା ପୃଥିବୀର ଚିକିତ୍ସା ବିଜ୍ଞାନରେ ଯେଉଁ ଆମୂଳ ପରିବର୍ତ୍ତନ ଆଣିଲା ତାହା ପ୍ରତ୍ୟେକଙ୍କୁ ଜଣା । କିନ୍ତୁ ଏହା ପଛରେ ଯେଉଁ କରୁଣ ଘଟଣାଟି ନିହିତ, ତାହା ବହୁ ବର୍ଷ ପରେ ଆଜି ମୁଁ ପ୍ରକାଶ କଲି ।



# ନର ଛଞ୍ଚାଣ

ମୋର ମନେହୁଏ, ଦୁର୍ବଳତା ହିଁ ଆମକୁ ଶକ୍ତି ଦିଏ ଏବଂ ଯାହାକୁ ଆମେ ଶକ୍ତି ବୋଲି ଗର୍ବ କରୁ ତାହା ହିଁ ଆମର ଦୁର୍ବଳତାର କାରଣ ହୁଏ । ମଧ୍ୟଯୁଗରେ ଧର୍ମ ନାମରେ ଯେତେ ଯୁଦ୍ଧ ବା ଅତ୍ୟାଚାର ହୋଇଥିଲା ଏ ଯୁଗରେ ରାଜନୀତି ନାମରେ ତାଠୁଁ ବେଶୀ ଯୁଦ୍ଧ ଓ ଅତ୍ୟାଚାର ଚାଲିଛି । 'ଧର୍ମ'ର ସ୍ଥାନ ନେଇଛି ରାଜନୀତି । ଜନସାଧାରଣଙ୍କ ଅବସ୍ଥା ଟିକିଏ ବି ବଦଳି ନାହିଁ ।

ଦ୍ୱିତୀୟ ମହାଯୁଦ୍ଧ ଆରମ୍ଭ ହେଲା ହେଲା ପରି । ହିଟଲର ଜର୍ମାନୀ ଜାତିକୁ ପ୍ରବଳ ଉଚ୍ଚକଣ୍ଠରେ କହୁଥାଆନ୍ତି ''ଜର୍ମାନୀ ଜାତି ପୃଥିବୀରେ ଏକମାତ୍ର ଆର୍ଯ୍ୟ ଜାତି, ସେମାନେ ଚିରନ୍ତନ ଏବଂ ଅଜେୟ ।'' ନିଜ ପ୍ରତି ତାଙ୍କର ମୋହ ଏହି ରୂପେ ପ୍ରକାଶ କରି ସେ ସମସ୍ତ ଜର୍ମାନୀ ଜାତିକୁ ପ୍ରେରଣା ଦେଉ ଥାଆନ୍ତି ଏବଂ ପ୍ରତ୍ୟେକ ଜର୍ମାନୀ ହୃଦୟରେ ଭାବୋନ୍ମତ୍ତ ବିଶ୍ୱାସ ସୃଷ୍ଟି କରି ଗୋଟିଏ ପରେ ଗୋଟିଏ ରାଜ୍ୟ ଜୟ କରୁ ଥାଆନ୍ତି । ସମଗ୍ର ପୃଥିବୀ ଜର୍ମାନୀର ଶକ୍ତି ଦେଖି ସ୍ତମ୍ଭିତ ହୋଇଗଲା । ଅଳ୍ପଦିନ ପରେ ଦ୍ୱିତୀୟ ମହାଯୁଦ୍ଧ ଆରମ୍ଭର ଘୋଷଣା ହୋଇଗଲା । ସମଗ୍ର ପୃଥିବୀର ପୁଞ୍ଜିପତିମାନେ ମୁହୂର୍ତ୍ତକେ ଦେଶପ୍ରେମୀ ହୋଇଗଲେ । ଭାରତର ସ୍ୱାଧୀନତା ସଂଗ୍ରାମ ସେତେବେଳେ ତୀବ୍ର ଆକାର ଧାରଣ କରିଥାଏ । ମୋର ମନେ ଅଛି ଗୋବର୍ଦ୍ଧନ ବାବୁଙ୍କୁ ଦିନେ ଭାରତର ସ୍ୱାଧୀନତା ସଂଗ୍ରାମ ବିଷୟରେ ପଚାରିବାରୁ ସେ କହିଲେ, ''ବୁଝିଲ ଡାକ୍ତର, ଅନ୍ୟ ଲୋକଙ୍କୁ ଶାସନ କରିବା ଖୁବ୍ ସହଜ, କିନ୍ତୁ ନିଜକୁ ଶାସନ କରିବା ଖୁବ୍ କଷ୍ଟ । ଇଂରେଜ ଯଦି ଆମକୁ ଟିକିଏ ମାନବିକତା ସହିତ ଶାସନ କରନ୍ତେ ତା'ହେଲେ କେବେ ହେଁ ମୁଁ ଦେଶର ସ୍ୱାଧୀନତା ପାଇଁ କଷ୍ଟ ସ୍ୱୀକାର କରନ୍ତି ନାହିଁ । କିନ୍ତୁ ସେମାନଙ୍କ ଶାସନ ଯେଉଁ ରୂପ ଧାରଣ କରିଛି ସେଥିରେ ସ୍ୱାଧୀନତା ଲାଭ ଭିନ୍ନ ଆଉ ଉପାୟ ନାହିଁ । ଲୋକର ମନ ଯଦି ସ୍ୱାଧୀନ ଥାଏ ଏବଂ ଶାସନ ଯଦି ମାନବିକତା ଦୃଷ୍ଟିରୁ ହେଉଥାଏ ତେବେ ଏ ଦେଶକୁ ଯିଏ ଶାସନ କରୁ ମୋର ସେଥିରେ ଆପତ୍ତି ନାହିଁ । ଶାସନ ଗୋଟାଏ ଏପରି ଜିନିଷ ଯାହା ଶାସକକୁ କ୍ରମେ କ୍ରମେ ଦୁର୍ବଳ କରି ପକାଏ ଏବଂ ପତନ ଆଡ଼କୁ ଟାଣିନିଏ ।'' ଗୋବର୍ଦ୍ଧନ ବାବୁଙ୍କ ମତ ମୋତେ ଭଲ ଲାଗି ନଥିଲା । କିନ୍ତୁ ସେ ଯାହାହେଉ, ମହାଯୁଦ୍ଧର ପ୍ରତିକ୍ରିୟା ଭାରତରେ ଯେଉଁ ବିକୃତି ସୃଷ୍ଟି କଲା ତାହା ହେଉଛି 'କଳାବଜାର' । ପୃଥିବୀର ଅନ୍ୟତମ ମନୀଷୀ ଚାର୍ଲି ଚାପଲିନ୍ କହିଅଛନ୍ତି ''ହତ୍ୟା ବ୍ୟବସାୟନୀତିର ହିଁ ସଂପ୍ରସାରଣ ।'' ଇଉରୋପରେ ଯେଉଁ

ହତ୍ୟାଲୀଳା ଆରମ୍ଭ ହେଲା ତାହା ବିକୃତ ରୂପରେ ଆରମ୍ଭ ହେଲା ଭାରତରେ 'କଳାବଜାର' ରୂପରେ ।

ଏହିପରି ପରିସ୍ଥିତିରେ ମୋର ମନ ସର୍ବଦା ଚଞ୍ଚଳ ଥାଏ । ଅନେକ ସମୟରେ ସ୍ୱାଧୀନତା ସଂଗ୍ରାମରେ ଯୋଗ ଦେବା କଥା ଭାବିଛି । କିନ୍ତୁ ମୁଁ ଭାରି ଭୀରୁ । ତେଣୁ ଅନ୍ୟ ଅନେକ ଉପାୟରେ ସ୍ୱାଧୀନତା ସଂଗ୍ରାମକୁ ସାହାଯ୍ୟ କଲେ ହେଁ ପ୍ରକାଶ୍ୟରେ କେବେ ହେଁ ତାହା କରିପାରିଲି ନାହିଁ । ସେତେବେଳେ ଯେଉଁମାନେ ସ୍ୱାଧୀନତା ସଂଗ୍ରାମରେ ପ୍ରକାଶ୍ୟ ଭାବେ ଯୋଗ ଦେଇଥିଲେ ସ୍ୱାଧୀନତା ପରେ ବର୍ତ୍ତମାନ ସେମାନେ ବାହାଦୁରି କରି କହନ୍ତି 'ଆମେ ଭାରତର ସ୍ୱାଧୀନତା ଆଣିଛୁ ।' ମୁଁ ଭାବେ ମୋ ପରି ଲୋକେ କ'ଣ ସ୍ୱାଧୀନତା ପାଇଁ ଚିନ୍ତା କରି ନାହାନ୍ତି ! ସ୍ୱାଧୀନତା ଯେତେ ସୁଖଦାୟକ ସେତେ ବିପଜ୍ଜନକ ମଧ୍ୟ । ଥୋକେ ଲୋକଙ୍କ ମନରେ ସ୍ୱାଧୀନତା ଆଣିଦିଏ ବିଜୟୋନ୍ମାଦ ଏବଂ ଥୋକେ ଲୋକଙ୍କ ମନରେ ଆଣିଦିଏ ହତାଶା । ଗୋବର୍ଦ୍ଧନ ବାବୁ ଏ ବିଷୟରେ ମୋତେ ଖଣ୍ଡେ ବହି ପଢ଼ିବାକୁ ଦେଇଥିଲେ । ବିଖ୍ୟାତ ମନସ୍ତତ୍ତ୍ୱବିଦ୍ ଏରିକ୍ ଫ୍ରମଙ୍କ ଲେଖା 'ଫିୟର ଅଭ୍ ଫ୍ରିଡମ୍' ଅର୍ଥାତ୍ ସ୍ୱାଧୀନତାର ଭୀତି । ଏ ବହିଟି ସମସ୍ତଙ୍କର ପଢ଼ିବା ଉଚିତ ।

ଗୋବର୍ଦ୍ଧନ ବାବୁଙ୍କ ମନ ହିମାଳୟ ପରି ସ୍ଥିର ଏବଂ ତାଙ୍କର ଭାବନା ହିମାଳୟର ଅଗଣିତ ଝରଣା ପରି ଦ୍ରୁତ । ମୁଁ ଡାକ୍ତରୀ ପାସ କରି ହାଉସ୍ ସର୍ଜନ ଥାଏ । ଗୋବର୍ଦ୍ଧନ ବାବୁ ତାଙ୍କର ରାସାୟନିକ ଗବେଷଣା ଓ ବିଶ୍ରାମ ବେଳେ ବେହେଲା ବାଦନରେ ବ୍ୟସ୍ତ ଥାଆନ୍ତି । ଦିନେ ଶୀତଦିନରେ ଗୋଟିଏ ରମଣୀୟ ସକାଳେ ଚାହାର ଧୂମାୟିତ ମୋହମାୟା ଉପଭୋଗ କରିବା ସମୟରେ ମୂର୍ତ୍ତିମାନ ବିଘ୍ନ ପରି ପୁଲିସ ଇନ୍ସପେକ୍ଟର ପ୍ରାଣବଲ୍ଲଭ ବାବୁଙ୍କ ଠାରୁ ଗୋଟିଏ କ୍ଷୁଦ୍ର ଚିଠି ଆସିଲା । ଚିଠିଟି ପଢ଼ିସାରି ଗୋବର୍ଦ୍ଧନ ବାବୁ ମୋତେ ପଢ଼ିବାକୁ ଦେଲେ । ପ୍ରାଣବଲ୍ଲଭ ବାବୁ ଲେଖିଛନ୍ତି-

କଟକ

୨୯.୧୧.'୪୧

ପ୍ରିୟ ଗୋବର୍ଦ୍ଧନ ବାବୁ,

ଗୋଟିଏ ଅତି ଚାଞ୍ଚଲ୍ୟକର ଘଟଣା ଘଟିଛି । ବିଖ୍ୟାତ କୋଟିପତି ବ୍ୟବସାୟୀ ଶ୍ରୀହର୍ଷଲାଲ ଧରମଦାସ ହଠାତ୍ ଅନ୍ତର୍ଦ୍ଧାନ ହୋଇଅଛନ୍ତି । ସକାଳେ ଖବର ପାଇ ମୁଁ ଶ୍ରୀହର୍ଷ ବାବୁଙ୍କ ଘରକୁ ଆସିଛି । ଅନୁଗ୍ରହ କରି ଆପଣ ଶୀଘ୍ର ଆସିଲେ ଭଲ ହୁଅନ୍ତା । ଆପଣଙ୍କର ଅନୁସନ୍ଧାନରେ ଯେପରି ବାଧା ନ ଜନ୍ମେ ଏଥିପାଇଁ ଶ୍ରୀହର୍ଷ ବାବୁଙ୍କ ଶୋଇବା ଘରେ ଥିବା କୌଣସି ଜିନିଷରେ ମୁଁ ହାତ ଦେଇ ନାହିଁ ।

ଇତି

ପ୍ରାଣବଲ୍ଲଭ

ଚିଠିଟି ପଢ଼ିସାରି ଗୋବର୍ଦ୍ଧନ ବାବୁଙ୍କ ଆଡ଼କୁ ଅନାଇଲି । ସେ ଟିକିଏ ହସି କହିଲେ ନୂଆ ଗବେଷଣା ଗୋଟିଏ ଆରମ୍ଭ କରିଛି । କିନ୍ତୁ ଏ ଘଟଣାଟିରେ ଯଥେଷ୍ଟ ରହସ୍ୟ ଥିଲା ପରି ଜଣା ଯାଉଛି । ବୁଦ୍ଧି ଦ୍ୱାରା ରହସ୍ୟ ଭେଦ କରିବାରେ ବୋଧହୁଏ ମୋର ଯୌନ ପ୍ରବୃତ୍ତି କେତେକଟା ଚରିତାର୍ଥ ହୁଏ । 'ମାନସିକ କ୍ରିୟା' ବିଷୟରେ ମୁଁ ଗୋଟିଏ ପ୍ରବନ୍ଧ ଲେଖୁଛି । ସେଥିରେ ଏ ବିଷୟରେ ମୁଁ ଗୋଟିଏ ନୂଆ ତଥ୍ୟ ଦେଇଛି । ସେ ଯାହାହେଉ, ରହସ୍ୟସୁନ୍ଦରୀର ସନ୍ଧାନ ପାଇଲେ ମୋର ବୁଦ୍ଧି ଉତ୍ତେଜିତ ହୁଏ-ମୁଁ ସ୍ଥିର ହୋଇ ରହିପାରେନା । ଚାଲ ଯିବା । ତମେ ନ ଗଲେ ଚଳିବ ନାହିଁ, ଜଣେ ଗୁଣମୁଗ୍ଧ ପାଖରେ ଥିଲେ ବୁଦ୍ଧି ଭଲ ଖୋଲେ । ଗୋବର୍ଦ୍ଧନ ବାବୁଙ୍କ ତୀକ୍ଷ୍ଣ ବୁଦ୍ଧିର ପ୍ରତ୍ୟେକ କାର୍ଯ୍ୟ ଦେଖିବାରେ ମୁଁ ମଧ୍ୟ ଗୋଟାଏ ଆନନ୍ଦ ପାଏ । ସେ ହୁଏତ କହି ପାରନ୍ତି ବୁଦ୍ଧି ନ ଥିବା ଲୋକର ଏ ବି ଗୋଟାଏ ବିକୃତି ।

ଦୁଇ ଖଣ୍ଡ ସାଇକେଲ ଧରି ଆମେ ବାହାରି ପଡ଼ିଲୁ ଏବଂ ଅଳ୍ପ ସମୟ ପରେ ଶ୍ରୀହର୍ଷ ବାବୁଙ୍କ ଘରେ ପହଞ୍ଚିଲୁ । ପ୍ରାଣବଲ୍ଲଭ ବାବୁ ଆମ ପାଇଁ ବାହାରେ ଅପେକ୍ଷା କରୁଥିଲେ । ଗୋବର୍ଦ୍ଧନ ବାବୁଙ୍କୁ ଦେଖି ସେ କହିଲେ, ''ଆପଣ ଆସିଲେ, ଭଲ ହେଲା । ମୁଁ ଏହାର କୌଣସି ପତ୍ତା ପାଉ ନାହିଁ । ଦୋମହଲାରେ ଶ୍ରୀହର୍ଷବାବୁଙ୍କ ଶୋଇବା ଘରକୁ ଚାଲନ୍ତୁ । ତେବେ ଗୋଟାଏ କଥା ମୁଁ କହି ରଖୁଛି ଯେ ସମସ୍ତ ଘଟଣାଟି ଶୁଣି ମୋର ସନ୍ଦେହ ହୁଏ ଏହା ଶ୍ରୀହର୍ଷ ବାବୁଙ୍କ ପୁଅର କର୍ମ । ଘରର ସମସ୍ତେ କହୁଛନ୍ତି ଯେ କାଲି ରାତିରେ ଦୁଇଜଣଙ୍କ ଭିତରେ ଭୀଷଣ କଳହ ହୋଇଥିଲା । ମୁଁ ତାକୁ ନଜରବନ୍ଦିରେ ରଖିଛି ।'' ଗୋବର୍ଦ୍ଧନ ବାବୁ କୌଣସି ମନ୍ତବ୍ୟ ନ କରି ସିଧା ଶୋଇବା ଘରକୁ ଗଲେ । ମୁଁ ମଧ୍ୟ ପଛେ ପଛେ ଗଲି । ଶୋଇବା ଘରଟି ଖୋଲା ଥିଲା । ଦୁଆର ମୁହଁ ସାମନାରେ ଥିବା ଖଟକୁ ଚାହିଁ ମୁଁ ଚମକି ପଡ଼ିଲି । ମୋର ଚମକିବାର କାରଣ ବୁଝିପାରି ଗୋବର୍ଦ୍ଧନ ବାବୁ କହିଲେ, ''ନା ଡାକ୍ତର, କେହି ଶୋଇ ନାହିଁ । ଦୁଇଟି ତକିଆକୁ ଚାଦର ଘୋଡ଼ାଇ ଏପରି କରା ହୋଇଛି ।''

ଗୋବର୍ଦ୍ଧନ ବାବୁ ତାଙ୍କର କାଚ ସାହାଯ୍ୟରେ ଘରର ଦୁଆର ମୁହଁ ଠାରୁ ପରୀକ୍ଷା ଆରମ୍ଭ କଲେ । ପରୀକ୍ଷା କରୁ କରୁ ସେ କହିବାକୁ ଲାଗିଲେ ''ଆପଣମାନେ କେହି ଏହା ଭିତରକୁ ନ ଆସି ଭଲ କରିଛନ୍ତି... ଏ ଖଟରେ ସେ କାଲି ରାତିରେ ଅଳ୍ପକ୍ଷଣ ପାଇଁ ଶୋଇଥିଲେ... ଶ୍ରୀହର୍ଷ ବାବୁଙ୍କ ବାଁ ଗୋଡ଼ ଟିକିଏ ଛୋଟା... ଶୋଇବା ପୂର୍ବରୁ ସେ ପାଇଖାନା ଯାଇଥିଲେ...ହଁ, ଏଇ ଝରକା ପାଖରେ ସେ କିଛିକ୍ଷଣ ଛିଡ଼ା ହୋଇଥିଲେ... ବୋଧହୁଏ ପାଇଖାନାରୁ ଆସିବା ପରେ... ଏହି ଶୃଙ୍ଖଳା କାଦୁଅ ନିଶ୍ଚୟ ପାଇଖାନା ପାଖର...ଆଃ-ହା, ସେ ଝରକା ପାଖେ ଛିଡ଼ା ହୋଇ ଗୋଡ଼ ଟେକି ରାସ୍ତା ଆଡ଼କୁ କାହିଁକି ଅନାଇଲେ ? ...ତା'ପରେ... ତା'ପରେ... ହଁ, ତା'ପରେ ସେ ଲୁଗା ପିନ୍ଧିବାକୁ ଏହି

ଅଲଗୁଣି ପାଖକୁ ଆସି ଲୁଗାପିନ୍ଧି... ଲୁଗାପିନ୍ଧି... ହଁ ଖଟ ପାଖକୁ ଗଲେ... ଖଟରେ ଅଳ୍ପକ୍ଷଣ ପାଇଁ ଶୋଇ ସେ ପ୍ରାୟ ଚମକି ଉଠିଲେ ଏବଂ... ଏବଂ... ଏବଂ ? ହଁ, ଏବଂ ଆସ୍ତେ ଆସ୍ତେ ପୁଣି ଝରକା ପାଖକୁ ଗଲେ... ବାସ୍, ଏଠି ଆଉ କିଛି ଜାଣିବାର ନାହିଁ... ଆପାତତଃ ।'' କେତେବେଳେ ତକିଆରେ ବା ସାମାନ୍ୟ ଟିକିଏ ଧୂଳି ପରୀକ୍ଷା କରି ଆଉ କେତେବେଳେ ତକିଆ ଶୁଂଘି ସେ ଉପରୋକ୍ତ କଥାଗୁଡ଼ିକ କହିଗଲେ । ଅଧିକାଂଶ ସମୟରେ ସେ ନଇଁପଡ଼ି କାଚ ସାହାଯ୍ୟରେ ଚଟାଣଟି ପରୀକ୍ଷା କରୁଥିଲେ ଏବଂ ମଝିରେ ମଝିରେ ପକେଟରୁ ଫିତା କାଢ଼ି ଚଟାଣରେ ବୋଧହୁଏ ପାଦଚିହ୍ନ ମାପୁଥିଲେ । ପରୀକ୍ଷା ଶେଷ କରି ସେ ସିଧା ହୋଇ ଛିଡ଼ା ହେଲେ ଏବଂ କିଛିକ୍ଷଣ ଭାବି ବାରନ୍ଦାକୁ ଗଲେ । ସେଠି ମଧ ସେ ଅନେକକ୍ଷଣ ଯାଏ ପରୀକ୍ଷା ଚଳାଇଲେ । ତାଙ୍କର ଅନେକ ଅନୁସନ୍ଧାନ ଦେଖି ମୋର ଅନେକ ଜ୍ଞାନ ହୋଇଛି । ଗୋଟିଏ ପଦଚିହ୍ନରୁ ଅନ୍ୟ ପଦଚିହ୍ନର ଦୂରତ୍ୱରୁ ଜଣାଯାଏ ଲୋକ କେତେବେଳେ ଧୀରେ ଧୀରେ ଆଉ କେତେବେଳେ ବା ଦ୍ରୁତ ଗତିରେ ଗମନ କରିଛି । ପାଦଚିହ୍ନର ସ୍ପଷ୍ଟତା ଓ ବିଭିନ୍ନ ସ୍ଥାନରେ ଚାପରୁ ଏହା ଜଣାଯାଏ । ତକିଆରେ ମୁଣ୍ଡର ଚିହ୍ନରୁ ବୋଧହୁଏ ସେ ଜାଣିପାରିଲେ ଶ୍ରୀହର୍ଷ ବାବୁ ଅଳ୍ପ ସମୟ ପାଇଁ ତକିଆରେ ମୁଣ୍ଡ ରଖିଥିଲେ ।

ବାରନ୍ଦା ପରୀକ୍ଷା ଶେଷ କରି ସେ କହିଲେ, ''ବାରନ୍ଦାରେ କାହା ସହିତ ଅନେକ କ୍ଷଣ ପର୍ଯ୍ୟନ୍ତ କଳହ ହୋଇଥିଲା । ଏହା ଘର ଭିତରକୁ ଆସିବା ଆଗରୁ କି ପରେ ମୁଁ କହିପାରୁ ନାହିଁ । ବାରନ୍ଦାର ଦୁଇଜଣ ଲୋକର ପଦଚିହ୍ନ ବହୁତ ଥର ଏପାଖ ସେପାଖ ଯାଆସ କରିଛି... ଏବଂ ମଝିରେ ମଝିରେ ଦ୍ରୁତ ଗତିରେ ମଧ । ଗୋଟିଏ ପଦଚିହ୍ନ ଶ୍ରୀହର୍ଷ ବାବୁଙ୍କର, ଅନ୍ୟଟି ବୋଧହୁଏ ତାଙ୍କର ପୁଅର । ଏଠି ଆଉ ବିଶେଷ କିଛି ଜାଣିବାର ନାହିଁ । ଘର ଭିତରର ଅନ୍ୟାନ୍ୟ ଜିନିଷ ପରୀକ୍ଷା କଲେ ନୂତନ ତଥ୍ୟ କିଛୁ ମିଳି ପାରେ ।''

ଏତେକ୍ଷଣ ଆମେ ସମସ୍ତେ ଦୂରରେ ଛିଡ଼ା ହୋଇଥିଲୁ । ବର୍ତ୍ତମାନ ସେ ଘର ଭିତରକୁ ଯିବାକୁ ଅନୁମତି ଦେଲେ । ଘରର ଗୋଟିଏ କଣରେ ଗୋଟିଏ ସାନ ଟେବୁଲ ପଡ଼ିଛି । ଟେବୁଲ ଉପରେ ଅନେକ କାଗଜ ପତ୍ର ଓ ଗୋଟିଏ ଘଡ଼ି ଅଛି । ଘଡ଼ିଟି ଉଠାଇ ନେଇ ଗୋବର୍ଦ୍ଧନ ବାବୁ ପରୀକ୍ଷା କଲେ । ଗୋଟିଏ ସାଧାରଣ 'ଏଲାର୍ମ' ଘଡ଼ି । 'ଏଲାର୍ମ' କଣ୍ଟା ବାରଟା ଉପରେ ଥିଲା । ଗୋବର୍ଦ୍ଧନ ବାବୁ ଘଡ଼ିର ଘଣ୍ଟା କଣ୍ଟାଟି ବୁଲାଇ ପୁଣି ବାରଟା ଉପରେ ରଖିଦେଲେ । ଏଲାର୍ମ ବାଜି ଉଠିଲା- ପ୍ରାୟ ମିନିଟେ ପର୍ଯ୍ୟନ୍ତ ବାଜିଲା ପରେ ଗୋବର୍ଦ୍ଧନ ବାବୁଙ୍କ ଶରୀର ଆସ୍ତେ ଆସ୍ତେ ସଙ୍କୁଚିତ ହୋଇ ଆସିଲା । ସେ ମୋ ଆଡ଼କୁ ଅନାଇ କହିଲେ, ''ଶ୍ରୀହର୍ଷ ବାବୁ କାଲି ରାତି ବାରଟାରେ ଏ ଘର ଛାଡ଼ିଛନ୍ତି । ସେ ଘଡ଼ିରେ ଏଲାର୍ମ ଦେଇ ରଖିଥିଲେ ଏବଂ ବାରଟା ଏଲାର୍ମ ବାଜିବା ସାଙ୍ଗେ ସାଙ୍ଗେ ସେ ଖଟ ଉପରୁ ଆସି ଏହା ବନ୍ଦ କରିଛନ୍ତି । ଏହି ଟିପ ଚିହ୍ନଟି ନିଶ୍ଚୟ ତାଙ୍କର (ମେଗ୍ନିଫାଇଙ୍ଗ କାଚ

ସାହାଯ୍ୟରେ ମୁଁ ଟିପଚିହ୍ନ ସ୍ପଷ୍ଟ ଦେଖି ପାରିଲି) ଏହାପରେ ସେ ଝରକା ପାଖକୁ ନିଶ୍ଚୟ ଯାଇଥିଲେ । ଏଥିରୁ ଜଣାଯାଏ... ।'' ସେ ନୀରବ ରହିଲେ ଏବଂ ଟେବୁଲ ଉପରେ ଥିବା କାଗଜ ଆଦି ଅନେକ ବେଳଯାଏ ପରୀକ୍ଷା କରିବାକୁ ଲାଗିଲେ । ପ୍ରତ୍ୟେକଟି କାଗଜ ପଢ଼ି ଏବଂ ଆହୁରି ଅନେକକ୍ଷଣ ତାଙ୍କ କାଚତଳେ ରଖି ପରୀକ୍ଷା କଲେ । ପରୀକ୍ଷା ପରେ ସେ ଗମ୍ଭୀର ଭାବରେ ଚିଠିଟି ମୋ ଆଡ଼କୁ ବଢ଼ାଇ ଦେଲେ ଏବଂ ପ୍ରାଣବଲ୍ଲଭ ବାବୁଙ୍କୁ କହିଲେ, ''ଆପଣ ଶ୍ରୀହର୍ଷ ବାବୁଙ୍କ ପୁଅଙ୍କୁ ଛାଡ଼ି ଦିଅନ୍ତୁ, ମୋର ଦୃଢ଼ ବିଶ୍ୱାସ ସେ ନିର୍ଦ୍ଦୋଷ । ହିନ୍ଦୀରେ ଲେଖା ଏ ଚିଠିଟି ପଢ଼ିଲେ ବୁଝିପାରିବେ ।'' ଗୋବର୍ଦ୍ଧନ ବାବୁ ହିନ୍ଦୀ ବୋଲି କହିଲେ ମଧ୍ୟ ଚିଠିଟି ଓଡ଼ିଆରେ ଲେଖା । ଚିଠିଟିର ଅବିକଳ ନକଲ ଦେଲି ।

ଶ୍ରୀହର୍ଷଲାଲଜି,

ମୋର ଶରୀର ଭଲ ଅଛି । ଅନ୍ୟାନ୍ୟ ଭଲ ଅଛନ୍ତି ମଧ୍ୟ । ଆପଣଙ୍କ କୌଣସି ଖବର ପାଇ ନାହିଁ । ଲୁହା ପାଇଁ ବରଜ୍ ଲାଲ୍ କଲିକତା ଗଲା । ଲୁହା ଆସିଲେ ପଠାଇବି । କାଲି ରାତିରେ ସେମାନେ ଗଲେ । କେବେ ଫେରିବେ ଜାଣେ ନାହିଁ । ମୁଁ ଭରତପୁର ବୋଧହୁଏ ଯିବି । ସେଠାକାର କାମ ଭଲ ଚାଲିଛି । ଛିମନ୍ ଲାଲ୍ ମୋ ସହିତ ଯିବ । ସେଠି ଧର୍ମଶାଳା କରୁଛି । ପଅର ଦିନ ଯାଇପାରେ । ଆପଣ ଏଠାକୁ ନିଶ୍ଚେ ଆସନ୍ତୁ । କେବେ ଆସିବେ ଲେଖିଲେ ଏଠାରେ ସବୁ ବନ୍ଦୋବସ୍ତ କରିବି । ଆସିବା ସମୟରେ ପୁରୁଣା ହିସାବ ଖାତାପତ୍ର ସବୁ ନେଇ ଆସିବେ । ଏଠି ସବୁ ହିସାବ ଭଲରୂପେ କରାଯାଇଥାଏ ? ଆପଣଙ୍କ ପୁଅ କିପରି ଅଛି ? ବ୍ୟବସାୟ ବୁଝୁଛି କି ? ମୋର ପୁଅ ସମସ୍ତ ବରବାଦ କରିଦେବ । ଜିଦ୍‌କରି ମୋଟର କିଣିଛି । ପନ୍ଦର ହଜାରରୁ ବେଶୀ ଦାମ୍ ଦେଇ ମୋଟର କିଣିଛି । ମୋ ଟଙ୍କା ନଷ୍ଟ କରିବାର କଅଣ ଦରକାର ? ଲାଲାଜି ଏହିପରି କରି ସମସ୍ତ ବ୍ୟବସାୟ ନଷ୍ଟ କଲା । ଏକଥା ଆସିଲେ ତାହାକୁ ବୁଝାଇ କହିବେ । ମୁଁ କହିଲେ ରାଗାନ୍ୱିତ ହେଉଅଛି । ଧର୍ମ ନ କରି ମଉଜ ଆଦି କରିବା ଏକ ପାପ । ଆପଣ ଆସି ନିଶ୍ଚୟ ତାହାକୁ ସବୁ ବୁଝାଇ କହିବେ । ଯଦି ସେ ନିତାନ୍ତ ନ ବୁଝେ ତାହା ହେଲେ ମୁଁ ସବୁ ବେୱାରିସ୍ କରି ଦେଇଯିବି । ତାହାଛଡ଼ା ମୁଁ କଅଣ କରିବି । ଗନ୍‌ପତ୍ ଲାଲାର ପୁଅର ବାହାଘର କେବେ ହେଉଛି ? ଗନ୍‌ପତ୍‌ର ପୁଅ କାରବାର ଭଲ ଚଳାଉଛି । ବୋଧହୁଏ ମାହେଶ୍ୱରୀ ଲାଲ୍ ଝିଅ ସହିତ ବିବାହ ଠିକ୍ ହେଲା । ପଣ ଲକ୍ଷେ ଟଙ୍କା ବୋଧହୁଏ । ଆଉ କଅଣ ଲେଖିବି । ଇତି

ବଂଶୀଲାଲ

ଏହାକୁ ହିନ୍ଦୀରେ ଲେଖା ଚିଠି କହିବାର ଅର୍ଥ ମୁଁ କିଛି ବୁଝି ପାରିଲି ନାହିଁ । ପ୍ରାଣବଲ୍ଲଭ ବାବୁ ଓ ଶ୍ରୀହର୍ଷ ବାବୁଙ୍କ ପୁଅ ମଧ୍ୟ ଚିଠିଟି ପଢ଼ିଲେ । ସେମାନଙ୍କ ଚାହାଁଣିରୁ ବୁଝିଲି ସେମାନେ ମଧ୍ୟ କିଛି ବୁଝିପାରି ନାହାନ୍ତି । ଚିଠିଟିର ଗୁରୁତ୍ୱ ବିଷୟରେ ସନ୍ଦିହାନ ହେଲେ ମଧ୍ୟ ଗୋବର୍ଦ୍ଧନ ବାବୁଙ୍କ ଆଦେଶ ମତେ ଚିଠିଟି ସାବଧାନତା ସହିତ ପକେଟରେ

ରଖିଲି । ବଂଶୀଲାଲ ବିଷୟରେ ଗୋବର୍ଦ୍ଧନ ବାବୁ ଶ୍ରୀହର୍ଷ ବାବୁଙ୍କ ପୁଅ ଠାରୁ ସମସ୍ତ ବିଷୟ ବୁଝିଲେ । ବଂଶୀଲାଲ ଢେଙ୍କାନାଳର ଜଣେ ପ୍ରସିଦ୍ଧ ମାରଓ୍ୱାଡ଼ି ବ୍ୟବସାୟୀ । ଶ୍ରୀହର୍ଷ ବାବୁଙ୍କ ସହିତ ତାଙ୍କର ସମ୍ବନ୍ଧ ପନ୍ଦର ବର୍ଷ ପୂର୍ବରୁ ଅଛି । ସମସ୍ତ ଖବର ଦେବା ପରେ ସେ ପ୍ରାଣବଲ୍ଲଭ ବାବୁଙ୍କୁ କହିଲେ, ''ମୋର ଏଠି ଆଉ କିଛି କରିବାର ନାହିଁ । ଆପଣ ବର୍ତ୍ତମାନ କ'ଣ କରିବେ ବୋଲି ଠିକ୍ କରିଛନ୍ତି ?''

ପ୍ରାଣବଲ୍ଲଭ ବାବୁ ବିଶେଷ ଚିନ୍ତିତ ଭାବରେ କହିଲେ, ''ମୁଁ କିପରି କେଉଁଠି ଅନୁସନ୍ଧାନ କରିବି କିଛି ବୁଝିପାରୁ ନାହିଁ । ତେବେ ଆପାତତଃ ଅନ୍ୟ କୌଣସି ପ୍ରମାଣ ନ ପାଇବା ପର୍ଯ୍ୟନ୍ତ ଶ୍ରୀହର୍ଷ ବାବୁଙ୍କ ପୁଅକୁ ଗିରଫ୍ କରି ରଖିବି ।''

ଗୋବର୍ଦ୍ଧନ ବାବୁ ହସି କହିଲେ, ''କିଛି ନ ମିଳିଲେ କଣାକୁ ଧର ନୀତିରେ ?''

ପ୍ରାଣବଲ୍ଲଭ ବାବୁ ଟିକିଏ କ୍ଷୁଣ୍ଣ ହେଲେ । ସେ ଗମ୍ଭୀର ହୋଇ କହିଲେ, ''ଇତି ମଧ୍ୟରେ ମୁଁ ଶ୍ରୀହର୍ଷ ବାବୁଙ୍କ ପ୍ରତ୍ୟେକ ଆତ୍ମୀୟଙ୍କୁ ତାର କରି ସାରିଛି । ଶ୍ରୀହର୍ଷ ବାବୁଙ୍କ ଚେହେରାର ବର୍ଣ୍ଣନା ଦେଇ ପ୍ରତ୍ୟେକ ରେଳ ଷ୍ଟେସନକୁ ମଧ୍ୟ ତାର କରିଛି । କଟକରେ ମଧ୍ୟ ବିଭିନ୍ନ ସ୍ଥାନରେ ତଲାସ ହୋଇଛି । ମୋର ଅନୁମାନ, ହଠାତ୍ କାର୍ଯ୍ୟ ଉପଲକ୍ଷେ ଶ୍ରୀହର୍ଷ ବାବୁ ବାହାରକୁ କେଉଁଠି ଯାଇଅଛନ୍ତି । ସବୁ ସ୍ଥାନରୁ ଖବର ନ ଆସିବା ପର୍ଯ୍ୟନ୍ତ ମୁଁ କ'ଣ କରିପାରେ ? ଆପଣ ଯେ ବିଶେଷ କିଛି କରି ପାରିବେ ମୋର ଆଶା ହେଉ ନାହିଁ- କାରଣ ଆପଣଙ୍କୁ ନିଶ୍ଚୟ ଏ ସବୁ ଖବର ଉପରେ ନିର୍ଭର କରିବାକୁ ହେବ ।''

''ଆପଣଙ୍କ ଅନୁସନ୍ଧାନର ସୁବିଧା ସକାଶେ ଏହି ଚିଠିଟି ରଖି ପାରନ୍ତି । ଏ ଚିଠିଟି ହିନ୍ଦୀରେ ଲେଖା ଜାଣି ପାରିଲେ ସବୁ ପରିଷ୍କାର ହୋଇଯିବ ।''

''ଏ ଚିଠିରେ କଅଣ ଅଛି ! ଏ ତ ଅତି ସାଧାରଣ ଚିଠି । ସବୁଥିରେ ବିସ୍ମୟ ନିହିତ ଅଛି ବୋଲି ଆପଣଙ୍କର ଗୋଟାଏ ଧାରଣା । ଆପଣ ସେ ଚିଠି ରଖନ୍ତୁ । ମୁଁ ମୋ ବୁଦ୍ଧି ଅନୁସାରେ ଅଗ୍ରସର ହେବି ।

''ଉତ୍ତମ ! କିନ୍ତୁ, ଅନ୍ଧାଧନ୍ଦିଆ ଭାବରେ ଅଗ୍ରସର ହୋଇ ଲାଭ ନାହିଁ, ଏହି ଚିଠିଟି ଆପଣଙ୍କୁ ବାଟ ଦେଖାଇ ଦେଇ ପାରନ୍ତା । ମୁଁ ଆଶା କରେ ଦୁଇଦିନ ଭିତରେ ରହସ୍ୟଟି ଭେଦ କରିପାରିବି । ଆପଣ- ଆଚ୍ଛା ଥାଉ ।'' କ'ଣ କହିବାକୁ ଯାଇ ଗୋବର୍ଦ୍ଧନ ବାବୁ ନୀରବ ରହିଲେ ଏବଂ ମୋତେ ସଙ୍କେତ କରି ସେଠାରୁ କ୍ଷିପ୍ର ଗତିରେ ବାହାରି ଗଲେ । ବାହାରକୁ ଆସି ସେ କହିଲେ, ''ଡାକ୍ତର, ତୁମେ ଦୁଇଦିନ ଡାକ୍ତରଖାନା ନ ଗଲେ ବୋଧହୁଏ ଚଳିବ ? ବେଶ୍, ତେବେ ଶୀଘ୍ର ଆସ । ତାଳଚେର ଗାଡ଼ି ଯିବାକୁ ଆଉ ୨୫ ମିନିଟ୍ ସମୟ ଅଛି ।'' ସାଇକେଲ ଦିଓଟି ସେହିଠାରେ ରଖି ଆମେ ଟାଉନ୍ ବସ୍‌କୁ ଅଟକାଇ ଉଠି ପଡ଼ିଲୁ ।

କଟକ ଷ୍ଟେଶନରେ ପହଞ୍ଚିବା ସମୟରେ ତାଳଚେର ପାସେଞ୍ଜାର ଛାଡ଼ିବାକୁ ଆଉ

ପାଞ୍ଚ ମିନିଟ୍ ଥାଏ । ଗୋବର୍ଦ୍ଧନ ବାବୁ ଢେଙ୍କାନାଳକୁ ଦୁଇଟି ତୃତୀୟ ଶ୍ରେଣୀ ଟିକଟ କିଣି ଆଣିବାକୁ ପଇସା ଦେଲେ । ଭିଡ଼ ଠେଲି ବହୁତ କଷ୍ଟରେ ଟିକିଟ କିଣି ଆଣିବା ବେଳକୁ ଗାଡ଼ି ଛାଡ଼ିବା ଉପରେ । କୌଣସି ମତେ ଭିଡ଼ ଠେଲି ଗୋଟିଏ ଡବାରେ ଆମେ ଉଠିଲୁ । ସବୁ ତୃତୀୟ ଶ୍ରେଣୀ ପାଖରେ ଭୀଷଣ ଭିଡ଼ । ଅନେକ ଥର ଦେଖିଛି ଟ୍ରେନରେ ଗଲାବେଳେ ଗୋବର୍ଦ୍ଧନ ବାବୁ ତୃତୀୟ ଶ୍ରେଣୀ ହିଁ ପସନ୍ଦ କରନ୍ତି । ନାନା ଦେଶର ନାନା ପ୍ରକାର ଲୋକମାନଙ୍କର ଚାଲିଚଲଣ କଥାବାର୍ତ୍ତା ଲକ୍ଷ କରିବାରେ ସେ ଏକ ଦାର୍ଶନିକ ଆନନ୍ଦ ଅନୁଭବ କରନ୍ତି । କାହା ସହିତ ଟିକିଏ ପରିହାସ, କାହା ସହିତ ଅବା ଟିକିଏ ବୃଥା କଳହ କରି ତାଙ୍କର ସମୟଟି ବେଶ କଟିଗଲା । ମୋତେ କିନ୍ତୁ ବିରକ୍ତ ଲାଗୁଥାଏ ।

ଢେଙ୍କାନାଳରେ ପହଞ୍ଚି ଗୋବର୍ଦ୍ଧନ ବାବୁ ପ୍ରଥମେ ବଂଶୀଲାଲର ସନ୍ଧାନ ନେଲେ । ଜଣକୁ ପଚାରିବାରେ ସେ କହିଲା, ''ବଂଶୀଲାଲ ବାବୁ କାଲି ରାତିରେ ଜଙ୍ଗଲରେ ତାଙ୍କ କାଠ ଗୋଲାକୁ ଯାଇଥିଲେ । ତାଙ୍କୁ ବାଘ ମାରି ପକାଇଛି । ଶବଟି ବର୍ତ୍ତମାନ ତାଙ୍କ ଘରେ ଅଛି ।'' ଆମେ ଶୀଘ୍ର ବଂଶୀଲାଲ ଘରକୁ ଗଲୁ । ସ୍ଥାନୀୟ ଦାରୋଗା ସେଠି ଉପସ୍ଥିତ ଥିଲେ । ଗୋବର୍ଦ୍ଧନ ବାବୁ ତାଙ୍କୁ ନିଜର ପରିଚୟ ଦେଇ ଶବଟି ଦେଖିବାକୁ ଚାହିଁଲେ । ଶବଟିକୁ କିଛିକ୍ଷଣ ତାଙ୍କର ବୋକାଙ୍କ ଭଳି ଚାହାଣିରେ ଚାହିଁ ରହି ସେ ହଠାତ୍ ବଂଶୀଲାଲ ପିନ୍ଧିଥିବା ରବର ଜୋତା ଦୁଇଟି ଟେକି ଦେଖିଲେ ଏବଂ ଅଙ୍ଗୁଳିରେ ଜୋତା ତଳରୁ କଅଣ ପୋଛି ଆଣି ନିଜେ ଶୁଙ୍ଘିଲେ ଓ ମୋତେ ଶୁଙ୍ଘାଇ ପଚାରିଲେ, ''ଡାକ୍ତର, ଏ କ'ଣ ଜଣା ପଡୁଛି ?''

ତାଙ୍କ ଆଙ୍ଗୁଳିରେ ତେଲ ଚିକିଟା ପରି କ'ଣ ଲାଗିଥାଏ- ଗନ୍ଧରୁ ମଧ୍ୟ ମୋର ସେହିପରି ଅନୁମାନ ହେଲା । କିନ୍ତୁ ଠିକ୍ ବୁଝିପାରିଲି ନାହିଁ । ମୋତେ ଘୃଣା ମାଡୁଥାଏ, ନୀରବ ରହିଲି । ଶବଟି ଉତ୍ତମ ରୂପେ ପରୀକ୍ଷା କରି ସାରି ବଂଶୀଲାଲ ପୁଅକୁ ଡାକି ପଚାରିଲେ, ''ବଂଶୀବାବୁ କ'ଣ ପ୍ରାୟ ରାତିରେ ଜଙ୍ଗଲକୁ ଯାଆନ୍ତି ?''

''ନା । ତେବେ ଜଙ୍ଗଲରେ ଆମର ଗୋଟିଏ କାଠ-ଗୋଲା ଅଛି । କେତେଦିନ ହେବ ଚୋରି ହେଉଥିବାରୁ ସେ ରାତିରେ ଉଠି ମଝିରେ ମଝିରେ ଦେଖିବାକୁ ଯାଆନ୍ତି ।''

''ସାଙ୍ଗରେ ବନ୍ଧୁକ କିମ୍ବା ଅନ୍ୟ କିଛି ନିଅନ୍ତି ?''

''ହଁ, ଗୋଟିଏ ରିଭଲଭର ନିଅନ୍ତି ।''

''ଏକା ଯାଆନ୍ତି କାହିଁକି ?''

''ଏଠୁଁ ଗୋଲାଟି ବେଶୀ ଦୂର ନୁହଁ । ତେଣୁ -''

''କାଲି ରାତିରେ ସେ ରିଭଲଭର ନେଇଥିଲେ ?''

''ହଁ ।''

ରିଭଲଭରଟି ମାରି ସେ ପରୀକ୍ଷା କଲେ । ରିଭଲଭରର ଛଅଟି କୋଠରୀରେ

ଛଅଟି ଯାକ ଗୁଳି ଥିଲା । ଗୋବର୍ଦ୍ଧନ ବାବୁ ପଚାରିଲେ, ''ଏହାକୁ ବୋଧହୁଏ ଆପଣ ଶବର ପକେଟରୁ କାଢ଼ି ନେଇଥିଲେ ?''

''ହଁ ।''

ଗୋବର୍ଦ୍ଧନ ବାବୁ ମନେ ମନେ କହିଲେ, ''ତା ମାନେ ବ୍ୟବହାର କରିବାର ସୁବିଧା ମଧ୍ୟ ପାଇ ନ ଥିଲେ - ଏଡ଼େ ଆକସ୍ମିକ ଭାବରେ ବାଘ ଆକ୍ରମଣ କରିଥିଲା ।'' ସେଠାରୁ ଆସି ଗୋବର୍ଦ୍ଧନ ବାବୁ ବଂଶୀଲାଲ ବାବୁଙ୍କ ମୋଟର ରହିବା ସ୍ଥାନକୁ ଗଲେ । ଗୋଟିଏ ପ୍ରକାଣ୍ଡ ନାଲି ରଙ୍ଗର ମୋଟର । ଅଳ୍ପଦିନ ହେବ କିଣା ହୋଇଥିବା ସ୍ପଷ୍ଟ ଜଣାପଡ଼େ ।

''ଅଳ୍ପଦିନ ହେଲା ଆପଣ ଏ ମଟର କିଣିଛନ୍ତି ?''

''ହଁ ।''

''ଆପଣ ଆଉ ଗୋଟିଏ ମୋଟର କିଣିବାକୁ ଚାହାନ୍ତି ?''

''ହଁ - କିନ୍ତୁ -''

''ଏଥିପାଇଁ ବାପାଙ୍କ ସହିତ ଆପଣଙ୍କ ମନୋମାଳିନ୍ୟ ହୁଏ ?''

''ନାହିଁତ - କିନ୍ତୁ -''

''ବଂଶୀ ବାବୁ ଆପଣଙ୍କୁ ଏଥି ସକାଶେ ତ୍ୟାଜ୍ୟପୁତ୍ର କରିବାକୁ ଚାହିଁଥିଲେ ?''

''ନାହିଁ ତ ! ତାଙ୍କର ଅନୁମତି ନେଇ ମୁଁ କିଣିଛି । ସେ ତ ନିଜେ କହିଥିଲେ ଆଉ ଗୋଟିଏ ମୋଟର ନିତାନ୍ତ ଦରକାର - କିନ୍ତୁ ଆପଣ ?''

''ଏ ଚିଠି କିଏ ଲେଖିଛି ?''

ବଂଶୀ ବାବୁଙ୍କ ପୁଅ ଚିଠିଟି ପଢ଼ିଲେ । ଓଡ଼ିଆ ସେ ଭଲ ପଢ଼ି ପାରନ୍ତି ନାହିଁ । କହିବାରୁ ଚିଠିଟି ମୁଁ ପଢ଼ିଦେଲି । ଚିଠିଟି ଶୁଣି ସେ ଆଶ୍ଚର୍ଯ୍ୟ ହୋଇ ଚାହିଁଲେ । ଗୋବର୍ଦ୍ଧନ ବାବୁ ପୁଣି ପଚାରିବାରୁ ସେ କହିଲେ, ''ବାପା ନିଜେ ଲେଖିଛନ୍ତି, କିନ୍ତୁ ଏହାର ଅର୍ଥ ମୁଁ ବୁଝିପାରୁ ନାହିଁ !''

''ମୁଁ ଠିକ୍ ଅନୁମାନ କରିଥିଲି । ଏ ଚିଠିରେ ଲେଖାଥିବା ଅନ୍ୟ ସମସ୍ତ କଥା ସତ୍ୟ ?''

''ଆଜ୍ଞା ହଁ - କେବଳ - କାହିଁକି ? - ମୁଁ କିଛି ବୁଝିପାରୁ ନାହିଁ ।''

''କାହିଁକି, ଆପଣ ପଚାରୁଛନ୍ତି । ଡାକ୍ତର ବୋଧହୁଏ ତାହାହିଁ ପଚାରୁଛ । ବୁଝି ପାରୁନା, ଗୋଟିଏ 'ୱା' ଦରକାର ।''

''ମାନେ !!''

''ୱାଗନ'ର 'ୱା'' - ଗୋବର୍ଦ୍ଧନ ବାବୁ ରହସ୍ୟମୟ ଭାବରେ ହସି କହିଲେ । ଘଟଣାଟି ଅଧିକ ରହସ୍ୟମୟ ମନେ ହେଲା । ବଂଶୀବାବୁଙ୍କ ପୁଅ ଓ ମୁଁ ଦୁହେଁ ଦୁହିଁଙ୍କୁ ବିସ୍ମିତ ଆଖିରେ ଚାହିଁ ରହିଲୁ । ଗୋବର୍ଦ୍ଧନ ବାବୁ ସେଥିପ୍ରତି ଭ୍ରୂକ୍ଷେପ ନ କରି ମୋଟରଟି ପରୀକ୍ଷା

କରିବାକୁ ଲାଗିଲେ । ଖୁବ୍ ମନୋଯୋଗ ସହ ସେ ମଟରରେ ଲାଗିଥିବା ଧୂଳି ପରୀକ୍ଷା କରିବାକୁ ଲାଗିଲେ । ଅନେକକ୍ଷଣ ପରେ ସେ କହିଲେ, ‘‘ଡାକ୍ତର, ମୋଟରରେ ଯେଉଁ ଧୂଳି ଜମିଛି ନିରୀକ୍ଷଣ କଲେ ଦେଖି ପାରିବ ଯେ ବିଭିନ୍ନ ପ୍ରକାରର ଧୂଳି ମୋଟର ଉପରେ ଜମିଛି । ଏଥିରୁ ସ୍ପଷ୍ଟ ପ୍ରମାଣିତ ହୁଏ ମୋଟରଟି ବହୁତ ଦୂରକୁ ଯାଇଥିଲା । ମୋର ମନେହୁଏ ଆଜି ସକାଳୁ ଏ ମୋଟରଟି ବାହାରକୁ ବାହାରି ନାହିଁ । କାଲି ରାତିରେ ମୋଟର କୁଆଡ଼େ ଯାଇଥିଲା ?’’ ବଂଶୀ ବାବୁଙ୍କ ପୁଅ ଉତ୍ତର ଦେଲା । ‘‘ହଁ, ହଠାତ୍ କ’ଣ କାମ ପଡ଼ିବାରୁ ବାପା ମୋଟର ନେଇ ରାତି ଦଶଟା ବେଳେ କୁଆଡ଼େ ଯାଇଥିଲେ । କିନ୍ତୁ -’’

‘‘ଫେରିଲେ କେତେବେଳେ ?’’

‘‘ରାତି ପ୍ରାୟ ଦୁଇଟା ବେଳକୁ’’

‘‘ଫେରିଲାବେଳେ ତାଙ୍କ ସହିତ ଆଉ କିଏ ଥିଲେ ?’’

‘‘ଫେରିଲାବେଳେ ମୁଁ ଶୋଇ ପଡ଼ିଥିଲି । ଦେଖି ନାହିଁ ।’’

‘‘ଅନ୍ୟ କେହି ଦେଖି ନାହାନ୍ତି ?’’

‘‘ନା ।’’

‘‘ଦୟାକରି ଜଙ୍ଗଲରେ ଆପଣଙ୍କ ବାପାଙ୍କ ମୃତଦେହ ଯେଉଁଠି ପଡ଼ିଥିଲା ସେ ସ୍ଥାନଟି ଦେଖାଇବେ କି ?’’

ଯେଉଁ ଲୋକଟି ଶବ ଦେଖିଥିଲା ସ୍ଥାନୀୟ ଦାରୋଗା ତାହାକୁ ଅଟକାଇ ରଖିଲେ । ତାକୁ ସାଙ୍ଗରେ ନେଇ ଆମେ ଜଙ୍ଗଲ ଭିତରକୁ ଗଲୁ । ଢେଙ୍କାନାଳ ଷ୍ଟେଶନରୁ ଲାଇନ୍ କଡ଼େ କଡ଼େ ପ୍ରାୟ ତିନି ମାଇଲ ଯିବା ପରେ ଗୋଟିଏ ଜଙ୍ଗଲ ଭିତରକୁ ଯାଇ ଲୋକଟି ବଂଶୀଲାଲଙ୍କ ମୃତଦେହ ପଡ଼ିଥିବା ସ୍ଥାନ ଦେଖାଇ ଦେଲା । ସ୍ଥାନଟିକୁ କିଛିକ୍ଷଣ ଶୂନ୍ୟଦୃଷ୍ଟିରେ ଚାହିଁ ଚାହିଁ ଗୋବର୍ଦ୍ଧନ ବାବୁ ନିକଟସ୍ଥ ଗୋଟିଏ ଗଛତଳେ ଚିନ୍ତା କରିବାକୁ ଧ୍ୟାନସ୍ଥ ହୋଇ ବସିଗଲେ । ଏ ଧ୍ୟାନ କେତେବେଳେ ଯେ ଭାଙ୍ଗିବ ! ପିଠିରେ ଶୀତଦିନର ଟାଣୁଆ ଖରା ଓ ପେଟରେ ସର୍ବଭୁକ୍ ସେତେବେଳକୁ ମୋତେ ଅସ୍ଥିର କରି ପକାଇଲାଣି । ମୁହୂର୍ତ୍ତକେ ଘଟଣାଟି ପ୍ରତି ସମସ୍ତ କୌତୂହଳ ଚାଲିଯାଇ ବିରକ୍ତିରେ ମନ ଭରି ଉଠିଲା । ଭାଗ୍ୟକୁ ଗୋବର୍ଦ୍ଧନ ବାବୁଙ୍କ ଧ୍ୟାନ ଖୁବ୍ ଶୀଘ୍ର ଭାଙ୍ଗିଲା । ସେ ତାଙ୍କ ଆସ୍ଥାନରୁ ହଠାତ୍ ଉଠି ରେଳ ଲାଇନ ଆଡ଼କୁ ଅଗ୍ରସର ହେଲେ । ‘ସଙ୍କୋଚନ’ର ପ୍ରତ୍ୟେକ ଲକ୍ଷଣ ସେତେବେଳେ ପରିସ୍ଫୁଟ ହୋଇ ଉଠିଲା । ବଡ଼ ବଡ଼ ଆଖି ଦିଓଟି ଯେପରି ଦିଇଟି ଜ୍ୱଳନ୍ତ ବିନ୍ଦୁ, କାନ୍ଧ ନଇଁ ପଡ଼ିଛି, କପାଳରେ ଅନେକ କୁଟିଳ ରେଖା, ବାରମ୍ବାର ହସ୍ତଚାଳନ ଦ୍ୱାରା ମୁଣ୍ଡର ବଡ଼ ବଡ଼ ବାଳଗୁଡ଼ିକ ଅବିନ୍ୟସ୍ତ । ରେଳଲାଇନ୍ ନିକଟକୁ ଆସି ନଇଁ ପଡ଼ି ସେ ସ୍ଥାନଟି ସେ ଅନେକକ୍ଷଣ ପରୀକ୍ଷା କଲେ । ବିଷାଦର ଚିହ୍ନ ତାଙ୍କ ମୁହଁରେ ପରିଷ୍ଫୁଟ ହୋଇ ଉଠିଲା ।

ରେଳଲାଇନ କଡ଼େ କଡ଼େ ଆଗକୁ ପଛକୁ କିଛି ବାଟ ଅନେକ ଥର ଯିବା ଆସିବା

କରିବା ପରେ, ପୁଣି ଥରେ ଆଗକୁ କିଛି ଦୂର ଯାଇ ନଇଁ ପଡ଼ି ଗୋଟିଏ ପଥର ଉଠାଇ ନେଇ ମୋତେ ଦେଖାଇ କହିଲେ, ''ଡାକ୍ତର, ଦେଖ ରକ୍ତର ଚିହ୍ନ !'' ପରିଷ୍କାର ଦେଖିଲି ରକ୍ତର ଚିହ୍ନ - ତାଜା ରକ୍ତ ଜମି ଯାଇଛି ପଥରଟି ଉପରେ । ସଫଳତା ଜନିତ ଆନନ୍ଦର ଯେଉଁ ଉଜ୍ଜ୍ୱଳ ଆଭା ମୁଁ ତାଙ୍କ ମୁହଁରେ ଅନେକ ଥର ଦେଖିଛି ସେହି ଆଭା ଦେଖି ମୁଁ ବୁଝିପାରିଲି ରହସ୍ୟ ଉଦ୍‌ଘାଟନର ଆଉ ବିଶେଷ ବିଳମ୍ବ ନାହିଁ । ଯେଉଁଠାରେ ପଥରଟି ପଡ଼ିଥିଲା ସେ ସ୍ଥାନଟି ତାଙ୍କ କାଚ ଓ ଫିତା ସାହାଯ୍ୟରେ ପୁଣି ଅନେକ କ୍ଷଣଯାଏ ପରୀକ୍ଷା କଲେ । ପରୀକ୍ଷା ଶେଷ କରି ସେ ମନେ ମନେ କହିଲେ, ''ଏଠାରେ ପାଞ୍ଚଜଣଙ୍କର ଗୋଡ଼ର ଚିହ୍ନ ଦେଖିପାରୁଛି । ଏ ଲୋକଗୁଡ଼ିକ ଅନେକ ଥର ଜଙ୍ଗଲ ଆଡୁ ଏଠାକୁ ଏବଂ ଏଠାରୁ ଜଙ୍ଗଲ ଆଡ଼କୁ ଯାଇଛନ୍ତି । ଜଙ୍ଗଲ ଆଡୁ ରେଲଲାଇନକୁ ଆସିବା ବେଳେ ଖୁବ୍ ଶୀଘ୍ର ଆସିଛନ୍ତି ଏବଂ ଏଠାକୁ ଜଙ୍ଗଲ ଆଡ଼କୁ ଗଲାବେଳେ ସେମାନଙ୍କର ବେଗ କମି ଯାଇଛି । ଗୋଟିଏ ପଦଚିହ୍ନରୁ ଅନ୍ୟ ପଦଚିହ୍ନ ମାପି ଦେଖିଲେ ଏହା ସ୍ପଷ୍ଟ ଜଣା ପଡ଼େ । ସିଦ୍ଧାନ୍ତ: ରେଳ ଲାଇନରୁ ଜଙ୍ଗଲ ଆଡ଼କୁ ଗଲାବେଳେ ନିଶ୍ଚୟ କୌଣସି ଭାରି ଜିନିଷ ବୋହି ନେଇ ଯାଇଛନ୍ତି ।''

ନଇଁ ପଡ଼ି ମୁଁ ମଧ୍ୟ ଗୋଡ଼ର ଚିହ୍ନ ଦେଖିପାରିଲି । ଗୋଡ଼ର ଚିହ୍ନ ଅନୁସରଣ କରି ସେ ଜଙ୍ଗଲ ଭିତରକୁ ଅନେକ ଦୂର ଗଲେ । କିଛିଦୂର ପରେ ପଥୁରିଆ ଜମି ପଡ଼ିଲା । ଗୋଡ଼ର ଚିହ୍ନ ସେହିଠାରୁ ଅଦୃଶ୍ୟ ହୋଇଛି । ବାଧ ହୋଇ ସେଠାରୁ ଫେରି ପୁଣି ସେ ଲାଇନ୍ ପାଖକୁ ଆସିଲେ ଏବଂ ଦୁଇଲାଇନ୍ ମଝିରେ ପଡ଼ିଥିବା ପଥର ଗୁଡ଼ିକ ନିରୀକ୍ଷଣ କରି କରି ସେ ଅଗ୍ରସର ହେଲେ । ମୁଁ ମଧ୍ୟ ଦେଖିବାକୁ ପାଇଲି ବିନ୍ଦୁ ବିନ୍ଦୁ ରକ୍ତ ଅନେକ ପଥର ଉପରେ ପଡ଼ିଛି । ଅନେକ ଦୂରଯିବା ପରେ ଦେଖିଲି ଗୋଟିଏ ସ୍ଥାନରେ ଅନେକ ରକ୍ତ ପଡ଼ି ଜମିଯାଇଛି । ଏହାପରେ ମଧ ଆମେ କିଛିଦୂର ଅଗ୍ରସର ହେଲୁ କିନ୍ତୁ ଆଉ ରକ୍ତ ଦେଖିବାକୁ ମିଳିଲା ନାହିଁ । ମୁଁ ଡାକ୍ତର, ରକ୍ତ ଦେଖି ମୋର କୌଣସି ବିକାର ହୁଏନାହିଁ । କିନ୍ତୁ ଗୋଟାଏ ନିଛାଟିଆ ଜାଗାରେ ଏତେ ରକ୍ତ ଦେଖି ମୋର ଦେହ ଥରି ଉଠିଲା, ମନରେ ଗୋଟାଏ ଆତଙ୍କ ଜାତ ହେଲା । ମାତ୍ର ଗୋବର୍ଦ୍ଧନ ବାବୁଙ୍କ ମୁହଁଟି ଆନନ୍ଦରେ ଅଧିକ ଉଜ୍ଜ୍ୱଳ ହୋଇ ଉଠିଲା । ଡାକ୍ତର ଯେପରି ତୀକ୍ଷ୍ଣ ଛୁରିକାଦ୍ୱାରା ଧୀରେ ଧୀରେ ଅସ୍ତ୍ରୋପଚାର କରେ ଏବଂ ଅସ୍ତ୍ରୋପଚାର ଖୁବ୍ ସଫଳ ହେଉଛି ବୁଝିପାରି ଆନନ୍ଦ ପାଇଲେ ମଧ ଅସୀମ ଧୈର୍ଯ୍ୟ ସହ ଧୀରେ ଧୀରେ ଛୁରିକା ଚାଲାଏ, ଗୋବର୍ଦ୍ଧନ ବାବୁ ସେହିପରି ତାଙ୍କର ତୀକ୍ଷ୍ଣ ବୁଦ୍ଧି ଦ୍ୱାରା ରହସ୍ୟଟି ଧୀରେ ଧୀରେ ଭେଦ କରିବାକୁ ଲାଗିଲେ ଏବଂ ସଫଳତାର ଆନନ୍ଦ ପ୍ରକାଶ ପାଇଲେ ମଧ ତାହା ତାଙ୍କର ବୁଦ୍ଧି ଭ୍ରମ ନ କରାଇ ଅସୀମ ଧୈର୍ଯ୍ୟ ଆଣି ଦେଲା । ରକ୍ତ ପଡ଼ିଥିବା ସ୍ଥାନଟି ଏବଂ ରେଳ ଲାଇନ୍ କଡ଼ରେ ଥିବା ନିକଟସ୍ଥ ସ୍ଥାନକୁ ସେ ତାଙ୍କର କାଚ ସାହାଯ୍ୟରେ ପରୀକ୍ଷା କଲେ ।

''ଡାକ୍ତର - ଉହୁଁ, ଡାକ୍ତର ସାହେବ ବିଚଳିତ ହୁଅ ନାହିଁ - ଦେଖ, ଏ ସ୍ଥାନକୁ ଏ ଆଡୁ ଦୁଇଜଣ ଏବଂ ସେଆଡୁ ଜଣେ ଆସିଛନ୍ତି ଏବଂ ପୁଣି ସମସ୍ତେ ଯେଉଁ ଆଡୁ ଦୁଇଜଣ ଆସିଥିଲେ ସେହିଆଡ଼େ ଯାଇଅଛନ୍ତି । ଏମାନେ ମଧ୍ୟ ଫେରିଲା ବେଳେ ହୁଏତ ଗୋଟିଏ ଜିନିଷ ବୋହି ଆଣୁଥିଲେ । ଲକ୍ଷ କରିବାର ବିଷୟ ସମସ୍ତଙ୍କ ଗୋଡ଼ରେ ଜୋତା ଅଛି ।''

ରକ୍ତ ଜମିଥିବା ସ୍ଥାନରୁ କିଛି ଦୂର ଆଗକୁ ଯାଇ ସେ ଛିଡ଼ା ହୋଇଗଲେ, ବୋଧହୁଏ ତା' ଆଗକୁ ଆଉ କୌଣସି ଚିହ୍ନ ପାଇଲେ ନାହିଁ । ସେହି ସ୍ଥାନଟି ସେ ପୁଣି ଉତ୍ତମ ରୂପେ ପରୀକ୍ଷା କରି କହିଲେ, ''ଡାକ୍ତର, ଏଠାରେ ଗୋଟିଏ ଇଞ୍ଜିନ୍ ଛିଡ଼ା ହୋଇଥିଲା- ଅନ୍ତତଃ ଅଧଘଣ୍ଟା ପାଇଁ ।'' ମୋର ମଧ୍ୟ ବୁଝିବାକୁ କଷ୍ଟ ହେଲା ନାହିଁ ଯେ ସେଠାରେ ଗୋଟିଏ ଇଞ୍ଜିନ୍ ଛିଡ଼ା ହୋଇଥିଲା । ପୋଡ଼ା କୋଇଲା, ତେଲ ଆଦି ସେଠି ପଡ଼ିଥିବାର ଦେଖିଲି ।

ସେହିଠାରେ ସେ ନୀରବରେ କିଛିକ୍ଷଣ ଛିଡ଼ା ହୋଇ ଚିନ୍ତା କରିବାକୁ ଲାଗିଲେ । ମୁଣ୍ଡର ଠିକ୍ ଉପରେ ଥିବା ସୂର୍ଯ୍ୟଦେବ ତାଙ୍କର ତେଜ ଦ୍ୱାରା ଗୋବର୍ଦ୍ଧନ ବାବୁଙ୍କର କୌଣସି ବିକାର ଆଣିପାରିଲେ ନାହିଁ । ଅନାଇ ଦେଖିଲି ସଙ୍କୋଚନର ଲକ୍ଷଣଗୁଡ଼ିକ ଧୀରେ ଧୀରେ ଚାଲି ଯାଇ 'ପ୍ରସାରଣ'ର ଲକ୍ଷଣ ପ୍ରକାଶ ପାଇବାକୁ ଆରମ୍ଭ କଲାଣି । ଅଭିଜ୍ଞତାରୁ ଜାଣିଲି ରହସ୍ୟ ଆଉ ତାଙ୍କ ନିକଟରେ ରହସ୍ୟ ହୋଇ ନାହିଁ । ଅଭିଜ୍ଞତାରୁ ଏହା ମଧ୍ୟ ଜାଣେ ଯେ କୌଣସି ପ୍ରଶ୍ନ ପଚାରିବାର ତାହା ଉପଯୁକ୍ତ ସମୟ ନୁହଁ ।

ଗୋବର୍ଦ୍ଧନ ବାବୁ ମୋ ଆଡ଼କୁ ବିଜୟୀ ଭଳି ଅନାଇଲେ । ରହସ୍ୟ ସୁନ୍ଦରୀକୁ ସେ ସମ୍ପୂର୍ଣ୍ଣ ରୂପେ ଜୟ କରି ପାରିଛନ୍ତି । ଗୋଟାଏ ଅପୂର୍ବ ଆଭା ତାଙ୍କ ମୁହଁରେ ପ୍ରତିଫଳିତ ହେବାକୁ ଲାଗିଲା । ମୋ ଆଡ଼କୁ ଅନାଇ ସେ କହିଲେ, ''ଡାକ୍ତର, 'ଭିନି ଭିଡି ଭିସି' - ମୁଁ ଆସିଲି ମୁଁ ଦେଖିଲି ମୁଁ ଜୟ କଲି । ଏଠି ଆଉ କିଛି କରିବାର ନାହିଁ । ଚାଲ ଢେଙ୍କାନାଳ ଥାନାକୁ ।''

''ଚାଲନ୍ତୁ । ମୁଁ ଆସିଲି, ମୁଁ କିଛି ନ ଦେଖିଲି, ମୁଁ କ୍ଷୁଧାର୍ତ୍ତ ହେଲି -'' ଏତେବେଳେକେ ଆରାମର ଗୋଟାଏ ନିଃଶ୍ୱାସ ପକାଇ ମୁଁ କହିଲି ।

ଥାନାର ଦାରୋଗାଙ୍କୁ ଗୋବର୍ଦ୍ଧନ ବାବୁ ପାଞ୍ଚ ଜଣ ପୁଲିସ୍ ସହିତ ତାଙ୍କ ସହିତ ଯିବାକୁ ଅନୁରୋଧ କଲେ । ଦାରୋଗା ବାବୁ ବଡ଼ କାର୍ଯ୍ୟବ୍ୟସ୍ତ ଥିଲେ । ବଂଶୀ ବାବୁଙ୍କ ଅସ୍ୱାଭାବିକ ମୃତ୍ୟୁ ବିଷୟରେ ସେ ଶେଷ ରିପୋର୍ଟ ଲେଖୁଥିଲେ । ଗୋବର୍ଦ୍ଧନ ବାବୁଙ୍କ ପ୍ରସ୍ତାବରେ ସେ ଟିକିଏ ବିରକ୍ତ ହୋଇ କହିଲେ, ''ଦରକାର କ'ଣ ? ବାଘକୁ ଫାଶି ଦେବାକୁ ହେବ ?''

''ନା, ବାଘ ଯାହା କରିଛି ତାହା ପାଇଁ ସେ ପୁରସ୍କାର ପାଇବା ଯୋଗ୍ୟ । ମୁଁ ବୁଝି ପାରୁଛି ଆପଣ ବର୍ଷେ ହେବ ଚାକିରି କରୁଛନ୍ତି । ମୋ କହିବା ଅନୁସାରେ ଆପଣ ଯଦି କାର୍ଯ୍ୟ କରନ୍ତି, ତା'ହେଲେ ଶୀଘ୍ର ପଦୋନ୍ନତି ସୁନିଶ୍ଚିତ ।''

'ପଦୋନ୍ନତି' କଥାଟା ବିଜୁଳି ଭଳି କାମ କଲା । ଚାକିରି ଯେ କରେ ସେ ସବୁ କରେ ପଦୋନ୍ନତି ପାଇଁ - ମାନବିକତା ଦୃଷ୍ଟିରୁ ନୁହଁ । ଏ ଭାବ କେବେ ଯେ ଆମ ମନରୁ ଲୋପ ପାଇବ ! ଦାରୋଗା ବାବୁ ଦ୍ୱିରୁକ୍ତି ନ କରି ପାଞ୍ଚ ଜଣ ପୁଲିସ୍ ନେଇ ଆମ ସହିତ ବାହାରିଲେ । ପ୍ରଥମେ ଆମେ ଗଲୁ ବଂଶୀଲାଲ ଘରକୁ । ବଂଶୀଲାଲଙ୍କ ପୁଅଙ୍କୁ ଗୋବର୍ଦ୍ଧନ ବାବୁ ତାଙ୍କ କାଠଗୋଲା ଦେଖାଇବାକୁ ଅନୁରୋଧ କରିବାରୁ ସେ ଆମକୁ ସାଙ୍ଗରେ ନେଇ ଜଙ୍ଗଲ ଭିତରକୁ ଗଲେ । ଗଭୀର ଜଙ୍ଗଲ ଭିତରେ ବଂଶୀଲାଲର କାଠଗୋଲା । ସେଠାରେ ପହଞ୍ଚି ଗୋବର୍ଦ୍ଧନ ବାବୁ ଦାରୋଗାଙ୍କୁ କହିଲେ, ''ଏହି ଗୋଲାଟି ସିଲ୍ କରି ତଲାସ କରନ୍ତୁ । ମୋର ଦୃଢ଼ ବିଶ୍ୱାସ ଏଠାରେ ଆପଣ ଅନେକ ଗୁଡ଼ିକ ସୋରିଷ ତେଲ ଟିଣ ପାଇବେ ।''

ସମସ୍ତେ ଆଶ୍ଚର୍ଯ୍ୟ ହୋଇ ଅନାଇ ରହିଲେ । ଗୋଟିଏ ପ୍ରକାଣ୍ଡ ବଡ଼ ଗୋଲା ତଳୁ ମିଳିଲା ଶହେ ଟିଣ ସୋରିଷ ତେଲ । ଦାରୋଗା ବାବୁ ହଠାତ୍ ଅତ୍ୟଧିକ ତତ୍ପର ହୋଇ ଉଠିଲେ । ତାଙ୍କ ଭାବଭଙ୍ଗିରୁ ମନେହେଲା ଯେମିତି ସେ ଏ ଆବିଷ୍କାର କରିଅଛନ୍ତି । ସେଠାକାର ସମସ୍ତଙ୍କୁ ସେ ଗିରଫ୍ କଲେ । ନାନା ଉପାୟ ପ୍ରୟୋଗ କରି ଦାରୋଗା ବାବୁ ଯାହା ଜାଣିଲେ ତାହା ଶୁଣି ଘୃଣାରେ ମୋ ମନ ଭରି ଉଠିଲା । ସେହି ଲୋକମାନେ ହିଁ କହିଲେ ଯେ ଗତ ରାତିରେ ଏହି ସ୍ଥାନରୁ ଶହେଟି ଟିଣରେ ଖାଲି ପାଣି ବନ୍ଦ ହୋଇ ଲାଇନ ପାଖକୁ ବୁହା ହୋଇଥିଲା ଏବଂ ସେଠାରେ ଛିଡ଼ା ହୋଇଥିବା ମାଲଗାଡ଼ିରୁ ଶହେ ଟିଣ ସୋରିଷ ତେଲ ବୁହା ହୋଇ ଏଠାକୁ ଆସିଥିଲା । ଗିରଫ୍ ପର୍ବ ଶେଷ ହେଲା । ସମସ୍ତେ ଥାନାକୁ ଗଲୁ । ଦାରୋଗା ବାବୁ ବିଜୟୀ ସେନାପତି ଭଳି ଆଗେ ଆଗେ ଚାଲିଲେ ।

ଦରୋଗା ବାବୁ ପଚାରିଲେ, ''କିନ୍ତୁ ଆସାମୀ ?''

ଗୋବର୍ଦ୍ଧନ ବାବୁ ହସି କହିଲେ, ''ମାଲ ଆପଣ ପାଇଲେ ସତ, କିନ୍ତୁ ଆସାମୀ ଦୁଇଜଣଙ୍କୁ ଆଉ ଗିରଫ କରି ପାରିବେ ନାହିଁ ।''

''କାହିଁକି ?'' ଦାରୋଗା ବାବୁଙ୍କ ସ୍ୱରରେ ଦୁନିଆର ସବୁ ହତାଶା ଫୁଟି ଉଠିଲା ।

''କାରଣ, ସେମାନଙ୍କୁ ଯମ ଆଗରୁ ଗିରଫ୍ କରି ନେଇଯାଇଛନ୍ତି । ଜଣେ ବାଘ ପେଟରେ ଅନ୍ୟ ଜଣେ ଇଞ୍ଜିନ୍ ପେଟରେ ।

ଘଟଣାଟି ବର୍ତ୍ତମାନ କିଛି କିଛି ବୋଧଗମ୍ୟ ହେଲେ ହେଁ ସମ୍ପୂର୍ଣ୍ଣ ବୁଝିପାରିଲି ନାହିଁ- ସିଦ୍ଧାନ୍ତଟି ବୁଝିପାରିଲେ ମଧ୍ୟ ରହସ୍ୟଟି ପୂର୍ବପରି ରହିଲା । ସେହିଦିନ ଆମେ କଟକ ଫେରି ଆସିଲୁ । ପ୍ରାଣବଲ୍ଲଭ ବାବୁଙ୍କୁ ଦେଖାକରି ଗୋବର୍ଦ୍ଧନ ବାବୁ କହିଲେ,''ମୁଁ ସବୁ ଅନୁସନ୍ଧାନ କରି ଆସିଲି । ଘଟଣାଟି ହେଉଛି କଳାବଜାର । କେଉଁଠୁ କେଉଁଠାକୁ ସୋରିଷ ତେଲ ଯାଉଥିଲା ତାହା ଆପଣ ଜାଣିବାକୁ କଷ୍ଟ ହେବ ନାହିଁ । କିନ୍ତୁ ଏତିକି ସୁନିଶ୍ଚିତ ଯେ ଢେଙ୍କାନାଳର ବଂଶୀଲାଲ କଟକର ଶ୍ରୀହର୍ଷଲାଲଙ୍କୁ କାଲି ଚିଠି ଲେଖନ୍ତି ଯେ ରାତି ବାରଟା

ବେଳେ ଲୁଚିକରି ତାଙ୍କ ମୋଟରରେ ଢେଙ୍କାନାଳ ଯିବାକୁ ଏବଂ ସେଇଠି ଏକ ଓ୍ୟାଗନ୍ ତେଲ ଖଲାସ କରି ରାତା ରାତି କଟକ ଫେରି ଯିବାକୁ । ମୋର ଦୃଢ଼ ଧାରଣା ସେହି ମାଲ ଗାଡ଼ିର ଗାର୍ଡ଼ ଓ ଚାଳକ ଆଦି ସହିତ ଆଗରୁ ସବୁ ଠିକ୍ ହୋଇଥିଲା । ବର୍ତ୍ତମାନ ଏ ସବୁର ପ୍ରମାଣ ସ୍ୱରୂପ ଉପଯୁକ୍ତ କାଗଜ ପତ୍ର ଆପଣ ଯୋଗାଡ଼ କରନ୍ତୁ ।''

ପ୍ରାଣବଲ୍ଲଭ ବାବୁ ଉତ୍କଣ୍ଠାର ସହ ପଚାରିଲେ, ''କାହିଁ ? ସେ ଚିଠି କାହିଁ ?''

ଗୋବର୍ଦ୍ଧନ ବାବୁ ପୂର୍ବବତ୍ ନିର୍ବିକାର ଭାବରେ କହିଲେ, ''ଡାକ୍ତର, ଚିଠିଟି ବର୍ତ୍ତମାନ ଦେଇଦିଅ ।''

ମୁଁ ଅବାକ୍ ହୋଇ କହିଲି, ''ସେ ଚିଠିତ ମୋତେ ଆପଣ ଦେଇ ନାହାନ୍ତି !''

''ଯେଉଁ ଚିଠି ଦେଇଛି ସେଇ ଚିଠିରେ ସବୁ ଅଛି ।''

ପକେଟରୁ ଅଗତ୍ୟା ଚିଠିଖଣ୍ଡ ସନ୍ଦିହାନ ଭାବରେ ବାହାର କରି ପ୍ରାଣବଲ୍ଲଭ ବାବୁଙ୍କୁ ଦେଲି । ଚିଠି ଖଣ୍ଡ ଉପରେ ଆଖି ବୁଲାଇ ନେଇ ପ୍ରାଣବଲ୍ଲଭ ବାବୁ ଅତିଶୟ ବିରକ୍ତି ସହକାରେ ତାକୁ ତଳକୁ ଫୋପାଡ଼ି ଦେଇ କହିଲେ, ''ଗୋବର୍ଦ୍ଧନ ବାବୁ, ବୃଥା ରହସ୍ୟ ଭଲଲାଗେନା । ମୁଁ ଶ୍ରୀହର୍ଷ ବାବୁଙ୍କ ଅନ୍ତର୍ଦ୍ଧାନ ବ୍ୟାପରରେ ଭାରି ଚିନ୍ତିତ । ଆପଣ ଏ ସମୟରେ-''

''ନା, ଆପଣଙ୍କୁ ମୁଁ କହିଛି, ଚିଠିଟି ହିନ୍ଦିରେ ଲେଖା । ବୃଥା ଚିନ୍ତାରେ ସମୟ ନଷ୍ଟ ନ କରି ବା ଶକ୍ତିକ୍ଷୟ ନ କରି ଆପଣ ଯଦି କେବଳ ଏହାହିଁ ସପ୍ରମାଣ କରିବାକୁ ଚେଷ୍ଟା କରନ୍ତେ, ତା'ହେଲେ ଆପଣଙ୍କୁ ସମସ୍ତ ପରିଷ୍କାର ହୋଇଥାଆନ୍ତା । ଆଚ୍ଛା, ଆଉ ରହସ୍ୟ ନକରି ମୁଁ ସବୁ କହୁଛି । ଆପଣ ନୋଟ କରି ନିଅନ୍ତୁ । ମୋର ଅନୁରୋଧ ଆପଣ ଚିଠିଟି ଭଲ କରି ଥରେ ପଢ଼ନ୍ତୁ... ହିଁ ପଢ଼ନ୍ତୁ ନା ।''

ବାଧ ହୋଇ ପ୍ରାଣବଲ୍ଲଭ ବାବୁ ପଢ଼ିଲେ ଏବଂ ପଢ଼ା ଶେଷକରି ଗୋଟିଏ ଅବଜ୍ଞା ମିଶ୍ରିତ ପ୍ରଶ୍ନବାଚକ ଦୃଷ୍ଟି ଗୋବର୍ଦ୍ଧନ ବାବୁଙ୍କ ଆଡ଼କୁ ନିକ୍ଷେପ କଲେ ।

''କିଛି ବୁଝିଲି ନାହିଁ -ଆପଣ -''

''ଆଚ୍ଛା ମୁଁ ବୁଝାଇ ଦେଉଛି । 'ଯଦି ସେ ନିତାନ୍ତ ନ ବୁଝେ ତାହା ହେଲେ ମୁଁ ସବୁ ବେଓ୍ୱାରିସ୍ କରି ଦେଇଯିବି', ଏହି ବାକ୍ୟଟି ପ୍ରଥମେ ପରୀକ୍ଷା କରାଯାଉ । ସମସ୍ତ ଚିଠିରେ ଏହି ବାକ୍ୟଟି ମୋତେ ଅଡୁଆ ଲାଗିଲା । ବଂଶୀଲାଲ ବ୍ୟବସାୟୀ- ସେ ନିଜେ ବ୍ୟବସାୟ ଚଳାଏ । ତା'ର ପୁଅକୁ ମଧ ସେ ବ୍ୟବସାୟରେ ଲଗାଇଛି । ଜଣେ ମାରୁଓ୍ୟାଡ଼ି ବ୍ୟବସାୟୀ କିପରି ଆପଣ ଜାଣନ୍ତି । ପୁଅର ଜିଦ୍ ରଖିବାକୁ ଯାଇ ସେ ପନ୍ଦର ହଜାର ଟଙ୍କା ନଷ୍ଟ କରିବା ଅସମ୍ଭବ ନୁହଁ କି ? ମୋର ପ୍ରଥମେ ତେଣୁ ସନ୍ଦେହ ହେଲା ଏ କଥାଟି ମିଥ୍ୟା । ଯଦି ବା ସତ ହୁଏ ତା'ହେଲେ ସେ ଶ୍ରୀହର୍ଷଙ୍କୁ ସେ ବିଷୟରେ ଲେଖିବ କାହିଁକି ? ଶ୍ରୀହର୍ଷ ତା'ର ଆତ୍ମୀୟ ନୁହଁ- ତାହା ସହିତ ତା'ର ସମ୍ବନ୍ଧ କେବଳ ବ୍ୟବସାୟ ସୂତ୍ରରେ । ଯଦିବା ଲେଖିବା

ସ୍ୱାଭାବିକ ବୋଲି ଧରାଯାଏ ତା'ହେଲେ ପୁଅକୁ ତ୍ୟଜ୍ୟ ପୁତ୍ର କରିବା କଥା ଶ୍ରୀହର୍ଷଙ୍କୁ ଜଣାଇ ଲାଭ କ'ଣ - ନିଜର ପୁଅକୁ ଭୟ ଦେଖାଇଲେ ହୁଅନ୍ତା । ଯଦିବା ଏହା ମଧ୍ୟ ସ୍ୱାଭାବିକ ବୋଲି ଧରାଯାଏ ତା'ହେଲେ ସେ ଲେଖିବା ସ୍ୱାଭାବିକ ଯେ 'ମୁଁ ପୁଅକୁ ତ୍ୟଜ୍ୟ ପୁତ୍ର କରିବି,' 'ସମ୍ପତ୍ତି ବେୱାରିସ୍ କରି ଦେଇଯିବି' ଲେଖିବାର କୌଣସି ଅର୍ଥ ହୁଏ ନାହିଁ । କାରଣ, ସେ ଅନ୍ତେ ତା'ର ପୁଅ ସବୁ ସମ୍ପତ୍ତିର ଅଧିକାରୀ ହେବ - ଯଦି ସେ ତା' କହିବା ଅନୁସାରେ, ନିର୍ଦ୍ଦିଷ୍ଟ ନିର୍ଦ୍ଦେଶ ଦେଇ ନ ଯାଏ । ଏହିପରି ନାନା କାରଣରୁ 'ବେୱାରିସ୍' କଥାଟି ମୋତେ ପ୍ରଥମେ ଅଡୁଆ ଲାଗିଲା । ମୋର ତେଣୁ ସନ୍ଦେହ ହେଲା-ଏହା ସ୍ୱାଭାବିକ-ଯେ ଚିଠିଟିରେ ବୋଧହୁଏ କିଛି ଗୁପ୍ତ ସଙ୍କେତ ଅଛି ଏବଂ 'ବେୱାରିସ୍' ଶବ୍ଦଟିର ଗୋଟିଏ ଅକ୍ଷର ନିଶ୍ଚୟ ଏହି ଗୁପ୍ତ ସଙ୍କେତର ଗୋଟିଏ ଅକ୍ଷର । ବର୍ତ୍ତମାନ ପ୍ରଶ୍ନ ହେଉଛି ସେ ଅକ୍ଷରଟି କେଉଁଠି । ଚିଠିଟି ଓଡ଼ିଆରେ ଲେଖା । ଓଡ଼ିଆ ଶବ୍ଦରେ 'ବେ' 'ରି' ଏବଂ 'ସ' ଯଥେଷ୍ଟ ମିଳିବ କିନ୍ତୁ 'ୱା' ମିଳିବ କ୍ୱଚିତ୍ । ଏହି 'ୱା' ପାଇଁ 'ବେୱାରିସ୍' ଶବ୍ଦଟି ବ୍ୟବହୃତ ହୋଇଛି ନିଶ୍ଚୟ । ଏହିଠାରୁ ମୋର ଅନୁସନ୍ଧାନ ଆରମ୍ଭ କଲି । 'ୱା ଲାଗିଥିବା କେତୋଟି ଶବ୍ଦ ମନେ ପକାଇଲି । ଜଣେ ବ୍ୟବସାୟୀ ଆଉ ଜଣେ ବ୍ୟବସାୟୀକୁ ଗୁପ୍ତ ସଙ୍କେତ ଦେଉଥିବାରୁ ଶବ୍ଦଟି 'ୱାଗନ୍' ହେବା ଖୁବ୍ ସମ୍ଭବ । ଏହି ସନ୍ଦେହ ଠିକ୍ କି ନା ପରୀକ୍ଷା କଲି । 'ୱାଗନ୍'ର 'ଗ' କେଉଁଠି ଖୋଜିଲି । ଚିଠିଟି ପୁଣି ଦେଖନ୍ତୁ । 'ୱା' ପରେ ୧୯ଟି ଅକ୍ଷର ଛାଡ଼ି ଠିକ୍ ୨୦ - ସଂଖ୍ୟକ ଅକ୍ଷରରେ ଆସିଛି 'ଗ' । ପୁଣି 'ଗ'ପରେ ସେହିପରି ୨୦ ସଂଖ୍ୟକ ଅକ୍ଷର ହେଉଛି 'ନ୍' । ଅତଏବ ବର୍ତ୍ତମାନ ବୁଝିଲି ପ୍ରତ୍ୟେକ ୨୦ସଂଖ୍ୟକ ଅକ୍ଷର ଗୁପ୍ତ ସଙ୍କେତର ଗୋଟିଏ ଗୋଟିଏ ଅକ୍ଷର । ବର୍ତ୍ତମାନ କେବଳ ସମ୍ବୋଧନ 'ଶ୍ରୀହର୍ଷଲାଲଜି'କୁ ବାଦ ଦେଇ ଆପଣ ଏହିପରି ୨୦- ସଂଖ୍ୟକ ଅକ୍ଷରଗୁଡ଼ିକ ବାହାର କରି ଦେଖିଲେ ଏହି ଚିଠିରୁ ବାହାରିବ :-

''ଆଜ ରାତ ଛିପକେ ଆଇଏ । ମୋଟର ଲାଏଗା । ଏକ ୱାଗନ୍ ମାଲ ।'' ପ୍ରତ୍ୟେକ ଅକ୍ଷରକୁ ୧୯ଟି ଅକ୍ଷର ଦରକାର, ତେଣୁ ଚିଠିଟିରେ ଆପଣ ଅନେକ ବାଜେ କଥା ପାଇବେ ଯାହାକି ଜଣେ ବ୍ୟବସାୟୀ ଆଉ ଜଣେ ବ୍ୟବସାୟୀକୁ ଲେଖିବା ମୋ ମତରେ ସ୍ୱାଭାବିକ ନୁହଁ ।''

ପ୍ରାଣବଲ୍ଲଭ ବାବୁ ଓ ମୁଁ ନଇଁ ପଡ଼ି ଉତ୍କଣ୍ଠାର ସହିତ ଅକ୍ଷର ଗଣି ଗଣି ଗୋଟିଏ ଗୋଟିଏ ଅକ୍ଷର କାଗଜରେ ଲେଖିବାକୁ ଲାଗିଲୁ ଏବଂ ସବୁ ଲେଖିସାରି କେବଳ ଅବାକ୍ ହୋଇ ଗୋବର୍ଦ୍ଧନ ବାବୁଙ୍କ ଆଡ଼କୁ ଅନାଇ ରହିଲୁ । ଗୋବର୍ଦ୍ଧନ ବାବୁ କହି ଚାଲିଲେ, ''ଶ୍ରୀହର୍ଷ ବାବୁ ଏହି ମୋଟର ପାଇଁ ତାଙ୍କ ଶୋଇବା ଘରେ ଅସ୍ଥିର ଭାବରେ ଅପେକ୍ଷା କରୁଥିଲେ । କାଳେ ନିଦରେ ଶୋଇ ପଡ଼ିବେ ଏଥିଲାଗି ଘଡ଼ିରେ ଏଲାର୍ମ ଦେଇ ରଖିଥିଲେ ଠିକ୍ ବାରଟା ବେଳକୁ । ମୋଟର ଆସିଲା । ଠିକ୍ ଏଲାର୍ମ ଏହି ସମୟରେ ବାଜି ଉଠିଲା ।

ଶ୍ରୀହର୍ଷ ବାବୁ ବ୍ୟସ୍ତ ହୋଇ ଏଲାର୍ମ ବନ୍ଦ କରି ଦେଲେ-କାଳେ ଆଉ କେହି ଶୁଣିବେ ଏଇ ଭୟରେ । ମୋଟରରେ ଢେଙ୍କାନାଳ ଆସି ଜଙ୍ଗଲ ଭିତର ଦେଇ ଷ୍ଟେଶନରୁ ଦୁଇ ମାଇଲ ଦୂରରେ ଗୋଟିଏ ଜଙ୍ଗଲ ଜାଗାରେ ମାଲଗାଡ଼ି ପାଇଁ ଅପେକ୍ଷା କରି ରହିଲେ । ଏହିଠାରେ ଚାଳକ ମାଲଗାଡ଼ି ଅଟକାଇବ । କଥା ନିଶ୍ଚୟ ଆଗରୁ ସ୍ଥିର ହୋଇଥିଲା । ପୂର୍ବ ନିର୍ଦ୍ଦେଶ ମତେ ମାଲଗାଡ଼ି ଯଥା ସ୍ଥାନରେ ଛିଡ଼ା ହେଲା । ଗୋଟିଏ ଡବାରୁ ତେଲ ଟିଣ ବୁହା ହେବାକୁ ଲାଗିଲା । ବଂଶୀଲାଲ ଜୋତାତଳେ ତେଲ ଚିକିଟା ଲାଗିଥିବାରୁ ମୁଁ ଅନୁମାନ କରୁଛି ଯେ ସେ ଡବା ଭିତରକୁ ଯାଇ ସବୁ ତଦାରଖ କରୁଥିଲା । ତେଲ ଟିଣ ବୁହା ହୋଇ ଯିବା ସାଙ୍ଗେ ସାଙ୍ଗେ ପାଣି ଟିଣ ଆଣି ରଖାହେଲା । କିନ୍ତୁ ହଠାତ୍ କ'ଣ ହେଲା ମୁଁ ଜାଣି ପାରୁ ନାହିଁ । ହଠାତ୍ କାହିଁକି ଶ୍ରୀହର୍ଷଲାଲ ଡବାତଳେ ଲୁଚିଗଲେ ମୁଁ ଜାଣିପାରି ନାହିଁ । ବଂଶୀଲାଲ ମଧ୍ୟ ଜଙ୍ଗଲ ଭିତରକୁ ଦୌଡ଼ିଗଲା । ଗାଡ଼ି ଚାଲିବାକୁ ଲାଗିଲା ହଠାତ୍ ଏହି ସମୟରେ । କୌଣସି ପୁଲିସ ବା କେତେକ ଜଙ୍ଗଲି ଲୋକଙ୍କୁ ଦେଖି ବୋଧହୁଏ ସବୁ ଗୋଳମାଳ ହୋଇଗଲା । ଯାହାହେଉ ଏ କଥା ସୁନିଶ୍ଚିତ ଯେ ଶ୍ରୀହର୍ଷବାବୁ ଡବାତଳେ ଲୁଚିଥିବା ସମୟରେ ଗାଡ଼ି ଚାଲିବାକୁ ଆରମ୍ଭ କଲା । ଅନେକ ଦୂର ଯାଏ ବିନ୍ଦୁ ବିନ୍ଦୁ ରକ୍ତ ଦୁଇ ଲାଇନ୍ ମଝିରେ ପଡ଼ିଥିବା ଏହାର ସ୍ପଷ୍ଟ ପ୍ରମାଣ ଦିଏ । ଶ୍ରୀହର୍ଷ ବାବୁ ବୋଧହୁଏ ଚିତ୍କାର କରିବାକୁ ଆରମ୍ଭ କଲେ । ଅଥବା ଚଳକ ସନ୍ଦେହ କରି ଗାଡ଼ି ଅଟକାଇଲା । ଗାର୍ଡ ମଧ୍ୟ ଆସିଲା । ଚାଳକ ସହିତ ଫାୟାର - ମେନ୍ ମଧ୍ୟ ଆସିଲା । ଏମାନଙ୍କର ପଦଚିହ୍ନ ମୁଁ ଦେଖିଛି । ସମସ୍ତେ ଶ୍ରୀହର୍ଷ ବାବୁଙ୍କୁ ଉଦ୍ଧାର କଲେ - କିନ୍ତୁ ସେତେବେଳକୁ ସେ ବୋଧହୁଏ ମୃତ, ଅଥବା ଅର୍ଦ୍ଧମୃତ । ଅନ୍ୟ ଉପାୟ ନ ଦେଖି ସମସ୍ତେ ତାକୁ ଇଞ୍ଜିନର ସର୍ବଭୁକ୍ ଜଠରରେ ନିକ୍ଷେପ କଲେ । ତେଣେ ବଂଶୀଲାଲଙ୍କୁ ଅତର୍କିତ ଭାବରେ ବାଘ ଆକ୍ରମଣ କଲା-ସେ ମଧ୍ୟ ମଲେ । ଢେଙ୍କାନାଳରେ ସବୁ ତେଲ ଟିଣ ମିଳିଛି ଏବଂ ମୋର ଅନୁମାନ ସେଠାକାର ଲୋକେ ତାଙ୍କ ବିବୃତିରେ ସେ କଥା ପ୍ରମାଣ କରିଛନ୍ତି । ସେମାନେ ବର୍ତ୍ତମାନ ଗିରଫ୍ ହୋଇଛନ୍ତି । ଡାକ୍ତର ଭାରି କ୍ଷୁଧାର୍ତ୍ତ । ମୁଁ ଆଉ ଡେରି କରିପାରିବି ନାହିଁ । ଏହି ଘଟଣା ବିଷୟରେ ଯଦି ସମସ୍ତ ପ୍ରମାଣ ପୁଙ୍ଖାନୁପୁଙ୍ଖ ରୂପେ ଆପଣ ଜାଣିବାକୁ ଚାହାନ୍ତି ତା'ହେଲେ ଦୟାକରି ମୋ ବସାକୁ ଯିବେ । ନମସ୍କାର । ''

ବସାକୁ ଫେରିଲୁ । ମୁଁ ଏତେଦୂର ଅଭିଭୂତ ହୋଇ ଯାଇଥିଲି ଯେ କୌଣସି ପ୍ରଶ୍ନ ପଚ୍ଛରିବାର ଉପଯୁକ୍ତ ମାନସିକ ଅବସ୍ଥା ମୋର ନଥିଲା । ଚାହା ପାନ କରୁ କରୁ ଗୋବର୍ଦ୍ଧନ ବାବୁ ପଚାରିଲେ, ''ଡାକ୍ତର, କ'ଣ ଭାବୁଛ ।''

''ଭାବୁଛି - ।''

ଭାବୁଥିଲି ଏ 'କଳାବଜାର' ରୂପକ ନୂଆ ବିକୃତିର କାରଣ କ'ଣ । କିନ୍ତୁ ମୋର ଚିନ୍ତା ମୁଁ ଠିକ୍ ସଜାଇ କହିବାକୁ ଅକ୍ଷମ ହେଲି ।

''ଭାବୁଛ ଯା' ମୁଁ ବୁଝିପାରୁଛି । କାରଣ ଆଉ କିଛି ନୁହଁ, ମନୁଷ୍ୟ ଆଜି ସବୁ କ୍ଷେତ୍ରରେ ବିରୋଧ କରୁଛି । ତିନୋଟି ବିଷୟ ସହିତ ମନୁଷ୍ୟର ମୁଖ୍ୟ ସମ୍ପର୍କ । ପ୍ରକୃତି - ସୃଷ୍ଟିର ନିୟମ, ନିଜେ - ନିଜର ଅନ୍ତରର ସ୍ୱାଭାବିକ ସଦ୍‌ଭାବ ଏବଂ ଅପର ଲୋକେ । ଏହି ତିନୋଟିଯାକ ସହିତ ଖାପ ଖୁଆଇ ନ ଚାଲି ଆମେ ଏହି ତିନୋଟି ସାମ୍ମୁଖ୍ୟରେ ଯୁଦ୍ଧ କରୁଛୁ । ଶକ୍ତି ଆମକୁ ଦେଉଛି ଦର୍ଶନ- ଓ ଆବେଗ- ବିହୀନ ବିଜ୍ଞାନ, ନିଜର ଲାଳସା ପ୍ରତି ପ୍ରଶ୍ରୟ, ଏବଂ ଧନର ଗର୍ବ । ପଚାରି ପାର ଏପରି କାହିଁକି ହେଲା । ଗୋଟିଏ କଥାରେ କହିଲେ କହିବି ଏ ସବୁର କାରଣ ଯୁଦ୍ଧ । ଜାତୟତାର ନୀଚ ଆଦର୍ଶ ଯାଇ ଯେଉଁଦିନ ସମସ୍ତ ପୃଥିବୀ ସାଧୁ ଦାର୍ଶନିକମାନଙ୍କର ଚିନ୍ତାଦ୍ୱାରା ପରିଚାଳିତ ହେବ ସେ ଦିନ ମନୁଷ୍ୟ ଶାନ୍ତି ପାଇବ । କିନ୍ତୁ ବର୍ତ୍ତମାନ ପ୍ରତ୍ୟେକ ଜାତି ବା ଦେଶ ଆପ୍ରାଣ ଚେଷ୍ଟା କରୁଛି ଅନ୍ୟ ଜାତିକୁ ବା ଦେଶକୁ ସବୁଥିରେ ପରାସ୍ତ କରିବାକୁ, ତେଣୁ ବିଜ୍ଞାନର ତାଣ୍ଡବ ଲୀଳା ଚାଲିଛି ।'' ଗୋବର୍ଦ୍ଧନ ବାବୁ ନୀରବ ହୋଇ ତଳକୁ ମୁହଁ ପୋତି ବସିଲେ । କେବଳ ଗୋଟିଏ ଦୀର୍ଘ ନିଃଶ୍ୱାସ ତାଙ୍କର ବିଛଣା ଚାଦରକୁ ଟିକିଏ ଦୋହଲାଇ ଦେଇ ମିଳାଇ ଗଲା ।

କହିବା ବାହୁଲ୍ୟ ପ୍ରାଣବଲ୍ଲଭ ବାବୁ ଆସି ସବୁ ବିଷୟ ବୁଝି ନେଲେ । ସବୁ ଖବରକାଗଜ ଏହି ଲୋମହର୍ଷଣକାରୀ ଘଟଣା ଏବଂ ରହସ୍ୟ ଭେଦର ଅଦ୍ଭୁତ ବ୍ୟାପାର ପ୍ରକାଶ କଲେ । ପ୍ରାଣବଲ୍ଲଭ ବାବୁ ଏହା ପରେ ସରକାରଙ୍କଠାରୁ ସମ୍ମାନ ଏବଂ ଜନସାଧାରଣଙ୍କ ଠାରୁ ବହୁ ପ୍ରଶଂସା ପାଇଲେ । ଗୋବର୍ଦ୍ଧନ ବାବୁଙ୍କୁ ସେ ସମ୍ବାଦଗୁଡ଼ିକ ପଢ଼ି ଶୁଣାଇ ମୁଁ କ୍ଷୁବ୍ଧ ଭାବରେ ଚାହିଁଲି । ସେ ହସି କହିଲେ, ''ନା, ଡାକ୍ତର, ନା । ମୁଁ ତ କହିଛି ବ୍ୟାପକ ଖ୍ୟାତି ମୁଁ ଚାହେଁ ନା । ତା' ଛଡ଼ା -

ଦ୍ୱା ସୁପର୍ଣ୍ଣା ସଯୁଜା ସଖାୟା ସମାନଂ ବୃକ୍ଷଂ ପରିଷସ୍ୱଜାତେ ।
ତୟୋରନ୍ୟଃ ପିପ୍ପଳଂ ସ୍ୱାଦ୍ୱତ୍ୟନଶ୍ନନ୍ନନ୍ୟୋଽଭିଚାକଶୀତି ॥ *

ସର୍ବଦା ସମ୍ମିଳିତ ଓ ସମାନ ନାମଧାରୀ ଦୁଇଟି ପକ୍ଷୀ ଗୋଟିଏ ଗଛରେ ଅଛନ୍ତି । ଗୋଟିଏ ସୁସ୍ୱାଦୁ ଫଳ ଖାଉଛି, ଅନ୍ୟଟି କେବଳ ଏହା ଦେଖୁଛି ।''

* * *

---

* ମୁଣ୍ଡକୋପନିଷଦ୍ : ୩ୟ ମୁଣ୍ଡକ, ୧ମ ଖଣ୍ଡ, ୧ମ ମନ୍ତ୍ର ।

- ସଂପାଦକ

# ଚକ୍ରବୃଦ୍ଧି

ଗୋବର୍ଦ୍ଧନ ବାବୁ ପ୍ରତ୍ୟେକଟି ଘଟଣାକୁ ଏପରି ସୁନ୍ଦର ଭାବରେ ବୈଜ୍ଞାନିକଙ୍କ ଭଳି ବିଶ୍ଳେଷଣ କରନ୍ତି ଯେ ତା'ର ଅନୁସନ୍ଧାନରେ ତାଙ୍କର ବିଫଳ ହେବା କଥା ମନକୁ ଆସେ ନାହିଁ । ତାଙ୍କର ମସ୍ତିଷ୍କ ଗୋଟିଏ ବିରାଟ ଗବେଷଣାଗାର । ସମଗ୍ର ବିଶ୍ୱରେ ଏପରି କୌଣସି ସମସ୍ୟା ନାହିଁ ଯାହା ବିଷୟରେ ସେଠି ଗବେଷଣା ନ ହେଉଛି । ବାହାରକୁ ଦେଖିବାକୁ କିନ୍ତୁ ସେ ଅତି ବୋକାଙ୍କ ଭଳି । ବଡ଼ ବଡ଼ ଦୁଇଟି ଆଖି ସବୁବେଳେ ନିରୀହ ଭାବରେ ଚାହିଁ ରହିଛି । ବାହାରର ସରଳତା ଲୁଚାଇ ରଖିଛି ତାଙ୍କର ମସ୍ତିଷ୍କର ଜଟିଳକୁ ସରଳ କରିବାର ଅସାଧାରଣ କ୍ଷମତାକୁ ।

ନିମ୍ନୋକ୍ତ ଘଟଣାଟିରେ ସେ ସମ୍ପୂର୍ଣ୍ଣ ବିଫଳ ନ ହେଲେ ହେଁ ଡାକ୍ତରୀ ଭାଷାରେ କୁହାଯାଇପାରେ 'ଅସ୍ତ୍ରୋପଚାର ସଫଳ କିନ୍ତୁ ରୋଗୀ ମୃତ !' ଘଟଣାଟି ସାମାନ୍ୟ ହେଲେ ହେଁ ପ୍ରକାଶ ଯୋଗ୍ୟ । ଏକ ବୃହତ୍ତର ପରିପ୍ରେକ୍ଷୀରେ ଦେଖିଲେ ସଫଳତା ମନୁଷ୍ୟକୁ ଯେତେଦୂର ଆଗେଇ ନେଇଯାଏ, ବିଫଳତା ମଧ୍ୟ ଠିକ୍ ସେତିକି ଦୂର ଆଗେଇ ନିଏ । ପ୍ରକୃତ ବୈଜ୍ଞାନିକ ପକ୍ଷରେ ଦୁଇଟିର ମୂଲ୍ୟ ସମାନ । ତେଣୁ ଗୋବର୍ଦ୍ଧନ ବାବୁଙ୍କ ଏ ଅନୁସନ୍ଧାନଟି ତାଙ୍କର ଅନ୍ୟ ଅନୁସନ୍ଧାନ ଗୁଡ଼ିକ ତୁଳନାରେ 'ସଫଳ' ବୋଲି କୁହା ନ ଗଲେ ମଧ୍ୟ ମୁଁ ମୋର ଖାତାରେ ଲେଖା ହୋଇ ରହିଥିବା ତାଙ୍କର ଅନେକ ଗୁଡ଼ିଏ ଅନୁସନ୍ଧାନ ମଧ୍ୟରୁ ଏଇଟି ପ୍ରକାଶଯୋଗ୍ୟ ବାଛିଲି ।

ହସ୍‌ପିଟାଲରେ ହାଉସ୍ ସର୍ଜନ ଥିବା ସମୟରେ ମୁଁ ଗୋବର୍ଦ୍ଧନ ବାବୁଙ୍କ ବସାରୁ ଚାଲି ଆସି ଗୋଟିଏ ସରକାରୀ ଘରେ ଥାଏ । ଚାକିରି କରିବି କି ସ୍ୱାଧୀନ ବ୍ୟବସାୟ କରିବି ଏ ଚିନ୍ତା ସବୁବେଳେ ମୋ ମୁଣ୍ଡରେ ଖେଳୁଥାଏ । ବିଲାତ ଯିବାକୁ ମଧ୍ୟ ଭାରି ଇଚ୍ଛା, କିନ୍ତୁ ଆର୍ଥିକ ଅବସ୍ଥା ଯେପରି ସେଥିରେ ସେ କଥା ଭାବିବା ବୃଥା । ଏହିପରି ଅନ୍ୟାନ୍ୟ ଅନେକ କାରଣରୁ ମୋର ଦିନ ଗୁଡ଼ିକ ଉଦ୍‌ବେଗ ଭିତରେ କଟୁଥାଏ । ଖାଲି ପ୍ରତ୍ୟେକ ଦିନ ସନ୍ଧ୍ୟାବେଳେ ଗୋବର୍ଦ୍ଧନ ବାବୁଙ୍କ ସହିତ ଗଳ୍ପ କରିବା ସମୟଟି ଆନନ୍ଦରେ କଟୁଥାଏ । ମନର ଏହିପରି ଦୋଦୁଲ୍ୟମାନ ଅବସ୍ଥାରେ ଦିନେ ସକାଳେ ଗୋବର୍ଦ୍ଧନ ବାବୁଙ୍କ ପୁରୁଣା ଚାକର ରାମା ଖଣ୍ଡେ ଚିଠି ଦେଇଗଲା । ଗୋବର୍ଦ୍ଧନ ବାବୁ ଲେଖି ଅଛନ୍ତି, ''ଡାକ୍ତର, ଆଜି ଦିନ ଦଶଟାବେଳେ ମୋ ବସାରେ ଖାଇବ ।'' ବେଶୀ କହିବାର ବା ଲେଖିବାର ମୁଁ ତାଙ୍କୁ କଦାପି ଦେଖି ନାହିଁ । କିନ୍ତୁ ସେ ଯେତେ କମ୍ ଲେଖନ୍ତୁ ବା କୁହନ୍ତୁ ନା କାହିଁକି ସେଥିରେ ତାଙ୍କର ଆନ୍ତରିକତା ପୂର୍ଣ୍ଣ

ପ୍ରକାଶ ପାଏ । ମୁଁ ଆଉ ଅପେକ୍ଷା ନକରି ସାଙ୍ଗେ ସାଙ୍ଗେ ତାଙ୍କ ବସାକୁ ବାହାରିଗଲି ।

ମୁଁ ପହଞ୍ଚିଲା ବେଳକୁ ସେ ବାହାରି ଯାଇଥିଲେ ତାଙ୍କର ଡିଉସନ୍‌କୁ । ଏହାହିଁ ମୁଁ ଆଶଙ୍କା କରିଥିଲି । ଅଗତ୍ୟା ଏକା ତାଙ୍କ ବସା ଘରେ ବସି ରହିଲି । ଅନେକ ଦିନ ଏ ଘରେ ମୁଁ ଏକା ରହିଛି । କେତେ ସମସ୍ୟାର ସମାଧାନ ଓ କେତେ ରହସ୍ୟର ଉଦ୍‌ଘାଟନ ଏହି ଘରେ ହେବାର ମୁଁ ଦେଖିଛି । ଆଜି ଏ ଘରଟି କିନ୍ତୁ ମୋତେ ନୂଆ ପରି ଲାଗିଲା । ଚିର ପରିଚିତ କୌଣସି ବ୍ୟକ୍ତି ବା ପଦାର୍ଥ ମନର କେବେ କୌଣସି ବିଶେଷ ଅବସ୍ଥାରେ ହଠାତ୍ ନୂଆ ଲାଗେ ଏବଂ ନୂତନ ଭାବ ଆଣି ଦିଏ । ଘରଟିର ଚାରିଆଡ଼କୁ ଅନାଇ ଦେଖିଲି; ବହି, ବେହେଲା, ଲୁଗା, ବିଛଣା ଆଦି ନାନା ଜିନିଷ ଠିକ୍ ସେହିପରି ଯଥାସ୍ଥାନରେ ସୁସଜ୍ଜିତ ହୋଇ ରଖା ହୋଇଛି । ପ୍ରଥମ ଦୃଷ୍ଟିରେ ହିଁ ମନେହୁଏ ଗୃହସ୍ୱାମୀଙ୍କ ଏ ସାମଗ୍ରୀଗୁଡ଼ିକ ଭାରି ପ୍ରିୟ । ଗୃହସ୍ୱାମୀଟିକୁ ଘନିଷ୍ଠ ଭାବେ ଜାଣିବାର ମୁଁ ଯେପରି ସୁବିଧା ଓ ସୁଯୋଗ ପାଇଛି ଆଉ ବୋଧହୁଏ କେହି ସେପରି ପାଇନାହାନ୍ତି । ମୁଁ ଜାଣେ ତାଙ୍କର ଅନ୍ତରଟି ଗୋଧୂଳିର ଛାୟାପରି ଉଦାସ । ଯେକୌଣସି ମୁହୂର୍ତ୍ତରେ ତାଙ୍କର ଏତେ ଦିନର ଅତି ପ୍ରିୟ ଜିନିଷଗୁଡ଼ିକୁ ସେ ନିର୍ବିକାର ଭାବରେ ତ୍ୟାଗ କରିପାରନ୍ତି । ନିଜ ଶରୀର ପ୍ରତି ମଧ ମନୋଭାବଟି ତାଙ୍କର ଠିକ୍ ଏହିପରି - ଯତ୍ନ ଅଛି, କିନ୍ତୁ ମୋହ ବା ଆସକ୍ତି ନାହିଁ । ମୋର ମନେ ପଡ଼ିଗଲା ସେହି ବର୍ଷାଦିନର ସନ୍ଧ୍ୟା ଯେଉଁଦିନ ଗୋବର୍ଦ୍ଧନ ବାବୁଙ୍କ ସହିତ ମୋର ପ୍ରଥମ ପରିଚୟ ହୁଏ । ତାଙ୍କ ବିଷୟରେ ଏହିପରି ନାନା ଚିନ୍ତା କରୁ କରୁ କେତେବେଳେ ଯେ ମନ ପୁଣି ନିଜ ଆଡ଼କୁ ଫେରି ଆସିଛି ମୁଁ ଜାଣି ପାରି ନାହିଁ । ନିଜର ବର୍ତ୍ତମାନ ଓ ଭବିଷ୍ୟତ ଚିନ୍ତାରେ ମୁଁ କେତେବେଳେ ଯାଏ ଅଭିଭୂତ ହୋଇ ରହିଥିଲି ମୁଁ ଜାଣେନା । ହଠାତ୍ ଶୁଣିଲି ଗୋବର୍ଦ୍ଧନ ବାବୁ କହୁଛନ୍ତି, ''ନା ଡାକ୍ତର, ବିଲାତ ଯାଇ ବା ଲାଭ କ'ଣ । ଚାକିରିରେ ପୁଣି କି ସୁଖ ବା ସାର୍ଥକତା ଅଛି ? ଗୋଟିଏ ଦୋକାନ ଖୋଲି ଖୁବ୍ ମନ ଦେଇ ଡାକ୍ତରି ଆରମ୍ଭ କର । ଆଉ ଅନ୍ତତଃ ବର୍ଷେ ଅପେକ୍ଷା କଲେ ତୁମେ ନିଜେ ହିଁ ବୁଝିପାରିବ ତୁମର ପ୍ରଣୟିନୀକୁ ବିବାହ କରିବା ଉଚିତ କି ନା ! ଯୌବନର ପ୍ରଥମ ଆବେଗଟା ଟିକିଏ କମିଯାଉ । ପ୍ରଣୟିନୀ ଯେ ସବୁବେଳେ ସ୍ତ୍ରୀ ହେବା ଉଚିତ ଏହାର କୌଣସି ମାନେ ନାହିଁ । ବରଂ ମୋ ମତରେ ନ ହେବା ହିଁ ଭଲ ।''

କହିଲି, ''ଚାକିରି ବିଷୟରେ ଆପଣ ଠିକ୍ କହିଛନ୍ତି । କିନ୍ତୁ ଅନ୍ୟ ବିଷୟରେ...'' ଏତେବେଳକୁ ଚମକି ପଡ଼ି ଚାହିଁଲେ । ମୋର ମନ ଭିତରେ ଯେଉଁ ପ୍ରଶ୍ନଗୁଡ଼ିକ ଉଠୁଥିଲା ତା'ର ଉତ୍ତର ସେ ଏପରି ଭାବରେ ଦେଲେ ଯେ ପ୍ରଥମେ ଯେମିତି ମୋର ଧାରଣା ହେଲା ତାଙ୍କ ସହିତ ଏତେ ସମୟ ଆଲୋଚନା ଚାଲିଥିଲା । ବର୍ତ୍ତମାନ ହଠାତ୍ ବିସ୍ମିତ ହୋଇ ଭାବିଲି ଏ ମୋର ମନ କଥା ଜାଣିଲେ କିପରି । ମୁହଁରୁ କେବଳ ବାହାରିଲା ''ଆଶ୍ଚର୍ଯ୍ୟ !''

ଗୋବର୍ଦ୍ଧନ ବାବୁ ଏତେକ୍ଷଣ ଦୁଆର ବନ୍ଧ ପାଖରେ ଛିଡ଼ା ହୋଇଥିଲେ । ହସି ହସି ଭିତରକୁ ପ୍ରବେଶ କରି କହିଲେ, ''ନା, ଆଦୌ ଆଶ୍ଚର୍ଯ୍ୟ ନୁହେଁ । ଅତି ସାଧାରଣ କଥା ।

ମୁଁ ଯଦି କୁହେ ଯେ କାଲି ସେଲୁନ୍‌ରେ ବାଳ କାଟିବା ସମୟରେ ତୁମେ ଭଣ୍ଡାରି ସହିତ କଳହ କରିଥିଲ ତେବେ କ'ଣ ତୁମେ ଆଶ୍ଚର୍ଯ୍ୟ ହେବ ଆପଣଙ୍କୁ ?''

''ନିଶ୍ଚୟ ହେବି । ସେଥିପାଇଁ ଆପଣ ଆଉ ଗୋଟିଏ କାରଣ ଦେଲେ ମାତ୍ର । ବର୍ତ୍ତମାନ ଦୁଇଟିଯାକ ଅନୁମାନର ଭିତ୍ତି ବୁଝାଇ କହିବାକୁ ହେବ ।''

''ଆଚ୍ଛା । ତୁମେ ଯେଉ ଢଙ୍ଗରେ ବାଳ କାଟିବାର ମୁଁ ଆଜିପର୍ଯ୍ୟନ୍ତ ଦେଖି ଆସିଛି ଏ ବାଳକଟା ତାଠୁଁ ସମ୍ପୂର୍ଣ୍ଣ ଅନ୍ୟ ପ୍ରକାରର । ବାଳକଟାର ଢଙ୍ଗଟି କେହି ସାଧାରଣତଃ ବଦଳାଏ ନାହିଁ । ତୁମର ବାଳ କାଟିବାର ଢଙ୍ଗ ହେଉଛି ମୁଣ୍ଡର ବାଳ ବଡ଼ ବଡ଼ କରି ରଖିବା । ଆଉ ମଧ୍ୟ ତୁମେ କଳ- କଇଞ୍ଚିରେ କାନ ପାଖ ବାଳ କାଟିବାକୁ ଭଲ ପାଅ ନାହିଁ । ସ୍ପଷ୍ଟ ଦେଖୁଛି ବେକ ପାଖ ବାଳ କଳ-କଇଞ୍ଚିରେ କଟା ହୋଇଛି । ତୁମେ ଅନ୍ୟମନସ୍କ ଥିବା ସମୟରେ ଭଣ୍ଡାରି - ଖୁବ୍ ସମ୍ଭବ ଗୋଟିଏ ନୂଆ ଭଣ୍ଡାରି -କଳ ବ୍ୟବହାର କରିଛି, ଆଜିକାଲିକାର ଫେସନ ଅନୁଯାୟୀ । ଚମକି ପଡ଼ି ତୁମେ ଦର୍ପଣରେ ଏହା ଦେଖି ଭଣ୍ଡାରି ଉପରେ ରାଗି ଯାଇଛ । କାନ ଓ ବେକ ପାଖରେ ପାତଳା ବାଳ ସହିତ ଖାପ ଖୁଆଇ ଉପର ବାଳ ଛୋଟ କରୁ କରୁ ଏକଦମ୍ ଛୋଟ ହୋଇଯାଇଛି । ଏଥିରୁ ପୁଣି ଦୁଇଟି ଅନୁମାନ ହୁଏ । ତୁମେ ଆଜିକାଲି ବେଶୀ ଚିନ୍ତା କରୁଛ ଏବଂ ଦ୍ୱିତୀୟଟି ହେଉଛି ଏହି ବାଳକଟା ପାଇଁ ତୁମେ ଟିକିଏ ଆଶ୍ୱସ୍ତି ଅନୁଭବ କରୁଛ - ଟିକିଏ ସଙ୍କୁଚିତ ବି ହେଉଛ । ତେଣୁ ହୋଇପାରେ କିଛିକ୍ଷଣ ପୂର୍ବେ ଯେଉଁ ବୈରାଗ୍ୟର ଲକ୍ଷଣ ମୁଁ ଦେଖିବାକୁ ପାଇଥିଲି ତାହା ମୂଳରେ ଅଛି ଏହି ବାଳକଟା । ମନର ଗଭୀରତା ଓ ରହସ୍ୟ, ଗଭୀରତମ ସମୁଦ୍ରଠାରୁ ଗଭୀରତର ଓ ଅଧିକ ରହସ୍ୟମୟ । ମନୁଷ୍ୟର ପ୍ରତ୍ୟେକ ଅଙ୍ଗ ତା'ର ଅଜ୍ଞାତରେ ମନର ଭାବ ଅନେକାଂଶରେ ପ୍ରକାଶ କରେ । ମୁଁ ଅନେକ ବେଳଯାଏଁ ଛିଡ଼ା ହୋଇ ତୁମକୁ ଲକ୍ଷ କରୁଥିଲି । ତୁମର ଆଖି ଓ ହାତର ବିଭିନ୍ନ ପ୍ରକାର ସଞ୍ଚାଳନ, ବସିବାର ନାନା ଭଙ୍ଗୀ ହତାଶ ଚାହାଁଣି ଆଦି ସବୁ ବିଶ୍ୱାସଯୋଗ୍ୟ ଭାବରେ ତୁମର ପ୍ରତ୍ୟେକ ଭାବନା ପ୍ରକାଶ କରୁଥିଲା । ମୋର ଆସିବା ତୁମେ ବୁଝିପାରିନା-ଅତଏବ ବୁଝିଲି ତୁମେ ଗଭୀର ଚିନ୍ତାମଗ୍ନ । ତୁମେ ଘରର ଚାରିଆଡ଼କୁ ଅନାଇ ମୋ ଆରାମଚୌକି ସାମନାରେ ପଡ଼ିଥିବା ତୁମର ଚିର ପରିଚିତ ସେହି ଚୌକିରେ ବସି ମୋ ଚୌକି ଆଡ଼କୁ ଅନାଇ ରହିଲ । ବୁଝିଲି ତୁମେ ମୋ ବିଷୟ ଭାବୁଛ । ଯଦି ଦେଖ ଏକାକୀ ବସିଥିବା ସମୟରେ କେହି ହାତ ପାପୁଲିଟି ଓଲଟାଇ କାଣି ଆଙ୍ଗୁଠି ଓ ତା' ପାଖ ଆଙ୍ଗୁଳିଟି ଟିକିଏ ଟେକେ ତା'ହେଲେ ଜାଣିବ ତା' ମନର ବୈରାଗ୍ୟ ଆସିଛି । ମୋ କଥା ଭାବୁ ଭାବୁ ତୁମର ବୈରାଗ୍ୟ ଆସିଲା କାହିଁକି ? ନିଶ୍ଚୟ ତୁମେ ଭାବିଥିଲ ମୁଁ ସନ୍ୟାସୀ । ଚିନ୍ତା କରୁ କରୁ ତୁମେ ତଳକୁ ମୁହଁ ପୋତିଲ । ନିଜ ବିଷୟରେ ଚିନ୍ତା କରିବାର ଏହା ପ୍ରଧାନ ଲକ୍ଷଣ । ତୁମେ ଅନେକ ବାର ମୋତେ କହିଛ ତୁମର ବର୍ତ୍ତମାନ ସମସ୍ୟା ବିଷୟରେ । ଅତଏବ ତୁମେ ନିଜ ବିଷୟରେ କ'ଣ ଭାବୁଛ ଜାଣିବାକୁ କଷ୍ଟ ହେଲା ନାହିଁ ।''

''କିନ୍ତୁ ପ୍ରଣୟିନୀ - ?''

ବାଧାଦେଇ ଗୋବର୍ଦ୍ଧନ ବାବୁ କହିଲେ- ''ନିଜ ବିଷୟରେ ଭାବୁ ଭାବୁ ତୁମ ମୁହଁରେ ଗୋଟିଏ ହସର ଢେଉ ଖେଳିଗଲା । ବୁଝିଲି ତୁମର ମନର ଗଗନରେ ଚନ୍ଦ୍ରୋଦୟ ହେଲା । ମାତ୍ର ଠିକ୍ ପର ମୁହୂର୍ତ୍ତରେ ସେଠି କାହିଁକି ଜମି ଉଠିଲା ବିଷାଦର ମେଘ ? ତୁମର ଆଖି ଛଳଛଳ ହୋଇଗଲା କାହିଁକି ? ବୁଝିଲି ପ୍ରଣୟର ଆନନ୍ଦ, ପରିଣୟର ସମସ୍ୟାରେ ଉପସ୍ଥିତ ହୋଇଛି । ଏତିକିବେଳେ ମୁଁ ମୋର ଅସ୍ତିତ୍ୱ ଜଣାଇବା ଉଚିତ ମନେକଲି ।''

ମନଟି ଏକଦମ୍ ହାଲୁକା ହୋଇଗଲା । ଦଶଟା ବାଜି ଯାଇଥିବାରୁ ଆମେ ଖାଇବାକୁ ଗଲୁ । ଖାଇବା ପ୍ରାୟ ଶେଷ ହୋଇଆସୁଛି ଏହିପରି ସମୟରେ ବାହାର କବାଟର ଶିକୁଳି ଝନ୍‌ଝନ୍ ହୋଇ ବାଜି ଉଠିଲା । ମନଟା ପୁଣି ବିରକ୍ତ ହୋଇଗଲା । ଏତେ ଦିନ ଏଠି ରହି ଅନ୍ତତଃ ଏତିକି ଅଭିଜ୍ଞତା ହୋଇଛି ଯେ ଶିକୁଳିର ଝନ୍ ଝନ୍ ଶବ୍ଦରୁ ବୁଝିପାରେ ଆଗନ୍ତୁକର ଉଦ୍ଦେଶ୍ୟ କ'ଣ । ଭାବିଥିଲି ଆଜି ଦିନଟା ଶାନ୍ତିରେ ଗୋବର୍ଦ୍ଧନ ବାବୁଙ୍କ ସହ କଟାଇବି । ଅସହାୟ ଭାବରେ ଗୋବର୍ଦ୍ଧନ ବାବୁଙ୍କ ଆଡ଼କୁ ଅନାଇଲି । ସେ ମୋ ଆଡ଼କୁ ଚାହିଁ ହସି କହିଲେ, ''ଉପାୟ କ'ଣ ଡାକ୍ତର ! ଶବ୍ଦରୁ ମନେ ହେଉଛି ପୁରୁଷ-ବିପଦରେ ପଡ଼ି ଆସିଛି । ବୋଧହୁଏ ଛିଡ଼ା ହୋଇ ପାରୁ ନାହିଁ । ଶୀଘ୍ର ହାତ ଧୋଇ ଆସ ।'' ଶୀଘ୍ର ହାତ ଧୋଇ ଆମେ ଉଠିଗଲୁ । ଗୋବର୍ଦ୍ଧନ ବାବୁ କବାଟ ଖୋଲି ଦେଲେ ଏବଂ ସାଙ୍ଗେ ସାଙ୍ଗେ ଜଣେ ଭଦ୍ରଲୋକ ଟଳି ଟଳି ପ୍ରବେଶ କରି ଗୋଟିଏ ଚୌକିରେ ମୁଣ୍ଡରେ ହାତ ଦେଇ ବସି ପଡ଼ିଲେ । କଥା କହିବାର ଶକ୍ତି ତାଙ୍କର ନଥାଏ, ସେ ହାତରେ ଠାରି ଗିଲାସେ ପାଣି ଆଣିବାକୁ କହିଲେ । ମୁଁ ଦୌଡ଼ି ଯାଇ ଗିଲାସେ ପାଣି ଆଣି ଦେଲି । ଭଦ୍ରଲୋକ ଏକା ନିଃଶ୍ୱାସକେ ପାଣିତକ ପିଇ କିଛିକ୍ଷଣ ଥକ୍କା ମାରି ବସି ରହିଲେ । ମୁଁ ଆଶ୍ଚର୍ଯ୍ୟ ହୋଇ ଗୋବର୍ଦ୍ଧନ ବାବୁଙ୍କ ଆଡ଼କୁ ଅନାଇ ଦେଖିଲି ସେ ଏକ ଦୃଷ୍ଟିରେ ଭଦ୍ରଲୋକଙ୍କୁ ଦେଖୁଛନ୍ତି । ସୁଟ କୋଟ ପିନ୍ଧା ହୃଷ୍ଟ ପୁଷ୍ଟ ଜଣେ ଭଦ୍ରଲୋକ । କୌଣସି ଆକସ୍ମିକ ବିପଦ ବୋଧହୁଏ ତାହାଙ୍କୁ ଅତ୍ୟଧିକ ବିଚଳିତ କରିଛି । କିଛିକ୍ଷଣ ପରେ ଭଦ୍ରଲୋକ ଟିକିଏ ସୁସ୍ଥ ମନେ ହେବାରୁ ଗୋବର୍ଦ୍ଧନ ବାବୁ ପଚାରିଲେ, ''ଆପଣଙ୍କର ପରିଚୟ ? ଏ ଅସ୍ଥିରତାର କାରଣ କ'ଣ ?''

ଭଦ୍ରଲୋକ ପ୍ରାୟ କାନ୍ଦି କାନ୍ଦି କହିଲେ, ''ଗୋବର୍ଦ୍ଧନ ବାବୁ, ଆପଣ ମୋତେ ଚିହ୍ନନ୍ତି ନାହିଁ । ମୁଁ ଆପଣଙ୍କ ଅଦ୍ଭୁତ କ୍ଷମତା କଥା ଅନେକଙ୍କଠାରୁ ଶୁଣିଛି । ମୋର ଯେଉଁ ସର୍ବନାଶ ଘଟିଛି ସେଥିରୁ ଆପଣହିଁ କେବଳ ମୋତେ ଉଦ୍ଧାର କରିପାରିବେ । ମୁଁ ଜାଣେ ପୁଲିସ କିଛି କରିପାରିବ ନାହିଁ । ମୋର ନାମ ନରସିଂହ ରାଓ, ଘର ଗଞ୍ଜାମରେ । ମୋର ବ୍ୟବସାୟ ସକାଶେ ହଠାତ୍ ଦଶଲକ୍ଷ ଟଙ୍କା ଆବଶ୍ୟକ ହେବାରୁ ମୁଁ ମୋର ଭଉଣୀର ଦଶଲକ୍ଷ ଟଙ୍କାର ସରକାରୀ କାଗଜ 'ଉତ୍କଳ ବେଙ୍କ' ପାଖରେ ବନ୍ଧା ରଖିଥିଲି । 'ଉତ୍କଳ ବେଙ୍କ' ତାଙ୍କ ନିୟମ ଅନୁସାରେ କେବଳ ଶତକଡ଼ା ଷାଠିଏ ଦେବାକୁ ସ୍ୱୀକୃତ ହେବାରୁ ବାକି ଚାରିଲକ୍ଷ ଟଙ୍କା

ସକାଶେ ମୁଁ 'କଳିଙ୍ଗ ବେଙ୍କ' ପାଖକୁ ଗଲି । 'କଳିଙ୍ଗ ବେଙ୍କ'କୁ ଗୋଟିଏ ଚାରିଲକ୍ଷ ଟଙ୍କାର ଚେକ୍ ଲେଖିଦେଇ କହିଲି ଯେ ମାସକ ପରେ ତାହାକୁ 'ଉତ୍କଳ ବେଙ୍କ'କୁ ଦେଲେ ତାହା ସେ ଭଙ୍ଗାଇ ଟଙ୍କା ଦେବେ ମୋର ଆଶା ଥିଲା ଯେ ମାସକ ପରେ ମୁଁ ଉତ୍କଳ ବେଙ୍କକୁ ସମସ୍ତ ଟଙ୍କା ସୁଝି ଦେବି । ଯଦି ବା ସୁଝି ନପାରେ, ତେବେ ଉକ୍ତ ଦୁଇଟି ବେଙ୍କ ମୋର ଦଶ ଲକ୍ଷ ଟଙ୍କାର କାଗଜ ଭଙ୍ଗାଇ ନିଜ ନିଜର ଟଙ୍କା ନେଇ ନେବେ । କଳିଙ୍ଗ ବେଙ୍କ ଏଥିରେ ରାଜି ହେଲେ-କିନ୍ତୁ ଗୋଟିଏ ସର୍ତ୍ତରେ ଯେ ସେହି ଚେକ୍ ଉପରେ ଉତ୍କଳ ବେଙ୍କକୁ ଲେଖିବାକୁ ହେବ ଯେ ସେମାନେ ମାସକ ପରେ ସେ ଚେକ୍‌ଟି ଭଙ୍ଗାଇ ଦେବେ । ମୁଁ ଉତ୍କଳ ବେଙ୍କକୁ ସେ ସର୍ତ୍ତରେ ରାଜି କରାଇ କଳିଙ୍ଗ ବେଙ୍କରୁ ମଧ ଚାରିଲକ୍ଷ ଟଙ୍କା ଧାର ନେଲି । ମାସକ ପରେ ଟଙ୍କା ପରିଶୋଧ କରିବାକୁ ଆସି ଶୁଣୁଛି ଯେ ମୋର କାଗଜ ପତ୍ର ଚୋରି ଯାଇଛି । ମୋର ସର୍ବନାଶ ହୋଇଛି । ଆପଣଙ୍କ ଛଡ଼ା ଏ ବିପଦରୁ ମୋତେ କେହି ଉଦ୍ଧାର କରି ପାରିବେ ନାହିଁ । ମୁଁ ଆଜି,ଦିନ ଗାଡ଼ିରେ ମୋର ଭଉଣୀ ଘରକୁ ଯାଉଛି । ସାତଦିନ ପରେ ଆସିବି । ଏହା ଭିତରେ ଯଦି ଆପଣ ଦୟାକରି କିଛି କରିପାରନ୍ତି ତେବେ ମୋତେ ଜଣାଇବେ । ମୋର ଠିକଣା ରଖନ୍ତୁ । ଆପଣଙ୍କ ଖର୍ଚ୍ଚ ସକାଶେ ମୁଁ ପାଞ୍ଚ ହଜାର ଟଙ୍କା ଦେଇଯାଉଛି । ଆପଣ ଏ ଅନୁସନ୍ଧାନର ଭାର ନେଲେ ମୁଁ ଆଶ୍ୱସ୍ତ ହେବି ।''

ଉପରୋକ୍ତ କଥାଗୁଡ଼ିକ ସେ ଘନ ଘନ ଦୀର୍ଘନିଃଶ୍ୱାସ ସହିତ ବାଷ୍ପାକୁଳ କଣ୍ଠରେ କହିଲେ । ଗୋବର୍ଦ୍ଧନ ବାବୁ କିଛି କହିବା ପୂର୍ବରୁ ନରସିଂହ ବାବୁ ପାଞ୍ଚ ହଜାର ଟଙ୍କା ରଖି ଦେଇ ଟଳି ଟଳି ବାହାରି ଗଲେ । ସେ ଯିବାର ଅଳ୍ପ ସମୟ ପରେ ପ୍ରବେଶ କଲେ ପୁଲିସ୍ ଇନ୍ସପେକ୍ଟର ପ୍ରାଣବଲ୍ଲଭ ବାବୁ ଓ ଉତ୍କଳ ବେଙ୍କର ମେନେଜର ମହେନ୍ଦ୍ର ବାବୁ । ମହେନ୍ଦ୍ର ବାବୁଙ୍କ ମୁହଁଟି ଭୟରେ ଓ ଉତ୍କଣ୍ଠାରେ କାଳିଆ ପଡ଼ିଯାଇଛି । ପ୍ରାଣବଲ୍ଲଭ ବାବୁ ତାଙ୍କର ବିରାଟ ବପୁଟି ଚୌକି ଉପରେ ଥୋଇ କହିଲେ, ''ଆପଣଙ୍କ ମନକୁ ଲାଖି ଗୋଟିଏ ଘଟଣା ଘଟିଛି । ଅବଶ୍ୟ କାଗଜ ଯେ ବେଙ୍କରେ କିରାଣୀ ସୁଶୀଲ ମୁଖାର୍ଜୀ ଚୋରି କରିଛି ସେଥିରେ ଆଉ ସନ୍ଦେହ ନାହିଁ । ବର୍ତ୍ତମାନ ତାକୁ ହିଁ ଖୋଜି ବାହାର କରିବାକୁ ହେବ । ଓଃହୋ, ଆପଣତ ଘଟଣାଟି ଜାଣନ୍ତି ନାହିଁ । ମହେନ୍ଦ୍ର ବାବୁ, ଆପଣ ଘଟଣାଟି କୁହନ୍ତୁ ।''

ମହେନ୍ଦ୍ର ବାବୁ ହତାଶ ଭାବରେ କହିଲେ, ''କହିବି ଆଉ କ'ଣ । ନରସିଂ ରାଓ...'' ବାଧାଦେଇ ଗୋବର୍ଦ୍ଧନ ବାବୁ କହିଲେ, ''ସେ କଥା ମୁଁ ଜାଣେ । ଆପଣ ବର୍ତ୍ତମାନ ସୁଶୀଲ ବାବୁଙ୍କ କଥା କୁହନ୍ତୁ ।''

''ଓ, ନରସିଂହ ବାବୁ ତା'ହେଲେ ଆସିଥିଲେ ? ତାଙ୍କର ଯେ ଖାଲି ସର୍ବନାଶ ହୋଇଛି ତା' ନୁହେଁ, ମୋର ମଧ ସର୍ବନାଶ ହୋଇଛି । ବର୍ତ୍ତମାନ ପୁଲିସ୍ ମୋତେ ହିଁ ସନ୍ଦେହ କରିବ । କଲିକତା ହେଡ୍ ଅଫିସକୁ ଟେଲିଗ୍ରାମ କରାହୋଇଛି । ସେମାନେ ଯେ ମୋତେ ହିଁ ଦାୟୀ କରିବେ ଏଥିରେ ସନ୍ଦେହ କ'ଣ ? ଘଟଣାଟି ମୁଁ ମୂଳରୁ କହୁଛି । ନରସିଂହ ବାବୁ

ଦଶଲକ୍ଷ ଟଙ୍କାର ସରକାରୀ କାଗଜ ବନ୍ଧା ରଖି ଆମ ବେଙ୍କରୁ ଛ'ଲକ୍ଷ ଟଙ୍କା ଏବଂ କଳିଙ୍ଗ ବେଙ୍କରୁ ଚାରିଲକ୍ଷ ଟଙ୍କା ଧାର ନେଇଗଲେ । ଏହାର କିଛିଦିନ ପୂର୍ବରୁ ଆମ ବେଙ୍କରେ ଗୋଟିଏ କିରାଣୀ ଚାକିରି ଖାଲିଥିଲା । ଏଥି ସକାଶେ ମୁଁ ସବୁ ଖବରକାଗଜରେ ବିଜ୍ଞାପନ ଦେଇଥିଲି । ଅନେକ ସ୍ଥାନରୁ ଦରଖାସ୍ତ ଆସିଥିଲା । ଦରଖାସ୍ତକାରୀମାନଙ୍କ ମଧ୍ୟରୁ ମୁଁ ସୁଶୀଳ ମୁଖାର୍ଜୀ ବୋଲି କଲିକତାର ଜଣେ ଭଦ୍ରଲୋକଙ୍କୁ ମନୋନୀତ କରି ନିଯୋଗ ପତ୍ର ପଠାଇଲି । ଏହାଙ୍କୁ ମନୋନୀତ କରିବାର କାରଣ ଅନ୍ୟ କେହି ଏହାଙ୍କ ଭଳି ଏତେ ବେଶୀ ପାସ କରି ନ ଥିଲେ ବା ଅନ୍ୟ କାହାରି ବେଙ୍କ କାମରେ ଏତେ ଅଭିଜ୍ଞତା ନ ଥିଲା । ସେ ଏମ୍.କମ୍. ପୁଣି ବି.ଏଲ୍. ଏବଂ ବେଙ୍କିଙ୍ଗରେ ମଧ୍ୟ ପାସ କରିଛନ୍ତି । ନରସିଂହ ବାବୁ ଟଙ୍କା ଧାର ନେଇ ଯିବାର ଦୁଇଦିନ ପରେ ସେ ଆସି ଯୋଗ ଦେଲେ । କାର୍ଯ୍ୟରେ ଦକ୍ଷତା ଏବଂ ବ୍ୟବହାର ପାଇଁ ସେ ଅଳ୍ପ ଦିନ ପରେ ସମସ୍ତଙ୍କର ବିଶ୍ୱାସଭାଜନ ଏବଂ ପ୍ରିୟପାତ୍ର ହେଲେ । ନରସିଂହ ବାବୁଙ୍କ କାଗଜ ଗୁଡ଼ିକ ଗୋଟିଏ କାଗଜ ଖୋଳରେ ସିଲ୍ କରାହୋଇ ମୋର କେଶ୍ ବାକ୍ସରେ ରଖା ହୋଇଥିଲା । ପ୍ରତିଦିନ ମୁଁ ସିଲ୍ ଭାଙ୍ଗି କାଗଜ ଗୁଡ଼ିକ ତାଲିକା ଅନୁସାରେ ମିଳାଇ ପୁଣି ସିଲ୍ କରି ରଖିଦିଏ । ସୁଶୀଲ ଉପରେ ବିଶ୍ୱାସ ଜନ୍ମିବାରୁ ମୋହରି ସାମନାରେ କାର୍ଯ୍ୟଟି କରିବାର ଦାୟିତ୍ୱ ତାକୁ ଦେଲି । ଆଜିକୁ ପ୍ରାୟ ସାତଦିନ ତଳେ ସେ ଏହିପରି ତାଲିକା ଅନୁସାରେ କାଗଜ ମିଳାଇ ମୋରି ସାମନାରେ ସିଲ୍‌କରି ରଖିଦେଇ ଗଲା । ତା'ପରଦିନ ସେ ଛୁଟିରେ ଥିବାରୁ ମୁଁ କାଗଜଗୁଡ଼ିକ ମିଳାଇବାକୁ ଯାଇ ଦେଖେତ କେତେଗୁଡ଼ିଏ ଖାଲି କାଗଜ ଖୋଳ ଭିତରେ ରହିଛି । ମୋର ମୁଣ୍ଡରେ ବଜ୍ରପାତ ହେଲା । ସାଙ୍ଗେ ସାଙ୍ଗେ ଏହା ପ୍ରକାଶ କରିଦେଲେ ବେଙ୍କର ଅବସ୍ଥା ଖରାପ ହୋଇପାରେ ଭାବି ମୁଁ କଲିକତା ହେଡ ଅଫିସକୁ ଜଣାଇଲି । ସେଠାରୁ ମେନେଜିଂ ଡିରେକ୍ଟର ତତ୍‌କ୍ଷଣାତ୍ ଆସିଲେ । ସେ ଏ ପର୍ଯ୍ୟନ୍ତ ଅଛନ୍ତି । ସେ ମଧ୍ୟ କଥାଟି ପ୍ରକାଶ ନ କରି ପୁଲିସକୁ ଗୁପ୍ତରେ ଅନୁସନ୍ଧାନ କରିବାକୁ ଅନୁରୋଧ କଲେ । ଆଜି ନରସିଂହ ବାବୁ କାଗଜ ମାଗିବାକୁ ଆସିବାରୁ କଥାଟି ପ୍ରକାଶ କରିବାକୁ ବାଧ୍ୟ ହେଲୁ । ଏ ପର୍ଯ୍ୟନ୍ତ ସୁଶୀଳର କୌଣସି ପତ୍ତା ମିଳି ନାହିଁ ।''

ଗୋବର୍ଦ୍ଧନ ବାବୁ କିଛିକ୍ଷଣ ନୀରବ ରହି ଭାବିଲେ । ସେ ଏପର୍ଯ୍ୟନ୍ତ ଏ ଘଟଣାଟିକୁ ପ୍ରାଧାନ୍ୟ ଦେବାର କୌଣସି ଲକ୍ଷଣ ଦେଖାଇ ନ ଥିଲେ । ମହେନ୍ଦ୍ର ବାବୁଙ୍କଠାରୁ ଘଟଣାଟି ଶୁଣି ମୋ ଆଡ଼କୁ ଅନାଇ କହିଲେ, ''ଡାକ୍ତର, ମୁଁ ପ୍ରଥମେ ଭାବିଥିଲି ଘଟଣାଟି ସାମାନ୍ୟ ଏବଂ ଆମ ପୁଲିସ୍ ଏହା ପାଇଁ ଯଥେଷ୍ଟ । ବର୍ତ୍ତମାନ ଦେଖୁଛି ମୋ ମସ୍ତିଷ୍କ ପାଇଁ ଏ ଘଟଣାଟିରେ ଯଥେଷ୍ଟ ଖୋରାକ୍ ଅଛି । ମହେନ୍ଦ୍ର ବାବୁ, ପ୍ରଥମେ ଚାଲନ୍ତୁ ଆପଣଙ୍କ ବେଙ୍କକୁ ମୁଁ ସବୁ କାଗଜ ପତ୍ର ଆଗେ ଦେଖିବି । ପ୍ରାଣବଲ୍ଲଭ ବାବୁ, ଆପଣଙ୍କୁ ଅନୁରୋଧ ଏ ଅନୁସନ୍ଧାନର ଭାରଟି ଆପଣ ମୋତେ ଦିଅନ୍ତୁ । ମୁଁ ଅନୁସନ୍ଧାନ କରିସାରି ଆପଣଙ୍କୁ ଫଳାଫଳ ଜଣାଇବି ।''

ବେଙ୍କରେ ପହଞ୍ଚି ଗୋବର୍ଦ୍ଧନ ବାବୁ ଯେଉଁ ଖୋଳରେ କାଗଜପତ୍ର ଥିଲା ସେହି ଖୋଳଟି ପ୍ରଥମେ ପରୀକ୍ଷା କଲେ । ତାଙ୍କର କାଚ ତଳେ ସେ ଖୋଳଟିକୁ ଅନେକକ୍ଷଣ ରଖିଲେ । ଆଖି ତାଙ୍କର ସାନ ସାନ ହୋଇ ଆସିଲା ଏବଂ ମୋର ଚିର ପରିଚିତ ଅନ୍ୟାନ୍ୟ ଲକ୍ଷଣମାନ ପ୍ରକାଶ ପାଇବାକୁ ଲାଗିଲା । ଦ୍ରୋଣଙ୍କ ପରି ତାଙ୍କୁ ଯଦି ସେତେବେଳେ କେହି ପଚାରନ୍ତେ, ତୁମେ ଏ ଘରେ କ'ଣ ·ଦେଖିବାକୁ ପାଉଛ ?' ତେବେ ସେ ନିଶ୍ଚୟ ଉତ୍ତର ଦିଅନ୍ତେ ମୁଁ କେବଳ ଗୋଟିଏ କାଗଜ ଖୋଳ ଦେଖିବାକୁ ପାଉଛି । ମୋ ଆଡ଼କୁ ହଠାତ୍ ଅନାଇ ସେ କହିଲେ, ''ଡାକ୍ତର, ଶୀଘ୍ର ଯାଅ, ମୋ ଗବେଷଣାଗାରର ଦୁଆରର ଠିକ୍ ସାମନାକୁ ଯେଉଁ କାନ୍ଥ ଆଲମାରି ଅଛି ତାହାରି ତଳୁ ଗଣିଲେ ଦ୍ୱିତୀୟ ଥାକରେ ଡାହାଣ ଆଡୁ ଗଣିଲେ ଚତୁର୍ଥ ଶିଶିଟି ଶୀଘ୍ର ନେଇ ଆସ ।'' ନିର୍ଦ୍ଦେଶଟି ମୋର ଟିକିଏ ଗୋଳମାଳ ହୋଇଗଲା । ଭୟରେ କହିଲି, ବୁଝିଲି, ଚତୁର୍ଥ ଥାକରେ ତଳୁ ଡାହାଣ ଆଡ଼ର... ।'' ସଙ୍କେତରେ ସେ ମୋତେ ନୀରବ ରହିବାକୁ କହି କାଗଜର ଉକ୍ତ ଥାକର ଗୋଟିଏ ଚିତ୍ର କାଟି ବିଶିଷ୍ଟ ଶିଶିଟି ତୀର ଦ୍ୱାରା ଚିହ୍ନାଇ ଦେଲେ । ଅଳ୍ପସମୟ ମଧ୍ୟରେ ଉକ୍ତ ଶିଶିଟି ମୁଁ ଆଣି ଦେଲି । ଗିଲାସେ ପାଣି ସହିତ ଉକ୍ତ ଶିଶିରୁ କିଛି ତରଳ ପଦାର୍ଥ ମିଶାଇ ସେ ଖୋଳ ଉପରେ ଲେଖା ହୋଇଥିବା ଅକ୍ଷରଗୁଡ଼ିକ ଧୀରେ ଧୀରେ ଧୋଇବାକୁ ଲାଗିଲେ ଏବଂ ଧୁଆ ଅକ୍ଷର ଗୁଡ଼ିକ ସେ ଅନେକକ୍ଷଣ ନିରୀକ୍ଷଣ କରି ମେନେଜରଙ୍କୁ ପଚାରିଲେ, ''ସୁଶୀଲ ଛୁଟିରେ ରହିବା ଦିନ ଦରଖାସ୍ତ ଦେଇଥିଲା ?''

''ହଁ ।''

''ସେ ଦରଖାସ୍ତ ଆଣନ୍ତୁ ।''

ମେନେଜର ଦରଖାସ୍ତଟି ଆଣି ଦେଲେ । ସବୁଜ କାଳିରେ ଲେଖା ଦରଖାସ୍ତଟିଏ । ଦରଖାସ୍ତଟି ମଧ୍ୟ ସେ ଅନେକକ୍ଷଣ ପରୀକ୍ଷା କଲେ । ତା'ପରେ ସେ ନରସିଂହ ବାବୁଙ୍କ ଲେଖିଥିବା ଦରଖାସ୍ତ ଓ ତାଙ୍କର ହାତ ଅକ୍ଷର ଥିବା ଅନ୍ୟାନ୍ୟ କାଗଜ ଏବଂ ସୁଶୀଲର ହାତଅକ୍ଷର ବେଙ୍କ କାଗଜରୁ ପରୀକ୍ଷା କରି ମହେନ୍ଦ୍ର ବାବୁଙ୍କୁ ପଚାରିଲେ, ''ସୁଶୀଲର ବୋଧହୁଏ ନିଶ ନ ଥିଲା ?''

ମହେନ୍ଦ୍ର ବାବୁ ଅବାକ୍ ହୋଇ ଚାହିଁ ରହି କହିଲେ, ''ନାଁ ।''

ମୁଁ ମଧ୍ୟ ଏ ପ୍ରଶ୍ନର ଅର୍ଥ ବା ପ୍ରୟୋଜନ ବୁଝି ନ ପାରି ଆଶ୍ଚର୍ଯ୍ୟ ହୋଇ ଚାହିଁ ରହିଲି ।

''ନରସିଂହ ବାବୁ ଯେତେବେଳେ ପ୍ରଥମେ ଆସିଥିଲେ ତାଙ୍କର ନିଶ ଠିକ୍ ଆଜିକା ପରି ଥିଲା ?''

''ନାଁ, ଏହାଠାରୁ ଟିକିଏ ବଡ଼ ବଡ଼ ଥିଲା ବୋଧହୁଏ ।''

''ସୁଶୀଲର ଫଟ ଅଛି ?''

''ନା ।''

"ତା'ର ଶରୀରରେ କିଛି ବିଶେଷତ୍ୱ ଆପଣ କହି ପାରିବେ ?"

"ନା, ତେବେ ତା'ର ଗୋଟାଏ ମୁଦ୍ରାଦୋଷ ଥିଲା ନାକ ଟେକିବା-ପ୍ରାୟ ମୁହୁର୍ମୁହୁ ।"

"ଆପଣ ନିଯୋଗ ପତ୍ର ଦେବା ପୂର୍ବରୁ ତାହା ସହିତ ଦେଖା କରିବାକୁ ଚାହିଁଥିଲେ ?"

"ହଁ, କିନ୍ତୁ କୌଣସି କାରଣରୁ ସେ ଆସି ପାରିଲା ନାହିଁ ।"

"ସୁଶୀଲ କେବେ ଆସିଲା ?"

"ଗତ ମାସ ୧୯ ତାରିଖରେ ।"

"ନରସିଂହ କେବେ ଟଙ୍କା ଧାର ନେଲା ?"

"ଗତ ମାସ ୧୭ ତାରିଖରେ ।"

"ସୁଶୀଲର ସାର୍ଟିଫିକେଟଗୁଡ଼ିକ ଅଛି ?"

"ନା, ସେ କାମରେ ଯୋଗଦେବା ପରେ ସେଗୁଡ଼ିକ ନେଇ ଯାଇଥିଲା ।"

"ଆପଣ କହିପାରିବେ, ସେ କେଉଁ ବର୍ଷ କେଉଁ ସ୍କୁଲ ବା କଲେଜରୁ ପାସ କରିଛି ?"

ମହେନ୍ଦ୍ର ବାବୁ ତାଙ୍କର କାଗଜ ପତ୍ର ବାହାର କରି କହିଲେ, "୧୯୨୪ରେ ସେ ଯଶୋହର ସ୍କୁଲରୁ ମେଟ୍ରିକ୍ ପାସ କରି, ୧୯୩୦ରେ କଲିକତା ଆଇନ କଲେଜରୁ ଆଇନ ପାସ କଲେ ।"

"ସୁଶୀଲ କ'ଣ ଫାଉଣ୍ଟେନ୍ ପେନ୍‌ରେ ଲେଖୁଥିଲା ?"

"ହଁ ।"

"କେଉଁ ରଙ୍ଗର କାଳି - ମାନେ ସବୁଜ ରଙ୍ଗର କାଳି ବ୍ୟବହାର କରୁଥିଲା ?"

"ହଁ ।"

"ବ୍ଲ୍ୟାକ୍‌ବାର୍ଡ କଲମ ?"

"ହଁ ।"

ପ୍ରଶ୍ନ ଗୁଡ଼ିକ ପଚାରିବା ପରେ ସେ କିଛିକ୍ଷଣ ତଳକୁ ମୁଣ୍ଡ ପୋତି ଭାବିଲେ ଏବଂ ଧୀରେ ଧୀରେ ମୁଣ୍ଡ ଟେକି ମୋ ଆଡ଼କୁ ଚାହିଁଲେ । ତାଙ୍କର ଚେହେରାର ପରିବର୍ତ୍ତନ ଦେଖି ମୁଁ ଚମକି ପଡ଼ିଲି । ମୁହଁଟି ଏକଦମ କଳାକାଠ ପଡ଼ିଯାଇଛି ଏବଂ ଆଖି ଦିଓଟି ଆଶ୍ଚର୍ଯ୍ୟରକମ ଜଳୁଛି । ଏପରି ଜ୍ୱଳନ୍ତ ଆଖି ମୁଁ ତାଙ୍କର କେବେ ହେଁ ଦେଖି ନ ଥିଲି । ମୋ ଆଡ଼କୁ ଚାହିଁ ସେ କହିଲେ, "ଡାକ୍ତର, ଏତେଦିନ ମୋର ଧାରଣା ଥିଲା ମୁଁ... ସେ ଗର୍ବ ମୋର ଖର୍ବ ହୋଇଛି । ଏ ଅନୁସନ୍ଧାନର ଶେଷଯାଏଁ ମୁଁ ଯିବି ନିଶ୍ଚୟ । ଆଉ ଗୋଟିଏ କଥା, ମହେନ୍ଦ୍ର ବାବୁ, ଯେଉଁ ଦିନ ସୁଶୀଲ ଛୁଟି ନେଲା ତା' ପୂର୍ବ ଦିନ ସେ କେତେବେଳକୁ ଅଫିସ୍ ଆସିଥିଲା ?"

ମହେନ୍ଦ୍ର ବାବୁ ଜମାଦାରକୁ ଡାକି ବୁଝି କହିଲେ, ''ସାଢ଼େ ନଅଟା ବେଳକୁ ।''

''ଆପଣଙ୍କ ବେଙ୍କ ପ୍ରତ୍ୟହ କେତେବେଳେ ଖୋଲେ ?''

''ଦଶଟା ବେଳେ ।''

''ସୁଶୀଲ କ'ଣ ରୋଜ ସାଢ଼େ ନଅଟା ବେଳେ ଆସେ ?''

''ନା, ତା'ର ସାଧାରଣତଃ ଟିକିଏ ଡେରି ହୁଏ ।''

ପୁଣି ସେ ନୀରବରେ କିଛିକ୍ଷଣ ଭାବିଲେ ଏବଂ ତା'ପରେ ମୋ ଆଡ଼କୁ ଚାହିଁ କହିଲେ, ''ଚମତ୍କାର ! କିନ୍ତୁ ଅତି ଲଜ୍ଜାର କଥା ମୋତେ ସେ ଅଭିନୟରେ ଭୁଲାଇ ପାରିଲା । ''

ତାଙ୍କର ଅନୁସନ୍ଧାନର ଗତି କେଉଁଆଡ଼େ ମୁଁ ଏପର୍ଯ୍ୟନ୍ତ ଆଦୌ ବୁଝିପାରି ନାହିଁ । ଅତଏବ କେବଳ ବୋକାଙ୍କ ଭଳି ଅନାଇ ରହିଲି । ମୋର ଚାହାଣି ଦେଖି ସେ ବିରକ୍ତ ହୋଇ କହିଲେ, ''ସବୁବେଳେ କମ୍ ବୁଦ୍ଧିର ଲୋକଙ୍କ ସହିତ ମିଶି ମୋର ବୁଦ୍ଧି ନିଶ୍ଚୟ କମି ଗଲାଣି । ନ ହେଲେ... ଶୁଣନ୍ତୁ ମହେନ୍ଦ୍ର ବାବୁ, ସୁଶୀଲ ମୁଖାର୍ଜୀ ଯିଏ ହେଉ ନା କାହିଁକି, ଉକ୍ତ ନାମଧେୟ ଆପଣଙ୍କ କିରାଣୀ ଏବଂ ନରସିଂହ ରାଓ ନାମଧେୟ ବ୍ୟକ୍ତି ଏକ, ଯଦିଚ ନରସିଂହର ନିଶ ସୁଶୀଲର ନାକଟେକାକୁ ଅନେକଟା ଘୋଡ଼େଇ ରଖି ପାରିଥିଲା । ଏ ଦୁଇଜଣଙ୍କର ହାତ ଅକ୍ଷର ମିଳାଇ ଦେଖନ୍ତୁ । ଜାଲ୍ କରିବା ସକାଶେ ହାତ ଅକ୍ଷର ଯେତେ ବଦଳାନ୍ତୁ ନା କାହିଁକି ନିଜର ହାତ ଲେଖାରେ ଏପରି କେତେଗୁଡ଼ିଏ ବୈଶିଷ୍ଟ୍ୟ ଥାଏ ଯାହା ବଦଳାଇ ହୁଏ ନାହିଁ । ତଥାକଥିତ ସୁଶୀଲର ଲେଖା ଏବଂ ତଥାକଥିତ ନରସିଂହ ରାଓର ଲେଖା ଯେ ଜଣକର ତାହା ଏହି 'i' ଏବଂ 'h' ରୁ ଜଣା ପଡ଼ିବ । ଅଧିକାଂଶ ଲୋକ କୌଣସି ଶବ୍ଦ ମଝିରେ 'i' ପଡ଼ିଲେ ପ୍ରଥମେ 'i' ର ବିନ୍ଦୁଟି ନ ଦେଇ ଶବ୍ଦଟି ଲେଖି ସାରିଲା ପରେ ବିନ୍ଦୁଟି ଦିଅନ୍ତି । କିନ୍ତୁ ଏହି ଦୁଇ ଲେଖାରୁ ଦେଖନ୍ତୁ ବିନ୍ଦୁଟି ପ୍ରଥମେ ଦିଆ ହୋଇଛି । ପୁଣି 'h' ଯୋଡ଼ିକର ଭଙ୍ଗୀ ଏକଦମ୍ ସମାନ । ଏ ଦୁଇଟି ପ୍ରଧାନ ସାମଞ୍ଜସ୍ୟ ବ୍ୟତୀତ ମୁଁ ଆହୁରି ଚଉଦ ପ୍ରକାର ସାମଞ୍ଜସ୍ୟ ଦେଖିବାକୁ ପାଇଛି । ଏହି ଖୋଳଟି ସୁଶୀଲ ଘରୁ ଆଣିଥିଲା-ଖାଲି କାଗଜ ପୂରାଇ । ଘରେ ସେ ନିଜ କଲମରେ ଠିକଣା ଲେଖିବାକୁ ବସିଥିଲା । କିନ୍ତୁ ଏହା ଅଫିସ୍ କାଳିରେ ଲେଖିବା ଉଚିତ ଭାବି ଦୁଇଟି ମାତ୍ର ଅକ୍ଷର ଲେଖିବା ପରେ ଲେଖିବା ବନ୍ଦ କଲା । ଏ ଖୋଳଟି ସେ ନଷ୍ଟ କରିପାରିଲା ନାହିଁ କାରଣ ଏହା ବେଙ୍କର ଖୋଳ, ଯାହାକି ସେ ଘରକୁ ନେଇ ଯାଇଥିଲା । ସେଦିନ ସେ ଅଫିସ୍‌କୁ ଚଞ୍ଚଳ ଆସି ପୁଣି ତାହାରି ଉପରେ ଅଫିସ୍ କାଳିରେ ଲେଖିଲା । ଅନାଇ ଦେଖନ୍ତୁ ମୁଁ ଯେଉଁ ଅକ୍ଷରଗୁଡ଼ିକ ଧୋଇଛି ସେଥିରୁ ପ୍ରଥମ ଦୁଇଟି ଅକ୍ଷରରୁ ସବୁଜ କାଳି ମଧ୍ୟ ବାହାରୁଛି ଏହି ଅକ୍ଷର ଦୁଇଟି ଟିକିଏ ଅସ୍ୱାଭାବିକ ରକମ ମୋଟା ଦିଶିବାରୁ ମୋର ପ୍ରଥମେ ସନ୍ଦେହ ହୁଏ । ବର୍ତ୍ତମାନ ଆପଣ ଦେଖି ପାରିବେ-କାଗଜ ପତ୍ରରୁ-ଯେ ସୁଶୀଲ ଯେଉଁ ପ୍ରକାର କଲମ ଓ କାଳି ବ୍ୟବହାର କରେ ନରସିଂହ ମଧ୍ୟ ସେହି

ପ୍ରକାର କାଳି ଓ କଲମ ବ୍ୟବହାର କରେ । ମୁଁ ଦେଖିଛି ନରସିଂହ 'ବ୍ଲ୍ୟାକ୍‌ବାର୍ଡ' କଲମ ବ୍ୟବହାର କରିବାର, ତେଣୁ ପଚାରିଥିଲି ସୁଶୀଲ ସେହି କଲମ ବ୍ୟବହାର କରେ କି ନା । ବେଶ ପରିବର୍ତ୍ତମନ ସକାଶେ ସୁଶୀଲ ନିଶ୍ଚୟ ନିଶ ରଖି ନଥିବା କଥା ସ୍ୱାଭାବିକ କାରଣ ନରସିଂହର ଥିଲା । କିନ୍ତୁ ନରସିଂହ ମୋତେ ଠାକଇ ପାରିଛି । ସେ ଜାଣେ ଅନୁସନ୍ଧାନର ଭାର ମୋତେ ଦିଆଯିବ, ତେଣୁ ସେ ମୋତେ ଆଗରୁ... କାଗଜ ମିଳାଇବା ସମୟରେ ତଥାକଥିତ ସୁଶୀଲ କୌଶଳରେ ଘରୁ ଆଣିଥିବା ଖୋଳଟି ରଖି ଅସଲ ଖୋଳଟି ନେଇ ଯାଇଛି । ମୋର ମନେହୁଏ ଏ ଠକର ନାମ ନରସିଂହ ମଧ ନୁହଁ । ସୁଶୀଲ ଯଦି ଅନ୍ୟ ଲୋକ ହୁଏ ତେବେ ସେ କାଗଜ ଚୋରାଇ କରିବ କ'ଣ । ଏହି ମାସ ୧୨ ତାରିଖରେ ସୁଶୀଲ ଫେରାର ହୁଏ । ୧୧ ତାରିଖ ଦିନ ନରସିଂହ ବାବୁଙ୍କ କାଗଜ ଚୋରିଯାଏ । ୧୯ ତାରିଖ ଦିନ - ଟଙ୍କା ଧାର ନେଇଥିବାର ମାସକ ପରେ - ନରସିଂହ ଧାର ପରିଶୋଧ କରିବାକୁ ଆସେ... କାଗଜ ଗୁଡ଼ିକ, 'ପ୍ରିୟମ୍ୱଦା ଦେବୀ'ଙ୍କ ନାମରେ । ଏସବୁ ଜାଲ ଭିତରେ ମୋର ମନେହୁଏ ଏହା ସତ୍ୟ ଯେ ତଥାକଥିତ ନରସିଂହ ପ୍ରିୟମ୍ୱଦା ଦେବୀଙ୍କ ଭାଇ । ବୋଧହୁଏ କାଗଜ ଗୁଡ଼ିକ ଚୋରି କରି ଆଣିଛି । କିନ୍ତୁ ବର୍ତ୍ତମାନ ଆଉ ସମୟ ନାହିଁ । ନରସିଂହ ବୋଧହୁଏ କଟକ ଛାଡ଼ି ଚାଲି ଯିବଣି ।''

ମୁଁ ପଚାରିଲି, ''କିନ୍ତୁ ସାର୍ଟିଫିକେଟ ଗୁଡ଼ିକ ?''

''ଚୋରି । ଡାକ୍ତର, ମୁଁ ତୁମକୁ ଅନେକ ଥର ଉପଦେଶ ଦେଇଛି ଯେ ଭଲ କରି ପରୀକ୍ଷା ନ କରିବା ପର୍ଯ୍ୟନ୍ତ କୌଣସି ମତ ପୋଷଣ କରିବ ନାହିଁ । କିନ୍ତୁ ଠିକ ସେହି ଭୁଲ ମୁଁ ଆଜି କଲି । ତା'ର ଅଭିନୟରେ ମୁଁ ଭୁଲିଗଲି ଏବଂ ପ୍ରମାଣ ପାଇବା ପୂର୍ବରୁ ମୁଁ ତାକୁ ନିର୍ଦ୍ଦୋଷ ବୋଲି ଧରି ନେଲି । ତା'ପରେ ଯେ ମୋର ସବୁ ଗୋଳମାଳ ହୋଇଯିବ ଏଥିରେ ଆଉ ଆଶ୍ଚର୍ଯ୍ୟ କ'ଣ । ବର୍ତ୍ତମାନ ଚାଲ ।'

''କେଉଁଠିକି ?''

''ବରହମ୍ପୁର... ବରହମ୍ପୁର... ବୁଝି ପାରୁନା !'' ବିରକ୍ତ ହୋଇ ସେ କହିଲେ । ଜଣେ ଲୋକ ତାଙ୍କୁ ଠକି ଦେଇ ପାରିଛି ଏହା ବୋଧହୁଏ ତାଙ୍କୁ ଖୁବ୍ ଉତ୍ୟକ୍ତ କରିଛି । ତେଣୁ ସାମାନ୍ୟ କଥାରେ ସେ ଆଜି ବିରକ୍ତ । ଏତେ ଲୋକଙ୍କ ସମ୍ମୁଖରେ ତାଙ୍କର ବିରକ୍ତି ମୋତେ ଆଦୌ ଭଲ ଲାଗିଲା ନାହିଁ । ମୁଁ ମଧ ବିରକ୍ତ ହୋଇ କହିଲି, ''ମୋ ଉପରେ ବିରକ୍ତ ହୋଇ ଲାଭ କ'ଣ - ବର୍ତ୍ତମାନ ଧୀରସ୍ଥିର ହୋଇ - ।'' ମୋର କଥାରେ ସେ ମୌନ ରହିଲେ । ତଳକୁ ମୁହଁ ପୋତି କିଛିକ୍ଷଣ ଭାବି ସେ କହିଲେ, ''ମୋର ଆଜି ହୋଇଛି କ'ଣ, ଡାକ୍ତର ତୁମକୁ ଧନ୍ୟବାଦ-ଅନେକ ଧନ୍ୟବାଦ । ମୋର ଗୁପ୍ତ ଗର୍ବରେ ବାଧା, ତେଣୁ ଏ ଅଧୈର୍ଯ୍ୟ... ଛିଃ । ପ୍ରିୟମ୍ୱଦା ଦେବୀଙ୍କ ଠିକଣା ଏହି କାଗଜରୁ ମିଳୁଛି । ଅତଏବ ସେଠାକୁ ଗଲେ - ।'

ବାଧା ଦେଇ କହିଲି, ''ଆପଣ ଆଶା କରନ୍ତି ଏ ଠକକୁ ସେଠି ପାଇବେ ?''

''ନା, ଡାକ୍ତର, ତା' ନୁହଁ । ମୁଁ ଏଡ଼େ ବୋକା ନୁହଁ । ସେଠାକୁ ଗଲେ ଏହାର ପ୍ରକୃତ ପରିଚୟ ମିଳିପାରେ - ନିଶ୍ଚୟ ମିଳିବ । ମୋର ମନେହୁଏ କଲିକତାରେ ଏ ଘଟଣାର ଅନୁସନ୍ଧାନ ଚଳାଇବାକୁ ହେବ, କିନ୍ତୁ ପ୍ରଥମେ ବରହମ୍ପୁର ଯିବା ଦରକାର ।''

''କଲିକତା କାହିଁକି ।''

''ସେଇଟା ମୋର ବିଶ୍ୱାସ । ମୋର ଧାରଣା ଏପରି ସୁନ୍ଦର ଭାବରେ ଯେ କାର୍ଯ୍ୟୋଦ୍ଧାର କରି ପାରିଛି ତାହାର କର୍ମକ୍ଷେତ୍ର ନିଶ୍ଚୟ କଲିକତା । ଯାହାହେଉ, ବରହମ୍ପୁରରୁ ସବୁ ଖବର ମିଳିବା ଖୁବ୍ ସମ୍ଭବ ।''

ଡାକ୍ତରଖାନାରେ ମୋର ବିଶେଷ କିଛି କାମ ନ ଥିଲା । ସେଇଦିନ ରାତି ଗାଡ଼ିରେ ଆମେ ବରହମ୍ପୁର ଗଲୁ । ବରହମ୍ପୁରରେ ପହଞ୍ଚି ଅନେକ ଖୋଜିବା ପରେ ପ୍ରିୟମ୍ବଦା ଦେବୀଙ୍କ ଘର ପାଇଲୁ । ପ୍ରିୟମ୍ବଦା ଦେବୀ ଖୁବ୍ ଧନୀର କନ୍ୟା ଏବଂ ଧନୀର ସ୍ତ୍ରୀ ମଧ୍ୟ । ତାଙ୍କର ସ୍ୱାମୀଙ୍କ ସହିତ ସାକ୍ଷାତ କରି ଗୋବର୍ଦ୍ଧନ ବାବୁ ତାଙ୍କୁ ସବୁ କଥା କହିଲେ । ସେ ସମସ୍ତ ଶୁଣି ଅବାକ ହୋଇଗଲେ । ପ୍ରିୟମ୍ବଦା ଦେବୀଙ୍କ ଠାରୁ ସବୁ ବୁଝିଆସି କହିଲେ, ''ହଁ, କାଗଜଗୁଡ଼ିକ ଚୋରି ଯାଇଥିଲା । ତାଙ୍କ ଭାଇ ଚୋରି କରିଥିବାର ନିଶ୍ଚୟ ଜାଣି ମୋର ସ୍ତ୍ରୀ କଥାଟି ମୋତେ ଲୁଚାଇଥିଲେ । କିନ୍ତୁ ଆଜିକି ଛଅ ଦିନ ତଳେ ସେ କାଗଜଗୁଡ଼ିକ ଫେରାଇ ଦେଇ ଯାଇଛି ।''

''ତା'ର ପ୍ରକୃତ ନାମ କ'ଣ ?''

''କାମେଶ୍ୱର ରାଓ ।''

''ସେ କେଉଁଠାକୁ ଯାଇଅଛି ବା ଯାଇପାରେ ଆପଣ କହି ପାରିବେ ?''

''ନା, ସେ କେବେ ହେଁ ଠିକଣା ଦେଇ ଯାଏ ନାହିଁ । ତେବେ ସେ ପ୍ରାୟ କଲିକତାରେ ଥାଏ ।''

''ତା'ର ବ୍ୟବସାୟ କ'ଣ ?''

''ମୋର ଶ୍ୱଶୁରର ଅଗାଧ ସମ୍ପତ୍ତି ସେ ଉଡ଼ାଇ ଦେଇ ବର୍ତ୍ତମାନ - ଛାଡ଼ନ୍ତୁ ସେ କଥା ।''

''ଆଚ୍ଛା ଧନ୍ୟବାଦ । ନମସ୍କାର ।''

ସେଠାରୁ ଆମେ ଫେରିଲୁ ପ୍ରାୟ ସନ୍ଧ୍ୟାବେଳେ । ଷ୍ଟେଶନରେ ନିତ୍ୟକର୍ମ ସାରି ଟ୍ରେନ୍ ଅପେକ୍ଷାରେ ରହିଲୁ ।

''ଡାକ୍ତର, ଚାଲ କଲିକତା । ତୁମେ ଭାରି ଫୁଟବଲ ଖେଳ ପ୍ରିୟ । ବର୍ତ୍ତମାନ କଲିକତାରେ ଖୁବ୍ ଭଲ ଖେଳ ସବୁ ଅଛି ।''

''କଲିକତାର ଜନସମୁଦ୍ରରେ ଆପଣ ତାଙ୍କୁ ପାଇବେ ବୋଲି ଆଶା କରନ୍ତି ?''

''ଭଲ ବୁଡ଼ାଳି ପକ୍ଷରେ ସମୁଦ୍ରରୁ ରତନ ପାଇବା ଅସମ୍ଭବ ନୁହଁ । ମନୁଷ୍ୟ ନିଜର

ଚାଲିଚଳଣ ସବୁ ବଦଳାଇ ପାରେ କିନ୍ତୁ ଖାଦ୍ୟ ବଦଳାଏ ନାହିଁ। ମୋର ବିଶ୍ୱାସ କାମେଶ୍ୱରକୁ କଲିକତାର କୌଣସି ଦକ୍ଷିଣ ଭାରତୀୟ ହୋଟେଲରେ ଦେଖିବାକୁ ପାଇବି। ଏହା କେବଳ ସମୟ ସାପେକ୍ଷ ।''

ସେହିଦିନ ଆମେ କଲିକତା ଗଲୁ । ଗୋବର୍ଦ୍ଧନ ବାବୁଙ୍କ ମନ କଷ୍ଟ ଦେଖି ମୁଁ ଭଗବାନଙ୍କୁ ଡାକୁଥାଏ ସେ ସଫଳ ହୁଅନ୍ତୁ-କିନ୍ତୁ ଆଶା ମୋର ଆଦୌ ନ ଥାଏ । ଏଡ଼େ ଚିନ୍ତାରେ ମଧ ଗୋବର୍ଦ୍ଧନ ବାବୁ ଟ୍ରେନ୍‌ରେ ବସି ନାନା ଲୋକଙ୍କ ସହିତ ନାନା ଗଳ୍ପ କରିବାକୁ ଆରମ୍ଭ କଲେ । ତାଙ୍କର ପରିବର୍ତ୍ତନ ଦେଖି ଅନେକଟା ଆଶ୍ୱସ୍ତ ହେଲି ।

କଲିକତାରେ ପହଞ୍ଚି ଗୋବର୍ଦ୍ଧନ ବାବୁ ସାଙ୍ଗେ ସାଙ୍ଗେ ବିଶ୍ୱବିଦ୍ୟାଳୟ ଅଫିସକୁ ଗଲେ । ସେଠାରୁ ସୁଶୀଲ ମୁଖାର୍ଜୀର ଠିକଣା ନେଇ ସେ ତାଙ୍କ ବସାକୁ ଗଲେ । ଅନେକ ଖୋଜିବା ପରେ ଘରଟି ମିଳିଲା । ଭାଗ୍ୟକୁ ଭଦ୍ରଲୋକ ଘରେ ଥିଲେ । ସୁଶୀଲ ବାବୁ କହିଲେ ତାଙ୍କର ଚାକର ମାସକ ଆଗେ ଘରୁ ଅନ୍ୟ କିଛି ସାମାନ୍ୟ ଜିନିଷ ସହିତ ତାଙ୍କର ସାର୍ଟିଫିକେଟ ଗୁଡ଼ିକ କୌଣସି ମୂଲ୍ୟବାନ୍ କାଗଜ ଭାବି ଚୋରାଇ ନେଇଥିଲା ଏବଂ ପ୍ରାୟ ୪/୫ ଦିନ ତଳେ ଜଣେ ଭ୍ରଦଲୋକ ସେ ଗୁଡ଼ାକ ପାଇ ଫେରାଇଦେଇ ଯାଇଛନ୍ତି । ସୁଶୀଲ ବାବୁ ଉକ୍ତ ଚାକରର ଯେଉଁ ବର୍ଣ୍ଣନା ଦେଲେ ସେଥିରେ ସନ୍ଦେହ ରହିଲା ନାହିଁ ଯେ କାମେଶ୍ୱର ରାଓ ଚାକର ସାଜି ତାଙ୍କ ଘରେ ଥିଲା ।

ସେଠାରୁ ଫେରି ଗୋବର୍ଦ୍ଧନ ବାବୁ କହିଲେ, ''ଡାକ୍ତର, ଆଜିଠାରୁ ଆମକୁ ପ୍ରତ୍ୟହ ଗୋଟିଏ ଗୋଟିଏ ଦକ୍ଷିଣ ଭାରତୀୟ ହୋଟେଲରେ ଖାଇବାକୁ ହେବ । ତୁମର ଆପତ୍ତି ନାହିଁ ତ ?'' ଦକ୍ଷିଣ ଭାରତୀୟ ଖାଦ୍ୟ ଖାଇବାରେ ମୁଁ ଅଭ୍ୟସ୍ତ ନୁହେଁ କିନ୍ତୁ କୌତୂହଳବଶତଃ ମୁଁ ରାଜି ହେଲି । ମୋର ସମ୍ମତିରେ ସେ ଖୁସି ହୋଇ କହିଲେ, ''ମୁଁ ଏହାହିଁ ଆଶା କରିଥିଲି ବର୍ତ୍ତମାନ ତୁମେ ଟିକିଏ ଅପେକ୍ଷା କର ମୁଁ ପାଞ୍ଚ ମିନିଟ ମଧରେ ଆସୁଛି ।'' ଏହା କହି ସେ ତାଙ୍କ ଚମଡ଼ାର ସୁଟକେସଟି ନେଇ ନିକଟସ୍ଥ ସର୍ବସାଧାରଣ ଗାଧୋଇବା ଘର ଭିତରକୁ ଗଲେ । ପାଞ୍ଚ ମିନିଟ୍ ପରିବର୍ତ୍ତେ ଦଶ ମିନିଟ୍ ହୋଇଗଲା, ତଥାପି ଗୋବର୍ଦ୍ଧନ ବାବୁ ଫେରିଲେ ନାହିଁ । କଲିକତାର ଜନବହୁଳ ରାସ୍ତାରେ ଏକା ବୋକାଙ୍କ ଭଳି ଛିଡ଼ା ହେବା କେଡ଼େ ବିପଜ୍ଜନକ ତାହା ସମସ୍ତେ ଜାଣନ୍ତି । ବାଧ ହୋଇ କିନ୍ତୁ ମୁଁ ଛିଡ଼ା ହେଲି । କିଛି ସମୟ ପରେ ଦେଖିଲି ଜଣେ ଗଞ୍ଜାମୀ ଭଦ୍ରଲୋକ ଟିକିଏ ଦୂରରେ ଛିଡ଼ା ହୋଇ ମୋତେ ହାତ ଠାରି ଡାକୁଛନ୍ତି । ମୋର ସନ୍ଦେହ ରହିଲା ନାହିଁ, ଏ କାମେଶ୍ୱର ! କାମେଶ୍ୱରକୁ ମୁଁ ଧରି ପାରିଛି ଗୋବର୍ଦ୍ଧନ ବାବୁଙ୍କ ଠାରୁ ଏହି ପ୍ରଶଂସା ଲୋଭରେ ଦୌଡ଼ିଯାଇ ମୁଁ ତାହାର ହାତ ଯଥାସାଧ ଶକ୍ତକରି ଧରି ପକାଇଲି ଏବଂ ପୁଲିସ୍ ପାଇଁ ଏଣେ ତେଣେ ଚାହିଁଲି ।

''ଆଃ ଛାଡ଼, ଡାକ୍ତର, ତୁମ ବଜ୍ର ମୁଷ୍ଟିରେ ମୋର ହାତ ଫୁଲି ଗଲାଣି ।'' ମୁହୂର୍ତ୍ତକେ ସେ ଅଦ୍ଭୁତ କୌଶଳରେ ମୋର ବଜ୍ରମୁଷ୍ଟିରୁ ଖସି ଯାଇ ଦୂରରେ ଛିଡ଼ା ହେଲେ । ମୁଁ ଅବାକ୍

ହୋଇ ଚାହିଁ ରହିଲି । ସେ ହସି ହସି କହିଲେ, ''ମୋର ଛଦ୍ମବେଶ କାର୍ଯ୍ୟକାରୀ ହୋଇଛି କି ନା ମୁଁ ତୁମ ଉପରେ ତାହା ପ୍ରଥମେ ପରୀକ୍ଷା କରି ନିଏ । ମୁଁ ଆଜିଠାରୁ ଏହି ବେଶରେ ରହିବି ।''

ଆମେ ଗୋଟିଏ ଦକ୍ଷିଣ ଭାରତୀୟ ହୋଟେଲକୁ ଖାଇବାକୁ ଗଲୁ । ଏହିପରି ଦୁଇବେଳା ଆମେ ନୂଆ ନୂଆ ହୋଟେଲରେ ଖାଇବାକୁ ଲାଗିଲୁ । ସାତଦିନ ଏହିପରି ଗଲା କିନ୍ତୁ ସଫଳତାର କୌଣସି ଲକ୍ଷଣ ଦେଖାଗଲା ନାହିଁ । କେବଳ ଘରୁ ଖାଇ ବଣ ମହିଁଷି ପଛରେ ଦୌଡ଼ିବା ହିଁ ସାର ହେଲା । ମୁଁ ଏହାଠୁଁ ବେଶୀ କିଛି ଆଶା କରି ନଥିଲି । ମୋର ହତାଶା କ୍ରମେ ବିରକ୍ତିରେ ପରିଣତ ହେଲା । ଗୋବର୍ଦ୍ଧନ ବାବୁଙ୍କର କିନ୍ତୁ ଅସୀମ ଧୈର୍ଯ୍ୟ । ଦିନକୁ ଦିନ ସେ ଟିକିଏ ବେଶୀ ଚିନ୍ତିତ ଦେଖାଗଲେ ମଧ ଚେଷ୍ଟାରେ ତାଙ୍କର ଶୈଥିଲ୍ୟ ଦେଖାଗଲା ନାହିଁ ।

ଅଷ୍ଟମ ଦିନ ମଧ ଆମେ ଗୋଟିଏ ଦକ୍ଷିଣିଆ ହୋଟେଲକୁ ଖାଇବାକୁ ଗଲୁ । କଲିକତାର ଗୋଟିଏ ସଂକୀର୍ଣ୍ଣ ଗଳିରେ ଅପରିଷ୍କାର ଗୋଟିଏ ହୋଟେଲ । ମୁଁ ମନେ ମନେ ଠିକ୍ କଲି ଖାଇବା ପରେ କଟକ ଫେରିଯିବା ପ୍ରସ୍ତାବ କରିବି । ଆମର ଖାଇବା ପ୍ରାୟ ଅଧା ହୋଇଛି ଏହିପରି ସମୟରେ ଜଣେ ସୁଟ ପେଣ୍ଟ ପରିହିତ ଭଦ୍ରଲୋକ ପ୍ରବେଶ କଲେ । ମୁଣ୍ଡର ଫେଲ୍ଟ ଟୋପିଟି ଆଖି ଭୁରୁ ପର୍ଯ୍ୟନ୍ତ ଟଣା ହୋଇଛି । କୋଟ୍‌ର କଲର ଉଠାଇ ଦିଆ ହୋଇଥିବାରୁ ମୁହଁର ନିମ୍ନ ଭାଗଟି ଆବୃତ ରହିଛି । ମୁଁ ସ୍ପଷ୍ଟ ଦେଖିଲି ମୋତେ ଦେଖି ସେ ଚମକି ପଡ଼ିଲେ- କିନ୍ତୁ ମୁହୂର୍ତ୍ତକ ପାଇଁ । ଅନ୍ୟ କେଉଁଠି ସ୍ଥାନ ନ ଥିବାରୁ ସେ ମୋ ସାମନା ଚୌକିରେ ବସିଲେ । ଟୋପିଟି ସେ ଆହୁରି ତଳକୁ ଟାଣି କଲରଟିକୁ ଅଧିକ ଉପରକୁ ଉଠାଇ ଦେଇ ସେ ଡାକିଲେ, ''ବୟ, ହାମାରା ମିଲ୍ ଲାଓ ।'' ଭଦ୍ରଲୋକର ଚାଲି ଚଳଣରୁ ମୋର ଟିକିଏ ସନ୍ଦେହ ହେଲା । ଭଲ କରି ଚାହିଁ ଦେଖିଲି ନରସିଂହ (କାମେଶ୍ୱର) ସହିତ ଏହାର କେଉଁଠି ଯେପରି ସାଦୃଶ୍ୟ ରହିଛି । ଗୋବର୍ଦ୍ଧନ ବାବୁ ବୋଧହୁଏ ଏହାକୁ ଲକ୍ଷ କରି ନାହାନ୍ତି, କାରଣ ଦେଖିଲି ସେ ତଳକୁ ମୁହଁ ପୋତି ଖାଇବାରେ ବ୍ୟସ୍ତ । ଭଦ୍ରଲୋକ ପୁଣି ଯେତେବେଳେ 'ବୟ' ବୋଲି ଡାକିଲେ ସେତେବେଳେ ମୋର ଦୃଢ଼ ଧାରଣା ଜନ୍ମିଲା ଯେ ଏ କାମେଶ୍ୱର ବ୍ୟତୀତ ଆଉ କେହି ନୁହେଁ । ଆଉ ଅପେକ୍ଷା ନ କରି ମୁଁ ଧରିବାକୁ ଉଠିଲି । କିନ୍ତୁ ଗୋବର୍ଦ୍ଧନ ବାବୁଙ୍କ ଜ୍ୱଳନ୍ତ ଦୃଷ୍ଟି ମୋତେ ଧକ୍କା ମାରି ମୋ ଜାଗାରେ ପୁଣି ବସାଇ ଦେଲା । ବୁଝିଲି ଗୋବର୍ଦ୍ଧନ ବାବୁଙ୍କ ଶ୍ୟେନ ଦୃଷ୍ଟିରେ ସବୁ ପଡ଼ିଛି । ନିଶ୍ଚିନ୍ତ ହୋଇ ତାଙ୍କୁ ଅନୁକରଣ କରି ତଳକୁ ମୁଣ୍ଡପୋତି ଖାଇବାକୁ ବସିଲି । କିନ୍ତୁ ମନଟା ସେହିପରି ଉତ୍ତେଜିତ ହୋଇରହିଲା । ବୁଝିପାରିଲି ନାହିଁ ଆଉ ଡେରି କରିବାର କ'ଣ ଥାଇପାରେ । କିଛିକ୍ଷଣ ପରେ ମୁଣ୍ଡ ଟେକି ଚାହିଁଲି । ଦେଖିଲି ଗୋବର୍ଦ୍ଧନ ବାବୁ ନାହାନ୍ତି କିମ୍ବା କାମେଶ୍ୱର ନାହିଁ ଆଶ୍ଚର୍ଯ୍ୟ ହୋଇ ଅନାଇ ରହିଲି । ମୋତେ ବର୍ତ୍ତମାନ କ'ଣ କରିବାକୁ ହେବ ମୁଁ ଭାବି ପାରିଲି ନାହିଁ ।

ଶୀଘ୍ର ବାହାରକୁ ଆସି ଚାରିଆଡ଼େ ଚାହିଁଲି ନିରାଶ ହୋଇ ପୁଣି ଖାଇ ବସିଲି । ଖାଇସାରି ବାହାରକୁ ଆସିଲି ମେନେଜରକୁ ପଇସା ଦେବାକୁ । ମେନେଜର କହିଲେ, ‘‘ଆପଣଙ୍କ ବନ୍ଧୁ ପଇସା ଦେଇ ଯାଇଛନ୍ତି । ସେ ଆପଣଙ୍କୁ ପ୍ରତ୍ୟେକ ଦିନ ଏହିଠାରେ ଖାଇଯିବାକୁ ଅନୁରୋଧ କରି ଯାଇଅଛନ୍ତି । ଆପଣ ପ୍ରତ୍ୟେକ ଦିନ ଦିନ ଦଶଟା ଏବଂ ରାତି ନ'ଟା ବେଳେ ଖାଇବାକୁ ଆସିବେ । ସେ ଏଥିପାଇଁ ଅଗ୍ରିମ ମୂଲ୍ୟ ମଧ ଦେଇ ଯାଇଅଛନ୍ତି ।

ଏହାପରେ ତିନିଦିନ ପର୍ଯ୍ୟନ୍ତ ଗୋବର୍ଦ୍ଧନ ବାବୁଙ୍କ କୌଣସି ସନ୍ଧାନ ମିଳିଲା ନାହିଁ । ଭୟ ଓ ଉତ୍କଣ୍ଠାରେ ମୋତେ ଅସହ୍ୟ ଲାଗୁଥାଏ । ଚତୁର୍ଥ ଦିନ ମୁଁ ହୋଟେଲରୁ ବାହାରିବା ସମୟରେ ଗୋଟିଏ ଲୋଳଚର୍ମ ଭିକ୍ଷୁକ ମୋତେ ପଇସା ପାଇଁ ବିରକ୍ତ କଲା । ମୁଁ ବିରକ୍ତିରେ ତାକୁ ଠେଲି ଦେଇ ଚାଲି ଆସିଲି । କିନ୍ତୁ କିଛିଦୂର ଆସି ମୋର ସନ୍ଦେହ ହେଲା । ମୁଁ ଫେରିଯାଇ ତାକୁ ନିରୀକ୍ଷଣ କରିବାରେ ସେ ଧୀରେ ଧୀରେ କହିଲା, ‘‘କାଲି କଟକ ଫେରିଯିବା । ଆଜି ବୋଧହୁଏ ସବୁ କାମ ଶେଷ ହୋଇଯିବ । ମୁଁ ତାଙ୍କୁ ପଚାରିବାକୁ ଯାଉଥିଲି କିନ୍ତୁ ଆଖି ପିଛଡ଼ାକେ ସେ ଜନଗହଳିରେ ଅଦୃଶ୍ୟ ହୋଇଗଲେ ।

ପରଦିନ ଦଶଟା ବେଳେ ଖାଇ ବସିବା ବେଳେ ଦେଖିଲି ସାମନାରେ ଗୋବର୍ଦ୍ଧନ ବାବୁ ମୋ ପାଇଁ  ଅପେକ୍ଷା କରିଛନ୍ତି । ତାଙ୍କର ଆଉ କୌଣସି ଛଦ୍ମବେଶ ନାହିଁ । ବୁଝିଲି ଅନୁସନ୍ଧାନର ସମସ୍ତ କାର୍ଯ୍ୟ ଶେଷ ହୋଇଯାଇଛି । କିନ୍ତୁ ସଫଳ କି ବିଫଳ ହୋଇଛନ୍ତି ତାହା ତାଙ୍କର ମୁହଁରୁ ଜାଣିପାରିଲି ନାହିଁ । ଖାଉ ଖାଉ ସେ କହିଲେ, ‘‘ଡାକ୍ତର, ଅଦ୍ଭୁତ ଏହି ନଗରୀ । ମୋର ଏହି କେତେଦିନର ଅଭିଜ୍ଞତା ଶୁଣିଲେ ତୁମେ ଆଶ୍ଚର୍ଯ୍ୟ ହେବ । ସତ୍ୟ କଳ୍ପନାଠାରୁ ଅଧିକ ଆଶ୍ଚର୍ଯ୍ୟଜନକ । କାମେଶ୍ୱରକୁ କାଲିରାତିରେ ଏଠାକାର ଗୋଟିଏ ବଡ଼ ଗୁଣ୍ଡାଦଳ ମାରି ପକାଇଛନ୍ତି । ମୋର ବଡ଼ ଦୁଃଖ ରହିଗଲା ଯେ ମୁଁ ତାକୁ ଜୀବିତ ଧରିପାରିଲି ନାହିଁ । ଏ ଘଟଣାଟିରେ ମୋର ମୂଳରୁ ସବୁ ଭୁଲ ହୋଇଛି । ଡାକ୍ତର, ଯଦି କେବେ ହେଁ କୌଣସି ଅନୁସନ୍ଧାନ ସମୟରେ ତୁମର ମନେ ହୁଏ ମୁଁ ବଡ଼ ବେଶୀ ନିଶ୍ଚିତ ହୋଇ କାମ କରୁଛି, ତା'ହେଲେ ତୁମେ ମୋ କାନରେ କେବଳ ‘କାମେଶ୍ୱର ରାଓ' କଥାଟି ପକାଇ ଦେଲେ ମୁଁ କୃତାର୍ଥ ହେବି । ଏହି କେତେ ଦିନ ମୁଁ ଗୁଣ୍ଡା ସାଜି ଏହି ଗୁଣ୍ଡାଦଳ ସହିତ ଥିଲି । କେବଳ ଯେ ଥିଲି ତା' ନୁହେଁ ଅନେକ ଲୁଣ୍ଠନ ବ୍ୟାପାରରେ ଏମାନଙ୍କୁ ସାହାଯ୍ୟ କରିଛି ମଧ ! ଉପାୟ ନଥିଲା । ତେବେ କେବଳ ମୋରି ପାଇଁ ଅନେକ ଲୋକ ମୃତ୍ୟୁରୁ ବଞ୍ଚି ଯାଇଛନ୍ତି । ଏମାନଙ୍କ ଆଚାର ବ୍ୟବହାର ସହିତ ମୋର ଯଥେଷ୍ଟ ପରିଚୟ ଥିବାରୁ ମୋତେ କେହି ସନ୍ଦେହ କରି ନାହାନ୍ତି । ଏହି ମହାନଗରୀରେ ଯେଉଁଠାରେ ସରକାରଙ୍କ ସମସ୍ତ ଶକ୍ତି ଓ ଶାସନର କେନ୍ଦ୍ରସ୍ଥଳ ସେହିଠାରେ ଏହି ଗୁଣ୍ଡାମାନଙ୍କର ଗୋଟିଏ ବିଶ୍ୱବିଦ୍ୟାଳୟ ମଧ ଅଛି । ଦୀପ ତଳଟି ସବୁଦିନେ ଅନ୍ଧାର । ଏହି ବିଶ୍ୱବିଦ୍ୟାଳୟରୁ ପାସ କରିବା ଭାରି କଷ୍ଟ । ମୋତେ ମଧ ଏହି ବିଶ୍ୱବିଦ୍ୟାଳୟରେ ଅନେକ ପରୀକ୍ଷା ଦେବାକୁ ପଡ଼ିଛି । ମୁଁ ବୁଦ୍ଧିମାନ

ବୋଲି ଅବଶ୍ୟ ସବୁ ପରୀକ୍ଷାରେ ପ୍ରଥମ ହୋଇ ପାସ କଲି । ଏହି ବିଶ୍ୱବିଦ୍ୟାଳୟରେ ପିଲାମାନଙ୍କୁ ମଧ୍ୟ ଶିକ୍ଷା ଦିଆଯାଏ । ତା'ର ପ୍ରଥମ ପାଠଟି ଏହିପରି । ଜଣେ ପକେଟରେ ରୁମାଲ ରଖି ଛିଡ଼ା ହୁଏ ଏବଂ ପିଲାମାନଙ୍କୁ ଜଣ ଜଣ କରି କୁହା ହୁଏ, ରୁମାଲଟି ପକେଟରୁ ଉଠାଇ ନେବାର ଚେଷ୍ଟା କରିବାକୁ । ଭାବୁଛ କାର୍ଯ୍ୟଟି ଭାରି ସହଜ । ପକେଟରେ ସାମାନ୍ୟ ଟିକିଏ ଆଙ୍ଗୁଳି ବାଜିଲେ ଚାରିଆଡ଼େ ବେଲ ବାଜି ଉଠେ । କି ଅଦ୍ଭୁତ ଶିକ୍ଷାର ବ୍ୟବସ୍ଥା । ଏହିପରି ଅଭ୍ୟାସ କରୁ କରୁ ପକେଟ ମାରୁରୁ ଚୋର, ଚୋରରୁ ଡକାୟତ, ଖୁଣୀ ଇତ୍ୟାଦି ଶ୍ରେଣୀମାନଙ୍କୁ ଉଠି ଉଠି ଶେଷରେ ଏ ସବୁର ସୁନ୍ଦର କର୍ମକ୍ଷେତ୍ର କଲିକତା ମହାନଗରୀକୁ ଏମାନଙ୍କୁ ଛାଡ଼ି ଦିଆଯାଏ । ସେତେବେଳେ ସେମାନେ ସ୍ୱାଧୀନ ଭାବରେ ବ୍ୟବସାୟ କଲେ ମଧ୍ୟ ଏହି ବିଶ୍ୱବିଦ୍ୟାଳୟ ସହିତ ଯୋଗସୂତ୍ର ଥାଏ । ଯେ ନ ରଖେ ସେ ବଞ୍ଚେ ନାହିଁ । କାମେଶ୍ୱର ଏହି ବିଶ୍ୱବିଦ୍ୟାଳୟର ଜଣେ କୃତୀ ଛାତ୍ର ଥିଲା । ତୁମକୁ ଦେଖି ସେ ଏହି ଗୁପ୍ତ ଦଳକୁ ଖବର ଦିଏ । କିନ୍ତୁ ସେ ଯେଉଁ ଦଶଲକ୍ଷ ଟଙ୍କା ଆଣିଥିଲା ତାହାର ନିୟମିତ ଅଂଶ ଏହି ଗୁପ୍ତ ଦଳକୁ ନ ଦବାରୁ ବିବାଦ ଲାଗେ । କାମେଶ୍ୱର ସେମାନଙ୍କୁ ଧରାଇ ଦେବାର ଭୟ ଦେଖାଏ । ଏବଂ ତା'ର ପରିଣାମ ମୃତ୍ୟୁ ଦଣ୍ଡ ମଧ୍ୟ ପାଏ । କାଲି ରାତିରେ ଗୋଟିଏ ହୋଟେଲରେ ଖାଇ ବସିବା ବେଳେ ଜଣେ ଲୋକ କାମେଶ୍ୱର ସାମନାରେ ବସେ ଏବଂ ସତେ କି ଅସାବଧାନତାବଶତଃ ପାଣି ଗିଲାସଟା ଏପରି ସୁନ୍ଦର ଭାବରେ ଓଲଟାଇ ଦିଏ ଯେ ପାଣିର କିଛି ଅଂଶ କାମେଶ୍ୱର ଭାତରେ ପଡ଼େ । ଏହାର କିଛିକ୍ଷଣ ପରେ ତା'ର ମୃତ୍ୟୁ ଘଟେ । ମୁଁ ସେହି ସମୟରେ ସେଠାରେ ଉପସ୍ଥିତ ଥିଲି । ସାଙ୍ଗେ ସାଙ୍ଗେ ଲୋକଟିକୁ ଅଟକାଇ ପୁଲିସ୍ ଜିମା ଦେଇ ଦେଲି । ଏହାପରେ ଏହି ବିଶ୍ୱବିଦ୍ୟାଳୟର ସମସ୍ତ ଶିକ୍ଷକ ଓ ଛାତ୍ରଙ୍କୁ ପୁଲିସ୍ ଧରି ନେଇ ଯାଆନ୍ତି ଏବଂ ବଙ୍ଗ ସରକାର ମୋତେ ଗୋଟିଏ ମାନପତ୍ର ଦିଅନ୍ତି ।''

ମାନପତ୍ରଟି ଦେଖିଲି । ବଙ୍ଗ ସରକାର ସ୍ୱୀକାର କରିଅଛନ୍ତି ଯେ ଏହି ଗୁପ୍ତ ଦଳଟି ସହରର ଅଧିକାଂଶ ହତ୍ୟାର କାରଣ । କିନ୍ତୁ ଶତ ଚେଷ୍ଟାରେ ସୁଦ୍ଧା ସରକାର ଗୁପ୍ତଦଳର ସନ୍ଧାନ ପାଇବାରେ ବିଫଳ ହୋଇଅଛନ୍ତି । ସହରରେ ଡକାୟତି, ହତ୍ୟା, ଚୋରି, ପକେଟମାରୁ ଯେତେବେଳେ ବୃଦ୍ଧି ପାଇବାରେ ଲାଗିଛି ଏତିକି ବେଳେ ଗୋବର୍ଦ୍ଧନ ବାବୁ ସମସ୍ତ ଦଳଟି ଧରାଇ ଦେବାରୁ ସରକାର ତାଙ୍କ ନିକଟରେ ଋଣୀ ।

ସେହି ରାତିରେ ଆମେ କଟକ ଫେରିଲୁ । ଗୋବର୍ଦ୍ଧନ ବାବୁ ପୂର୍ବପରି ତାଙ୍କର ରାସାୟନିକ ଗବେଷଣାରେ ମନୋନିବେଶ କଲେ । କିନ୍ତୁ ଏହି ରୋମାଞ୍ଚକର ଘଟଣାଟି ଅନେକ ଦିନ ମୋ ମନରେ ଲାଗି ରହିଲା ।

* * *